# ଖୋର୍ଦ୍ଧା ଇତିହାସର ଅନ୍ତରାଳେ



ଫକୀର ହରିଚନ୍ଦନ

ପ୍ରକାଶକ : ଭାରତ ଭାରତୀ, କାଞ୍ଚନ, ସୂତାହାଟ, କଟକ-୭୫୩ ୦୦୧
ଅକ୍ଷର ସଜ୍ଜା : କୋଣାର୍କ ଡାଟା ପ୍ରୋସେସିଂ, ନୂଆପଲ୍ଲୀ, ଭୁବନେଶ୍ୱର-୭୫୧ ୦୧୨
ମୁଦ୍ରଣ : ପେଣ୍ଟାକଲ୍ ପ୍ରିଣ୍ଟର୍ସ, ନୂଆପଲ୍ଲୀ, ଭୁବନେଶ୍ୱର-୭୫୧ ୦୧୨
ପ୍ରଚ୍ଛଦ : ବଳଦେବ ମହାରଥା
ପ୍ରକାଶ କାଳ : ମହାବିଷୁବ ସଂକ୍ରାନ୍ତି, ୧୯୯୯
ମୂଲ୍ୟ : ୧୫୦ ଟଙ୍କା

KHORDHA ITIHASARA ANTARALE

By Sj. Fakir Harichandan
Published by M/s Bharat Bharati, Kanchan, Sutahat, Cuttack - 753 001

I S B N 81 - 86550 - 38 - 0



✓ ପରମାନନ୍ଦ ହରିଚନ୍ଦନ
• ୧୨୯୬ ସାଲ (୧୮୮୯ ମସିହା) କୁମ୍ଭ ୯ ଦିନ
• ୧୯୫୬ ମସିହା ଫେବ୍ରୁୟାରୀ ୧୫

✓ ଶାରିଆ ଦେବୀ
• ..................................
• ୧୯୫୫ ମସିହା ଡିସେମ୍ବର ୩୧

ମୋର ପିତାମାତାଙ୍କ ପବିତ୍ର ସ୍ମୃତିପ୍ରତି
ସପ୍ରଣାମ ସମର୍ପିତ
ଫକୀର

# ମୁଖବନ୍ଧ

ଓଡ଼ିଶା ଇତିହାସରେ ଖୁରଧାର ବିଶେଷ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ରହି ଆସିଛି । ଏଥିପାଇଁ ଖୁରଧାର ଦୁଇଟି ଇତିହାସ ପ୍ରସିଦ୍ଧ ଘଟଣାପ୍ରତି ଦୃଷ୍ଟି ଆକର୍ଷଣ କରାଯାଇଥାଏ । ସେ ଦୁଇଟିରୁ ଗୋଟିଏ ହେଲା, ଖୁରଧା ରାଜ୍ୟ ପ୍ରତିଷ୍ଠା ଓ ବ୍ରିଟିଶ ସରକାର ସଙ୍ଗେ ସଙ୍ଘର୍ଷ । ଦ୍ୱିତୀୟଟି ହେଲା ବକ୍ସି ଜଗବନ୍ଧୁ ଭ୍ରମରବରରାୟଙ୍କ ନେତୃତ୍ୱାଧୀନ ୧୮୧୭ ଓଡ଼ିଶା ବିପ୍ଳବ । ଯେତେବେଳେ ବ୍ରିଟିଶ ଆଗମନ ଫଳରେ ଓଡ଼ିଶାର ସମସ୍ତ ଅଞ୍ଚଳ ନୀରବ, ନିସ୍ତବ୍ଧ ଏବଂ ସ୍ତମ୍ଭୀଭୂତ ସେତେବେଳେ ଖୁରଧାରୁ ହିଁ ଦୁଇଥର ସାମ୍ରାଜ୍ୟବାଦୀ ବିଦେଶୀ ବ୍ରିଟିଶ ସରକାରଙ୍କ ବିରୋଧରେ ସଂଗ୍ରାମ ଆରମ୍ଭ ହୋଇଯାଇଥିଲା । ତେଣୁ ଇତିହାସରେ ଖୁରଧାର ବିଶେଷତ୍ୱକୁ ଅସ୍ୱୀକାର କରିହେବ ନାହିଁ ।

ପ୍ରଥମ ଘଟଣା ସମ୍ପର୍କରେ ଟିକିଏ ଅଧିକ ସୂଚନା ଦେବାକୁ ହେଲେ, କୁହାଯିବ ଯେ ଯେତେବେଳେ ସୂର୍ଯ୍ୟବଂଶୀ ଶାସନର ପତନ ଘଟିଲା, ସେତେବେଳେ ଉତ୍ତରରୁ ଆଫ୍‌ଗାନ ଆକ୍ରମଣ ବିପଦ ସୃଷ୍ଟି କରିଥାଏ । ଦକ୍ଷିଣରେ ମଧ ମୁସଲମାନ ରାଜ୍ୟର ବିସ୍ତାର ଲାଗି ଦକ୍ଷିଣ ଦିଗନ୍ତ ପ୍ରାୟ ସମସ୍ତ ଓଡ଼ିଶା ରାଜ୍ୟର ବିଲୋପ ଘଟି ଆସୁଥାଏ । ରାଜ୍ୟରେ କ୍ଷମତାଲିପ୍ସୁ ବ୍ୟକ୍ତିଙ୍କ ସ୍ୱାର୍ଥସିଦ୍ଧିପାଇଁ କଳହ, ବିଭିନ୍ନ ଗୋଷ୍ଠୀ କନ୍ଦଳ ଏବଂ ଅରାଜକତାର ଅନ୍ଧକାରାଚ୍ଛନ୍ନ ଛାୟାରେ ରାଜ୍ୟ ଶାସନ ବିପର୍ଯ୍ୟସ୍ତ । ଏପରିକି ଜଗନ୍ନାଥ ପୂଜା ପଦ୍ଧତି ଏବଂ ରଥଯାତ୍ରା ଆଦି ପର୍ବପର୍ବାଣି ପାଳନରେ ବିଭ୍ରାଟ ସୃଷ୍ଟି ହୋଇଥାଏ । ସଂକ୍ଷେପରେ କହିବାକୁ ଗଲେ ଏହି ସମୟରେ ପ୍ରଭାବଶାଳୀ ଦନାଇ ବିଦ୍ୟାଧରଙ୍କ ପୁତ୍ର ରମାଇ ରାଉତରା (ପରବର୍ତ୍ତୀ କାଳରେ ରାମଚନ୍ଦ୍ରଦେବ) ବରୁଣାଇଠାରେ ରାଜଧାନୀ ସ୍ଥାପନ କରି ଖୁରଧା ରାଜ୍ୟ ପ୍ରତିଷ୍ଠା କରିବା ତାଙ୍କ ଦୂରଦର୍ଶିତା, ବିଜ୍ଞତା ଏବଂ ଉପସ୍ଥିତ ପରିସ୍ଥିତିର ବାସ୍ତବ ବିଚାର ଜ୍ଞାନର ପରିଚୟ ଦିଏ । ରାଜ୍ୟ ସ୍ଥାପନ କରିବା ପରେ ରାମଚନ୍ଦ୍ର ଦେବଙ୍କୁ ଯେଉଁ କେତେକ ଅସୁବିଧା ଏବଂ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ିଥିଲା, ତାହା ମୋଗଲ ସମ୍ରାଟ ଆକବରଙ୍କ ପ୍ରିୟ ଖ୍ୟାତନାମା ସେନାପତି ରାଜା ମାନସିଂହଙ୍କ ପ୍ରଚେଷ୍ଟା ହେତୁ ସମାଧାନ ହୋଇ ପାରିଥିଲା । ଖୁରଧା ରାଜାଙ୍କର ବହୁ ସମସ୍ୟା ମଧ୍ୟରୁ ଗୋଟିଏ ପ୍ରଧାନ ସମସ୍ୟା ଥିଲା; ଖୁରଧା ରାଜାଙ୍କୁ ଠାକୁର ରାଜା ଭାବରେ ସ୍ୱୀକାର କରିବାକୁ କେତେକ ପ୍ରଭାବଶାଳୀ ପ୍ରତିବାଦୀ ବିରୋଧ କରୁଥିଲେ । ସେମାନେ ହେଲେ ତେଲେଙ୍ଗା ମୁକୁନ୍ଦ ଦେବଙ୍କ ପୁତ୍ର ତେଲେଙ୍ଗା ରାମଚନ୍ଦ୍ର ଦେବ ଏବଂ ଛକଡି ଭ୍ରମରବର । କିନ୍ତୁ ମୋଗଲ ସମ୍ରାଟ୍ ଆକବରଙ୍କ ପ୍ରଧାନ ସେନାପତି ରାଜା ମାନସିଂହ ରାମଚନ୍ଦ୍ର ଦେବଙ୍କୁ ଠାକୁର ରାଜା ବୋଲି ସ୍ୱୀକାର କରି ଶିରୋପା ପିନ୍ଧାଇ ଦେଇଥିଲେ ଏବଂ ତାଙ୍କୁ ମହାରାଜା ଆଖ୍ୟା ପ୍ରଦାନ କରାଯାଇଥିଲା । ମୋଗଲ କୋର୍ଟର ଏକ ୩୫୦୦ ଅଶ୍ୱ ବାହିନୀର ଜଣେ ଉଚ୍ଚ ପଦସ୍ଥ

ସମ୍ଭ୍ରାନ୍ତ ରାଜା ହିସାବରେ ତାଙ୍କୁ ସ୍ୱୀକୃତି ମଧ୍ୟ ମିଳିଥିଲା । ଅନ୍ୟ ଦୁଇଜଣ ପ୍ରତିଦ୍ୱନ୍ଦ୍ୱୀଙ୍କୁ ସନ୍ତୁଷ୍ଟ କରିବାପାଇଁ ମାନସିଂହ ତେଲେଙ୍ଗା ରାମଚନ୍ଦ୍ର ଦେବଙ୍କୁ ଆଳି ରାଜା ହିସାବରେ ସ୍ୱୀକୃତି ଦେଇଥିଲେ ଏବଂ ଛକଡି ଭ୍ରମରବରଙ୍କୁ ପଚିଆର ଅଧିଶ୍ୱର କରାଇଥିଲେ । ଏହା ଉଲ୍ଲେଖ କରିବାର ତାତ୍ପର୍ଯ୍ୟ ହେଲା, ରାଜା ମାନସିଂହଙ୍କ ହସ୍ତକ୍ଷେପ ହେତୁ ଖୋର୍ଦ୍ଧା ରାଜାଙ୍କ ପ୍ରତିଦ୍ୱନ୍ଦ୍ୱୀମାନେ ତାଙ୍କ ନିର୍ଦ୍ଦେଶ ମାନିନେଇ ଆଉ ପ୍ରତିବାଦ ନ କରି ନିଜ ନିଜ ଅଞ୍ଚଳରେ ନିଶ୍ଚିନ୍ତ ରହିଲେ । ଉକ୍ତ ସମୟରେ ଅର୍ଥାତ୍ ୧୫୯୨-୯୩ରେ ରାଜା ରାମଚନ୍ଦ୍ର ଦେବଙ୍କ ସଙ୍ଗେ ମୋଗଲ ସେନାପତି ମାନସିଂହଙ୍କ ମଧ୍ୟରେ ଏକ ସନ୍ଧି ସର୍ତ୍ତ ସ୍ୱାକ୍ଷରିତ ହୋଇଥିଲା । ସେଥିରେ ଖୋର୍ଦ୍ଧା ରାଜ୍ୟର ସୀମା ନିର୍ଦ୍ଧାରିତ ହୋଇଥିବାର କେତେକ ଅସ୍ପଷ୍ଟ ସୂଚନା ମିଳେ । ଷ୍ଟାର୍ଲିଂଙ୍କ ଲେଖାରୁ ମଧ୍ୟ କେତେକାଂଶରେ ତାହାର ଧାରଣା ଆସେ । ସେହି କାଳଠାରୁ କେଉଁ କେଉଁ ଜମିଦାରମାନଙ୍କୁ କି ପ୍ରକାର ସନନ୍ଦ ମିଳିଥିଲା ଓ ପରବର୍ତ୍ତୀ କାଳରେ ଦିଆଯାଇଥିବା ମୋଗଲ ସନନ୍ଦଗୁଡ଼ିକର ବିଶେଷ ବିବରଣୀ ଆମ୍ଭମାନଙ୍କ ଦୃଷ୍ଟିକୁ ଆସିପାରି ନାହିଁ । କିନ୍ତୁ ଏହା ନିଶ୍ଚିତ ଯେ ୧୫୯୨-୯୩ଠାରୁ ମୋଗଲ ରାଜତ୍ୱ ସମୟରେ ବହୁ ଜମିଦାର ଓ ଦୁର୍ଗ ରକ୍ଷକ ମୋଗଲ ସନନ୍ଦ ପ୍ରାପ୍ତ ହୋଇଥିଲେ । ଏହା ଫାର୍ସୀ ଓ ଓଡ଼ିଆ ଭାଷାରେ ଲିଖିତ ଥାଏ । ଏହାର ଆବଶ୍ୟକତା ଉପଲବ୍ଧି ନ ହେବାରୁ କାଳକ୍ରମେ ତାହା ବିଲୁପ୍ତ ହୋଇ ଯାଉଛି । ସେହି ମୋଗଲକାଳୀନ ସନନ୍ଦରୁ କେତୋଟି ଲେଖକ ଶ୍ରୀ ଫକୀର ହରିଚନ୍ଦନ ତାଙ୍କ ପୁସ୍ତକରେ ସଂଲଗ୍ନ କରି ସେଗୁଡ଼ିକର ଗୁରୁତ୍ୱ ଉପସ୍ଥାପିତ କରିଛନ୍ତି ।

ରାମଚନ୍ଦ୍ରଙ୍କଦ୍ୱାରା ପ୍ରତିଷ୍ଠିତ ଖୁରଧା ରାଜବଂଶ ପ୍ରାୟ ୨୩୪ ବର୍ଷ ପର୍ଯ୍ୟନ୍ତ ରାଜ୍ୟ ଶାସନ କରିଥିଲେ । ମୋଗଲ ଓ ମରାଠା ରାଜତ୍ୱ କାଳରେ ଖୁରଧାରାଜା ଜଣେ କରଦ ରାଜା ହିସାବରେ ପରିଗଣିତ ହେଉଥିଲେ ମଧ୍ୟ ଠାକୁରରାଜା ଭାବରେ ସେ ସର୍ବତ୍ର ଭାରତ ପ୍ରସିଦ୍ଧ ଥିଲେ । ଜଗନ୍ନାଥ ମନ୍ଦିର ପରିଚାଳକ ଭାବରେ ସେ ଖ୍ୟାତି ଅର୍ଜନ କରିଥିବାରୁ ଓଡ଼ିଶା ବାହାରୁ ରାଜା, ଜମିଦାରମାନେ ତାଙ୍କୁ ବିଶେଷ ସମ୍ମାନ ଦେଉଥିଲେ । ଆଜିକାଲିକା ପୁରୀ ଅଞ୍ଚଳ ତତ୍କାଳୀନ ଖୁରଧା ରାଜ୍ୟର ଏକ ଅଙ୍ଗ ବିଶେଷ ଥିଲା ଏବଂ ଯେଉଁ ଅଞ୍ଚଳରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠିତ ହୋଇଥିଲା ତାକୁ ପୁରୁଷୋତ୍ତମ ପ୍ରଗଣା ବୋଲି ଅଭିହିତ କରାଯାଇଥିଲା । ଜଗନ୍ନାଥ ମନ୍ଦିର ସଙ୍ଗେ ଖୁରଧା ରାଜାଙ୍କର ନିବିଡ଼ ସମ୍ପର୍କ ଅର୍ଥାତ୍ ମନ୍ଦିର ପରିଚାଳନା, ପର୍ବପର୍ବାଣି ପାଳନ, ଯାନିଯାତ୍ରା ତୁଲାଇବା ଏବଂ ମନ୍ଦିର ପୂଜା ପଦ୍ଧତି ନିର୍ଣ୍ଣୟ କରିବା, ରଥଯାତ୍ରା ଏବଂ ସେବାୟତମାନଙ୍କ କାର୍ଯ୍ୟସୂଚୀ ଓ ନିଯୁକ୍ତି ପ୍ରଭୃତି ବିଷୟମାନଙ୍କରେ ପରୋକ୍ଷ ବା ପ୍ରତ୍ୟକ୍ଷ ଭାବରେ ଖୁରଧାରାଜାଙ୍କ ହାତ ଥିଲା ଏବଂ ସେବାୟତମାନଙ୍କୁ ତାଙ୍କ ନିଷ୍ପତ୍ତି ବା ସଦୁପଦେଶକୁ ମାନି ନେବାକୁ ହେଉଥିଲା । କିନ୍ତୁ ଐତିହାସିକ ପ୍ରମାଣରୁ ଜଣାଯାଇଛି ଯେ ଖୁରଧା ରାଜାଙ୍କ ମନ୍ଦିର ପରିଚାଳନା ଦାୟିତ୍ୱ ୧୭୬୪ରୁ ବାଧାପ୍ରାପ୍ତ ହୋଇଛି । ଏହାର କାରଣସ୍ୱରୂପ ଏଠାରେ ସୂଚାଇ ଦେବାକୁ ହେବ ଯେ ପାରଳାଖେମିଡି ରାଜା ନାରାୟଣ ଦେବ ଖୁରଧା ରାଜ୍ୟର

ଦକ୍ଷିଣାଂଶ ଅଧିକାର କରିବାକୁ ଆକ୍ରମଣ କରିବାରୁ ଖୁରଧା ରାଜା, ବୀରକିଶୋର ଦେବ ଆକ୍ରମଣକୁ ପ୍ରତିହତ କରିବାକୁ ଅସମର୍ଥ ହୋଇ ମରାଠା ଗଭର୍ଣ୍ଣର (ସୁବାଦାର) ଶିବଭଟ୍ଟ ସାଠେଙ୍କୁ ସାହାଯ୍ୟ ଭିକ୍ଷା କରିଥିଲେ । ଏକ ଲକ୍ଷ ଟଙ୍କା ଦେଲେ ମରାଠା ସୁବାଦାର ସୈନ୍ୟ ପ୍ରେରଣ କରି ପାରଳାଖେମିଡି ରାଜାଙ୍କୁ ତାଙ୍କ ରାଜ୍ୟରୁ ବହିଷ୍କାର କରିଦେବାକୁ ସର୍ତ୍ତ ଉପସ୍ଥାପିତ କରିବାରୁ ଖୁରଧାରାଜା ଟଙ୍କା ନ ଦେଇପାରି ତତ୍‌ପରିବର୍ତ୍ତେ ମରାଠା ସରକାରଙ୍କୁ ଚାରୋଟି ମାହାଲ ଦେବାକୁ ରାଜି ହୋଇଥିଲେ । ତେଣୁ ମରାଠା ଗଭର୍ଣ୍ଣର (ସୁବାଦାର) ଶିବ ଭଟ୍ଟ ସାଠେ, ପାରଳାଖେମିଡି ରାଜାଙ୍କୁ ବିତାଡ଼ିତ କରି ଖୁରଧା ରାଜ୍ୟର ସମ୍ମାନ ରକ୍ଷା କରିଥିଲେ । କିନ୍ତୁ ଏ ଚରୋଟି ମାହାଲ ମଧ୍ୟରେ ପୁରୁଷୋତ୍ତମ ଛତର ମାହାଲ ଯାହା ଉପରେ ଜଗନ୍ନାଥ ମନ୍ଦିର ନିର୍ମିତ ତାହା ମରାଠା ଶାସନ ପରିସରକୁ ଚାଲି ଯାଇଥିଲା । ଫଳରେ ୧୭୬୪ଠାରୁ ୧୮୦୪ ପର୍ଯ୍ୟନ୍ତ ଅର୍ଥାତ୍ ପ୍ରାୟ ଦୀର୍ଘ ଚାଳିଶ ବର୍ଷକାଳ, ଜଗନ୍ନାଥ ମନ୍ଦିର ଶାସନ ପଦ୍ଧତି କିପରି ପରିଚାଳିତ ହେଉଥିଲା ତାହା ପରିଷ୍କାର ଭାବରେ ଜାଣିହେଉ ନାହିଁ । କିନ୍ତୁ ମରାଠୀ ମୋଡ଼ି ସ୍କ୍ରିପ୍ଟରେ (ଅକ୍ଷରରେ) ଲିଖିତ କେତେକ ଡକୁମେଣ୍ଟରୁ ଜଣାଯାଇଛି ଯେ ନାଗପୁର୍ ଭୋନ୍‌ସଲା ମହାରାଜା ଜଗନ୍ନାଥ ପୂଜାପାଇଁ ବିଶେଷ ଆକୃଷ୍ଟ ହୋଇ ମନ୍ଦିର ଶାସନଭାର ନିଜ ହାତକୁ ନେଇଥିଲେ । ପ୍ରମାଣ ଅଛି ଯେ ମନ୍ଦିରରେ କୌଣସି ସେବାୟତ ନିଯୁକ୍ତି ପ୍ରଶ୍ନ ଆସିଲେ ବା ପୂଜା ପଦ୍ଧତିରେ ଦ୍ୱନ୍ଦ୍ୱଭାବ ପ୍ରକଟିତ ହେଲେ ତାହା ନାଗପୁର ଦରବାରରେ ମୀମାଂସିତ ହେଉଥିଲା । ‘ନାଗପୁର ମହାରାଜା ଭୋନ୍‌ସଲାଙ୍କ ଜଗନ୍ନାଥଙ୍କ ପ୍ରତି ଆସକ୍ତି ଅନୁରକ୍ତି ଓ ପ୍ରଗାଢ଼ ଭକ୍ତିର ନିଦର୍ଶନ ଏଠାରେ ଦିଆଯାଉଛି । ଖ୍ରୀଷ୍ଟାବ୍ଦ ୧୮୦୩ରେ ଇଂରେଜମାନଙ୍କ ସଙ୍ଗେ ନାଗପୁର ମହାରାଜା ଯୁଦ୍ଧରେ ହାରିଯିବା ପରେ ଶାନ୍ତିଚୁକ୍ତି ସ୍ୱାକ୍ଷର କରିବା ସମୟରେ ତାଙ୍କଦ୍ୱାରା ନିର୍ଦ୍ଦେଶିତ ଓ ପ୍ରେରିତ ଦୂତ ଯଶୱନ୍ତ ରାଓ ରାମଚନ୍ଦ୍ର, ୧୮୦୩ ମସିହା ନଭେମ୍ବର ମାସ ୩୦ ତାରିଖରେ ସନ୍ଧିଚୁକ୍ତି ସମ୍ପର୍କୀୟ ବିଭିନ୍ନ ବିଷୟ ଆଲୋଚନାବେଳେ ବ୍ରିଟିଶ ଗଭର୍ଣ୍ଣର ଜେନେରାଲ ୱେଲେସ୍‌ଲିଙ୍କ ସମସ୍ତ ସର୍ତ୍ତ ମାନିନେଇ କେବଳ ଗୋଟିଏ ପଏଣ୍ଟ ଉପରେ କାକୁତିମିନତି ହୋଇ କହିଥିଲେ ଯେ Jagannath was his (Raja's) own Pagoda, he was desirous to retain it that his honour was involved in this point"[1] ଅର୍ଥାତ୍ ‘‘ଜଗନ୍ନାଥ ମନ୍ଦିର (ନାଗପୁର ମହାରାଜାଙ୍କ) ନିଜର । ଏଥିରେ ତାଙ୍କର ସମ୍ମାନ ଜଡ଼ିତ । ତେଣୁ ସେ ଏହା ନିଜ ଅଧୀନରେ ରଖିବାକୁ ଚାହାନ୍ତି ।’’ ଏ ନିବେଦନଟି ୱେଲ୍‌ସଲି ଗ୍ରହଣ କରି ନ ଥିଲେ ଅର୍ଥାତ୍ ଜଗନ୍ନାଥ ମନ୍ଦିର ଶାସନ ଭାର ବ୍ରିଟିଶ୍ ସରକାର ହାତକୁ ଚାଲି ଯାଇଥିଲା । ଏହା ଏଠାରେ ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଲା ସନ୍ଧିସର୍ତ୍ତ ସ୍ୱାକ୍ଷରିତ ହେବା ସମୟରେ ନାଗପୁର ମହାରାଜାଙ୍କ ପୁରୀ ମନ୍ଦିର ପରିଚାଳନା ଅଧିକାର ନିଜ ହାତରେ ରଖିବାର ବ୍ୟାକୁଳତା ଏବଂ

---

Home Miscellaneous Vol. 623 P.III; Proclamation 9, January 1804 Bengal Secret Persian Correspondence (Trans) sent, 1804 No.1.

ମର୍ମସ୍ପର୍ଶୀ ଉଦ୍‌ବେଗ ଓ ଉତ୍କଣ୍ଠା ପ୍ରଦର୍ଶିତ ହୋଇଛି । ଏହା ମଧ୍ୟ ପ୍ରମାଣିତ ହୋଇଛି ଯେ କୌଣସି ସେବାୟତଙ୍କୁ ନିଯୁକ୍ତି ଦେବାକୁ ହେଲେ ବା ଧର୍ମ ସମ୍ପର୍କୀୟ କୌଣସି ଦ୍ୱିମତ ମନ୍ଦିର କାର୍ଯ୍ୟରେ ବାଧା ବା ବିଭ୍ରାଟ ସୃଷ୍ଟି କଲେ ତାହା ନାଗପୁର ଦରବାରକୁ ଜଣାଇ ଦିଆଯାଉଥିଲା ଏବଂ ସେଥିପାଇଁ ବିହିତ ପ୍ରତିକାରର ବ୍ୟବସ୍ଥା ମଧ୍ୟ ନାଗପୁର ଦରବାରରେ କରାଯାଇଥିଲା । ଏହି ସବୁ ଆଲୋଚନାରୁ ସ୍ପଷ୍ଟ ହୁଏ ଯେ ୧୭୬୪ରୁ ୧୮୦୪ ପର୍ଯ୍ୟନ୍ତ ଅର୍ଥାତ୍ ଚାଳିଶ ବର୍ଷକାଳ ମନ୍ଦିର ପରିଚାଳନା ଭାର ଖୁରଧା ରାଜାଙ୍କର ନ ଥିଲା ବା ଯଦି ଥାଏ କୌଣସି କ୍ଷେତ୍ରରେ ଅତି ସୀମିତ ହୋପାରିଥାଏ ।

ଏହି ଚାଳିଶ ବର୍ଷର ଖୁରଧା ରାଜାଙ୍କର ମନ୍ଦିର ସଙ୍ଗେ କି ପ୍ରକାର ସମ୍ପର୍କ ଥିଲା, ରଥଯାତ୍ରାରେ ଖୁରଧା ରାଜାଙ୍କ କି ଭୂମିକା ଥିଲା ଇତ୍ୟାଦି ବିଷୟ ବସ୍ତୁ ଉପରେ ଏ ପର୍ଯ୍ୟନ୍ତ ସବିଶେଷ ତଥ୍ୟ ଲୋକଚୋଚନକୁ ଆସିପାରି ନାହିଁ । ଏହା ଗବେଷଣାସାପେକ୍ଷ ।

ଏସବୁ ହେଲା ଖୁରଧା ରାଜା ଏବଂ ଜଗନ୍ନାଥ ମନ୍ଦିର ସମ୍ପର୍କୀୟ ବିଷୟବସ୍ତୁ । କିନ୍ତୁ ଦେଖାଯାଏ ଯେ ଜଗନ୍ନାଥଙ୍କୁ କେନ୍ଦ୍ରକରି ମରାଠା ଶାସନ ସଙ୍ଗେ ଖୁରଧା ରାଜାଙ୍କର, କ୍ରୋଧ ଓ ଅସନ୍ତୋଷ ଲାଗି ରହିଥିଲା କାରଣ ଥରକପାଇଁ ଜଗନ୍ନାଥ ମନ୍ଦିର ପରିଚାଳନା ମରାଠା ଶାସନ ଅନ୍ତର୍ଗତ ହୋଇ ଯାଇଥିବାରୁ ତାହା ଛାଡ଼ିବାକୁ ମରାଠାମାନେ ରାଜି ହୋଇ ନ ଥିଲେ । ତେଣୁ ଜଗନ୍ନାଥ ମନ୍ଦିର ପରିଚାଳନା ଭାର ନିଜ ହାତକୁ ନେବାପାଇଁ ଖୁରଧା ରାଜାଙ୍କର ବ୍ୟାକୁଳତା ଏତେ ବଢ଼ିଗଲା ଯେ ସେ ସେତେବେଳେ ବ୍ରିଟିଶ ଗଞ୍ଜାମ ଅଧିକାରୀ (Chief)ଙ୍କ ଠାରୁ ପାଞ୍ଚ ଶହ ତେଲେଙ୍ଗା ସୈନିକ ସଂଗ୍ରହ କରି ସେମାନଙ୍କ ସହିତ ନିଜ ସିପାହିମାନଙ୍କୁ ମିଶାଇ ପୁରୀ ଆକ୍ରମଣ କରି ଜଗନ୍ନାଥ ମନ୍ଦିରକୁ ନିଜ କରାୟତ କରିବାପାଇଁ ଏକ ବିଧିବଦ୍ଧ ଯୋଜନା କରିଥିଲେ । କିନ୍ତୁ ଏ ଯୋଜନା କାର୍ଯ୍ୟକାରୀ ହୋଇ ପାରି ନ ଥିଲା କାରଣ ତତ୍କାଳୀନ ଓଡ଼ିଶାର ମରାଠା ଗଭର୍ଣ୍ଣର ରାଜାରାମ ପଣ୍ଡିତ ବ୍ରିଟିଶ ବେଙ୍ଗଲ ଗଭର୍ଣ୍ଣର ଜେନେରାଲଙ୍କୁ ଚିଠି ଲେଖି ତାଙ୍କ ଉପରେ ପ୍ରଭାବ ପକାଇ ପ୍ରବର୍ତ୍ତାଇବାରୁ ସେ ବ୍ରିଟିଶ ଗଞ୍ଜାମ ଅଧିକାରୀଙ୍କୁ ଚିଠି ଲେଖି ଖୁରଧା ରାଜାଙ୍କୁ କୌଣସି ସାହାଯ୍ୟ କରିବାକୁ ମନା କରି ଦେଇଥିଲେ । ଫଳରେ ଖୁରଧା ରାଜାଙ୍କ ଯୋଜନା ପଣ୍ଡ ହୋଇଗଲା[୧] । ଏଥିରୁ ବୁଝାଯାଏ ଯେ ବହୁ ବର୍ଷ ଧରି ଖୁରଧା ରାଜ ଦରବାର, ଜଗନ୍ନାଥ ମନ୍ଦିର ପରିଚାଳନାରୁ ବଞ୍ଚିତ ହୋଇ ବିଶେଷ ଚିନ୍ତାମଗ୍ନ ଥିଲେ ଏବଂ କୌଣସି ମଉକା ମିଳିଲେ ଜଗନ୍ନାଥ ମନ୍ଦିରକୁ ପୁନଃକର୍ତ୍ତୃତ୍ୱାଧୀନ କରିବା ରାଜାଙ୍କ ମାନସପଟରେ ଲିପିବଦ୍ଧ ହୋଇଥିଲା । ତେଣୁ ଯେତେବେଳେ ୧୮୦୩ରେ ଇଂରେଜମାନେ ଓଡ଼ିଶାରେ ମରାଠା ଶାସନର ମୂଳୋତ୍ପାଟନ କରି ଓଡ଼ିଶା ଅଧିକାର କରିବାପାଇଁ ଯୋଜନା କଲେ ସେତେବେଳେ ବ୍ରିଟିଶ ସରକାର ଓଡ଼ିଶାରେ ମରାଠା ସରକାରପ୍ରତି ଅସନ୍ତୁଷ୍ଟ ଓ ବିରୋଧଭାବାପନ୍ନ ଶକ୍ତିଗୁଡ଼ିକୁ

---

1. Calendar Persian Correspondence, Vol.V, No. 1224.

ବିଶେଷତଃ ଢେଙ୍କାନାଳ ଏବଂ ଖୁରଧା ରାଜାମାନଙ୍କ ସଙ୍ଗେ ଗୋପନୀୟ ଭାବରେ ଯୋଗାଯୋଗର ଷଡ଼ଯନ୍ତ୍ର ଆରମ୍ଭ କରିଦେଇଥିଲେ । ବ୍ରିଟିଶ ସରକାର ଷଣ୍ଢ଼ଆସୀ ଆକ୍ରମଣର ଯୋଜନାକୁ କାର୍ଯ୍ୟକାରୀ କରିବାପାଇଁ ଗଞ୍ଜାମରୁ କଟକ ଆଡ଼କୁ ଅଗ୍ରସର୍ ହେବାକୁ ଖୁରଧା ରାଜଦରବାର ସଙ୍ଗେ କୂଟନୈତିକ ଯୋଗସୂତ୍ର କରିବାକୁ ଚେଷ୍ଟିତ ହେଲେ । ଦକ୍ଷିଣରୁ ବ୍ରିଟିଶ ସୈନ୍ୟବାହିନୀର ନିର୍ଦ୍ଦେଶକ ହାର୍‌କୋର୍ଟ, ଖୁରଧା ରାଜପ୍ରତିନିଧି ଜୟୀ ରାଜଗୁରୁଙ୍କ ସଙ୍ଗେ କଥାବାର୍ତ୍ତା କରିବାପରେ ସ୍ଥିର ହେଲା ଯେ ଓଡ଼ିଶା ଉପରେ ବ୍ରିଟିଶ ଆକ୍ରମଣବେଳେ ସେ (ରାଜଗୁରୁ) ମରାଠାମାନଙ୍କୁ ସମର୍ଥନ କରିବେ ନାହିଁ । କିନ୍ତୁ ସେ ଯାତ୍ରାପଥରେ ବ୍ରିଟିଶ ସୈନ୍ୟବାହିନୀକୁ ଯଥୋଚିତ ସାହାଯ୍ୟ କରିବେ ଏବଂ ସେଥିପାଇଁ ରାଜାଙ୍କୁ ଏକ ଲକ୍ଷ ଟଙ୍କା ଦିଆଯିବ । ଖୁରଧା ରାଜ ଦରବାର ପ୍ରତିନିଧି ଜୟୀ ରାଜଗୁରୁ ହାରକୋର୍ଟଙ୍କ ଆଗରେ ସର୍ତ୍ତ ବାଢ଼ିଥିଲେ ଯେ ମରାଠାମାନେ ଯେଉଁ ଚାରୋଟି ମାହାଲ ବିଶେଷତଃ ପୁରୁଷୋତ୍ତମ ମାହାଲ ଯେଉଁଥିରେ କି ଶ୍ରୀ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠିତ, ସେଗୁଡ଼ିକ ସେମାନଙ୍କୁ ଅର୍ଥାତ୍ ଖୁରଧା ରାଜ ଦରବାରକୁ ଫେରାଇ ଦେବେ । ରାଜା ନାବାଳକ ଥିବାରୁ ଜୟୀ ରାଜଗୁରୁ ଯେକି ରାଜ ଦରବାରର ସର୍ବେସର୍ବା ଥିଲେ କଥାବାର୍ତ୍ତା ଚାଲିଥିବାବେଳେ ସେ ହାର୍‌କୋର୍ଟଙ୍କ କୂଟନୈତିକ ଫାଶରେ ରୁନ୍ଧି ହୋଇଗଲେ । ଜୟୀ ରାଜଗୁରୁଙ୍କର ଆଶା ସଞ୍ଚାର ହେଲା ଯେ ଚାରି ମାହାଲ ସହିତ ଜଗନ୍ନାଥ ମନ୍ଦିର ରକ୍ଷଣାବେକ୍ଷଣ ଦାୟୀତ୍ୱ ଯାହାକି ରାଜାଙ୍କ ପ୍ରଧାନ ଲକ୍ଷ୍ୟ ତାହା ରାଜାଙ୍କ ହାତକୁ ଆସିଯିବ । ସେଥିରେ ସେ ବିଶେଷ ଉତ୍ସାହିତ ହୋଇ ମରାଠାମାନଙ୍କ ବିରୋଧରେ ହାର୍‌କୋର୍ଟଙ୍କ ସୈନ୍ୟବାହିନୀକୁ ପୁରୀଆଡ଼କୁ ଅଗ୍ରସର ହେବାକୁ ଯଥୋଚିତ ସାହାଯ୍ୟ କରିଥିଲେ ଏବଂ ସେଥିନିମିତ୍ତ ଚୁକ୍ତିବଦ୍ଧ ଏକ ଲକ୍ଷ ଟଙ୍କାରୁ ସେ ପଚାଶ ହଜାର ଟଙ୍କା ଗ୍ରହଣ କରିଥିଲେ ।

ବ୍ରିଟିଶ୍ ସୈନ୍ୟବାହିନୀ ସବୁ ଏ ଭିତରେ ମରାଠାମାନଙ୍କୁ ପରାସ୍ତ କରି ସମସ୍ତ ଓଡ଼ିଶା ଅଧିକାର କରି ସାରିଥିବାରୁ ହାରକୋର୍ଟ ସାହେବ ଜୟୀ ରାଜଗୁରୁଙ୍କ ଦାବି ଶୁଣିବାକୁ ରାଜି ହେଲେ ନାହିଁ । ଦାବି ଥିଲା ପୂର୍ବ ଅଧିକୃତ ମରାଠା ଚାରିମାହାଲ ବିଶେଷତଃ ତନ୍ମଧ୍ୟରୁ ଜଗନ୍ନାଥ ମନ୍ଦିର ରାଜାଙ୍କୁ ଫେରାଇ ଦେବା । ଏଥିରେ ବ୍ରିଟିଶ ସରକାର ରାଜି ନ ହେବାରୁ ଜୟୀ ରାଜଗୁରୁଙ୍କ ଜଗନ୍ନାଥ ମନ୍ଦିରକୁ ପୁନଃ ପାଇବାର ଆଶା ଉଭେଇଗଲା । ସ୍ୱପ୍ନ ସ୍ୱପ୍ନରେ ହିଁ ରହିଗଲା । ହତାଶରୁ ଆସିଲା କ୍ରୋଧ । ବ୍ରିଟିଶ ସରକାର ଆଶା ଦେଇ ପ୍ରତାରଣା କରିଛନ୍ତି । ଜଗନ୍ନାଥ ମନ୍ଦିର ସହିତ ଚାରିମାହାଲ ଫେରିପାଇବାର ଆଶା ନାହିଁ । ତେଣୁ ଜୟୀ ରାଜଗୁରୁ ବ୍ରିଟିଶ ସଙ୍ଗେ ଯୁଦ୍ଧ କରି ଲକ୍ଷ୍ୟସାଧନପାଇଁ ପ୍ରୟାସୀ ହେଲେ । ପ୍ରତାପୀ ସମରନିପୁଣ ବ୍ରିଟିଶ ସରକାର ସଙ୍ଗେ ହେଲା ଖୁରଧା ମାଟିର ପ୍ରଥମ ସଂଗ୍ରାମ । ଯେଉଁ ଖୁରଧା ରାଜ ଦରବାର ବିଶେଷତଃ ଜଗନ୍ନାଥଙ୍କୁ ପାଇବାପାଇଁ ପ୍ରାଣମୂର୍ଚ୍ଛା ସଂଗ୍ରାମ କଲା ତାହା ପ୍ରାପ୍ତ ହେଲା ନାହିଁ । ଫଳ ହେଲା ଓଲଟା; ଖୁରଧା ରାଜ୍ୟର ପତନ ଘଟିଲା । ରାଜା ହେଲେ ମେଦିନୀପୁରରେ ବନ୍ଦି ଏବଂ ଖୁରଧା ବରୁଣାଇ ଗଡ଼ ଚୂର୍‌ମାର୍ ହେଲା । ଜୟୀ ରାଜଗୁରୁ ବ୍ରିଟିଶ ବିରୋଧୀ ନେତୃତ୍ୱ ନେଇ

ଯୁଦ୍ଧ କରିଥିବାରୁ ତାଙ୍କୁ ଫାଶି ଦିଆଗଲା ବୋଲି ମାଦଳା ପାଞ୍ଜିରୁ ଆଭାସ ମିଳେ । ଜୟୀ ରାଜଗୁରୁଙ୍କ ମୃତ୍ୟୁ ରହସ୍ୟ ସମ୍ପର୍କୀୟ ବିବରଣୀ ବ୍ରିଟିଶ କାଗଜ ପତ୍ରରେ ରହିଥିବ । କିନ୍ତୁ ଏ ପର୍ଯ୍ୟନ୍ତ ତାହା ଦୃଷ୍ଟିକି ଆସି ନାହିଁ । ସେ ଦିଗରେ ବିଶେଷ ଗବେଷଣା ଲୋଡ଼ା ।

ଏଠାରେ ଆଉ ଗୋଟାଏ ଦିଗ ପ୍ରତି ଦୃଷ୍ଟି ଦେବା ଉଚିତ । ତାହା ହେଉଛି ବ୍ରିଟିଶ ସରକାର ସଙ୍ଗେ ଯୁଦ୍ଧ କରିବା ହେତୁ ଜୟୀ ରାଜଗୁରୁଙ୍କୁ ସମ୍ପୂର୍ଣ୍ଣ ଦୋଷୀ ବୋଲି ଦୋଷାରୋପ କରି ତାଙ୍କୁ ପ୍ରାଣଦଣ୍ଡ ଦେବା ବ୍ରିଟିଶ ସରକାରଙ୍କ ପକ୍ଷରେ ଉଚିତ ହେଲା ନାହିଁ । କାରଣ ଖୁରଧା ରାଜଦରବାରର ଜଗନ୍ନାଥଙ୍କ ସେବାପାଇଁ ବ୍ୟାକୁଳତା ଓ ଆକାଡ଼କ୍ଷା ସର୍ବତ୍ର ବିଦିତ ଥିଲା । କଳେବଳେ କୌଶଳେ ତାହା ହାସଲ କରିବାପାଇଁ ରାଜ ଦରବାର ସର୍ବଦା ଚିନ୍ତିତ ଥିବାର ପ୍ରମାଣ ଅଛି । ଜୟୀ ରାଜଗୁରୁ କେବଳ ରାଜଦରବାରର ପ୍ରତିନିଧି ହିସାବରେ କାର୍ଯ୍ୟ କରୁଥିଲେ । ଦରବାରର ସୁଚିନ୍ତିତ ନିର୍ଦ୍ଦେଶ ସେ କାର୍ଯ୍ୟକାରୀ କରିବାକୁ ଚେଷ୍ଟିତ ଥିଲେ । ବ୍ରିଟିଶ ସରକାରଙ୍କର ଜୟୀ ରାଜଗୁରୁଙ୍କ ପ୍ରତି ପ୍ରାଣଦଣ୍ଡ କେବଳ କ୍ଷମତାଶୀଳ ସାମ୍ରାଜ୍ୟବାଦୀ ଗତାନୁଗତିକ ନିର୍ମମ ଦଣ୍ଡ ବିଧାନର ପରିଚୟ ଦିଏ ।

ପୁଣି ଏଠାରେ ଆହୁରି ସୂଚାଇ ଦିଆଯାଇପାରେ ଯେ, ଯେଉଁ ଭାରତୀୟ ବ୍ରିଟିଶ ସରକାର ଖୁରଧା ରାଜାଙ୍କୁ ଜଗନ୍ନାଥ ମନ୍ଦିର ପରିଚାଳନାରୁ ବଞ୍ଚିତ କରି ତାହା ନିଜ ହାତକୁ ନେଇଥିଲେ ସେହି ଖ୍ରୀଷ୍ଟିୟାନ ସରକାର ବ୍ରିଟିଶ ପାର୍ଲିଆମେଣ୍ଟ ଚାପରେ ଖୁରଧା ରାଜାଙ୍କୁ ମେଦିନୀପୁର ଜେଲରୁ ମୁକ୍ତିଦେଇ ଜଗନ୍ନାଥ ମନ୍ଦିର ପରିଚାଳନାଭାର ତାଙ୍କୁ ଅର୍ପଣ କରିଥିଲେ । ଏପରି ଘଟିବାର କାରଣ ହେଲା, ବ୍ରିଟିଶ ପାର୍ଲିଆମେଣ୍ଟରେ ହିନ୍ଦୁ ଜଗନ୍ନାଥ ମନ୍ଦିର ପରିଚାଳନା ବିଷୟ ଆଲୋଚିତ ହୋଇଥିଲା । ପ୍ରଶ୍ନ ଆସିଲା ଯେ ଖ୍ରୀଷ୍ଟିୟାନ ସରକାର ହିନ୍ଦୁ ମନ୍ଦିର ପରିଚାଳନା କଲେ ଜନସାଧାରଣଙ୍କ ମନରେ ହିନ୍ଦୁ ଧର୍ମରେ ହସ୍ତକ୍ଷେପ କରୁଛନ୍ତି ବୋଲି ଅଭିଯୋଗ ବା ଆଶଙ୍କାକୁ ଏଡ଼ାଇ ଦିଆଯାଇ ନ ପାରେ । ତେଣୁ ବ୍ରିଟିଶ ସରକାର ଧର୍ମନିରପେକ୍ଷ ନୀତି ପ୍ରଚଳନ କରିବାକୁ ହେଲେ ହିନ୍ଦୁ ମନ୍ଦିରକୁ ହିନ୍ଦୁ ହିଁ ପରିଚାଳନା କରିବା ବିଧେୟ । ଏହି ପରିପ୍ରେକ୍ଷୀରେ ପାର୍ଲିଆମେଣ୍ଟର ନିଷ୍ପତ୍ତି ଓ କୋର୍ଟ ଅଫ ଡାଇରେକ୍ଟରଙ୍କ ନିର୍ଦ୍ଦେଶକ୍ରମେ ଭାରତ ବ୍ରିଟିଶ ସରକାର ଜଗନ୍ନାଥମନ୍ଦିରକୁ ସ୍ୱଶାସନ ଅନ୍ତର୍ଗତ ନ କରି କୌଣସି ହିନ୍ଦୁ ଦ୍ୱାରା ଜଗନ୍ନାଥ ମନ୍ଦିର ପରିଚାଳନା କରାଇବାକୁ ସ୍ଥିର କଲେ । ଜଣେ ଉପଯୁକ୍ତ ପରିଚାଳକଙ୍କୁ ଖୋଜା ଚାଲିଲା । ଖୁରଧା ରାଜାଙ୍କର ଜଗନ୍ନାଥ ମନ୍ଦିର ସଙ୍ଗେ ବହୁକାଳରୁ ନିବିଡ଼ ସମ୍ପର୍କ ଥିବାରୁ ତାଙ୍କୁ ମେଦିନୀପୁର ଜେଲରୁ ଅଣାଯାଇ ମନ୍ଦିର ପରିଚାଳନା ଭାର ଦିଆଯାଇଥିଲା[୧] ।

ତଥାପି ଖୁରଧା ରାଜ୍ୟ ହରାଇ ପୁରୀରେ ଅବସ୍ଥାପିତ ଖୁରଧା ରାଜାଙ୍କ ମନ ମଧ୍ୟରେ ରହିଗଲା ଦୁଃଖ ଓ ଅସନ୍ତୋଷ । ସେହି ଅସନ୍ତୋଷ ଓ କ୍ଷୋଭ ୧୮୧୭ରେ ଜଗବନ୍ଧୁଙ୍କ

1. Parliamentary papers H.C, 1812-13, Vol. VII P. 531; Board's Collections Vol.318, 7244 20 April 1807, Bengal Secret Persian Correspondences (Trans) 1807 Letters Received No 151.

ନେତୃତ୍ୱାଧୀନ ଓଡ଼ିଶା ବିପ୍ଳବରେ ପ୍ରତିଫଳିତ ହୋଇଥିଲା ଏବଂ ପରୋକ୍ଷ ଭାବରେ ଆନ୍ଦୋଳନକାରୀଙ୍କୁ ଖୋରାକ ଯୋଗାଇ ଦେଉଥିଲା, ଅର୍ଥାତ୍ ଜଗବନ୍ଧୁଙ୍କ ବିପ୍ଳବ ପ୍ରସ୍ତୁତି ଅଭିଯାନ ବେଳେ ଓଡ଼ିଶାର ସମସ୍ତ ଜମିଦାର, ମୁଖ୍ୟ ଏବଂ ଗଡ଼ଜାତ ରାଜାମାନଙ୍କୁ ବ୍ରିଟିଶ ସରକାରଙ୍କୁ ବହିଷ୍କାର କରିବାପାଇଁ ବିପ୍ଳବରେ ସକ୍ରିୟଯୋଗ ଦେବାକୁ ପୂର୍ବତନ ଖୁରଧା ରାଜାଙ୍କ ନାମରେ ଚିଟାଉ ବଣ୍ଟା ଯାଇଥିଲା । ଆନ୍ଦୋଳନକାରୀମାନଙ୍କୁ ଏହି ଉପାୟ ବହୁତ ଉତ୍ସାହ ପ୍ରଦାନ କରିଥିଲା ।

## ୧୮୧୭ ଓଡ଼ିଶା ବିପ୍ଳବ

୧୮୧୭ ବିପ୍ଳବ ଖୁରଧାରୁ ଜନ୍ମଲାଭ କରିଥିଲେ ମଧ ଏହାର ବ୍ୟାପକତା ସୁଦୂର ପ୍ରସାରୀ ଥିଲା ଏବଂ ଲକ୍ଷ୍ୟ ଥିଲା ଓଡ଼ିଶାକୁ ବ୍ରିଟିଶ କୁଶାସନରୁ ମୁକ୍ତ କରିବା । ଏହା ଏକ ଗଣବିପ୍ଳବ ଥିଲା । ଜାତି, ବର୍ଣ୍ଣ ନିର୍ବିଶେଷରେ ଜନସାଧାରଣ ସ୍ୱତଃପ୍ରବୃତ୍ତ ହୋଇ ବକ୍ସି ଜଗବନ୍ଧୁ ଭ୍ରମରବରଙ୍କ ନେତୃତ୍ୱକୁ ମାନି ନେଇଥିଲେ ଏବଂ ଅତୁଟ ସମର୍ଥନ ଜଣାଇଥିଲେ ।

ସଂକ୍ଷେପରେ ବିପ୍ଳବର କାରଣ ଆଲୋଚନା କରିବାକୁ ଗଲେ ଏତିକି କୁହାଗଲେ ଯଥେଷ୍ଟ ହେବ ଯେ ବିଦେଶୀ ବ୍ରିଟିଶ କ୍ଷମତାନ୍ଧ ସାମ୍ରାଜ୍ୟବାଦୀ ସରକାରଙ୍କ ଶାସନ କ୍ଷେତ୍ରରେ ବେପରୁଆ ମନୋବୃତ୍ତି, ଅଣଓଡ଼ିଆ ଲୋକମାନଙ୍କୁ ନେଇ ଶାସନ ପରିଚାଳନା, କ୍ରମାଗତ ଖଜଣା ବୃଦ୍ଧି, ଓଡ଼ିଆ ଜମିଦାରଙ୍କ ଇଷ୍ଟେଟ୍ କଲିକତାରେ ନିଲାମ ଏବଂ ଲୁଣର ଏକଚାଟିଆ ବ୍ୟବସାୟ ହେତୁ ସାଧାରଣ ଲୋକମାନଙ୍କ ଲୁଣ ପାଇବାରେ ଅସୁବିଧା, ଅଣଓଡ଼ିଆ ନୂତନ ଜମିଦାରମାନଙ୍କ ଆବିର୍ଭାବ ହେତୁ ଓଡ଼ିଆ ବେକାରୀ ସମସ୍ୟାର ତୀବ୍ରତା, ଓଡ଼ିଶାର ଆର୍ଥିକ ଓ ସାମାଜିକ ଅବସ୍ଥାକୁ ଅତୀବ ଶୋଚନୀୟ ଅବସ୍ଥାକୁ ଟାଣି ନେବା ଫଳରେ, ରାଜ୍ୟରେ ହା ହତାଶର ଛାୟା ଏବଂ ସାଧାରଣ ଜୀବନ ଯାପନ ଦୁର୍ବିସହ, ଶୋଚନୀୟ ଏବଂ ଅତି କଷ୍ଟକର ହୋଇଯାଇଥିଲା ।*

ଏହି ସମସ୍ୟାର ପ୍ରତିକାରପାଇଁ ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ରାୟ ଓଡ଼ିଶା ଆନ୍ଦୋଳନର ନେତୃତ୍ୱ ନେଇଥିଲେ ଏବଂ ଅଗଣିତ ଜନ ସମାଜର ସମର୍ଥନରେ ସେ କିଛିକାଳପାଇଁ ଖୁରଧା, ପୁରୀ ଏବଂ କୁଜଙ୍ଗ ପ୍ରଭୃତି ଅଞ୍ଚଳରୁ ବ୍ରିଟିଶ ଶାସନର ମୂଳୋତ୍ପାଟନ କରିଥିଲେ ଏବଂ ଏହାଥିଲା ଓଡ଼ିଶାପାଇଁ ଏକ ମୁକ୍ତି ସଂଗ୍ରାମ । କିନ୍ତୁ ବଙ୍ଗଳାରୁ ବଳିଷ୍ଠ ବ୍ରିଟିଶ ସୈନ୍ୟବାହିନୀ, ଓଡ଼ିଶା ଅଭିମୁଖେ ଯାତ୍ରାକରି ବିଶେଷତଃ କମାଣ ବାହିନୀ ସାହାଯ୍ୟରେ ବିଦ୍ରୋହୀମାନଙ୍କୁ ପରାସ୍ତକରି, ପୁନଃ ବ୍ରିଟିଶ ଶାସନ ପ୍ରତିଷ୍ଠା କରିବାକୁ ଚେଷ୍ଟିତ ହେଲେ । ତେଣୁ ଜଗବନ୍ଧୁ ଏ ପରିସ୍ଥିତିରେ ନିବିଡ଼ ଘଞ୍ଚ ଜଙ୍ଗଲକୁ ସ୍ୱସୈନ୍ୟବାହିନୀ ସହିତ ଯାଇ ଗରିଲା ରଣକୌଶଳ ପ୍ରୟୋଗ କରି ବ୍ରିଟିଶ ସରକାରକୁ ବାରମ୍ବାର ହଇରାଣ ହରକତ କରିବାକୁ

---

*ବିପ୍ଳବୀ ବୀର ଜଗବନ୍ଧୁ ପୁସ୍ତକ ଦେଖନ୍ତୁ By Prof. B.C. Ray

ଲାଗିଲେ । ଏ ଲୁଚାଛପା ସଂଗ୍ରାମ ସାତ ବର୍ଷ କାଳ ଚାଲିଲା । ଜଗବନ୍ଧୁଙ୍କୁ ଧରିବାପାଇଁ ଶତଚେଷ୍ଟା କରି ମଧ୍ୟ ବ୍ରିଟିଶ ସରକାର ଅକୃତକାର୍ଯ୍ୟ ହୋଇଥିଲେ । ପରେ ଜଗବନ୍ଧୁ ଆନ୍ଦୋଳନର ନିଷ୍କ୍ରିୟତା ଦେଖି ବ୍ରିଟିଶ ସରକାରଙ୍କ କୂଟନୈତିକ ଅନୁରୋଧ କ୍ରମେ 'କଟକ'ରେ ଅବସ୍ଥାନ କରି ଅବଶିଷ୍ଟ ଜୀବନକାଳ କଟାଇଥିଲେ ମଧ୍ୟ ତାଙ୍କ ନେତୃତ୍ୱ, ନିଷ୍ଠାପରତା, ଦୃଢ଼ ସଙ୍କଳ୍ପ ଏବଂ ମାତୃଭୂମିକୁ ବିଦେଶୀ ଶକ୍ତି କବଳରୁ ରକ୍ଷାକରିବାପାଇଁ ଆପ୍ରାଣ ଉଦ୍ୟମ, ସ୍ୱଦେଶ-ପ୍ରେମୀ ବ୍ରିଟିଶ ଲୋକମାନଙ୍କୁ ବିସ୍ମିତ କରିଦେଇଥିଲା ଏବଂ ସାତ ବର୍ଷ କାଳ ସେମାନଙ୍କୁ ଉତ୍କଣ୍ଠା ଓ ଉଦ୍‌ବେଗ ମଧ୍ୟରେ ରଖିଥିଲା । ମାତୃଭୂମିକୁ ବିଦେଶୀ ସରକାର କବଳରୁ ମୁକ୍ତ କରିବାପାଇଁ ଜଗବନ୍ଧୁଙ୍କ ନିଃସ୍ୱାର୍ଥପର ନେତୃତ୍ୱ ପ୍ରତି ଦୃଷ୍ଟି ଦେଇ ଏବଂ ବ୍ରିଟିଶ କୁଶାସନର ତୀବ୍ରତାକୁ ସ୍ୱୀକାରକରି ବ୍ରିଟିଶ ଅଫିସର W.Ker ବ୍ରିଟିଶ ଗଭର୍ଣ୍ଣମେଣ୍ଟ ସେକ୍ରେଟାରୀ ବେଲି ସାହେବଙ୍କୁ ଲେଖିଥିଲେ, "Jagabandhu has given a lead in organising a movement for ousting the newly established English from Orissa, he expected that other people who also hit hard by the maladministration under the English and the Orissa Chiefs who had been deprived of all their freedom would follow up the lead to make a common cause with him for the purpose of liberating theri mother land from the foreign yoke".

ଅର୍ଥାତ୍ ''ଓଡ଼ିଶାରୁ ଇଂରେଜମାନଙ୍କୁ ବହିଷ୍କାର କରିବାକୁ ଜଗବନ୍ଧୁ ଏକ ଆନ୍ଦୋଳନର କାର୍ଯ୍ୟାନୁଷ୍ଠାନ ପାଇଁ ନେତୃତ୍ୱ ନେଇଥିଲେ । ସେ ଆଶା ପୋଷଣ କରିଥିଲେ ଯେ ଯେହେତୁ ଇଂରେଜ କୁଶାସନରେ ଜନସାଧାରଣ ଏବଂ ଓଡ଼ିଶାର ମୁଖ୍ୟମାନେ ନିଷ୍ପେସିତ ହୋଇ ସେମାନଙ୍କର ସମସ୍ତ ସ୍ୱାଧୀନତା ହରାଇଛନ୍ତି, ତେଣୁ ସେମାନେ ମିଳିମିଶି ଏକଜୁଟ ହୋଇ ତାଙ୍କ ନେତୃତ୍ୱ ଅନୁସରଣ କରି ବିଦେଶୀ ଶକ୍ତି କବଳରୁ ମାତୃଭୂମିକୁ ଉଦ୍ଧାର କରିବେ ।''

ଏଥିରୁ ଅନୁମିତ ହୁଏ ଯେ ବ୍ରିଟିଶ କୁଶାସନ ବିରୋଧରେ ଓଡ଼ିଶାର ସବୁ ଶ୍ରେଣୀର ଲୋକମାନଙ୍କୁ ଏକଜୁଟ କରି ମାତୃଭୂମିକୁ ବିଦେଶୀ ଶାସନରୁ ମୁକ୍ତ କରିବାପାଇଁ ଜଗବନ୍ଧୁ ଯେଉଁ ଜନପ୍ରିୟ ସାଙ୍ଗଠନିକ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି, ସେହି ଯୋଗ୍ୟତାକୁ ବ୍ରିଟିଶ ସରକାର ଖୋଲାଖୋଲି ପ୍ରଶଂସା କରି ନ ଥିଲେ ମଧ୍ୟ ଏ ଦିଗରେ ଜଗବନ୍ଧୁଙ୍କ ବ୍ୟକ୍ତିତ୍ୱ, ଅନ୍ତର୍ନିହିତ ଶକ୍ତି ଓ ଦୂରଦର୍ଶୀ ଚିନ୍ତାଧାରାକୁ ସମ୍ମାନ ଦେଇଛନ୍ତି । ଓଡ଼ିଶାରେ କାହିଁକି ଅନ୍ୟତ୍ର ଭାରତରେ ପ୍ରାକ୍ ଜାତୀୟ କଂଗ୍ରେସ କାଳରେ ବହୁ ବ୍ରିଟିଶ ବିରୋଧୀସଂଗ୍ରାମ ବା ଅଭିଯାନ ଘଟିଯାଇଛି ସତ, କିନ୍ତୁ ମାତୃଭୂମିକୁ ମୁକ୍ତ କରିବାପାଇଁ ଜଗବନ୍ଧୁଙ୍କ ପରି ସୁପରିକଳ୍ପିତ ସାଙ୍ଗଠନିକ କାର୍ଯ୍ୟାବଳୀ ଓ ଦୂରଦୃଷ୍ଟିସମ୍ପନ୍ନ ଚିନ୍ତାଧାରା କୌଣସି ବ୍ରିଟିଶ ବିରୋଧୀ ଆନ୍ଦୋଳନରେ ଅନ୍ୟତ୍ର ମିଳେ ନାହିଁ ।

ପୁଣି ଏଠାରେ ସୂଚାଇ ଦିଆଯାଇପାରେ ଯେ ସ୍ୱଦେଶପ୍ରେମୀ ଜାତୀୟତାବାଦୀ ବ୍ରିଟିଶ ସରକାର ଜଗବନ୍ଧୁଙ୍କ ନେତୃତ୍ୱାଧୀନ ବିପ୍ଳବର କ୍ଷୁଦ୍ର ପରିବେଷ୍ଟନୀରେ ସୀମିତ ହେଲେ ମଧ୍ୟ ଭାରତୀୟ ଜାତୀୟତାବାଦର ପ୍ରତିକୃତିର ଆଭାସ ଦେଖିବାକୁ ପାଇଥିଲେ ଏବଂ ବ୍ରିଟିଶ ଡକୁମେଣ୍ଟଗୁଡ଼ିକୁ ଅନୁଧାନ କରି ଦେଖାଯାଇଛି, ଜଗବନ୍ଧୁଙ୍କ ବିପ୍ଳବରୁ ମିନି ଜାତୀୟ ଆନ୍ଦୋଳନର

ପ୍ରତିବିମ୍ବ ଦେଖି ତାର ଅକୃତକାର୍ଯ୍ୟତା ବା ବିଫଳତାପାଇଁ ଜଗବନ୍ଧୁଙ୍କୁ ଦୋଷ ଦିଆ ନ ଯାଇ ମୋଗଲବନ୍ଦି ଜନସାଧାରଣଙ୍କୁ ଏଥିପାଇଁ କଟୁ ସମାଲୋଚନା କରାଯାଇଛି । ଏ ପରିପ୍ରେକ୍ଷୀରେ ଇଯୋର ସାହେବ ଲେଖିଛନ୍ତି "Timid spiritless imbecile, unmanly ryots of Mughalbandi could afford them effectual help".

ଅର୍ଥାତ୍ ସାହାସହୀନ ଦୁର୍ବଳ ପୌରୁଷହୀନ ମୋଗଲବନ୍ଦି ରୟତମାନେ ଆନ୍ଦୋଳନକାରୀମାନଙ୍କୁ କୌଣସି ଫଳପ୍ରଦ ସାହାଯ୍ୟ ଦେଇ ନ ଥିଲେ ।

ଇଯୋର ସାହେବଙ୍କ ସମାଲୋଚନାର ତାତ୍ପର୍ଯ୍ୟ ହେଲା ସେ ଦେଖିଥିଲେ ଯେ ସ୍ୱାର୍ଥକୈନ୍ଦ୍ରିକ ରୟତମାନଙ୍କର ବା ଜନସାଧାରଣଙ୍କର ଜାତୀୟ ସଂହତି ମନୋଭାବର ଅଭାବ ଥିଲା । ସେମାନେ ସ୍ୱାଧୀନତା ସଂଗ୍ରାମର ମହତ୍ତ୍ୱ ବୁଝି ନ ଥିଲେ । ତେଣୁ ସଂକୀର୍ଣ୍ଣ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ସଦାସର୍ବଦା ସମୂହ ସ୍ୱାର୍ଥସାଧନପାଇଁ ଏକାଠି କାର୍ଯ୍ୟ କରି ନ ଥିବାରୁ ଜଗବନ୍ଧୁ ମହାନ୍ ଲକ୍ଷ୍ୟ ହାସଲରେ ଅକୃତକାର୍ଯ୍ୟ ହୋଇଥିଲେବୋଲି ସେ ସମାଲୋଚନା କରିଛନ୍ତି ।

ଏକ ପକ୍ଷରେ ସେ ଜଗବନ୍ଧୁଙ୍କ ନେତୃତ୍ୱ ଓ ଦୃଢ଼ ବ୍ୟକ୍ତିତ୍ୱକୁ ପ୍ରଶଂସା କରିଛନ୍ତି । ଅପର ପକ୍ଷରେ ବିପ୍ଳବ କାର୍ଯ୍ୟଧାରାକୁ ଜନସାଧାରଣ ଯଥାରୀତି ସହଯୋଗ ନ କରିବାରୁ ସେମାନେ ତାଙ୍କ ସମାଲୋଚନାର ଶରବ୍ୟ ହୋଇଛନ୍ତି ।

ପୁଣି ଇଯୋର୍ ସାହେବ ଜଗବନ୍ଧୁଙ୍କୁ ଲକ୍ଷ୍ୟ କରି କହିଛନ୍ତି "a man (Jagabandhu) whose name has acquired and will long remain such an unfortunate celebrity in the District (Orissa)".
ଅର୍ଥାତ୍ ''ଜଗବନ୍ଧୁ ଜଣେ ଯଶସ୍ୱୀବ୍ୟକ୍ତି ହିସାବରେ ଖ୍ୟାତି ଅର୍ଜନ କରି ସାରିଛନ୍ତି ଏବଂ ସେହି ଭାଗ୍ୟହୀନ ଯଶ ସେହିପରି ବହୁକାଳ ଧରି ଓଡ଼ିଶାର ଇତିହାସରେ ରହିବ ।''

ବାସ୍ତବିକ୍ କହିବାକୁ ଗଲେ ଜଗବନ୍ଧୁ ଥିଲେ ଜଣେ ଯୋଗଜନ୍ମା । ତାଙ୍କର ପରମଶତ୍ରୁ ବ୍ରିଟିଶ ସରକାରଠାରୁ ପ୍ରଶଂସା ଲାଭ କରିବା ହିଁ ହେଉଛି ତା'ର ପ୍ରମାଣ । ଏହା ଅତି ବିରଳ ଘଟଣା । ତାଙ୍କ ସମୟ ଭାରତବର୍ଷରେ ଶାସକ ଏବଂ କ୍ଷମତାଶୀଳ ବ୍ରିଟିଶ ସରକାରଙ୍କଠାରୁ ଏତାଦୃଶ ଗୁଣକୀର୍ତ୍ତନ ଲାଭ କରିବା ବ୍ୟକ୍ତି ଅନ୍ୟତ୍ର ଦେଖାଯାଇ ନାହିଁ । ପ୍ରାକ୍ ଜାତୀୟ କଂଗ୍ରେସ ଯୁଗରେ ସୀମିତ ଭୌଗୋଳିକ ପରିବେଷ୍ଟନୀ ମଧ୍ୟରେ ସେ ଜାତୀୟତାବାଦର ପ୍ରତିବିମ୍ବ ଦର୍ଶାଇ ପାରିଥିଲେ । ତାଙ୍କ ନେତୃତ୍ୱ କାର୍ଯ୍ୟବିଧି ଓ ଚିନ୍ତା ମନ ମଧ୍ୟରେ ସ୍ୱତଃ ପ୍ରଶ୍ନ ଆଣିଥାଏ ଯେ ଯେଉଁ ଜଗବନ୍ଧୁଙ୍କ ନେତୃତ୍ୱ ଏବଂ ଦୂରଦର୍ଶୀ ଜାତୀୟତାବାଦୀ ଚିନ୍ତାଧାରା ବିଦେଶୀ ଶାସକ ମୁଖରୁ ପ୍ରଶଂସା ଆଣିପାରିଛି ଏବଂ ଯାହାଙ୍କୁ ସେମାନେ ଆଦର୍ଶବାଦୀ ଦୂରଦର୍ଶୀ ରାଜନୀତିଜ୍ଞ ଭାବରେ ଯଶକୀର୍ତ୍ତି ରଖିଗଲେ ବୋଲି ଲେଖିଯାଇଛନ୍ତି, ସେହି ମହାନ୍ ବ୍ୟକ୍ତିଙ୍କୁ ଓଡ଼ିଶା ଏ ପର୍ଯ୍ୟନ୍ତ ଉପଯୁକ୍ତ ସମ୍ମାନ ଦେଇ ପାରିଛି କି ?

ସଂକ୍ଷେପରେ ଏଠାରେ ଓଡ଼ିଶାପ୍ରସିଦ୍ଧ ଦୁଇଟି ଘଟଣା, ଅର୍ଥାତ୍ ଜୟୀ ରାଜଗୁରୁଙ୍କ ବ୍ରିଟିଶ ସଙ୍ଗେ ଯୁଦ୍ଧ ଏବଂ ଜଗବନ୍ଧୁଙ୍କ ନେତୃତ୍ୱାଧୀନ ବ୍ରିଟିଶ ବିରୋଧୀ ସଂଗ୍ରାମର ସମ୍ୟକ୍ ଆଲୋଚନା

କରାଗଲା । ଦୁଇଟିଯାକ ସଂଗ୍ରାମର ଗୁରୁତ୍ୱକୁ ସ୍ୱୀକାର କରିବାକୁ ହୁଏ । ଏହି ଦୁଇଟି ବ୍ରିଟିଶ ବିରୋଧୀ ସଂଗ୍ରାମର ପୃଷ୍ଠ ଦେଶରେ ଥିଲା ଅନେକ ଗଡ଼ ଏବଂ ଗଡ଼ାଧିକାରୀଙ୍କ ସହଯୋଗ, ଯେଉଁମାନେ କି ଖୁରଧା ରାଜା ହୁଅନ୍ତୁ ବା ବିପ୍ଳବୀ ବୀର ଜଗବନ୍ଧୁ ହୁଅନ୍ତୁ ସେମାନଙ୍କ ହାତ ମୁଠାକୁ ବଳିଷ୍ଠ କରି ରଣାଙ୍ଗନରେ ଅବତୀର୍ଣ୍ଣ ହେବାକୁ ବାହାରି ପଡୁଥିଲେ । ଏହି ଶକ୍ତି ସମୂହର କାର୍ଯ୍ୟଦକ୍ଷତା ସମର୍ଥନ ଏବଂ ଅତୁଟ ଆନୁଗତ୍ୟର ବିଶେଷତ୍ୱ ଉପଲବ୍ଧ କରି ''ଖୋର୍ଦ୍ଧା ଇତିହାସର ଅନ୍ତରାଳେ''ର ଲେଖକ ଶ୍ରୀ ଫକୀର ହରିଚନ୍ଦନ, କୋକଲଗଡ଼ ତାପଙ୍ଗଗଡ଼ ଇତ୍ୟାଦି ଗଡ଼ ଓ ଗଡ଼ାଧିକାରୀମାନଙ୍କ ସମ୍ପର୍କରେ ନୂତନ ତଥ୍ୟ ଉଲ୍ଲେଖ କରିଛନ୍ତି । ଖୁରଧାର ବିଶେଷତ୍ୱ ପ୍ରତିପାଦିତ କରିବାପାଇଁ ରାଜାଙ୍କ ଦେଓ୍ୱାନ ଏବଂ ଖୁରଧା ରାଜବଂଶ ପ୍ରତିଷ୍ଠା, ଗଡ଼ାଧିକାରୀଙ୍କ କାର୍ଯ୍ୟବିଧି ଉପରେ ସେ ବିଶଦ ବିବରଣୀ ଦେଇଛନ୍ତି । ଏହି ପରିପ୍ରେକ୍ଷୀରେ ନାନାଦି ଦୃଷ୍ଟିକୋଣରୁ ବିଚାର ଓ ପ୍ରମାଣିତ କରିବାପାଇଁ ତାଙ୍କର ବହୁବିଧ ନଥିପତ୍ର ସଂଗ୍ରହ କମ୍ ପ୍ରଶଂସାର ବିଷୟ ନୁହେଁ । ଏପରି ଉତ୍ସାହୀ ଇତିହାସ ପ୍ରେମୀଙ୍କ ଶ୍ରମର ସାର୍ଥକତା ଆସିଛି । ସେତିକି ନୁହେଁ ପୂର୍ବ ଲେଖକମାନଙ୍କର କେତେ କ୍ଷେତ୍ରରେ ଯେଉଁଠି ତ୍ରୁଟିଥିଲା ବୋଲି ସେ ବିଚାର କରିଛନ୍ତି ସେଠାରେ ସେ ସ୍ୱମତ ପ୍ରକାଶପୂର୍ବକ ନିଜ ଯୁକ୍ତି ବଳରେ ନୂଆ ଆଲୋକପାତପାଇଁ ପଛାଇ ନାହାନ୍ତି ।

ଇତିହାସର ବିକାଶ ଓ ଅଭିବୃଦ୍ଧିରେ Local History ଅର୍ଥାତ୍ ସ୍ଥାନୀୟ ଇତିହାସର ସ୍ଥାନ ଅପରିହାର୍ଯ୍ୟ । ଜାତୀୟ ଇତିହାସ ସଙ୍କଳନରେ ରାଜ୍ୟ ବା ପ୍ରାଦେଶିକ ଇତିହାସର ଯେପରି ଘନିଷ୍ଠ ସମ୍ପର୍କ ବା ଆବଶ୍ୟକତା ଥାଏ ସେହିପରି ରାଜ୍ୟ ବା ପ୍ରାଦେଶିକ ଇତିହାସ, ସ୍ଥାନୀୟ ଇତିହାସ ଉପରେ ଆଶ୍ରିତ ହୁଏ । ଯେଉଁ ରାଜ୍ୟ ବା ଷ୍ଟେଟରେ ବୃତ୍ତିଗତ ଐତିହାସିକ ବା ଇତିହାସ ଲେଖକମାନଙ୍କ ପ୍ରଚେଷ୍ଟା ବା ଗୁରୁ ଗବେଷଣା ଆଗେଇ ଚାଲିଛି ସେଠିକା ଇତିହାସ ସେପରି ସମୃଦ୍ଧିଶୀଳ ଓ ବିକାଶମୁଖୀ । ଏହି ପରିପ୍ରେକ୍ଷୀରେ ଖୁରଧାର ଇତିହାସ ଅର୍ଥାତ୍ ଓଡ଼ିଶାର ତତ୍କାଳୀନ ଅଗ୍ରଣୀ ଅଞ୍ଚଳର କେତେକ ଅସ୍ପଷ୍ଟ ଓ ଅନ୍ଧକାରାଚ୍ଛନ୍ନ ବା ଦ୍ୱିଧାଜନିତ କ୍ଷେତ୍ରରେ ଲେଖକ ଶ୍ରୀ ଫକୀର ହରିଚନ୍ଦନଙ୍କ ଆଲୋକପାତ ଓ ଅବଦାନ ପ୍ରଶଂସନୀୟ । ତାଙ୍କ ଲେଖାଦ୍ୱାରା ଇତିହାସପ୍ରେମୀ ପାଠକମାନେ ଓ ଜନସାଧାରଣ ନିଶ୍ଚୟ ଉପକୃତ ହେବେ ଏଥିରେ ସନ୍ଦେହ ନାହିଁ ।

ଭବାନୀ ଚରଣ ରାୟ
ଅବସରପ୍ରାପ୍ତ ଇତିହାସ ପ୍ରଫେସର ଓ
ନିର୍ଦ୍ଦେଶକ, ସେଣ୍ଟର ଫର୍ ଆଡ୍‌ଭାନ୍ସଡ୍ ଷ୍ଟଡିଜ ଇନ୍ ହିଷ୍ଟ୍ରି କଲ୍‌ଚର୍,
୯୦, ବୁଦ୍ଧେଶ୍ୱରୀ କଲୋନୀ, ଭୁବନେଶ୍ୱର - ୭୫୧୦୦୬

# ଉତ୍ସାହର ଉତ୍ସ

ତା ୨୦-୬-୯୧
କଟକ - ୮

ପ୍ରିୟ ଫକୀର

ପ୍ରଜାତନ୍ତ୍ର ଅନୁଷ୍ଠାନର ପ୍ରକାଶିତ "ପ୍ରତିଭା" ମାସିକରେ ମେ ଓ ଜୁନ୍ ସଂଖ୍ୟାଗୁଡ଼ିକରେ ତୁମର ସିରାଇ ସାତଶାସନ ସଂପର୍କୀୟ ଦୁଇଟି ଲେଖା ଏବଂ ଚିଠିର ବ୍ଲକ୍ ମଧ୍ୟ ପ୍ରକାଶିତ ହୋଇଛି । ଡାକରେ ପଠାହୋଇଥିବ । ତୁମେ ପାଇଲ କି ନାହିଁ ? ତୁମଠାରୁ କୌଣସି ସୂଚନା ନ ପାଇ ଏ ଚିଠି ଲେଖିଲି, ଆଉ ଲେଖା ପଠାଇବ । ...

ତୁମର ସ୍ନେହାଧୀନ
ପଠାଣି
(ଶିକ୍ଷାବିତ୍ ପ୍ରଃ ପଠାଣି ପଟ୍ଟନାୟକ)

"ପ୍ରଜାତନ୍ତ୍ର ସାପ୍ତାହିକୀରେ ଖୁରୁଧା ସଂପର୍କୀୟ ଆପଣଙ୍କ ଦ୍ୱାରା ଲିଖିତ ଐତିହାସିକ ଲେଖାମାନ ମୋର ଦୃଷ୍ଟି ଆକର୍ଷଣ କରିଛି । ଏପରି ଲେଖାପାଇଁ ଆପଣଙ୍କୁ ଧନ୍ୟବାଦ ଜଣାଉଛି । ଲେଖି ଚାଲନ୍ତୁ ଏବଂ ଖୋରଧା ଉପରେ ଏକ ଗବେଷଣାତ୍ମକ ଐତିହାସିକ ପୁସ୍ତକ ପ୍ରକାଶ କରନ୍ତୁ । ଖୁରୁଧା ଇତିହାସରେ ଅଜ୍ଞାତ ଓ ଅନାଲୋଚିତ ଦିଗ ଗୁଡ଼ିକ ଆପଣ ଉଦ୍‌ଘାଟନ କରି ଚାଲନ୍ତୁ ।"

ତା ୦୧.୦୧.୧୯୯୬ **ଡଃ ଗୋପାଳକୃଷ୍ଣ ଶ୍ରୀଚନ୍ଦନ**
ସଚିବ, ଉତ୍କଳ ସମ୍ମିଳନୀ

"ପ୍ରଜାତନ୍ତ୍ର ସାପ୍ତାହିକୀରେ ମୁଁ ଆପଣଙ୍କ "ଇତିହାସ ପୃଷ୍ଠାରୁ" ଶୀର୍ଷକ ନିୟମିତ ପଢ଼େ । ଲେଖାଗୁଡ଼ିକ ବେଶ୍ ଉପାଦେୟ ଏବଂ ଚିତ୍ତାକର୍ଷକ । ଏଗୁଡ଼ିକ ସଂଗୃହୀତ କରି ଏକ ପୁସ୍ତକାକାରରେ ପ୍ରକାଶିତ କରିବାର ଅଭିଳାଷ ଆପଣ ନିଶ୍ଚୟ ରଖିଛନ୍ତି । ମୁଁ ସେହି ପୁସ୍ତକଟିର ପ୍ରକାଶ ଅପେକ୍ଷାରେ ଅଛି ।"

ତା ୦୯.୦୭.୯୭ **ପ୍ରଃ ଅନନ୍ତ ଚରଣ ଶୁକ୍ଳ**
ସମ୍ବଲପୁର ବିଶ୍ୱବିଦ୍ୟାଳୟ

"ଫିରିଙ୍ଗି କଳି ଭାରତ ଓ ଖୋର୍ଦ୍ଧା ଇତିହାସ"ର କ୍ରମିକ ଲେଖାପାଇଁ ଆପଣଙ୍କୁ ମୋର ଗଭୀର ସଦିଚ୍ଛା ଓ ସାଧୁବାଦ ଜଣାଉଛି । ଆପଣଙ୍କର ଏ ଅବଦାନ ଆମ ଅଞ୍ଚଳପାଇଁ ଗୌରବ । ଆପଣଙ୍କ ସନ୍ଦର୍ଭ ପାଠକଲେ ଗର୍ବରେ ମୋର ଛାତି ବିସ୍ତାରିତ ହୋଇଯାଏ, ଯାହା ପାରୁଛନ୍ତି ଲେଖି ଯାଆନ୍ତୁ ।

ତା ୨୮-୯-୯୪ **ବଳରାମ ପଟ୍ଟନାୟକ**
ଔପନ୍ୟାସିକ, ବାସେଲି ସାହି, ପୁରୀ

ଆପଣ ବକ୍ସି ଜଗବନ୍ଧୁଙ୍କ ଦେଶାତ୍ମବୋଧ ଓ ବୀରତ୍ୱ ସମ୍ପର୍କରେ ଲେଖିଚାଲନ୍ତୁ ।

ତା ୩୦-୫-୯୭ **ମାଧବ ଚନ୍ଦ୍ର ରାଉତରାୟ**
ପୂର୍ବତନ ବିଧାୟକ, ଖୋର୍ଦ୍ଧା, ସଭାପତି, ଓଡ଼ିଆ ସମ୍ମିଳନୀ

# ଖୋରଧା ପରିଚୟ

(ଓଡ଼ିଆ ଭାଷାର ଶ୍ରେଷ୍ଠ ସଂକଳକ ସାଧକ-ଶିରୋମଣି ସ୍ୱର୍ଗତ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପ୍ରଣିତ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ୧ମ ଖଣ୍ଡ ୧୧୬୮-୬୯ ପୃଷ୍ଠାରୁ ଉଦ୍ଧୃତ)

''ଓଡ଼ିଶା - ଉତ୍କଳ ଦେଶ, ପ୍ରାଦେ - ପୁରୀଜିଲ୍ଲାର ଖୋରଧା ଅଞ୍ଚଳ

(ବର୍ତ୍ତମାନ ଆମ୍ଭେମାନେ ଯାହାକୁ ଓଡ଼ିଶା ବୋଲି କହୁଅଛୁ ତାହା ପ୍ରାଚୀନକାଳରେ ତିନିଗୋଟି ରାଜ୍ୟର ପ୍ରଧାନ ଅଂଶଥିଲା:

୧. ମେଦିନୀପୁର, ମୟୂରଭଞ୍ଜ, କେନ୍ଦୁଝର, ସିଂହଭୂମ, ମାନଭୂମ ପ୍ରଭୃତି ଘେନି ମେଦିନୀପୁର ସମୁଦ୍ରକୂଳଠାରୁ ଗୟା ଜିଲ୍ଲା ପର୍ଯ୍ୟନ୍ତ ପ୍ରାଚୀନ ଉତ୍କଳ ଦେଶ,

୨. ବର୍ତ୍ତମାନ ଓଡ଼ିଶାର ମହାନଦୀର ଦକ୍ଷିଣ ଗଡ଼ଜାତମାନ- ଢେଙ୍କାନାଳ, ଅନୁଗୁଳ, ହିନ୍ଦୋଳ, ସମ୍ବଲପୁର ଓ ରାୟପୁର ପ୍ରଭୃତି ଘେନି ପ୍ରାଚୀନ ଉଡ୍ରଦେଶ; ଏଠାରେ ବହୁକାଳ ବ୍ୟାଘ୍ର ରାଜବଂଶ ରାଜପଣ କରୁଥିଲେ ।

୩. ବାଲେଶ୍ୱର, କଟକ, ପୁରୀ ଓ ଗଞ୍ଜାମ ଜିଲ୍ଲାମାନଙ୍କୁ ଘେନି ଅତିପ୍ରାଚୀନ କଳିଙ୍ଗଦେଶ)

- **ନୀଳକଣ୍ଠ ଦାସ** - ଖାରବେଳ - ଗ୍ରନ୍ଥ ପ୍ରବେଶ

''ଖାରବେଳ ବା ଐର ରାଜାଙ୍କ ସମୟରେ ମଗଧର ଉତ୍ତର ସୀମା ହିମାଳୟର ପାଦଦେଶରୁ କୁମାରିକାପର୍ଯ୍ୟନ୍ତ ସବୁଦେଶ କଳିଙ୍ଗ ରାଜ୍ୟର ଅନ୍ତର୍ଭୁକ୍ତ ଥିବା ବିଷୟ ଖଣ୍ଡଗିରିର ହାତୀ ଗୁମ୍ଫାରୁ ମିଳିଥିବା ପଥର ଲେଖାରୁ ଜଣାଯାଏ ।'' - ନୀଳକଣ୍ଠ ଦାସଙ୍କ କୋଣାର୍କ ଗ୍ରନ୍ଥରେ ବାସୁଦେବ ମହାପାତ୍ରଙ୍କ ଟୀକା ।

''ଓଡ଼ିଶା ନାମ ମୁସଲମାନ ମାନେ ପ୍ରଥମେ ବ୍ୟବହାର କଲେ । ଓଡ୍ର ଦେଶବାସୀ ଅନେକ ଓଡ୍ର କଳିଙ୍ଗ ରାଜାମାନଙ୍କ ଅଧୀନରେ ସୈନ୍ୟବୃତ୍ତି କରୁଥିବାରୁ ମୁସଲମାନମାନେ ଏହି ଦେଶକୁ 'ଓଡ' ବା ଓଡ଼ିଶା ନାମ ଦେଲେ । ପ୍ରାଚୀନ ଓଡ଼ମାନେ ଯୁଦ୍ଧପ୍ରିୟ ଜାତିଥିଲେ । ଇତିହାସର ପ୍ରଥମ ଯୁଗରେ 'ଓଡ୍ର' ବା ଓଡ଼ିଶା ନାମରେ କୌଣସି ଦେଶ ନ ଥିଲା । 'ଓଡ୍ର' ନାମରେ ଏକ ଆର୍ଯ୍ୟଜାତି ପ୍ରାଚୀନ କାଳରୁ ଆସି କଳିଙ୍ଗର ପଶ୍ଚିମ ପ୍ରାନ୍ତରେ ବାସ କରୁଥିଲେ ଏବଂ ମନୁସଂହିତାରେ ଏମାନଙ୍କୁ ପତିତ କ୍ଷତ୍ରିୟ ବୋଲି କୁହାଯାଇଅଛି । ପରେ ପୁଣି ନୂତନ ଆର୍ଯ୍ୟମାନେ ଆସି ଓଡ୍ରମାନଙ୍କୁ ଗଞ୍ଜାମ, ବିଶାଖାପାଟଣା, ଜୟପୁର ଓ ବସ୍ତର ଆଦି ପାର୍ବତୀୟ ଅଞ୍ଚଳକୁ ତଡ଼ିଦେଲେ । ବହୁକାଳପରେ ସେହିସବୁ ଅଞ୍ଚଳକୁ 'ଓଡବାଦି' ବା 'ଓଡ୍ର' ବୋଲି କହନ୍ତି । ଗଙ୍ଗବଂଶର ରାଜତ୍ୱ କାଳରେ ଏହି ଓଡ଼ମାନେ ଉତ୍କଳରାଜାଙ୍କ ସେନାଭୁକ୍ତ ହୋଇ ଖୋରଧା ପ୍ରଭୃତି ଅଞ୍ଚଳରେ ବାସକଲେ । ମୁସଲମାନମାନେ ଯେଉଁ ସୈନ୍ୟଙ୍କ ସଙ୍ଗେ ୩୦୦ ବର୍ଷ ପର୍ଯ୍ୟନ୍ତ ଯୁଦ୍ଧକରି ବାରମ୍ବାର ପରାସ୍ତ ହୋଇ ଫେରୁଥିଲେ ସେମାନେ ସାଧାରଣତଃ 'ଓଡ' ଥିବାରୁ ସେମାନଙ୍କର ନାମାନୁସାରେ ମୁସଲମାନମାନେ କଳିଙ୍ଗ ବା ଉତ୍କଳକୁ ଓଡ଼ିଶା ନାମ ଦେଲେ । ଖୋରଧାରେ ଓଡପାଇକମାନେ ବହୁ ସଂଖ୍ୟାରେ ବାସକରି ରହିଥିବାରୁ ଖୋରଧା ଅଦ୍ୟାପି ଲୋକରେ ଓଡ଼ିଶା ନାମରେ ପରିଚିତ ।''

- **କୃପାସିନ୍ଧୁ ମିଶ୍ର**, ଉତ୍କଳ ଇତିହାସ

# ଭୂମିକା

ରାଜା ଆଉ ରାଜବଂଶମାନଙ୍କ କାହାଣୀକୁ ନେଇ ଇତିହାସ ଲେଖିବାର ଯୁଗ ଆଉ ନାହିଁ । ମାନବ ସଭ୍ୟତାର କ୍ରମବିକାଶ ଫଳରେ ଜନଚେତନାର ଅଭୂତପୂର୍ବ ଅଭ୍ୟୁଦୟ ଘଟିଛି । ପୃଥିବୀ ପୃଷ୍ଠରୁ ରାଜତନ୍ତ୍ର ପ୍ରାୟ ଲୋପ ପାଇଯାଇଛି । ଭାରତଭଳି ବିଶାଳ ଦେଶରେ କାଲି ଯିଏ ରାଜାର ଆସନରେ ଥିଲା ଆଜି ସିଏ ରାଜରାସ୍ତାକୁ ଓହ୍ଲାଇ ଆସି ସାଧାରଣ ଜନତାଙ୍କ ସହିତ କାନ୍ଧକୁ କାନ୍ଧ, ହାତକୁ ହାତ, ପାଦକୁ ପାଦ ମିଳାଇ ଚାଲିବାକୁ ବାଧ ହୋଇଛି । କାଲିଯିଏ ସମାଜରେ ସର୍ବନିମ୍ନ ସ୍ତରରେ ନିଃସ୍ୱ ଓ ନିଃସହାୟ ଥିଲା ଆଜି ସିଏ ଶାସକର ଆସନରେ ବସିବାର ଅଧିକାର ପାଇଛି । ମାନବ ସମାଜର ଇତିହାସରେ ଏ ଅଭୂତ ପରିବର୍ତ୍ତନ ଏକଦା କଳ୍ପନାତୀତ ଥିଲେ ହେଁ ଆଜି ନିରାଟ ବାସ୍ତବତାରେ ପରିଣତ ହୋଇଛି । ଏ ବାସ୍ତବତାକୁ ସମଧର୍ମୀ ସାହିତ୍ୟ ଓ ଇତିହାସ ଗ୍ରହଣ କରିବାକୁ ବାଧ । ଐତିହାସିକ ଡଃ ହରେକୃଷ୍ଣ ମହତାବଙ୍କ ଭାଷାରେ "Now the history is of the common man to whom the land belongs."

ଭାରତବର୍ଷ ଏକ ଗ୍ରାମବହୁଳ ଦେଶ । ନଦ, ନଦୀ, ହ୍ରଦ, ସମୁଦ୍ର, ପର୍ବତ ଓ ବନାନୀବେଷ୍ଟିତ ବିସ୍ତୃତ ପଲ୍ଲିପ୍ରାନ୍ତରକୁ ନେଇ ଭାରତର ସଭ୍ୟତା ଓ ସଂସ୍କୃତି ସମୃଦ୍ଧ ହୋଇଛି । ସୁତରାଂ ଭାରତର ଆତ୍ମା ଦିଲ୍ଲୀ, ବମ୍ବେ, କଲିକତା, ମାନ୍ଦ୍ରାଜ ଭଳି ମୁଷ୍ଟିମେୟ ସହରଗରର ଉଚ୍ଚ ଅଟ୍ଟାଳିକା ଭିତରେ ଆବଦ୍ଧ ହୋଇ ନାହିଁ । ସାଢ଼େ ପାଞ୍ଚଲକ୍ଷ ପଲ୍ଲିଗାଁର କୋଟି କୋଟି କୁଟୀର ଭିତରେ ଭାରତର ଆତ୍ମା ପୂରିରହିଛି । କାଳର ବିବର୍ତ୍ତନରେ ଆମର ଅଜସ୍ର ଐତିହାସିକ ସମ୍ଭାର ସେଇ ପଲ୍ଲିଭୂଇଁର ମାଟି ଗଦାତଳେ ପୋତି ହୋଇପଡ଼ିଛି । ଆମର ପ୍ରାଚୀନ ଐତିହ୍ୟର ସନ୍ଧାନ ପାଇବାପାଇଁ ସେ ମାଟିଗଦାକୁ ଉଖାରିବାକୁ ହେବ । ଭାରତବର୍ଷର ଗର୍ବ - ପାଞ୍ଚ ହଜାର ବର୍ଷ ତଳର ବିଶ୍ୱର ପ୍ରାଚୀନତମ ଆର୍ଯ୍ୟ ସଭ୍ୟତାର ଚିହ୍ନ ହରପ୍ପା ଆଉ ମହେଞ୍ଜୋଦାରୋ ସିନ୍ଧୁ ଉପତ୍ୟକାର ମାଟିତଳୁ ଆବିଷ୍କୃତ ହୋଇଛି, ଏବେ ପୁଣି ସମୁଦ୍ର ଗର୍ଭରୁ ବିଲୁପ୍ତ ଦ୍ୱାରକା ପୁରର ସନ୍ଧାନ ମିଳୁଛି ବୋଲି କୁହାଯାଉଛି । ଆମ ଓଡ଼ିଶାରେ ବହୁ ପ୍ରାଚୀନ ତାଳପତ୍ର ପୋଥି, ସନନ୍ଦ, ଶିଳାଲିପି, ତାମ୍ର ଶାସନ ଓ ପ୍ରାଚୀନ ଯୁଗର ଅସ୍ତ୍ରଶସ୍ତ୍ରାଦି ଗ୍ରାମାଞ୍ଚଳମାନଙ୍କରୁ ଆବିଷ୍କୃତ ହୋଇ ଆମର ଅତୀତ ଇତିହାସ ଉପରେ ସମ୍ୟକ ଆଲୋକପାତ କରିଛି । ତଥାପି ଆଉ ଅନେକ କିଛି କରିବାର ଅଛି । ଏବେ ମଧ୍ୟ ଓଡ଼ିଶାର ପ୍ରାଚୀନ ଭାସ୍କର୍ଯ୍ୟ ପରିପୂର୍ଣ୍ଣ ବହୁ ମନ୍ଦିର, ବହୁ ଐତିହାସିକ ଗଡ଼ ଏବଂ ବହୁ ଶିଳାଲେଖ ଇତ୍ୟାଦିର ଇତିହାସ ସଂଗୃହୀତ ଓ ସଂକଳିତ ହୋଇପାରି ନାହିଁ । ଓଡ଼ିଶାର ପ୍ରାଚୀନ ଗଡ଼ଜାତ ମାନଙ୍କର ବହୁ ବୈଚିତ୍ର୍ୟପୂର୍ଣ୍ଣ ଐତିହାସିକ ତଥ୍ୟ ସଂଗ୍ରହ କରାଯାଇ ଓଡ଼ିଶାର ଏକ ପୂର୍ଣ୍ଣାଙ୍ଗ ଇତିହାସ ଲେଖାଯିବାର ଆବଶ୍ୟକତା ନିଶ୍ଚୟ ଅଛି ।

ସ୍କୁଲ କଲେଜରେ ପାଠ ପଢୁଥିବା ଆମ ପିଲାମାନେ ଦେଶ ବିଦେଶର ଇତିହାସ ପଢୁଛନ୍ତି । କିନ୍ତୁ ନିଜର ପୂର୍ବପୁରୁଷ, ନିଜ ଗାଁ, ନିଜ ଅଞ୍ଚଳର ଇତିହାସ ସେମାନେ ଜାଣନ୍ତି ନାହିଁ । ଏଥିପାଇଁ ଇଂରେଜ ଶାସନକାଳରୁ ଚଳିଆସୁଥିବା ଆମ ଶିକ୍ଷାପଦ୍ଧତି ହିଁ ଦାୟୀ । ଇଂରେଜମାନେ ଆମର ପ୍ରାଚୀନ ସଭ୍ୟତା, ସଂସ୍କୃତି, ଐତିହ୍ୟ ଏବଂ ପରମ୍ପରା ପ୍ରତି ଉଦାସୀନ ଏବଂ ବିମୁଖଥିଲେ । ତେଣୁ ସେମାନଙ୍କ ଦ୍ୱାରା ପ୍ରବର୍ତ୍ତିତ ଆମ ଶିକ୍ଷା ପଦ୍ଧତିରେ ସେଇମାନଙ୍କ ଆଭିମୁଖ୍ୟ ପ୍ରତିଫଳିତ ହେବା ସ୍ୱାଭାବିକ ଥିଲା । ଏବେ ସେମାନେ ଆମ ଦେଶରୁ ବିଦାୟ ନେବାର ୫୨ବର୍ଷ ହୋଇଗଲାଣି । କିନ୍ତୁ ଏଇ ଦୀର୍ଘ ୫୨ବର୍ଷ ଭିତରେ ମଧ୍ୟ ଆମ ଶିକ୍ଷା ପଦ୍ଧତିରୁ ଆମେ ଇଂରେଜଶାସନର ଆଭିମୁଖ୍ୟକୁ ହଟାଇ ପାରିଲୁ ନାହିଁ ।

ଆଜିକୁ ଦୀର୍ଘ ୬୦ବର୍ଷତଳେ ଡାକ୍ତର ରାଧାଚରଣ ପଣ୍ଡା କଣାସ 'ଗୋଲା'ର ଇତିହାସ ଲେଖି ଏକ ମାସିକ ପତ୍ରିକାରେ ପ୍ରକାଶ କରିଥିଲେ । ସେତେବେଳେ ମୁଁ ଷଷ୍ଠ ଶ୍ରେଣୀରେ ପାଠ ପଢୁଥିଲି । ଆମ ଅଞ୍ଚଳରେ ବହୁକାଳରୁ ଲୋକମୁଖରେ 'ଗୋଲା' ନାମରେ ପରିଚିତ ହୋଇଆସୁଥିବା ଦୟାନଈକୂଳର ସେଇ ଖୋଲା ପଡ଼ିଆ ଖଣ୍ଡିକ ଏକଦା ଏକ ପ୍ରସିଦ୍ଧ ନୌବନ୍ଦର କେନ୍ଦ୍ର ଥିଲା ଏବଂ ସେ କାଳର ନୌବାଣିଜ୍ୟ ବିଭବକୁ ନେଇ ଗଢ଼ି ଉଠିଥିବା ସୁସମୃଦ୍ଧ ଦୟାକୂଳର ନାବିକମାନେ ଚିଲିକା ଆଉ ସମୁଦ୍ର ମଧ୍ୟରେ ବୋଇତ ବାହିନେଇ ସୁଦୂର ଦରିଆପାରି ଦେଶମାନଙ୍କରେ ବେପାର ବଣିଜ କରୁଥିଲେ - ଡାକ୍ତର ପଣ୍ଡାଙ୍କ ପ୍ରବନ୍ଧରୁ ଏହା ଜାଣିବାପରେ ସେଦିନ ମୋର କିଶୋର ପ୍ରାଣରେ ଯେତିକି ଆନନ୍ଦ ଖେଳି ଯାଇଥିଲା, ଆମ ଅଞ୍ଚଳର ପ୍ରାଚୀନ ଇତିହାସ ଜାଣିବାପାଇଁ ମନ ଭିତରେ ସେତିକି ଆଗ୍ରହ ସୃଷ୍ଟି ହୋଇଥିଲା ।

ଦୟାନଦୀକୂଳର ପ୍ରାଚୀନ ନୌବାଣିଜ୍ୟ ବିଭବର ସ୍ମୃତି ବହନ କରୁଥିବା ଗ୍ରାମଗୁଡ଼ିକ ସହିତ ଆମ ଅଞ୍ଚଳର 'ଗଡ଼' ଗ୍ରାମଗୁଡ଼ିକର ଐତିହାସିକ ଖୋର୍ଦ୍ଧା କିଲ୍ଲା ସହିତ ପ୍ରତ୍ୟକ୍ଷ ସଂପୃକ୍ତି ଭିତ୍ତିରେ ପୁରାତନ ତଥ୍ୟ ସଂଗ୍ରହକରି ଛାତ୍ର ଜୀବନ ପରେ ବହିଟିଏ ଲେଖିବି ବୋଲି ଲକ୍ଷ୍ୟ ରଖିଥିଲି । କିନ୍ତୁ ନାନା କାରଣରୁ ସେ ଲକ୍ଷ୍ୟ ପଥରେ ପାଦ ବଢ଼େଇଲାବେଳକୁ ବହୁ ବିଳମ୍ବ ହୋଇଗଲା । ଫୁରୁସତ ସମୟରେ ଅଳ୍ପ ଅଳ୍ପ କରି ଗାଁ ଇତିହାସ ଲେଖିବାକୁ ଆରମ୍ଭ କଲି । ମୋର ସେ ଲେଖାସବୁ ପର୍ଯ୍ୟାୟକ୍ରମେ ପ୍ରଜାତନ୍ତ୍ର ସାପ୍ତାହିକୀ, ପ୍ରତିଭା, ଓ ସମ୍ବାଦରେ ପ୍ରକାଶିତ ହୋଇଥିଲା । ସେହି କ୍ରମରେ ଚର୍ଚ୍ଚିତ 'ଫିରିଙ୍ଗି କଳିଭାରତ'ରୁ ଜଣାଗଲା ଯେ ଖୋର୍ଦ୍ଧାରାଜ୍ୟର ବକ୍ସି, ଦେୱାନ ଓ ରାଜଗୁରୁଙ୍କ ସମ୍ପର୍କରେ ଖୋର୍ଦ୍ଧାର ପ୍ରଚଳିତ ଇତିହାସରେ ସମ୍ୟକ୍ ଆଲୋକପାତ କରାଯାଇ ନାହିଁ ଏବଂ ଅନ୍ତରାଳରେ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଅନାଲୋଚିତ ହୋଇ ରହିଯାଇଛି । ଏପରିକି ଖୋର୍ଦ୍ଧାର ସୁଦକ୍ଷ ଦେୱାନ ହରିହର ଭ୍ରମରବର ରାୟ ଏବଂ ଯୋଗଜନ୍ମା ରାଜଗୁରୁ ବଳଦେବ ମହାପାତ୍ରଙ୍କର ପରିଚୟ ସୁଦ୍ଧା ଖୋର୍ଦ୍ଧା ଇତିହାସରେ ନାହିଁ । ଖୋର୍ଦ୍ଧା ଭୋଇବଂଶ ରାଜାମାନଙ୍କଦ୍ୱାରା ପ୍ରତିଷ୍ଠିତ ସିରାଇ ସାତଶାସନ ସମ୍ପର୍କରେ ପ୍ରଚଳିତ ଇତିହାସ ନୀରବ । ସର୍ବୋପରି ଶକ୍ତିଶାଳୀ ବ୍ରିଟିଶ ବାହିନୀ ବିପକ୍ଷରେ ସଂଗ୍ରାମ ଚଳାଇ ପ୍ରାଣବଳି

ଦେଇଥିବା ସହିଦ ଜୟୀ ରାଜଗୁରୁ ଏବଂ ଐତିହାସିକ ଖୋର୍ଦ୍ଧା ପାଇକ ବିଦ୍ରୋହର ନେତା ବକ୍ସି ଜଗବନ୍ଧୁ ଓ ଉପନେତା ଦେଓ୍ୱାନ କୃଷ୍ଣଚନ୍ଦ୍ରଙ୍କ ସମ୍ପର୍କରେ ପ୍ରଚଳିତ ଇତିହାସରେ କେତେକ ବିକୃତ ତଥ୍ୟ ସ୍ଥାନ ପାଇଯାଇଛି ଯାହା ଓଡ଼ିଶା ତଥା ଓଡ଼ିଆ ଜାତିର ସ୍ୱାଭିମାନ ପ୍ରତିଷ୍ଠା କ୍ଷେତ୍ରରେ ଅନ୍ତରାୟ ସୃଷ୍ଟି କରିଛି। ତେଣୁ ଖୋର୍ଦ୍ଧା ତଥା ଓଡ଼ିଶାର ଇତିହାସରେ ସେହି ବୀର ପୁରୁଷମାନଙ୍କର ସ୍ୱଦେଶ ଓ ସ୍ୱଜାତି ପ୍ରୀତିର ସଠିକ ମୂଲ୍ୟାୟନ କରାଯିବା ସର୍ବାଦୌ ଆବଶ୍ୟକ । ଏ ଦୁରୂହ ଲକ୍ଷ୍ୟସାଧନ ଅତ୍ୟନ୍ତ କଷ୍ଟସାଧ୍ୟ ହେଲେ ମଧ୍ୟ ମୋ ଦ୍ୱାରା ଯେତିକି ସମ୍ଭବ ନିଶ୍ଚୟ କରିବି ବୋଲି ଦୃଢ଼ ସଂକଳ୍ପ ନେଇ ସେ କାର୍ଯ୍ୟରେ ବ୍ରତୀ ହେଲି । ସେଇ ସଂକଳ୍ପଲବ୍ଧ ଫଳସ୍ୱରୂପ 'ଖୋର୍ଦ୍ଧା ଇତିହାସର ଅନ୍ତରାଳେ' ଆଜି ଆତ୍ମ ପ୍ରକାଶ କରିବାକୁ ଯାଉଛି । ଖୋର୍ଦ୍ଧା ତଥା ଓଡ଼ିଶାର ସ୍ୱାଭିମାନ ପ୍ରତିଷ୍ଠା କ୍ଷେତ୍ରରେ ଏହା ଯଦି ସାମାନ୍ୟତମ ପ୍ରଚେଷ୍ଟାଭାବେ ସହୃଦୟ ପାଠକପାଠିକାମାନଙ୍କଦ୍ୱାରା ଆଦୃତ ହୁଏ ମୁଁ ମୋର ଶ୍ରମକୁ ସାର୍ଥକ ମଣିବି ।

## ଇତିହାସରେ 'ଇତି'ର ହସ

ଯାହା ଇତି ବା ଅତୀତ ହୋଇଯାଇଛି ତାହା ଇତିହାସ । ବୀର ଓଡ଼ିଆ ଜାତିର ବହୁ ଅତୀତ ଗୌରବ-ଗାଥାକୁ ବିଦେଶୀ ଶାସକମାନେ ଶାସକୀୟ ଦିଗ୍‌ବଳୟତଳେ ବାଲିଝଡ଼ ସୃଷ୍ଟି କରି ପୋତି ପକାଇଛନ୍ତି । ବିସ୍ମୃତି ଓ ବିକୃତିର ବାଲିସ୍ତୂପତଳୁ ସେଇ 'ଇତି'ର ପୁଳାଏ ହସ ଆହରଣ କରି ସୁପ୍ତପ୍ରାୟ ଗୋଟାଏ ଦୁର୍ଦ୍ଧର୍ଷ ବୀରଜାତିର ମୁହଁରେ ଚେନାଏ ଝଲକ ଆଣିଦେବାପାଇଁ ବିନମ୍ର ଲେଖକର ଏହା ଏକ କ୍ଷୁଦ୍ର ପ୍ରୟାସ ମାତ୍ର ।

ଦାରୁଠେଙ୍ଗଠାରୁ ଛତ୍ରଗଡ଼ ଆଉ ପୁରୁଷୋତ୍ତମ କ୍ଷେତ୍ରରୁ ପାଞ୍ଚଗଡ଼ଯାଏ ବିସ୍ତୃତ ଅଞ୍ଚଳରେ ବିସ୍ତାରିତ ଖୋର୍ଦ୍ଧାର ବହୁ ଐତିହାସିକ ବିଭବ ଏବେ ମଧ୍ୟ ଅନ୍ଧକାର ଭିତରେ ଲୁଚି ରହିଛି । ଏ ବହି ସେହିସବୁ ବିଭବର ଏକ ପୂର୍ଣ୍ଣାଙ୍ଗ ସଂକଳନ ନୁହେଁ,ଏକ ସଂକ୍ଷିପ୍ତ ଆକଳନ ମାତ୍ର ଏବଂ ଅନାଲୋକିତ ଓ ଅନାଲୋଚିତ ହୋଇ ଅନ୍ତରାଳରେ ଲୁଚି ରହିଥିବା ଖୋର୍ଦ୍ଧା ଇତିହାସର ଅଜସ୍ର ଉପାଦାନ ଉପରେ ଯୁବପିଢ଼ିର ଲେଖକ ଓ ଗବେଷକମାନେ ଆଲୋକପାତ କରି ସେସବୁକୁ ଲୋକଲୋଚନକୁ ଆଣିବା ଦିଗରେ କିଛି ପ୍ରେରଣା, କିଛି ଦିଗ୍‌ଦର୍ଶନ ଦେବାପାଇଁ ଅଭିପ୍ରେତ, ଏହା ଲେଖକର ସାମାନ୍ୟ ପ୍ରଚେଷ୍ଟା ମାତ୍ର । ଯେଉଁ ସବୁ ସନ୍ଦିଗ୍ଧ ପୁରାତନ ତଥ୍ୟ ଉପରେ ଆଲୋକପାତ କରାଯାଇଛି ଏବଂ ଯେଉଁସବୁ ନୂତନ ତଥ୍ୟଗୁଡ଼ିକ ପ୍ରଦାନ କରାଯାଇଛି କ୍ରମବର୍ଦ୍ଧିଷ୍ଣୁ ଗବେଷଣା ଫଳରେ ଭବିଷ୍ୟତରେ ତହିଁରେ ପୁଣି ପରିବର୍ତ୍ତନର ସମ୍ଭାବନାକୁ ମଧ୍ୟ ଏଡ଼େଇ ଦିଆଯାଇପାରିବ ନାହିଁ ।

## ସ୍ମରଣଯୋଗ୍ୟ ସହାୟତା

ଗାଁ ଇତିହାସ କ୍ରମରେ ମୁଁ ଲେଖିଥିବା ଐତିହାସିକ ନିବନ୍ଧଗୁଡ଼ିକରୁ ସର୍ବପ୍ରଥମେ 'ସିରାଇ ସାତଶାସନ ଓ ଚନ୍ଦ୍ରଚୋର ମହାପାତ୍ର' ଶୀର୍ଷକ ଲେଖାଟିକୁ ମୋର ବାଲ୍ୟ-ସହପାଠୀ ବନ୍ଧୁ

ଅଧ୍ୟାପକ ପଠାଣି ପଟ୍ଟନାୟକ ନିଜେ ନେଇ ପ୍ରଜାତନ୍ତ୍ର ମାସିକ ପତ୍ରିକା 'ପ୍ରତିଭା'ରେ ପ୍ରକାଶପାଇଁ ଦେଇଥିଲେ ଏବଂ ପ୍ରକାଶ ପରେ ମୋତେ ଚିଠିଲେଖି ବସ୍ତୁତଃ ଏ ବହିପାଇଁ ଉତ୍ସାହର ଉତ୍ସଟିଏ ସୃଷ୍ଟିକରି ଦେଇଥିଲେ । ଦୀର୍ଘ ଅର୍ଦ୍ଧ ଶତାବ୍ଦୀର ବ୍ୟବଧାନପରେ ମଧ୍ୟ ତାଙ୍କର ସେଇ ବାଲ୍ୟ ସହପାଠୀ ସୁଲଭ ବିରଳ ଆତ୍ମୀୟତାପାଇଁ ମୁଁ ଗଭୀରଭାବେ ଋଣୀ । ପ୍ରଜାତନ୍ତ୍ରର ସୁଯୋଗ୍ୟ ସଂପାଦକ ଶ୍ରୀଯୁକ୍ତ ଭର୍ତ୍ତୃହରି ମହତାବ ତାଙ୍କ ସାପ୍ତାହିକୀରେ ମୋର ଐତିହାସିକ ନିବନ୍ଧଗୁଡ଼ିକୁ ପର୍ଯ୍ୟାୟକ୍ରମେ ପ୍ରକାଶ କରି ମୋତେ ଉତ୍ସାହିତ କରିଥିବାରୁ ମୁଁ ତାଙ୍କ ନିକଟରେ ମଧ୍ୟ ଗଭୀରଭାବେ କୃତଜ୍ଞ । ପ୍ରଜାତନ୍ତ୍ର ସାପ୍ତାହିକୀରେ ମୋର ଐତିହାସିକ ଲେଖାଗୁଡ଼ିକ ପ୍ରକାଶିତ ହେଉଥିବା ସମୟରେ ଜଣା ଅଜଣା ବହୁ ପାଠକ ବନ୍ଧୁ ବ୍ୟକ୍ତିଗତଭାବେ ପତ୍ର ଲେଖି ମୋତେ ଯେପରି ପ୍ରେରଣା ଓ ସନ୍ତୋଷ ପ୍ରଦାନ କରିଥିଲେ ସେଥିପାଇଁ ସେ ସମସ୍ତଙ୍କ ପ୍ରତି ମୁଁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ଏବଂ ସାମଗ୍ରିକଭାବେ ପାଠକୀୟ ପ୍ରେରଣା ହିଁ ଆଜି ଏକ ଚଳଚଞ୍ଚଳ ପ୍ରବାହରେ ପରିଣତ ହୋଇଛି ବୋଲି ମୁଁ ଉପଲବ୍ଧି କରୁଛି ।

'ସିରାଇ ଦଣ୍ଡପାଟ' ଅଧ୍ୟାୟଟିକୁ ଦୈନିକ 'ସମ୍ବାଦ'ର କେତୋଟି ସଂଖ୍ୟାରେ ପ୍ରକାଶ କରିଥିବାରୁ ସେହି ସଂସ୍ଥାର ସାହିତ୍ୟ ବିଭାଗ ମୁଖ୍ୟ ଶ୍ରୀ ଗୌରହରି ଦାସଙ୍କୁ ମଧ୍ୟ ସାଧୁବାଦ ଜଣାଉଛି ।

ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱବିତ୍ ସ୍ୱର୍ଗତ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ଏବଂ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଉପାଧ୍ୟକ୍ଷା ଡକ୍ଟର ସ୍ନିଗ୍ଧା ତ୍ରିପାଠୀ ସେମାନଙ୍କର ବହୁମୂଲ୍ୟ ସମୟ ଦେଇ ଚନ୍ଦ୍ରମାପାଟପୁର ଶିଳାଲିପି ପାଠକରି ଦେଇଥିବାରୁ ମୁଁ ସେମାନଙ୍କ ପ୍ରତି ବିଶେଷଭାବେ କୃତଜ୍ଞ ।

ବକ୍ସି ବିଦ୍ୟାଧର ବଂଶର ଅନ୍ୟତମ ବଂଶଧର ଖେଲୋର ନିବାସୀ ସ୍ୱର୍ଗତ ଉଲ୍ଲାସ କୁମାର ରାୟବିଧାର ମୃତ୍ୟୁର ମାତ୍ର ଦିନକ ପୂର୍ବରୁ ପେଟବ୍ୟାଧିରେ ଶଯ୍ୟାଶାୟୀ ହୋଇପଡ଼ିଥିବା ଅବସ୍ଥାରେ ମଧ୍ୟ ମୋତେ ବକ୍ସିଙ୍କ ଜାଗିରି ସନନ୍ଦ ପଢ଼ିବାକୁ ଦେଇଥିଲେ । ପରେ ତାଙ୍କର ବିଧବା ପତ୍ନୀ ଶ୍ରୀମତୀ ସତ୍ୟଭାମା ରାୟବିଧାର ମଧ୍ୟ ସନନ୍ଦଗୁଡ଼ିକର ସଠିକ ଅଧ୍ୟୟନ ଓ ଚିତ୍ର ଉତ୍ତୋଳନପାଇଁ ସାମୟିକଭାବେ ମୋତେ ହସ୍ତାନ୍ତର କରିଦେଇଥିଲେ, ସେଥିପାଇଁ ସେହି ଉଦାରମନା ଦମ୍ପତିଙ୍କ ନିକଟରେ ମୁଁ ଚିର କୃତଜ୍ଞ । ସେହିପରି ଶ୍ରୀମୁକୁନ୍ଦପୁର ଶାସନ (ଓକ୍ଷଣା) ଗ୍ରାମର ରାଜଗୁରୁ ବଂଶଜ ସାମନ୍ତ କୃଷ୍ଣଚନ୍ଦ୍ର ମହାପାତ୍ର ସିରାଇ ସାତଶାସନ-ସନନ୍ଦ ଦୁଇଟିର ଅଧ୍ୟୟନ ଓ ଚିତ୍ର ଉତ୍ତୋଳନପାଇଁ ସୁଯୋଗ ଦେଇଥିବାରୁ ତାଙ୍କୁ ସାଧୁବାଦ ଜଣାଉଛି ।

ମାଣତ୍ରୀଗଡ଼ ନିବାସୀ ଶ୍ରୀ ସର୍ବେଶ୍ୱର ରାଉତରାୟ, ବରପଦାଗଡ଼ ନିବାସୀ ସ୍ଥାନୀୟ ହାଇସ୍କୁଲର ପ୍ରଧାନଶିକ୍ଷକ ଶ୍ରୀ ବଂଶୀଧର ଜଗଦ୍ଦେବ, ଗଡ଼ଖୋରଦ ପାଇକବେହେରାଙ୍କ ବଂଶଧର ଶ୍ରୀ ତାରେଶ୍ୱର ମର୍ଦ୍ଦରାଜ ଜକାଟ (ଅବସରପ୍ରାପ୍ତ ଓ.ଏ.ଏସ.) ବଳଭଦ୍ରପୁରଗଡ଼ର ଶ୍ରୀ ଚନ୍ଦ୍ରମଣି ରାଉତରାୟ (ଧନପତି) ପ୍ରାଚୀନ ଖୋର୍ଦ୍ଧା-ଦୁର୍ଗ-ଭଗ୍ନାବଶେଷର ସଂରକ୍ଷଣ-ଉଦ୍ୟୋକ୍ତା ସାମ୍ବାଦିକ ଶ୍ରୀ ବିଶ୍ୱନାଥ ସାମନ୍ତ, ବ୍ରହ୍ମଗିରିର ପୂର୍ବତନ ଚେୟାରମ୍ୟାନ ମୋର ବନ୍ଧୁ ଶ୍ରୀ

ରାଧାନାଥ ଭୋଳ, ଖୋର୍ଦ୍ଧା ପ୍ରାଣନାଥ ମହାବିଦ୍ୟାଳୟର ଅଧ୍ୟାପକ ଶ୍ରଦ୍ଧେୟ ଗୋପାଳକୃଷ୍ଣ ଦାସ, ହରଚଣ୍ଡିପୁର ନିବାସୀ ଶ୍ରୀ ଭୀମସେନ ମହାପାତ୍ର ଏ ବହିପାଇଁ ତଥ୍ୟ ସଂଗ୍ରହରେ ସହାୟତା କରିଥିବାରୁ ମୁଁ ସେମାନଙ୍କୁ ଧନ୍ୟବାଦ ଅର୍ପଣ କରୁଛି ।

ଏ ପୁସ୍ତକପାଇଁ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ତଥ୍ୟ ସଂଗ୍ରହ ନିମନ୍ତେ ମୋତେ ବାରମ୍ବାର ରାଜ୍ୟ ଅଭିଲେଖାଗାର ଓ ରାଜ୍ୟ ସଂଗ୍ରହଳାୟର ଗ୍ରନ୍ଥାଗାରକୁ ଯିବାକୁ ପଡ଼ିଥିଲେ ହେଁ ମୋର ବଡ଼ପୁଅ ଆୟୁଷ୍ମାନ ପ୍ରସାଦ ବହୁ ଐତିହାସିକ ପୁସ୍ତକ ମୋ ହାତପାହାନ୍ତାରେ ଯୋଗାଇ ଦେଇ ବହୁ ପରିମାଣରେ ମୋର ଶ୍ରମ ଲାଘବ କରିପାରିଛି ଏବଂ ସାନପୁଅ ପ୍ରଦୀପ ମଧ ତାର ସାଧମତେ ସହାୟତା କରିଛି । ପ୍ରଭୁ ଜଗନ୍ନାଥ ସେମାନଙ୍କୁ ଯଶସ୍ୱୀ ଓ ଦୀର୍ଘାୟୁ କରନ୍ତୁ ।

ବିଶିଷ୍ଟ ତୂଳୀକାର ଅଧ୍ୟାପକ ବଳଦେବ ମହାରଥୀ ଏ ବହିର ପ୍ରଚ୍ଛଦ ଅଳଙ୍କରଣ କରଛନ୍ତି, ଭୁବନେଶ୍ୱରସ୍ଥିତ କୋଣାର୍କ ଡାଟା ପ୍ରୋସେସିଙ୍ଗ ଅନୁଷ୍ଠାନ ଏହି ପୁସ୍ତକର ଅକ୍ଷର ସଜାଇଛନ୍ତି ଏବଂ କଟକସ୍ଥ  ଭାରତ ଭାରତୀ ଏହି ପୁସ୍ତକଟିର ପ୍ରକାଶନ ଦାୟିତ୍ୱ ବହନ କରିଛନ୍ତି । ସେମାନଙ୍କୁ ହାର୍ଦ୍ଦିକ ଧନ୍ୟବାଦ ଅର୍ପଣ କରୁଛି ।

ସର୍ବୋପରି ଉତ୍କଳମାତାର ଅନ୍ୟତମ ବରପୁତ୍ର ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ପ୍ରବୀଣ ଐତିହାସିକ ଅବସରପ୍ରାପ୍ତ ପ୍ରଫେସର ଡ.ଭବାନୀଚରଣ ରାୟ ମୋର ଅନୁରୋଧ ରକ୍ଷାକରି ବାର୍ଦ୍ଧକ୍ୟର ଅସୁସ୍ଥତାସତ୍ତ୍ୱେ ବହୁଶ୍ରମସ୍ୱୀକାରପୂର୍ବକ ଏ ବହିର ପାଣ୍ଡୁଲିପି ପାଠକରି ସାରଗର୍ଭକ ମୁଖବନ୍ଧଟିଏ ଲେଖିଦେଇ ମୋତେ କୃତଜ୍ଞତାପାଶରେ ବାନ୍ଧି ଦେଇଛନ୍ତି । ବହୁ ଐତିହାସିକ ଗ୍ରନ୍ଥର ପ୍ରଣେତା ଡ. ରାୟ ଓଡ଼ିଶାର ତିନୋଟିଯାକ ବିଶ୍ୱ ବିଦ୍ୟାଳୟରେ ଇତିହାସ ଅଧ୍ୟାପନା କରିବା ସହିତ ହାର୍ଭାର୍ଡ (ଆମେରିକା), ଓ୍ୟାର୍ସା ଓ ଜାଗାଇଲୋନିଅନ୍ (ପୋଲ୍ୟାଣ୍ଡ) ଏବଂ ମଗଧ (ଭାରତ) ବିଶ୍ୱବିଦ୍ୟାଳୟମାନଙ୍କର ଭିଜିଟିଙ୍ଗ ପ୍ରଫେସରଭାବେ ଖୋର୍ଦ୍ଧା ତଥା ଓଡ଼ିଶାର ଏକ ବିରଳ ଗୌରବର ପ୍ରତୀକ ଏବଂ ଇତିହାସ ଗବେଷଣା ଅବସରରେ ପୃଥିବୀର ବହୁ ଦେଶ ପରିଭ୍ରମଣକରି ବିଶେଷ ସମ୍ମାନର ଅଧିକାରୀ । ତାଙ୍କର ସୁଚିନ୍ତିତ ମୁଖବନ୍ଧ ଏ ଗ୍ରନ୍ଥଟିର ଐତିହାସିକ ମୂଲ୍ୟାୟନପାଇଁ ଏବଂ ଖୋର୍ଦ୍ଧା ଇତିହାସର ଅଧିକରୁ ଅଧିକ ଗବେଷଣାପାଇଁ ବଳିଷ୍ଠ ବଳୟ ସୃଷ୍ଟି କରିବାରେ ସହାୟକ ହେବ ବୋଲି ମୁଁ ନିଶ୍ଚିତ ଆଶାବାଦୀ ।

ଉତ୍କଳ ଦିବସ
୧.୦୪.୧୯୯୯

**ଫକୀର ହରିଚନ୍ଦନ**

## ଖୋର୍ଦ୍ଧା ଇତିହାସର ଯେଉଁ କେତେକ ସନ୍ଦିଗ୍ଧ ପ୍ରଶ୍ନ ଉପରେ ଆଲୋକପାତ କରାଯାଇଛି

୧. ଜୟୀ ରାଜଗୁରୁ ହାରକୋର୍ଟଙ୍କ ପୁରୀ ଅଭିଯାନକୁ ସ୍ୱାଗତ କରିଥିଲେ କି, କିମ୍ବା ସ୍ୱାଗତ କରିବାକୁ ମୁକୁନ୍ଦଦେବଙ୍କୁ ପରାମର୍ଶ ଦେଇଥିଲେ କି ?
୨. ଜୟୀ ରାଜଗୁରୁ ଖୋର୍ଦ୍ଧା ରାଜାଙ୍କର ଦେବାନ୍ ଥିଲେ କି ?
୩. ୧୮୦୩ରେ ଇଂରେଜଙ୍କ ଓଡ଼ିଶା ଅଧିକାର ଓ ୧୮୦୪ରେ ଖୋର୍ଦ୍ଧାଗଡ଼ ଅଧିକାର ସମୟରେ ଖୋର୍ଦ୍ଧାର ମନ୍ତ୍ରୀ (ଦେବାନ୍) ଓ ସେନାପତି(ବକ୍ସି) କେଉଁଠିଥିଲେ, କଣ କରୁଥିଲେ ?
୪. ବନ୍ଦି ଜୀବନରେ ମୁକୁନ୍ଦଦେବ (୨ୟ) ତାଙ୍କ 'ନୀଳାଦ୍ରିବିହାରୀ' ଜଣାଣରେ ସ୍ମରଣ କରିଥିବା 'ସୁପାତ୍ର ହରିହର' କିଏ ?
୫. ଦେବାନ୍ କୃଷ୍ଣଚନ୍ଦ୍ର ଭ୍ରମରବର ରାୟ ବକ୍ସି ଜଗବନ୍ଧୁଙ୍କ ପୁତ୍ରଥିଲେ କି ?
୬. ବକ୍ସିଜଗବନ୍ଧୁ ହାରକୋର୍ଟଙ୍କ ପୁରୀଅଭିଯାନରେ ସହାୟତା କରିଥିଲେ କି ?
୭. "ହାରକୋର୍ଟଙ୍କୁ ଆନୁଗତ୍ୟ ଅର୍ପଣ କରିବାରେ ବକ୍ସିଜଗବନ୍ଧୁ ହିଁ ୧ମ ବ୍ୟକ୍ତି ଥିଲେ" ଏହା ସତ୍ୟ କି ?
୮. ବକ୍ସି ଜଗବନ୍ଧୁ ଇଂରେଜ ସରକାର ପାଖରେ ଜଣେ ଅପରାଧୀଭାବେ 'ଆତ୍ମସମର୍ପଣ' କରିଥିଲେ କି ?
୯. ଖୋର୍ଦ୍ଧାରାଜ୍ୟର ବକ୍ସିଭାବେ ବକ୍ସି ଜଗବନ୍ଧୁଙ୍କ ପୂର୍ବପୁରୁଷଙ୍କୁ 'ବକ୍ସିବାଡ଼' ଜାଗିରି ମିଳିଥିଲା କି ?
୧୦. ବକ୍ସିବାଡ଼ ଜାଗିରି ମଧ୍ୟରେ ବକ୍ସିଙ୍କ ରୋଡ଼ଙ୍ଗ ମାହାଲ ଅନ୍ତର୍ଭୁକ୍ତ ଥିଲା କି ?
୧୧. ରୋଡ଼ଙ୍ଗ ଜମିଦାରୀ ବକ୍ସିବଂଶର କିଣା ସମ୍ପତ୍ତି ଥିଲା କି ?
୧୨. ଲେମ୍ବାଇ ପ୍ରଗଣାର ମାଲିକାନା ଖୋର୍ଦ୍ଧାରାଜାଙ୍କଠାରୁ ମରହଟ୍ଟା, ମରହଟ୍ଟାଙ୍କଠାରୁ ଇଂରେଜ ଓ ଇଂରେଜଙ୍କଠାରୁ ପାଇକପଡ଼ା ଜମିଦାରଙ୍କ ହାତକୁ ଯାଇଥିଲା କି ?
୧୩. ପାଞ୍ଜିବର୍ଣ୍ଣିତ "ଅନିରୁଦ୍ଧ ରାୟ ପିତାମହ" ନରସିଂହ ଦେବଙ୍କର ପିତାମହ ଥିଲେ କି ?
୧୪. ଦିବ୍ୟସିଂହଦେବ (୧ମ)ଙ୍କ ୨୫ ଅଙ୍କ(୧୭୦୭-୮)ରେ ୧୮ ଗଡ଼ ଖଣ୍ଡାଇତଙ୍କୁ ମେଳାଇ ୧୫ ବର୍ଷ ଧରି ବନ୍ଦ ରହିଥିବା ଶ୍ରୀମନ୍ଦିର ସିଂହଦ୍ୱାର ଖୋଲି ଜଗନ୍ନାଥଙ୍କ ନୀତି ପୁନଃପ୍ରଚଳନ କରାଇଥିବା ପାଞ୍ଜିବର୍ଣ୍ଣିତ ଅରାରାମ ପିତାମହ କିଏ ?
୧୫. ସେହି ୧୮ ଗଡ଼ ଖଣ୍ଡାଇତମାନେ ୧୮ ଗଡ଼ଜାତର ରାଜା ଥିଲେ କି ?

# ସୂଚିପତ୍ର

## ପ୍ରଥମ ଭାଗ

## ଦ୍ୱିତୀୟ ଭାଗ

# ପ୍ରଥମ ଭାଗ

## ପ୍ରଥମ ଅଧ୍ୟାୟ

## ଖୋର୍ଦ୍ଧା ଇତିହାସରେ ଓଡ଼ିଶା

ଏକଦା ଖୋର୍ଦ୍ଧା କହିଲେ ଓଡ଼ିଶାକୁ ବୁଝାଉଥିଲା । ତାହା ଥିଲା ୧୫୭୦-୭୧ ଖ୍ରୀଷ୍ଟାବ୍ଦରୁ ୧୮୦୪ ଖ୍ରୀଷ୍ଟାବ୍ଦ ଅର୍ଥାତ ଗଜପତି ରାମଚନ୍ଦ୍ରଦେବ (୧)ଙ୍କଠାରୁ ଆରମ୍ଭକରି ମୁକୁନ୍ଦଦେବ(୨)ଙ୍କପର୍ଯ୍ୟନ୍ତ ଖୋର୍ଦ୍ଧା ଭୋଇବଂଶର ରାଜତ୍ୱକାଳ ।

**ବାରବାଟୀରୁ ବରୁଣେଇ**

ସୂର୍ଯ୍ୟବଂଶରାଜା ଗଜପତି ପ୍ରତାପରୁଦ୍ରଦେବଙ୍କ ରାଜ୍ୟ ଉତ୍ତରରେ ବଙ୍ଗଠାରୁ ଦକ୍ଷିଣରେ କର୍ଣ୍ଣାଟ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ପ୍ରତାପରୁଦ୍ର ଦାକ୍ଷିଣାତ୍ୟରେ ଥିବା ସମୟରେ ୧୫୦୯ ଖ୍ରୀଷ୍ଟାବ୍ଦରେ ବଙ୍ଗସୁଲତାନଙ୍କ ସେନାପତି ଇସମାଇଲ ଗାଜି ଓଡ଼ିଶା ଆକ୍ରମଣକରି ଲୁଣ୍ଠନ ଓ ଅତ୍ୟାଚାର ଚଳାଇଲା ।, ପଣ୍ଡାମାନେ ଜଗନ୍ନାଥଙ୍କୁ ନେଇ ଚିଲିକାକୂଳ ଚଢ଼େଇଗୁହା ପର୍ବତରେ ଲୁଚାଇ ରଖିଲେ । ଏ ଖବର ପାଇ ପ୍ରତାପରୁଦ୍ରଦେବ ଦାକ୍ଷିଣାତ୍ୟରୁ ଆସି ସୁଲତାନ୍ ସେନାପତିକୁ ପୁରୀରୁ ଘଉଡ଼ାଇ ହୁଗୁଳି ଜିଲ୍ଲାର ମନ୍ଦାରଣ ପର୍ଯ୍ୟନ୍ତ ତାକୁ ତଡ଼ି ତଡ଼ି ନେଲେ । ସୁଲତାନ୍ ସେନାପତି ମନ୍ଦାରଣ ଦୁର୍ଗରେ ଆଶ୍ରୟ ନେବା ଅବସ୍ଥାରେ ପ୍ରତାପରୁଦ୍ରଦେବ ସେହି ଦୁର୍ଗକୁ ଅବରୋଧ କଲେ । କିନ୍ତୁ ପ୍ରତାପରୁଦ୍ରଙ୍କ ମନ୍ତ୍ରୀ ଗୋବିନ୍ଦ ଭୋଇ ବିଶ୍ୱାସଘାତକତାକରି ସୁଲତାନ ପକ୍ଷ ନେବାରୁ ପ୍ରତାପରୁଦ୍ର ଅଗତ୍ୟା ମନ୍ଦାରଣ ଅବରୋଧ ଛାଡ଼ି ପ୍ରତ୍ୟାବର୍ତ୍ତନକରି ଆସିଲେ । ପରେ ପୁଣି ଗୋବିନ୍ଦ ଭୋଇଙ୍କୁ ପ୍ରତାପରୁଦ୍ରଦେବ ବିଦ୍ୟାଧର ଉପାଧି ଦେଇ ବଙ୍ଗସୁଲତାନଙ୍କୁ ପରାସ୍ତ କରିଥିଲେ ।[୧] ୧୫୩୪ ଖ୍ରୀଷ୍ଟାବ୍ଦରେ ପ୍ରତାପରୁଦ୍ରଦେବଙ୍କର ମୃତ୍ୟୁପରେ ତାଙ୍କର ଦୁଇ ପୁଅ କାଳୁଆଦେବ ଓ କଖାରୁଆଦେବଙ୍କୁ ମାତ୍ର ଛଅ ବର୍ଷ ମଧ୍ୟରେ ହତ୍ୟାକରି ମନ୍ତ୍ରୀ ଗୋବିନ୍ଦବିଦ୍ୟାଧର ୧୫୪୦ ଖ୍ରୀଷ୍ଟାବ୍ଦରେ ଗୋବିନ୍ଦଦେବ ନାମରେ ଓଡ଼ିଶାର ରାଜା ହେଲେ । ସେ ତାଙ୍କର ସମ୍ପର୍କୀୟ ଜନାର୍ଦ୍ଦନ (ଦନାଇ) ବିଦ୍ୟାଧରଙ୍କୁ ମନ୍ତ୍ରୀପଦ ଦେଇ ଦାକ୍ଷିଣାତ୍ୟ ରାଜ୍ୟ

*୧- ୧୪/୨୫୩*

*ମାଦଳାପାଞ୍ଜି (ତଥ୍ୟଧାରିକାରେ କ୍ରମିକ ସଂଖ୍ୟା ୧୪) ପୃଷ୍ଠା ସଂଖ୍ୟା ୨୫୩*

ଦାୟିତ୍ୱରେ ରଖାଇଲେ ଏବଂ ସେନାପତି ମୁକୁନ୍ଦ ହରିଚନ୍ଦନ (ଚାଲୁକ୍ୟ)ଙ୍କୁ କଟକରେ ଅବସ୍ଥାପିତ କଲେ ।[୨] ୧୫୪୯ରେ ଗୋବିନ୍ଦ ଦେବଙ୍କ ମୃତ୍ୟୁପରେ ତାଙ୍କ ପୁଅ ଚକ୍ରପ୍ରତାପ ଦେବ ରାଜା ହୋଇ ମନ୍ତ୍ରୀ ଜନାର୍ଦ୍ଦନ ବିଦ୍ୟାଧରଙ୍କୁ ମଧ ଦାକ୍ଷିଣାତ୍ୟ ରାଜ୍ୟରେ ରଖାଇଥିଲେ । ତାଙ୍କୁ ମାରି ତାଙ୍କ ପୁଅ ନରସିଂହ ଜେନା ୧୫୫୭ରୁ ୫୮, ମାତ୍ର ବର୍ଷକପାଇଁ ରାଜା ହୋଇଥିଲେ । ସେନାପତି ମୁକୁନ୍ଦ ହରିଚନ୍ଦନ ତାଙ୍କୁ ଚକ୍ରାନ୍ତକରି ମରାଇଲେ । ତା'ପରେ ନରସିଂହ ଜେନାଙ୍କ ଭାଇ ରଘୁରାମ ଜେନାଙ୍କୁ ଗାଦିରେ ବସାଇ ସେନାପତି ମୁକୁନ୍ଦ ହରିଚନ୍ଦନ କାର୍ଯ୍ୟତଃ ରାଜ୍ୟ ଶାସନ କଲେ । ଏ ଖବର ପାଇ ମନ୍ତ୍ରୀ ଜନାର୍ଦ୍ଦନ ବିଦ୍ୟାଧର ଦକ୍ଷିଣରୁ ଆସି ରଘୁଭଞ୍ଜ ଛୋଟରାଏଙ୍କ ସହ ମିଶି ମୁକୁନ୍ଦ ହରିଚନ୍ଦନଙ୍କ ବିରୋଧରେ ଷଡ଼ଯନ୍ତ୍ର ଚଳାଇଲେ । କିନ୍ତୁ ମୁକୁନ୍ଦ ହରିଚନ୍ଦନ ସେ ଦୁହିଁଙ୍କୁ ବନ୍ଦି କରି ରଘୁରାମ ଜେନାଙ୍କୁ ହତ୍ୟାକଲେ ଓ ୧୫୬୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ରାଜା ହେଲେ । ଜନାର୍ଦ୍ଦନ ବିଦ୍ୟାଧର ବନ୍ଦିଶାଳାରେ ମଲେ ।[୩]

ସୁତରାଂ ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ଯେଉଁଭଳି ବିଶ୍ୱାସଘାତକତା କରି ସୂର୍ଯ୍ୟବଂଶକୁ ଗାଦିଚ୍ୟୁତ କରି ୧୫୪୦ ଖ୍ରୀଷ୍ଟାବ୍ଦରେ ନିଜେ ଓଡ଼ିଶାର ରାଜା ହୋଇଥିଲେ । ସେନାପତି ମୁକୁନ୍ଦ ହରିଚନ୍ଦନ ମଧ ଠିକ୍ ସେହିଭଳି ବିଶ୍ୱାସଘାତକତା କରି ୧୫୬୦ ଖ୍ରୀଷ୍ଟାବ୍ଦରେ ଗୋବିନ୍ଦ ବିଦ୍ୟାଧରଙ୍କ ଭୋଇବଂଶକୁ ଗାଦିଚ୍ୟୁତ କରି ନିଜେ ଓଡ଼ିଶାର ରାଜଗାଦି ଅଧିକାର କରିଥିଲେ । ତା'ସତ୍ତ୍ୱେ ମୁକୁନ୍ଦଦେବ ଜଣେ ଅତ୍ୟନ୍ତ ପରାକ୍ରମଶାଳୀ ରାଜା ଓ ବିଚକ୍ଷଣ ଶାସକ ଭାବରେ ମାତ୍ର ଆଠ ବର୍ଷ ମଧରେ ଓଡ଼ିଶାର ଗୌରବ ବୃଦ୍ଧି କରିଥିଲେ । କିନ୍ତୁ ସିଏ ମଧ ଶେଷରେ ନିଜେ ବିଶ୍ୱାସଘାତକତାର ଶିକାର ହେଲେ । ୧୫୬୮ ଖ୍ରୀଷ୍ଟାବ୍ଦରେ ବଙ୍ଗସୁଲତାନ ସୁଲେମାନ କର୍‌ରାନୀ ଦୁଇ ଦିଗରୁ ଓଡ଼ିଶା ଆକ୍ରମଣ କଲେ । ଗୋଟିଏ ଦିଗରୁ ସେ ନିଜେ ଓ ଆଉ ଗୋଟିଏ ଦିଗରୁ ତାଙ୍କ ପୁଅ ବାୟଜିଦ୍ ଓ ସେନାପତି କଳାପାହାଡ଼ ସୈନ୍ୟଚାଳନାକରି ଆସିଲେ । ଠିକ୍ ଏତିକିବେଳେ ମୁକୁନ୍ଦଦେବଙ୍କର ଜଣେ ବିଶ୍ୱସ୍ତ ସାମନ୍ତରାଜା ସାରଙ୍ଗଗଡ଼ର ରାମଚନ୍ଦ୍ର ଭଞ୍ଜ ବିଶ୍ୱାସଘାତକତାକରି ଶିଖି ମହାପାତ୍ର ଓ ମନାଇ ମହାପାତ୍ରଙ୍କୁ ଭେଦୁଆ କରି[୪] କଳାପାହାଡ଼ ସଙ୍ଗେ ସଂଯୋଗ ସ୍ଥାପନ କଲେ ଏବଂ ଯାଜପୁରର ଗୋହିରାଟିକିରି ଯୁଦ୍ଧରେ ମୁକୁନ୍ଦଦେବଙ୍କୁ ହତ୍ୟା କରିବାପରେ ନିଜେ ଆଫଗାନ ସେନାଦ୍ୱାରା ନିହତ ହେଲେ ।[୫] ସୂର୍ଯ୍ୟବଂଶ ପରେ ୧୫୪୦ରୁ ୧୫୬୦ ପର୍ଯ୍ୟନ୍ତ ଭୋଇବଂଶ ଏବଂ ୧୫୬୦ରୁ ୧୫୬୮ ପର୍ଯ୍ୟନ୍ତ ଚାଲୁକ୍ୟ (ତେଲଙ୍ଗା) ମୁକୁନ୍ଦଦେବ କଟକର ବାରବାଟୀ ଦୁର୍ଗ ଉପରେ ଓଡ଼ିଶାର ସ୍ୱାଧୀନଧ୍ୱଜା ଉଡ଼ାଇଥିଲେ । ମାତ୍ର ୨୮ ବର୍ଷମଧରେ ଚରମ ବିଶ୍ୱାସଘାତକତାର ଅନ୍ତିମ ପରିଣାମ ସ୍ୱରୂପ ଓଡ଼ିଶାର ସ୍ୱାଧୀନତାର ଶେଷ ରଶ୍ମି ଟିକକ ଚିରଦିନପାଇଁ ଲିଭିଗଲା ।

---

*୨- ୩/୧ ୩- ୧/୨୯୪ ୪- ୧୬/୪ ୫- ୧/୨୯୮*

*(ତଥ୍ୟ-ସୂତ୍ର ଜାଣିବାପାଇଁ ତଥ୍ୟ-ଧାରିକାରେ ସଂପୃକ୍ତ ବହିର କ୍ରମିକ ସଂଖ୍ୟା ଓ ପୃଷ୍ଠାଙ୍କ ପାଦଟୀକାରେ ଦିଆଯାଇଛି)*

୧୫୬୮ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ମୃତ୍ୟୁପରେ ଓଡ଼ିଶା ଅରାଜକ ହୋଇଗଲା । କଳାପାହାଡ଼ର ହିନ୍ଦୁ ମନ୍ଦିରଗୁଡ଼ିକ ଉପରେ ନଗ୍ନ ଆକ୍ରମଣ ଓଡ଼ିଶାରେ ଏକପ୍ରକାର ଆତଙ୍କରାଜ ସୃଷ୍ଟି କରିଦେଲା । ସେ ଓଡ଼ିଶାର ବହୁଦେବ-ବିଗ୍ରହଙ୍କୁ ଭାଙ୍ଗି ନଷ୍ଟ କରିଦେଲା ଏବଂ ଦେବ ମନ୍ଦିରମାନଙ୍କରୁ ଅଜସ୍ର ଧନରତ୍ନ ଲୁଟିନେଲା । ଓଡ଼ିଶାର ମୁଖ୍ୟ ଆରାଧ୍ୟ ଦେବତା ଶ୍ରୀ ଜଗନ୍ନାଥଙ୍କପ୍ରତି କଳାପାହାଡ଼ର ଆକ୍ରମଣ ଅତ୍ୟନ୍ତ ଅମାନୁଷିକ ଓ ବର୍ବରୋଚିତ ଥିଲା । ପଣ୍ଡାମାନେ ଜଗନ୍ନାଥଙ୍କୁ ମନ୍ଦିରରୁ ନେଇ ଚିଲିକା ମୁହାଣ ଡିଆଇଁ ଛପଲିହାତୀପଡ଼ାରେ ଲୁଚାଇ ରଖିଥିଲେ । କିନ୍ତୁ ପୁରୀ ଜଗନ୍ନାଥ ମନ୍ଦିରର ଜଣେ ବରିଷ୍ଠ ରାଜକର୍ମଚାରୀ ତଥା କୋକଲଗଡ଼ର ନାୟକ ଦାନପାତ୍ର କଳାପାହାଡ଼କୁ ଜଗନ୍ନାଥଙ୍କ ଗୁପ୍ତ ରହଣି ସ୍ଥାନର ସନ୍ଦେଶ ଦେଇ ଅଣ୍ଟାଏ ପାଣିରେ ବାଟ କଢ଼େଇ ନେଇ ମୁହାଣ ପାର କରାଇଦେବାରୁ[୬] କଳାପାହାଡ଼ ଦାନପାତ୍ରକୁ ପାହାନ୍ତାସିଂହ ଉପାଧି ସହ ପୁରସ୍କାର ଦେଇ ଜଗନ୍ନାଥଙ୍କ ବିଗ୍ରହକୁ ନେଇ ଗଙ୍ଗାକୂଳରେ ପୋଡ଼ିଦେଇ ଶେଷାଂଶକୁ ପାଣିରେ ଫିଙ୍ଗିଦେଲା । ଯେଉଁଠି ଓଡ଼ିଶାର ଆରାଧ୍ୟ ଦେବତାଙ୍କ ଦଶା ଏପରି, ସେଠି ଓଡ଼ିଆ ଜାତିର ଦୁର୍ଦ୍ଦଶା କିପରି ହୋଇଥିବ ତାହା ସହଜରେ ଅନୁମେୟ । ଓଡ଼ିଶାର ସାଧାରଣ ଜନଜୀବନ ବିପନ୍ନ ହୋଇପଡ଼ିଲା । ଜନସାଧାରଣ ନିଜକୁ ଅସହାୟ ମଣିଲେ । କିନ୍ତୁ ଏତିକିବେଳେ ଓଡ଼ିଆ ଜାତିର ଏ ଘୋର ଦୁର୍ଦ୍ଦିନ ସମୟରେ ସେହି ଦାରୁଣ ଜାତୀୟ ସଂକଟର ତ୍ରାଣକର୍ତ୍ତାଭାବେ ଖୋର୍ଦ୍ଧା ମାଟିଉପରେ ହଠାତ୍ ଆବିର୍ଭୂତ ହୋଇଥିଲେ ଖୋର୍ଦ୍ଧା ଭୋଇରାଜବଂଶର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ର ଦେବ । ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କଦ୍ୱାରା ବନ୍ଦୀହୋଇ ବନ୍ଦିଶାଳାରେ ମୃତ୍ୟୁବରଣ କରିଥିବା ଜନାର୍ଦ୍ଦନ ବିଦ୍ୟାଧରଙ୍କ ପୁତ୍ର ରମେଇ ରାଉତରା, ସେତେବେଳେ ଗଞ୍ଜାମ ଜଙ୍ଗଲରେ ଆତ୍ମଗୋପନ କରିଥିଲେ । ସେଇ ରମେଇ ରାଉତରା ସେହି ଅରଣ୍ୟରେ ପିତୃହତ୍ୟାର ପ୍ରତିଶୋଧ ଅଗ୍ନିଭିତରୁ ଶକ୍ତି ସଞ୍ଚୟ କରି ଆସି ଖୋର୍ଦ୍ଧାର ପାଇକ ସର୍ଦ୍ଦାରମାନଙ୍କ ସହାୟତାରେ ୧୫୭୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ରାଜଗାଦି ଅଧିକାର କଲେ[୭] ଏବଂ ଖୋର୍ଦ୍ଧାରେ ନିଜର ରାଜଧାନୀ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଓଡ଼ିଶାର ଜାତୀୟ ଜୀବନ କ୍ଷେତ୍ରରୁ ଅରାଜକତା ତଥା ଅସହାୟତାର ଦୁର୍ଦ୍ଦିନ ଦୂର କରିଦେଲେ ।

## ଶ୍ରୀଜଗନ୍ନାଥଙ୍କ ପୁନଃପ୍ରତିଷ୍ଠା

ଓଡ଼ିଶାର ଜନଜୀବନରେ, ଓଡ଼ିଆ ଜାତିର ପ୍ରାଣପ୍ରତିଷ୍ଠାରେ ଶ୍ରୀଜଗନ୍ନାଥ ଚେତନାର ପ୍ରଭାବ କେତେ ଗଭୀର, କେତେ ଗମ୍ଭୀର ଆଉ କେତେ ସୁଦୂରପ୍ରସାରୀ ଓ କ୍ରିୟାଶୀଳ ଏବଂ କଳାପାହାଡ଼ର ଜଗନ୍ନାଥ ମନ୍ଦିର ଲୁଣ୍ଠନ ସହିତ ଶ୍ରୀବିଗ୍ରହମାନଙ୍କର ଧ୍ୱଂସସାଧନଫଳରେ ସେହି ଜାତୀୟ ଚେତନା କେତେ ଗଭୀରଭାବରେ ଆଘାତପ୍ରାପ୍ତ ହୋଇଥିଲା ପ୍ରତ୍ୟୁତ୍ପନ୍ନମତି ରାମଚନ୍ଦ୍ର ଦେବ ତାହା ହୃଦୟଙ୍ଗମ କରି ଜନସାଧାରଣଙ୍କ ମନରେ ଆତ୍ମପ୍ରତ୍ୟୟ ସୃଷ୍ଟି କରିବାପାଇଁ ସେହି ଜାତୀୟ ଚେତନାକୁ ପୁନରୁଜ୍ଜୀବିତ କରିବା ହିଁ ତାଙ୍କର ପ୍ରଥମ ଏବଂ ପ୍ରଧାନ କର୍ତ୍ତବ୍ୟ ବୋଲି ଧରି

---

୬- ୧୬/୬ ୭- ୩୪/୧



ବିଲୁପ୍ତ ଖୋର୍ଦ୍ଧାଦୁର୍ଗର ଭଗ୍ନପ୍ରାଚୀର - ୧୯୯୮

ନେଇଥିଲେ । ତେଣୁ ବିଶର ମହାନ୍ତି ନାମକ ଜଣେ ଭକ୍ତ କଳାପାହାଡ଼ଦ୍ୱାରା ଗଙ୍ଗାରେ ଫିଙ୍ଗା ଯାଇଥିବା ଜଗନ୍ନାଥଙ୍କ ଦାରୁବିଗ୍ରହର ଭସ୍ମାବଶେଷ ଭିତରୁ ଉଦ୍ଧାର କରିଆଣି କୁଜଙ୍ଗରେ ରଖିଥିବା ବ୍ରହ୍ମକୁ କୁଜଙ୍ଗରୁ ଅଣାଇ ଖୋର୍ଦ୍ଧାଗଡ଼ରେ ତିନିଠାକୁରଙ୍କର ନୂତନ ଦାରୁମୂର୍ତ୍ତି ଗଠନ କରାଇବା ପରେ ନବକଳେବର ବିଧିରେ ଦାରୁବିଗ୍ରହଙ୍କୁ ଖୋର୍ଦ୍ଧାରୁ ନେଇ ଶ୍ରୀମନ୍ଦିରରେ ପୁନଃପ୍ରତିଷ୍ଠା କରାଇ ''ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ'' ଆଖ୍ୟା ପାଇଥିଲେ ।[୮] ସେହି ସମୟଠାରୁ ୧୮୦୯ ଖ୍ରୀଷ୍ଟାବ୍ଦରେ ଭୋଇବଂଶର ୧୨ଶ ରାଜା ମୁକୁନ୍ଦଦେବ ଇଂରେଜମାନଙ୍କଦ୍ୱାରା ଗାଦିଚ୍ୟୁତ ହେବାପର୍ଯ୍ୟନ୍ତ ଖୋର୍ଦ୍ଧା ଭୋଇବଂଶର ବିସ୍ତୃତ ବିବରଣୀ ପ୍ରଦାନ କରି ଓଡ଼ିଶାର ଅନ୍ୟତମ ଲବ୍ଧପ୍ରତିଷ୍ଠ ଐତିହାସିକ ସ୍ୱର୍ଗତ କେଦାରନାଥ ମହାପାତ୍ର 'ଖୁରୁଧା ଇତିହାସ' ଶୀର୍ଷକ ଏକ ଦୁର୍ଲଭ ଗ୍ରନ୍ଥ ଲେଖି ଯାଇଛନ୍ତି । ସେଥିପାଇଁ ସେ ସର୍ବଥା ଅଭିନନ୍ଦନୀୟ । ୧୫୭୨ରୁ ୧୮୦୩ ଏହି ଦୀର୍ଘ ୨୩୧ ବର୍ଷ ଧରି ଖୋର୍ଦ୍ଧା ଭୋଇ ରାଜବଂଶର ଶାସନକାଳ ମଧ୍ୟରେ ଓଡ଼ିଶା ୧୫୬୮ରୁ ୧୫୯୨ ପର୍ଯ୍ୟନ୍ତ ଆଫଗାନ, ୧୫୯୨ରୁ ୧୭୫୧ ପର୍ଯ୍ୟନ୍ତ ମୋଗଲ ଶାସନ ଓ ୧୭୫୧ରୁ ୧୮୦୩ ପର୍ଯ୍ୟନ୍ତ ମରହଟ୍ଟା ଶାସନ ଅଧୀନରେ ରହିଥିଲେ ହେଁ, ୧୫୯୨ରେ ମୋଗଲ ସମ୍ରାଟ ଆକବରଙ୍କ ନିର୍ଦ୍ଦେଶରେ ତାଙ୍କ

୮- ୩/୧୩

ସେନାପତି ମାନସିଂହଙ୍କ ସହିତ ଖୋର୍ଦ୍ଧାରାଜା ରାମଚନ୍ଦ୍ର ଦେବଙ୍କ ମୈତ୍ରୀଚୁକ୍ତିମତେ ୭୧ ଗଡ଼ ସମେତ ଖୋର୍ଦ୍ଧା ରାଜ୍ୟ ସହିତ ବାଙ୍କୀ, ଡମପଡ଼ା, ବଡ଼ମ୍ବା, ତିଗିରିଆ, ଆଠଗଡ଼, ନରସିଂହପୁର, ଅନୁଗୁଳ, ତାଳଚେର, ଢେଙ୍କାନାଳ, ନୟାଗଡ଼, ଖଣ୍ଡପଡ଼ା, ରଣପୁର, ଦଶପଲ୍ଲା, ବାଣପୁର, ପାରିକୁଦ, ଘୁମୁସର, ଖଲ୍ଲିକୋଟ, କୋଦଳା, ଆଠଗଡ଼, ଚିକିଟି, ମହୁରି, ସେରଗଡ଼, ପାଲୁର ଓ ଟିକିଲି ରଘୁନାଥପୁର ଆଦି ୨୯ଟି ଜମିଦାରୀ ଖୋର୍ଦ୍ଧାରାଜାଙ୍କ ଅଧୀନରେ ଥିଲା ।[୯] ସେଥିପାଇଁ ଖୋର୍ଦ୍ଧା ରାଜା ହିଁ ଓଡ଼ିଶାର ଗଜପତି ମହାରାଜାରୂପେ ମାନ୍ୟତା ଲାଭ କରିଥିଲେ । କଟକରେ ବାରବାଟୀ ଦୁର୍ଗର ପତନ ସାଙ୍ଗକୁ ଶ୍ରୀକ୍ଷେତ୍ରରେ କଳାପାହାଡ଼ର ଧ୍ୱଂସଲୀଳା ପରେ ଖୋର୍ଦ୍ଧା ରାଜ୍ୟର ପ୍ରତିଷ୍ଠା ହେତୁ ଶ୍ରୀଜଗନ୍ନାଥ-ଦାରୁବ୍ରହ୍ମଙ୍କ ପୁନଃ ପ୍ରତିଷ୍ଠା ସମ୍ଭବପର ହୋଇପାରିଥିବାରୁ ଖୋର୍ଦ୍ଧାର ରାଜା ପୁରୀର ତଥା ଓଡ଼ିଶାର 'ଠାକୁରରାଜା'' ରୂପେ ସମଗ୍ର ଓଡ଼ିଶାର ଏବଂ ଓଡ଼ିଆ ଜାତିର ନମସ୍ୟଭାବେ ବିବେଚିତ ହୁଅନ୍ତି । ସେଥିପାଇଁ ସେ ସ୍ୱତନ୍ତ୍ର ସମ୍ମାନର ଅଧିକାରୀ । ଓଡ଼ିଆ ପାଞ୍ଜିରେ ତାଙ୍କ ନାଁରେ ଅଙ୍କଚଳେ । ଓଡ଼ିଆ ଶିଶୁର ଜନ୍ମଜାତକରେ ତାଙ୍କ ଅଙ୍କ ବସେ ।

ସାରା ଓଡ଼ିଶାରେ ଖୋର୍ଦ୍ଧାର ଏକ ନିଜସ୍ୱ ଐତିହ୍ୟ ଓ ପରମ୍ପରାର ସ୍ୱତନ୍ତ୍ର ସ୍ଥାନ ରହିଛି । ସେ ଐତିହ୍ୟ ଓ ପରମ୍ପରାର ପୃଷ୍ଠଭୂମି ହେଉଛି ଖୋର୍ଦ୍ଧାର ଭୋଇ ରାଜବଂଶ କାଳର ସମୃଦ୍ଧ ଇତିହାସ, ଯାହାକୁ ଦୀର୍ଘ ଅଢ଼େଇଶହ ବର୍ଷବ୍ୟାପୀ ଓଡ଼ିଶାର ଇତିହାସ ବୋଲି ମଧ୍ୟ କୁହାଯାଏ । କାରଣ ଓଡ଼ିଆ ଜାତିର ପ୍ରାଣପ୍ରଦୀପ ସ୍ୱୟଂ ଶ୍ରୀଜଗନ୍ନାଥଙ୍କ ଅସ୍ତିତ୍ୱସହିତ ସେ ଇତିହାସ ଓତପ୍ରୋତଭାବେ ଜଡ଼ିତ ।

## ସାର୍ବଜନୀନ ସଂସ୍କୃତି ଓ ସଂହତିର କ୍ଷେତ୍ର

ସାରା ଭାରତବର୍ଷର ଉଦାର ଧର୍ମସଂସ୍କୃତିକୁ ଶ୍ରୀଜଗନ୍ନାଥ-ସଂସ୍କୃତିର ସାର୍ବଜନୀନ ଧର୍ମତତ୍ତ୍ୱର ମହାନ୍ ଅବଦାନ ଯେଉଁପରି ଅନାକଳନୀୟ, ସାମ୍ପ୍ରଦାୟିକ ସଦ୍‌ଭାବ ରକ୍ଷା କ୍ଷେତ୍ରରେ ଖୋର୍ଦ୍ଧାର ବିରଳ ଅବଦାନ ମଧ୍ୟ ସେହିପରି ଅତୁଳନୀୟ । ଏଠି ମାଣିକଗୋଡ଼ା ଗାଁର ହିନ୍ଦୁପର୍ବ ଦଶହରା ପୂଜାରେ ମୁସଲମାନ ଦଳବେହେରାଙ୍କର ହିନ୍ଦୁ ରୀତିରେ ଖଣ୍ଡାପୂଜା କରିବା ଏବଂ ହିନ୍ଦୁବେଶରେ କୁଶବଟୁ ପିନ୍ଧି ହିନ୍ଦୁ ପୁରୋହିତଙ୍କଦ୍ୱାରା ସମାହିତ ହୋମ କର୍ମରେ କର୍ତ୍ତା ହୋଇ ବସିବା ଯେଉଁପରି ପ୍ରଶଂସନୀୟ, କାଇପଦର ଗାଁରେ ପ୍ରତିଷ୍ଠିତ ମୁସଲମାନ ପୀରବାବା ବୋଖାରୀ ସାହେବଙ୍କ ସମାଧି ପୀଠରେ ହିନ୍ଦୁମାନେ ଧୂପ, ଦୀପ, ନୈବେଦ୍ୟ ଦେଇ ମୁସଲମାନ ପୂଜକଙ୍କଦ୍ୱାରା ପୂଜାର୍ଚ୍ଚନା କରିବା ମଧ୍ୟ ସେହିପରି ଅଭିନନ୍ଦନୀୟ । ଖୋର୍ଦ୍ଧାର ସାମରିକ ପାଇକ ସଂସ୍କୃତି ମଧ୍ୟ ଉଭୟ ହିନ୍ଦୁ ଏବଂ ମୁସଲମାନମାନଙ୍କର ସମ୍ମିଳିତ ସାମରିକ ସାମର୍ଥ୍ୟକୁ ନେଇ ସମୃଦ୍ଧ । ସୁତରାଂ ଖୋର୍ଦ୍ଧାର ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟର ସହାବସ୍ଥାନ ଆଉ ସହଧର୍ମାଚରଣର ଆଦର୍ଶ ଦୃଷ୍ଟାନ୍ତ କେବଳ ଧ୍ୱନିରେ ନୁହେଁ, ଦୈନନ୍ଦିନ ସାମାଜିକ ଚଳଣିରେ ମଧ୍ୟ ଜାତୀୟ ସଂହତି କ୍ଷେତ୍ରରେ ଭାଇଭାଇ ମୈତ୍ରୀ ବନ୍ଧନର ଏକ ଉଜ୍ଜ୍ୱଳ ଦୀପଶିଖା ।

---

୯- ୧/୩୧୩

## ସର୍ବପ୍ରଥମ ସ୍ୱାଧୀନତା ସଂଗ୍ରାମ

ସେହିପରି ସାରା ଭାରତରେ ବିଦେଶୀ ବ୍ରିଟିଶ ଶାସନ ବିରୋଧରେ ସର୍ବପ୍ରଥମ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇଥିଲା ଏଇ ଖୋର୍ଦ୍ଧା ଭୂଇଁରେ । ସେଥିପାଇଁ ଖୋର୍ଦ୍ଧା ଇତିହାସକୁ ନେଇ ଖୋର୍ଦ୍ଧା ଯେପରି ସ୍ପନ୍ଦିତ ଓ ଗର୍ବିତ ଓଡ଼ିଶା ସେହିପରି ଗୌରବାନ୍ୱିତ ।

ଇଂରେଜମାନେ ୧୭ଶ ଖ୍ରୀଷ୍ଟାବ୍ଦର ୧ମ ଭାଗରେ ଭାରତବର୍ଷକୁ ବାଣିଜ୍ୟ କରିବାକୁ ଆସିଥିଲେ । ୧୬୩୩ ଖ୍ରୀଷ୍ଟାବ୍ଦରେ ମୋଗଲଶାସକଙ୍କ ଅନୁମତିକ୍ରମେ ସେମାନେ ଓଡ଼ିଶାକୁ ଆସି ପ୍ରଥମେ ହରିଶପୁର ଏବଂ ତା' ପରେ ପରେ ଜଗତସିଂହପୁର ଓ ବାଲେଶ୍ୱରରେ ବାଣିଜ୍ୟ ପେଣ୍ଠ ସ୍ଥାପନ କରିଥିଲେ । ୧୭୫୧ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ମୋଗଲମାନଙ୍କ ହାତରୁ ମରହଟ୍ଟାମାନଙ୍କ ହାତକୁ ଗଲା । ୧୭୫୭ ଜୁନ୍ ୨୩ ପଲାସି ଯୁଦ୍ଧରେ ଇଂରେଜମାନେ ବଙ୍ଗଳାର ନବାବ ସିରାଜଉଦ୍ଦୌଲାଙ୍କୁ ପରାସ୍ତକରି ବଙ୍ଗଳା ଅଧିକାର କଲେ । ୧୭୬୪ ବକ୍ସାର ଯୁଦ୍ଧରେ ମିର୍‌କାସିମ୍‌ଙ୍କୁ ପରାସ୍ତ କରିବାପରେ ୧୭୬୫ରେ ଲର୍ଡକ୍ଲାଇବ୍ ବଙ୍ଗ ବିହାର ଓଡ଼ିଶାର ଦେଓ୍ୱାନୀ ପାଇଲେ । କିନ୍ତୁ ସେତେବେଳେ ଓଡ଼ିଶା ନାଁରେ କେବଳ ଏକମାତ୍ର ମେଦିନୀପୁର ଜିଲ୍ଲା ଉକ୍ତ ଦେଓ୍ୱାନୀର ଅନ୍ତର୍ଭୁକ୍ତ ହୋଇ ପରେ ବଙ୍ଗ ପ୍ରେସିଡେନ୍ସିରେ ରହିଲା । ୧୭୬୬ ନଭେମ୍ବର ୧୨ ତାରିଖରେ ହାଇଦରାବାଦର ନିଜାମଙ୍କ ଅଧୀନରେ ଥିବା ଉତ୍ତର ସରକାରକୁ ସେ ଇଂରେଜମାନଙ୍କୁ ଦେଇଦେଲେ । ସେହି ଉତ୍ତର ସରକାରରେ ଓଡ଼ିଶାର ଗଞ୍ଜାମ ଜିଲ୍ଲା ସାମିଲ ହୋଇ ମାନ୍ଦ୍ରାଜ ପ୍ରେସିଡେନ୍ସିରେ ରହିଲା ।[୧୦(୧)] ସୁତରାଂ ଉତ୍ତରରେ ବାଲେଶ୍ୱରଠାରୁ ଦକ୍ଷିଣରେ ଚିଲିକା ହ୍ରଦ ପର୍ଯ୍ୟନ୍ତ ବ୍ୟାପିଥିବା ପୁରୀ, କଟକ, ବାଲେଶ୍ୱରଜିଲ୍ଲାକୁ ନେଇ ଓଡ଼ିଶାକୁ ଛଳେବଳେ କୌଶଳେ ଦଖଲକରି ବଙ୍ଗଳା ସହିତ ମାନ୍ଦ୍ରାଜର ପ୍ରତ୍ୟକ୍ଷ ସଂଯୋଗସ୍ଥାପନ କରିବା ଇଂରେଜମାନଙ୍କପାଇଁ ଏକାନ୍ତ ଆବଶ୍ୟକତା ଥିଲା । ବଙ୍ଗଳା ଅଧିକାର କରିବାର ଦୀର୍ଘ ୪୫ ବର୍ଷ ପରେ ୧୮୦୩ ଖ୍ରୀଷ୍ଟାବ୍ଦରେ ସେମାନେ କଟକ ବାରବାଟୀ ଦୁର୍ଗରୁ ମରହଟ୍ଟାମାନଙ୍କୁ ତଡ଼ି ଓଡ଼ିଶା ଅଧିକାର କଲେ । କିନ୍ତୁ ବର୍ଷଟିଏ ନ ପୂରୁଣୁ ୧୮୦୪ ଖ୍ରୀଷ୍ଟାବ୍ଦରେ ପ୍ରଖ୍ୟାତ ଯୋଦ୍ଧା ଜୟୀ ରାଜଗୁରୁ ଇଂରେଜମାନଙ୍କୁ ଓଡ଼ିଶାରୁ ତଡ଼ିଦେବାପାଇଁ ସେମାନଙ୍କ ବିରୋଧରେ ସର୍ବପ୍ରଥମ ସ୍ୱାଧୀନତା ସଂଗ୍ରାମ କରିଥିଲେ । ଶକ୍ତିଶାଳୀ ବ୍ରିଟିଶ ବାହିନୀ କଟକର ବାରବାଟୀ ଦୁର୍ଗକୁ ମରହଟ୍ଟା ସୈନ୍ୟବାହିନୀ ହାତରୁ ଛଡ଼ାଇ ନେଇଥିଲେ ମାତ୍ର କେତେ ଘଣ୍ଟା ମଧ୍ୟରେ; କିନ୍ତୁ ଜୟୀ ରାଜଗୁରୁଙ୍କ ନେତୃତ୍ୱରେ ପରିଚାଳିତ ଖୋର୍ଦ୍ଧାର ପାଇକବାହିନୀ ହାତରୁ ଖୋର୍ଦ୍ଧା ଦୁର୍ଗକୁ ଛଡ଼ାଇ ନେବାପାଇଁ ସେମାନଙ୍କୁ ଲାଗିଯାଇଥିଲା ଦୀର୍ଘ ତିନି ସପ୍ତାହ କାଳ ।[୧୦] ସେହିପରି ବ୍ରିଟିଶ ଶାସନ ବିରୋଧରେ ବକ୍ସିଜଗବନ୍ଧୁ ଓ ଦେବାନ୍ କୃଷ୍ଣଚନ୍ଦ୍ରଙ୍କ ଦ୍ୱାରା ପରିଚାଳିତ ଖୋର୍ଦ୍ଧାର ପାଇକ ବିଦ୍ରୋହ ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସ କ୍ଷେତ୍ରରେ ଏକ ସମୁଜ୍ଜ୍ୱଳ ଓ ଶାଶ୍ୱତ ଆଲୋକସ୍ତମ୍ଭ ରୂପେ ଠିଆହୋଇରହିଛି ।

❑ ❑ ❑

---

୧୦(୧) - ୪୯/୫,୬ ୧୦(୨)- ୬୩/୫୦

# ଦ୍ୱିତୀୟ ଅଧ୍ୟାୟ

# ଇତିହାସରେ ବିଡ଼ମ୍ବନା

ବ୍ରିଟିଶ ଶାସନ ବିରୋଧରେ ଖୋର୍ଦ୍ଧାର ସେହି ବୀର ପୁରୁଷମାନଙ୍କଦ୍ୱାରା ପ୍ରତିଷ୍ଠିତ ଉଚ୍ଛ୍ୱସିତ ଐତିହ୍ୟର ଉଜ୍ଜ୍ୱଳ ଦୀପଶିଖା ଆକାଶକୁ ଭେଦି ଉଠିଥିବାବେଳେ ତା'ର ତଳେ ଅହେତୁକ ଅନ୍ଧକାରର ପର୍ଦ୍ଦା ଢାଙ୍କିହୋଇ ରହିଛି । ପ୍ରଜ୍ୱଳିତ ପ୍ରଦୀପକୁ ତଳେ ରଖିଦେଲେ ତାର ତଳ ଅନ୍ଧାର ରହିଯାଏ, ସେଠିକୁ ଦୀପାଲୋକ ଯାଇପାରେ ନାହିଁ; କିନ୍ତୁ ସେହି ଦୀପକୁ ଉପରକୁ ଟେକି ଧରିଲେ ତାହା ଚତୁର୍ଦ୍ଦିଗକୁ ଆଲୋକିତ କରେ । ଆମେ ଏଯାଏଁ ଆମର ସେହି ବୀର ପୁରୁଷମାନଙ୍କର ଗୌରବୋଜ୍ଜ୍ୱଳ ଜାତୀୟ ଚରିତ୍ରର ଦୀପଶିଖାକୁ ତଳୁ ଉଠାଇ ଟେକି ଧରିପାରି ନାହୁଁ, ସେଥିପାଇଁ ଦୀପତଳ ଅନ୍ଧାର । ସେହି ଗୌରବୋଜ୍ଜ୍ୱଳ ଦୀପଶିଖାର ଆଲୋକ ଏଯାଏଁ ଆମ ଜାତୀୟ ଜୀବନର ହୃଦତନ୍ତ୍ରୀକୁ ସ୍ପର୍ଶ କରିପାରି ନାହିଁ, ସେ ଗୌରବଗାଥାର ଐତିହ୍ୟକୁ ଇତିହାସ ଏଯାଏଁ ସଠିକଭାବେ କଳନା କରି ନାହିଁ, ପକ୍ଷାନ୍ତରେ ଇତିହାସ ସେହି ବୀରପୁରୁଷମାନଙ୍କ ଜାତୀୟ ଚରିତ୍ରକୁ ବିକୃତ ଓ ଅବଲୁପ୍ତ କରିବାର ଅପଚେଷ୍ଟା କରିଛି । ଏହା ଅବଶ୍ୟ ଆଲୋଚ୍ୟ ଓ ପ୍ରଣିଧାନଯୋଗ୍ୟ ।

ପ୍ରଥମରୁ ସୂଚିତ ହୋଇଛି- ଖୋର୍ଦ୍ଧା ଇତିହାସ କହିଲେ ମୁଖ୍ୟତଃ ଖୋର୍ଦ୍ଧାର ଭୋଇ ରାଜବଂଶର ରାଜତ୍ୱକାଳକୁ ହିଁ ବୁଝାଏ, ଏବଂ ତାହା ହିଁ ତତ୍କାଳୀନ ଓଡ଼ିଶାର ଇତିହାସ । ସେ ଇତିହାସରେ ପ୍ରକ୍ଷିପ୍ତ ଭ୍ରମାତ୍ମକ ତଥ୍ୟଗୁଡ଼ିକୁ ଲୋକଲୋଚନକୁ ଅଣାଯିବା ଜାତୀୟ ସ୍ୱାର୍ଥ ଦୃଷ୍ଟିରୁ ଏକାନ୍ତ ଆବଶ୍ୟକ । ଯେଉଁ ବୀର ପୁରୁଷମାନଙ୍କର ଗୌରବଗାଥାକୁ ନେଇ ଖୋର୍ଦ୍ଧା ଇତିହାସ ସମୃଦ୍ଧ ସେମାନଙ୍କ ମଧ୍ୟରେ ଭୋଇ ରାଜବଂଶର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ର ଦେବ, ସେହି ବଂଶର ଦ୍ୱାଦଶ ରାଜା ମୁକୁନ୍ଦଦେବଙ୍କ ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର, ଦେୱାନ୍ କୃଷ୍ଣଚନ୍ଦ୍ର ଭ୍ରମରବର ରାୟ ଏବଂ ରାଜଗୁରୁ ଜୟକୃଷ୍ଣ ମହାପାତ୍ରଙ୍କ ନାମ ସର୍ବାଗ୍ରେ ଉଲ୍ଲେଖଯୋଗ୍ୟ । ରାମଚନ୍ଦ୍ର ଦେବ ଖୋର୍ଦ୍ଧାର ପାଇକ ବୀରମାନଙ୍କର ସହାୟତାରେ ସ୍ୱତନ୍ତ୍ର ଖୋର୍ଦ୍ଧାରାଜ୍ୟ ଗଠନ କରି ବରୁଣାଇ ପାହାଡ଼

ଘାଟୀତଳେ ନିଜର ରାଜଧାନୀ ପ୍ରତିଷ୍ଠା କରିଥିଲେ । ସେଥିପାଇଁ ଗଜପତି ରାମଚନ୍ଦ୍ରଦେବ ଖୋର୍ଦ୍ଧା ରାଜବଂଶର ପ୍ରତିଷ୍ଠାତା ଏବଂ ସ୍ୱତନ୍ତ୍ର ଖୋର୍ଦ୍ଧା ଇତିହାସର ସୃଷ୍ଟିକର୍ତ୍ତାଭାବେ ଓଡ଼ିଆ ଜାତିର ନମସ୍ୟ ଏବଂ ଚିରସ୍ମରଣୀୟ ।[୧୧] ଖୋର୍ଦ୍ଧା ରାଜବଂଶ ଦୀର୍ଘ ଦୁଇ ଶହ ବର୍ଷରୁ ଊର୍ଦ୍ଧ୍ୱକାଳ ରାଜତ୍ୱ କଲାପରେ ଖୋର୍ଦ୍ଧା ରାଜ୍ୟର ପତନ ଘଟିଲା - ଯେତେବେଳେ ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଓଡ଼ିଶା ଅଧିକାର କରି ୧୮୦୪ରେ ଖୋର୍ଦ୍ଧାଗଡ଼ର ପତନ ଘଟାଇଲେ ଏବଂ ୧୮୦୯ରେ ଭୋଇବଂଶର ୧୨ଶ ରାଜା ୨ୟ ମୁକୁନ୍ଦଦେବଙ୍କୁ ଗାଦିଚ୍ୟୁତ କରିବା ସହିତ ଖୋର୍ଦ୍ଧା ରାଜ୍ୟର ସ୍ୱାଧୀନତା ଲୋପ କରିଦେଲେ । ସେତିକିବେଳେ, ଓଡ଼ିଶାର ସ୍ୱାଧୀନତାର ପୁନରୁଦ୍ଧାରପାଇଁ ଶକ୍ତିଶାଳୀ ଇଂରେଜ ସରକାର ସଙ୍ଗେ ପ୍ରାଣମୂର୍ଚ୍ଛା ସଂଗ୍ରାମ ଚଳାଇଥିଲେ ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର, ଦେୱାନ୍ କୃଷ୍ଣଚନ୍ଦ୍ର ଭ୍ରମରବର ରାୟ ଏବଂ ରାଜଗୁରୁ ଜୟକୃଷ୍ଣ ମହାପାତ୍ର । ଏହି ତିନି ଜଣ ବୀରପୁରୁଷଙ୍କପାଇଁ ଓଡ଼ିଆ ଜାତି ଗର୍ବିତ, ଓଡ଼ିଶା ଗୌରବାନ୍ୱିତ ଏବଂ ଓଡ଼ିଶାର ଐତିହ୍ୟ ସମୃଦ୍ଧ । କିନ୍ତୁ କୂଟନୀତି ବିଶାରଦ ଇଂରେଜ ଲେଖକମାନଙ୍କ ଚକ୍ରାନ୍ତ ଓ ଦୁରଭିସନ୍ଧି ଫଳରେ ଖୋର୍ଦ୍ଧା ଇତିହାସରେ ଏହି ତିନି ଜଣ ପ୍ରାତଃସ୍ମରଣୀୟ ବୀରପୁରୁଷଙ୍କ ସମ୍ପର୍କରେ କେତେକ ବିଭ୍ରାନ୍ତିକର ତଥ୍ୟ ସ୍ଥାନ ପାଇଯାଇଛି, ଯାହା ଆମର ଜାତୀୟ ପରମ୍ପରାର ପରିପନ୍ଥୀ । ମଧ୍ୟାହ୍ନ ସୂର୍ଯ୍ୟକୁ ମେଘ ଆଚ୍ଛାଦନ କଲେ ସାମୟିକଭାବେ ସୂର୍ଯ୍ୟ ଅଦୃଶ୍ୟ ହୋଇଯାଏ । କିନ୍ତୁ ସୂର୍ଯ୍ୟାଲୋକ ଆକାଶରୁ ଅନ୍ତର୍ହିତ ହୁଏ ନାହିଁ କିମ୍ବା ଦିବସ କଦାପି ରାତ୍ରିରେ ପରିଣତ ହୁଏ ନାହିଁ । ସେହିପରି ବକ୍ସି ଜଗବନ୍ଧୁ, ଦେୱାନ କୃଷ୍ଣଚନ୍ଦ୍ର ଓ ଜୟୀ ରାଜଗୁରୁଙ୍କର ଇଂରେଜ ଶାସନ ବିରୋଧରେ ଗୌରବମୟ ଭୂମିକାକୁ ନେଇ ସମୃଦ୍ଧ ଖୋର୍ଦ୍ଧା ଇତିହାସର କାଳଜୟୀ ଆଲୋକ ସ୍ତମ୍ଭକୁ ଇଂରେଜମାନେ ସାମୟିକଭାବେ କଳା ପରଦାରେ ଢାଙ୍କି ଦେଇଥିଲେ ବି ସେ ଆଲୋକ କଦାପି ଲିଭିଯିବ ନାହିଁ କିମ୍ବା ନିଷ୍ପ୍ରଭ ହେବ ନାହିଁ । ଗୋଟାଏ ଦୁର୍ଦ୍ଧର୍ଷ ବୀରଜାତିର ଜାତୀୟତାପ୍ରତି ସାମ୍ରାଜ୍ୟବାଦୀ ଇଂରେଜ ବାହିନୀର ଅସି-ଚାଳନା ଯେତିକି ମାତ୍ରାରେ ନିନ୍ଦନୀୟ, ସେହି ଦୁର୍ଦ୍ଧର୍ଷ ବୀରଜାତିର ଗୌରବମୟ ଐତିହ୍ୟ ଓ ପରମ୍ପରାପ୍ରତି ସ୍ୱାର୍ଥପର ଇଂରେଜ ଲେଖକମାନଙ୍କର ବିକୃତ ମସୀ-ଚାଳନା ମଧ୍ୟ ତହିଁରୁ ବଳି ଅଧିକ ନିନ୍ଦନୀୟ । ଇତିହାସ ଯଦି ଖୋର୍ଦ୍ଧା ଆକ୍ରମଣକାରୀ ଇଂରେଜ ବାହିନୀର ବର୍ବରତାକୁ କ୍ଷମାଦେଇ ନାହିଁ, ଇତିହାସ କଦାପି ଖୋର୍ଦ୍ଧାର ଉଜ୍ଜ୍ୱଳ ଐତିହ୍ୟ ଉପରେ କର୍ଦ୍ଦମ ପ୍ରକ୍ଷେପକାରୀ ଇଂରେଜ ଲେଖକମାନଙ୍କୁ ବି କ୍ଷମା ଦେବ ନାହିଁ ।

ଇଂରେଜ ରାଜତ୍ୱ ପୂର୍ବରୁ କେବଳ ଜଗନ୍ନାଥ ମନ୍ଦିରର ମାଦଳା ପାଞ୍ଜି ବ୍ୟତୀତ ଅନ୍ୟତ୍ର ଓଡ଼ିଶା ରାଜବଂଶର ଧାରାବାହିକ ଇତିହାସ ଲେଖା ଆରମ୍ଭ ହୋଇ ନ ଥିଲା ।

---

୧୧- ୩/୨

ସୂର୍ଯ୍ୟବଂଶର ରାଜା ପ୍ରତାପରୁଦ୍ରଦେବଙ୍କ ସମୟରୁ ଲେଖା ହୋଇଥିବା 'ଚକଡ଼ା ପୋଥି'ରୁ ମଧ ବହୁ ଦୁର୍ଲଭ ଐତିହାସିକ ତଥ୍ୟ ମିଳେ। କିନ୍ତୁ ଚକଡ଼ା ପୋଥିର ମାତ୍ର ଅଳ୍ପାଂଶ ପ୍ରକାଶିତ ହୋଇଥିବାସ୍ଥଳେ ଅବଶିଷ୍ଟାଂଶର ସନ୍ଧାନ କୌଣସି ସୂତ୍ରରୁ ମିଳେ ନାହିଁ। ମୋଗଲ ରାଜତ୍ୱରେ ଆକବରଙ୍କ ଶାସନକାଳରେ ଆବୁଲ ଫାଜଲ ଆଇନ-ଇ-ଆକବରୀରେ ଓଡ଼ିଶା ଶାସନ ସମ୍ପର୍କୀୟ କିଛି ତଥ୍ୟ ଲିପିବଦ୍ଧ କରିଥିଲେ। ମୋଗଲ ତଥା ମରହଟ୍ଟା ଶାସନ କାଳର ଓଡ଼ିଶା ଶାସନ ସଂକ୍ରାନ୍ତୀୟ ତଥ୍ୟ ଥିବା ନଥିପତ୍ର ସବୁ ଦିଲ୍ଲୀ, ନାଗପୁର, ପୁନା ପ୍ରଭୃତି ଶାସକମାନଙ୍କର ମୁଖ୍ୟଦପ୍ତରମାନଙ୍କୁ ସ୍ଥାନାନ୍ତରିତ ହୋଇଯାଇଥିଲା। ଇଂରେଜମାନେ ଓଡ଼ିଶା ଅଧିକାର କଲାପରେ ଓଡ଼ିଶାର ପ୍ରଶାସନିକ କାର୍ଯ୍ୟରେ ନିଯୁକ୍ତ ଥିବା ହଣ୍ଟର, ଷ୍ଟାର୍ଲିଂ, ବିମ୍ସ୍ ଓ ଟୟନବି ପ୍ରଭୃତି ଇଂରେଜମାନେ ନିଜନିଜର ଶାସକୀୟ ଅନୁଭୂତି ସହିତ ମୁଖ୍ୟତଃ ମାଦଳା ପାଞ୍ଜି, ଆଇନ୍-ଇ-ଆକବରୀ ଏବଂ ମୋଗଲ ଓ ମରହଟ୍ଟାମାନଙ୍କର ନଥିପତ୍ର ଉପରେ ନିର୍ଭର କରି ଓଡ଼ିଶାର ଇତିହାସ ଲେଖିବାକୁ ଆରମ୍ଭ କଲେ। କିନ୍ତୁ ସେମାନେ ଶାସକ ଗୋଷ୍ଠୀଭୁକ୍ତ ଥିବାରୁ ସେମାନଙ୍କର ଜାତୀୟ ସ୍ୱାର୍ଥ ଦୃଷ୍ଟିରୁ ନିଜ ଶାସନକୁ ସୁହାଉ ନ ଥିବା ଗୁରୁତ୍ୱପୂର୍ଣ୍ଣ ତଥ୍ୟଗୁଡ଼ିକପ୍ରତି ଯଥାସମ୍ଭବ ସଂକୁଚିତ ମନୋଭାବ ପୋଷଣକରିବା ଏବଂ ନିଜ ଦେଶ ଓ ଜାତିର ସମ୍ମାନରେ ଆଞ୍ଚ ଆଣିବା ଭଳି ସତ୍ୟ ଘଟଣାଗୁଡ଼ିକୁ ବିକୃତ କରି ଲେଖିବା ସେମାନଙ୍କ ପକ୍ଷେ ସ୍ୱାଭାବିକ ଥିଲା। ସେହି କାରଣରୁ ସେମାନେ କେତେକ ସ୍ଥଳରେ ଏପରି କେତେକ ଭୁଲ୍ ତଥ୍ୟ ଲେଖିଗଲେ ଯାହା ପ୍ରକୃତ ଇତିହାସକୁ ବିକୃତ କରିଦେଲା।[୧୨] ସେହିପରି ମାଦଳା ପାଞ୍ଜି ଓ ଆଇନ-ଇ-ଆକବରୀର ଲେଖକମାନେ ମଧ ନିଜନିଜର ବ୍ୟକ୍ତିଗତ ଜ୍ଞାନ, ରୁଚି, ସ୍ୱାର୍ଥ ଓ ଆନୁଗତ୍ୟ ଭିତ୍ତିରେ ବିଭିନ୍ନ ଘଟଣାଗୁଡ଼ିକ ଲିପିବଦ୍ଧ କରିଥିବା ସ୍ୱାଭାବିକ ମନେହୁଏ। ସୁତରାଂ, ଖୋର୍ଦ୍ଧା ଇତିହାସରେ ବିକୃତି ବା ତ୍ରୁଟିବିଚ୍ୟୁତି ସମ୍ପର୍କରେ ଆମେ କେବଳ ଇଂରେଜମାନଙ୍କୁ ଦାୟୀ କରିବା ଠିକ୍ ହେବ ନାହିଁ। ମାଦଳା ପାଞ୍ଜିରେ ବର୍ଣ୍ଣିତ ସତ୍ୟ, ତ୍ରେତୟା, ଦ୍ୱାପର ଓ କଳିଯୁଗର ପୌରାଣିକ ବିବରଣୀକୁ କଦାପି ଇତିହାସ ବୋଲି କୁହାଯାଇପାରିବ ନାହିଁ; ଏପରିକି ମାଦଳା ପାଞ୍ଜିରେ କେଶରୀ ବଂଶର ବିବରଣୀ ମଧ ସମ୍ପୂର୍ଣ୍ଣ ସନ୍ଦେହମୁକ୍ତ ନୁହେଁ। ଜୟୀ ରାଜଗୁରୁ, ଦେଓ୍ୱାନ କୃଷ୍ଣଚନ୍ଦ୍ର ଏବଂ ବକ୍ସି ଜଗବନ୍ଧୁଙ୍କ ସମ୍ପର୍କରେ ମଧ ମାଦଳା ପାଞ୍ଜିର ଲେଖକ ସମ୍ୟକ ଓ ସଠିକ୍ ବିବରଣୀ ପ୍ରଦାନ କରି ନାହାନ୍ତି। ଓଡ଼ିଶା ତଥା ଓଡ଼ିଆ ଜାତି ପ୍ରତି ଆଇନ୍-ଇ-ଆକବରୀର ଲେଖକ ଆବୁଲ୍ ଫାଜଲ୍ଙ୍କର ଦୃଷ୍ଟିକୋଣ ଅଧିକ ସଂକୀର୍ଣ୍ଣତର ଥିଲା। ହଣ୍ଟର, ଷ୍ଟାର୍ଲିଂ ଓ ଆବୁଲଫାଜଲ କିପରିଭାବେ ଓଡ଼ିଶା ଇତିହାସକୁ ବିକୃତ କରି ଲେଖିଛନ୍ତି ସେ ସଂପର୍କରେ ସ୍ୱନାମଧନ୍ୟ ଗବେଷକ ସ୍ୱର୍ଗତ ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ

---

୧୨- ୪/୫୦

ଅନ୍ୟାନ୍ୟ ପ୍ରବନ୍ଧ ପୁସ୍ତକରେ 'ହଣ୍ଟରଙ୍କ ଲାଗି ଓଡ଼ିଶା ଇତିହାସର ଦୁର୍ଗତି' ଶୀର୍ଷକ ପ୍ରବନ୍ଧରେ ଲେଖିଛନ୍ତି-''୧୮୬୬ ନଅଙ୍କ ଦୁର୍ଭିକ୍ଷର କଳଙ୍କ ଶାସକ ବ୍ରିଟିଶ ଜାତି ଉପରୁ ଧୋଇବାକୁ ହଣ୍ଟର 'ଓଡ଼ିଶା' ଲେଖିଥିଲେ । ହଣ୍ଟରଙ୍କଦ୍ୱାରା ଓଡ଼ିଶା ଇତିହାସର ବିକୃତୀକରଣ ପ୍ରଥମେ ସ୍ୱର୍ଗତଃ ପ୍ରଫେସର ଘନଶ୍ୟାମ ଦାସ ୧୯୪୯ରେ ଓଡ଼ିଶା ରିଭ୍ୟୁରେ ସୂଚନା ଦେଇଥିଲେ । 'ଷ୍ଟାର୍ଲିଂ ସାହେବ ୧୮୨୨ରେ ଓଡ଼ିଶାର ରାଜସ୍ୱ ସଂକ୍ରାନ୍ତ ଇତିହାସ ସଂକଳନ କରିବାକୁ ଯାଇ କିମ୍ବଦନ୍ତୀମୂଳକ ଇତିହାସ ଓ ମନ୍ଦିରାଦି କଥା ଲେଖିଲେ । ସେଥିରେ ସେ ମାଦଳା ପାଞ୍ଜି ଅନୁସାରେ ଓଡ଼ିଶା ଇତିହାସର ମର୍ଯ୍ୟାଦା ଅକ୍ଷୁଣ୍ଣ ରଖିଥିଲେ ମଧ ଓଡ଼ିଆମାନଙ୍କ ଚରିତ୍ର ସମ୍ପର୍କରେ ଏକ ଅବାଞ୍ଛନୀୟ କଟୁକ୍ତି କରି ତାହାର ସମର୍ଥନପାଇଁ 'ଆଇନ୍-ଇ-ଆକବରୀ' ପ୍ରଣେତା ଆବୁଲ୍‌ଫାଜଲଙ୍କର ଆଶ୍ରୟ ନେଇଥିଲେ । ଓଡ଼ିଆମାନେ ଦୀର୍ଘ ୨୦ ବର୍ଷ ଧରି ମୋଗଲ ସେନାପତିମାନଙ୍କୁ ଯେଉଁ ପରାଭବ ଦେଇଥିଲେ ତାହାଲାଗି ଯେ ମୋଗଲ ସମ୍ରାଟ ଆକବରଙ୍କ କୃପାପ୍ରାର୍ଥୀ ମୋଗଲ ସେନାପତିମାନେ ସ୍ୱାଧୀନତାପ୍ରେମୀ ଓଡ଼ିଆମାନଙ୍କୁ ଦାୟୀ କରି ସେମାନଙ୍କ ଚରିତ୍ର ସମ୍ପର୍କରେ ଅବାନ୍ତର କଥାମାନ ଲେଖିଥିଲେ ଏହାର ପ୍ରମାଣ ଆଇନ-ଇ-ଆକବରୀ ଗ୍ରନ୍ଥରେ ହିଁ ରହିଛି । ଠିକ୍ ସେହିପରି ବ୍ରିଟିଶ ଅଧିକାରର ପନ୍ଦର ବର୍ଷ ପରେ ଖୋର୍ଦ୍ଧାର ପାଇକବିଦ୍ରୋହ ଓ ଓଡ଼ିଶାର ରାଜସ୍ୱ ସଂକ୍ରାନ୍ତ ବନ୍ଦୋବସ୍ତରେ ଲିପ୍ତଥିବାବେଳେ ଷ୍ଟାର୍ଲିଂ ସାହେବ ଓଡ଼ିଆ ଚରିତ୍ର ସଂପର୍କରେ ଆସି ଯେଉଁ ଭ୍ରମଧାରଣା କରିଥିଲେ ତାହାର ସମର୍ଥନ ସେ ଆଇନ୍-ଇ-ଆକବରୀ ଗ୍ରନ୍ଥରେ ପାଇବାରୁ ଓଡ଼ିଆ ଚରିତ୍ରକୁ ଅତି ହୀନ ଚକ୍ଷୁରେ ଦେଖୁଥିଲେ ବୋଲି କହିଲେ ଅନ୍ୟାୟ ହେବ ନାହିଁ । ହଣ୍ଟରଙ୍କ ଲିଖିତ ଗ୍ରନ୍ଥ 'ଓଡ଼ିଶା' ଖ୍ରୀ ୧୮୭୨ରେ ବିଲାତରେ ମୁଦ୍ରିତ ହୋଇ ବ୍ରିଟିଶ ଭାରତ ସରକାରଙ୍କଦ୍ୱାରା ପ୍ରଚାରିତ ହୋଇଥିଲା । ଏହି ଗ୍ରନ୍ଥର ପ୍ରଥମ ଭାଗର ପ୍ରଥମ ଅଧ୍ୟାୟ ପ୍ରଥମ ପରିଚ୍ଛେଦରେ ଓଡ଼ିଶାରେ ବିନ୍ଦୁମାତ୍ର ଐତିହାସିକ ଘଟଣା ନ ଥିବା କଥା ଉଲ୍ଲେଖ କରି ହଣ୍ଟର ଓଡ଼ିଶାକୁ ସଭ୍ୟତାବିହୀନ ଦେଶ ବୋଲି ବର୍ଣ୍ଣନା କରିଛନ୍ତି ।'' (୧୩)

ସେଇମାନଙ୍କ ଲେଖା ଉପରେ ଭରସା କରି କେତେକ କ୍ଷେତ୍ରରେ ପରବର୍ତ୍ତୀ ଲେଖକଗଣ ମଧ ସେମାନଙ୍କଦ୍ୱାରା ପ୍ରଦତ୍ତ ଭୁଲ୍ ତଥ୍ୟଗୁଡ଼ିକୁ ପରିବେଷଣ କରିଦେଲେ । ଏପରିକି ଏଲ୍‌ଫିନ୍ ଷ୍ଟୋନ୍ ଓ ହଣ୍ଟର ଓଡ଼ିଶାର୍ ଗଙ୍ଗବଂଶକୁ ବଙ୍ଗବଂଶ, ଅର୍ଥାତ୍ ଗଙ୍ଗବଂଶର ରାଜାମାନେ ବଙ୍ଗାଳୀ ଥିଲେ ବୋଲି ଲେଖିଦେବାରୁ ତାକୁ ନକଲ କରି ବଙ୍ଗଳାର ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ ଓ ନଗେନ୍ଦ୍ରନାଥ ବସୁଙ୍କ ଭଳି ବିଖ୍ୟାତ ପ୍ରତିଭାଧାରୀ ବ୍ୟକ୍ତିମାନେ ଗଙ୍ଗ ରାଜତ୍ୱ କାଳରେ ନିର୍ମିତ ପୁରୀ ଓ କୋଣାର୍କ ମନ୍ଦିର ବଙ୍ଗାଳୀ ଶିଳ୍ପୀମାନଙ୍କର ଅମରକୃତି ଏବଂ ଓଡ଼ିଶାର ଦୁର୍ଦ୍ଧର୍ଷ ପାଇକସେନା ପ୍ରକୃତରେ ବଙ୍ଗୀୟ ବାହିନୀ ଥିଲେ ବୋଲି ଲେଖିବାକୁ

୧୩- ୧୨/୩୬୨

ପଢ଼େଇ ନାହାନ୍ତି । ବଙ୍କିମଚନ୍ଦ୍ରଙ୍କ ପ୍ରବନ୍ଧ ''ବାଙ୍ଗଲାର ଇତିହାସେର ଉପାଦାନ'' 'ମଣିମାଳା' ଶୀର୍ଷକ ପାଠ୍ୟପୁସ୍ତକରେ ଛପାହୋଇଥିଲା । ସେ ଲେଖିଥିଲେ ''ଏଇ ବଙ୍ଗେରଇ ଗଙ୍ଗବଂଶ ଏକଦିନ ଉଡ଼ିଷ୍ୟାୟ ରାଜ୍ୟ ସ୍ଥାପନ-ପୂର୍ବକ ଏକ୍‌ଦିକେ ଯେମନ ପୁରୀର ଓ କୋଣାର୍କେର ମନ୍ଦିର ନିର୍ମାଣ କରିୟାଛିଲେନ୍, ଆପରଦିକେ ସେଇରୂପ ତିନିଶତ ବତ୍ସରଧରିୟା ବିଜିଗୀଷୁ ପାଠାନ୍‌ଗନକେ ପଦେ ପଦେ ପରାଭୂତ ଓ ଲାଞ୍ଛିତ କରିୟା ଛିଲେନ..'' ଇତ୍ୟାଦି [୧୪]

ନଗେନ୍ଦ୍ରନାଥ ବସୁ ବଙ୍ଗଳା 'ବିଶ୍ୱକୋଷ'ର ୪ର୍ଥ ଭାଗରେ କୋଣାର୍କ ପ୍ରବନ୍ଧରେ ଲେଖିଛନ୍ତି- ''ଏଖନ୍ ଓ କୋଣାର୍କେ ସୂର୍ଯ୍ୟଦେବେର ଯେ ପ୍ରାଚୀନ ଭଗ୍ନ ମନ୍ଦିର ଆଛେ ତାହାର ନିର୍ମାଣ ପ୍ରଣାଳୀ ଓ ଅବସ୍ଥିତି ପରିଦର୍ଶନ କରିଲେ ଶ୍ରୀକ୍ଷେତ୍ରେର ସୁବୃହତ ମନ୍ଦିର ଓ ସାମାନ୍ୟ ବଲିୟା ବୋଧହୟ । ଯଦି କୋଥାୟ ବଙ୍ଗୀୟ ଶିଳ୍ପନୈପୁଣ୍ୟେର ଉଜ୍ଜ୍ୱଳ ଉଦାହରଣ ଥାକେ ତାହା ଏଇ ରବିକ୍ଷେତ୍ରେ ।''[୧୫]

ସେହିପରି ପ୍ରଖ୍ୟାତ ବଙ୍ଗୀୟ ଐତିହାସିକ ରାଖାଲଦାସ ବାନାର୍ଜୀ ଲେଖି ଦେଇଗଲେ- 'ବକ୍ସି ଜଗବନ୍ଧୁଙ୍କୁ ଇଂରେଜମାନେ ଜଙ୍ଗଲ ଭିତରେ ଗୋଡ଼େଇ ଗୋଡ଼େଇ ମାରିଦେଲେ[୧୬] ଏବଂ ସେଇ ଛାପରେ ଡ. ହରେକୃଷ୍ଣ ମହତାବଙ୍କ ଓଡ଼ିଶା ଇତିହାସରେ ମଧ୍ୟ 'ବକ୍ସି ଇଂରେଜମାନଙ୍କ ଦ୍ୱାରା ନିହତ' ହୋଇଥିବା ଭଳି ଭୁଲ ତଥ୍ୟ ସ୍ଥାନ ପାଇଗଲା, ଯାହାକୁ ଅନ୍ୟମାନେ ଅନୁକରଣ କଲେ ।[୧୭]

ଭାରତର ଯେଉଁ ସ୍ୱାଧୀନତା ସଂଗ୍ରାମୀମାନେ ବ୍ରିଟିଶ ବାହିନୀର ତୋପ କମାଣ ମୁହଁରେ ନିଜ ନିଜ ଜୀବନକୁ ପାଣି ଛଡ଼େଇ ବ୍ରିଟିଶ ସରକାରଙ୍କୁ ଅଚଳ କରିଦେବାପାଇଁ ଗୋପନ ଷଡ଼ଯନ୍ତ୍ର ଚଳାଇଥିଲେ, ଥାନା ପୋଡୁଥିଲେ, ସରକାରୀ ଖଜଣାଖାନା ଅକ୍ତିଆର କରୁଥିଲେ ଅଥବା ଅତ୍ୟାଚାରୀ ବ୍ରିଟିଶ କର୍ମଚାରୀଙ୍କୁ ଗୁଳିକରି ମାରୁଥିଲେ ସେମାନଙ୍କ ସ୍ୱଦେଶବତ୍ସଳତାପାଇଁ ଆମେ ସେମାନଙ୍କୁ ପ୍ରଶଂସା କରୁ; କିନ୍ତୁ ଯେଉଁମାନଙ୍କ ବିରୋଧରେ ସେମାନେ ସଂଗ୍ରାମ କରୁଥିଲେ ସେମାନେ ତ ତାଙ୍କୁ ନିନ୍ଦା କରୁଥିଲେ, କରିବା ସ୍ୱାଭାବିକ ଥିଲା । ସାରା ଭାରତରେ ବ୍ରିଟିଶ ଶକ୍ତି ବିରୋଧରେ ସର୍ବପ୍ରଥମେ ୧୮୦୪ ଖ୍ରୀଷ୍ଟାବ୍ଦରେ ଅସି ଉତ୍ତୋଳନ କରିଥିଲେ ଖୋର୍ଦ୍ଧା ରାଜବଂଶର ପୁରୋହିତ ରାଜଗୁରୁ ଜୟକୃଷ୍ଣ ମହାପାତ୍ର ଓରଫ୍ ଜୟୀ ରାଜଗୁରୁ । ସମଗ୍ର ଭାରତବର୍ଷରୁ ନ ହେଲେ ମଧ୍ୟ ଭାରତବର୍ଷର ଏକ ପ୍ରାନ୍ତୀୟ ରାଜ୍ୟ ଓଡ଼ିଶା ଅଥବା ଖୋର୍ଦ୍ଧାରୁ ଇଂରେଜମାନଙ୍କୁ ତଡ଼ିଦେବାପାଇଁ ସେ ହିଁ ସର୍ବପ୍ରଥମ ସ୍ୱାଧୀନତା ସଂଗ୍ରାମ କରିଥିଲେ । ସୁତରାଂ ସମଗ୍ର ଭାରତବର୍ଷରେ ଯେ ଜୟୀ ରାଜଗୁରୁ, ବ୍ରିଟିଶ ବିରୋଧୀ ପ୍ରଥମ ସ୍ୱାଧୀନତା ସଂଗ୍ରାମୀ ଏବଂ ସେଥିପାଇଁ ସେ ଯେ ଓଡ଼ିଶାର ଗର୍ବ

---

୧୪- ୧୨/୩୬୭ ୧୫- ୧୨/୩୬୮ ୧୬- ୫୨/୧୫୫ ୧୭- ୧(୨ୟ)/୨୯୯

ଓ ଗୌରବର ପ୍ରତୀକ ଏଥିରେ ଦ୍ୱିଧା ବା ଦ୍ୱିମତର ଅବକାଶ ନାହିଁ। ସେହି କାରଣରୁ ହିଁ ଆଜି ଆମେ ଜୟୀ ରାଜଗୁରୁଙ୍କ ପୁଣ୍ୟସ୍ମୃତି ଚାରଣ କରି ତାଙ୍କୁ ପୂଜା କରୁଛୁ। କିନ୍ତୁ ଯେଉଁ ବ୍ରିଟିଶ ଜାତି ବିରୋଧରେ ସେ ସଂଗ୍ରାମ କରିଥିଲେ ସେମାନେ ଯେ ବେପାର କରିବାକୁ ଆସି ଶଠତା, ପ୍ରବଞ୍ଚନା, ବଳାତ୍କାର ଓ ବିଶ୍ୱାସଘାତକତା ଭଳି ବହୁ ଜଘନ୍ୟ ଅପରାଧର ଆଶ୍ରୟ ନେଇ ଏ ଦେଶରେ ଶାସକ ସାଜିଥିଲେ, ନିଜ ଜାତୀୟ ଚରିତ୍ରର ଏଇ ଅପରାଧ ପ୍ରବଣ ଦିଗଟିକୁ ଭୁଲିଯାଇ ଓଲଟି ତାଙ୍କ ଅନ୍ୟାୟ ବିରୋଧରେ ପ୍ରତିବାଦ ଓ ପ୍ରତିରୋଧର ସ୍ୱର ଉତ୍ତୋଳନକାରୀ ଜୟୀ ରାଜଗୁରୁଙ୍କୁ ଜଣେ ଖଳ ପ୍ରକୃତିର ଅପରାଧପ୍ରବଣ ବ୍ୟକ୍ତିଭାବେ ମୂଳରୁ ହିଁ ଅପରାଧୀ ତାଲିକାଭୁକ୍ତ କରିଦେଲେ। ଯିଏ ନିଜ ଦେଶପାଇଁ ନିଜ ପ୍ରାଣକୁ ପଣକରି ଶତ୍ରୁ ସଙ୍ଗେ ଲଢ଼ିଲା ଏବଂ ମାତୃଭୂମିର ମାନ ରକ୍ଷାପାଇଁ ଅସୀମ ସାହସ ଓ ଅସାମାନ୍ୟ ବୀରତ୍ୱ ପ୍ରଦର୍ଶନ କରି ନିଜକୁ ଜଣେ ଦୁର୍ଦ୍ଧର୍ଷ ଦେଶହିତୈଷୀ ବୀରଭାବେ ପ୍ରତିପାଦିତ କଲା, ତାଙ୍କୁ ସେମାନେ ରାଜଦ୍ରୋହ ଅପରାଧରେ ଫାଶିଦଣ୍ଡ ଦେଇ ନିଜ ନାରକୀୟ ସ୍ୱାର୍ଥାନ୍ଧତା ତଥା କାପୁରୁଷତାର ଚରମ ଦୃଷ୍ଟାନ୍ତ ଯୁଗ ଯୁଗପାଇଁ ଇତିହାସ ପୃଷ୍ଠାରେ ରଖିଗଲେ। ନିଜ ପ୍ରତିପକ୍ଷ ସେନା-ନାୟକର ବୀରତ୍ୱ କଳିବା ଭଳି ହୃଦୟ ସେମାନଙ୍କର ନ ଥିଲା, ଅଥବା ଥାଇ ମଧ୍ୟ ନିଜ ଜାତିର କଳଙ୍କମୟ ଅଧ୍ୟାୟ ଭିତରେ ସେ ବୀରତ୍ୱ ବହ୍ନିର ଝଲକକୁ ସେମାନେ ଘୋଡ଼ାଇ ପକାଇବାକୁ ଚାହିଁଥିଲେ। ସେଥିପାଇଁ ସେମାନଙ୍କ ଲେଖନୀ ୧୮୦୪ ଖୋର୍ଦ୍ଧା ସ୍ୱାଧୀନତା ସଂଗ୍ରାମର ସେନାପତି ଜୟୀ ରାଜଗୁରୁଙ୍କ ନାମୋଲ୍ଲେଖ ସୁଦ୍ଧା କରିବାକୁ ଶଙ୍କିଗଲା। ଅଥଚ ୧୮୦୪ରେ ଖୋର୍ଦ୍ଧା ଦୁର୍ଗକୁ ଚାରିପାଖରୁ ଅବରୋଧ କରି ସୁଦ୍ଧା ଜୟ କରିବାକୁ ଯେ ସେମାନଙ୍କୁ ଦୀର୍ଘ ତିନି ସପ୍ତାହ କାଳ ଯୁଦ୍ଧ କରିବାକୁ ପଡ଼ିଥିଲା ଏହା ସେମାନେ ସ୍ୱୀକାର କରିଛନ୍ତି।

"The approaches from the South Lay through a difficult pass between the Borunai hills and were stockarded and fortified with strong massonary barriers. It was three weeks before we were in a position to carry these works by storm."[୧୮]

କିନ୍ତୁ ସେମାନେ ସିନା ଆତ୍ମଗ୍ଲାନି ଜର୍ଜରିତ ଦୁରଭିସନ୍ଧିର ମୁଖା ପିନ୍ଧି ଜୟୀ ରାଜଗୁରୁଙ୍କ ବୀରତ୍ୱପୂର୍ଣ୍ଣ ଭୂମିକାର ଇତିହାସପୃଷ୍ଠା ଖୋଲି ନାହାନ୍ତି, ଇତିହାସ ମୋନଙ୍କର ଦୁରଭିସନ୍ଧିର ମୁଖା ଖୋଲି ଦେଇଛି। ଐତିହାସିକ ଡ. ଭବାନୀଚରଣ ରାୟ ତାଙ୍କ "Foundations of British Orissa" ପୁସ୍ତକରେ ହାରକୋର୍ଟ ସାହେବ ୧୮୦୪ ଖ୍ରୀଷ୍ଟାବ୍ଦରେ

୧୮- ୪୬/୮ ୧୯- ୪୨/୫୦

ତାଙ୍କ ସରକାରଙ୍କ ପାଖକୁ ଲେଖିଥିବା ଖଣ୍ଡିଏ ଚିଠିର ଅଳ୍ପାଂଶ ଉଦ୍ଧାର କରି ଲେଖିଛନ୍ତି "It appears the Raja himself is not inimical to us, but his dewan is extremely so and he controls every body and every thing at Khurda."[11]

## ହାରକୋର୍ଟଙ୍କ ବେକରେ ଫୁଲମାଳ

ଇଂରେଜ ସେନାପତି ହାରକୋର୍ଟ ଜାଣିଥିଲେ ଯେ, ଖୋର୍ଦ୍ଧାର ନାବାଳକ ରାଜା ମୁକୁନ୍ଦଦେବଙ୍କର ରାଜଗୁରୁ ହିଁ ସେତେବେଳେ ଦେବାନଭାବେ କାର୍ଯ୍ୟ କରୁଥିଲେ ଏବଂ ସେ ପ୍ରଥମରୁ ଇଂରେଜଙ୍କ ପୁରୀ ଅଭିଯାନ ପ୍ରସ୍ତାବକୁ ବିରୋଧ କରୁଥିଲେ । ହାରକୋର୍ଟ ସାହେବ ଏ କଥା ମଧ୍ୟ ଜାଣିଥିଲେ ଯେ, ମୁକୁନ୍ଦଦେବ ତାଙ୍କର ମୁଖ୍ୟ ମନ୍ତ୍ରଣାଦାତା ରାଜଗୁରୁଙ୍କ ପ୍ରତି ଯେଉଁପରି ଗୁରୁତ୍ୱ ଓ ମାନ୍ୟତା ପ୍ରଦର୍ଶନ କରୁଥିଲେ, ପୁରୀରେ ଜଗନ୍ନାଥ ମନ୍ଦିର ସେବକମାନଙ୍କର ଅଖଣ୍ଡ ପ୍ରଭାବହେତୁ ସେମାନଙ୍କପ୍ରତି ମଧ୍ୟ ସେହିପରି ଗୁରୁତ୍ୱ ଓ ମାନ୍ୟତା ପ୍ରଦର୍ଶନ କରୁଥିଲେ । ଏ ଗୂଢ଼ତତ୍ତ୍ୱର ସନ୍ଧାନ ହାରକୋର୍ଟ ପାଇଥିଲେ ପରମଗୁରୁ ପଣ୍ଡିତଙ୍କଠାରୁ । 'ଫିରିଙ୍ଗି କଳିଭାରତ' ତଥ୍ୟମତେ ହାରକୋର୍ଟ ପ୍ରଥମେ ଗଞ୍ଜାମରୁ ବାଣପୁର ଓ ଖୋର୍ଦ୍ଧା ବାଟଦେଇ ସିଧାସଳଖ କଟକ ଅଭିଯାନପାଇଁ ଖୋର୍ଦ୍ଧା ରାଜ୍ୟର ସେନାପତି ବକ୍ସି ଜଗବନ୍ଧୁଙ୍କ ପାଖକୁ ସ୍ୱତନ୍ତ୍ର ବାର୍ତ୍ତାବହ ହସ୍ତରେ ଚିଠିଲେଖି ଅନୁମତି ପ୍ରାର୍ଥନା କରିଥିଲେ । କିନ୍ତୁ ବକ୍ସି ଖୋର୍ଦ୍ଧା ବାଟ ଦେଇ କଟକ ଯିବାକୁ ଅନୁମତି ଦେଇପାରିବେ ନାହିଁ ଜଣାଇ ହାରକୋର୍ଟଙ୍କ ପାଖକୁ ଚିଠିଲେଖି ପରମଗୁରୁ ପଣ୍ଡିତଙ୍କୁ ସ୍ୱତନ୍ତ୍ର ବାର୍ତ୍ତାବହଭାବେ ପଠାଇଥିଲେ । ଧୂର୍ତ୍ତ ଓ ଚତୁର ହାରକୋର୍ଟ ପରମଗୁରୁ ପଣ୍ଡିତଙ୍କୁ କିଛି ଉପଢ଼ୌକନ ଦେଇ ତାଙ୍କଠାରୁ ଖୋର୍ଦ୍ଧାରାଜ୍ୟ, ରାଜା, ସେନାପତି, ଦେବାନ୍, ରାଜଗୁରୁ ଏବଂ ଜଗନ୍ନାଥ ଓ ତାଙ୍କର ସେବକମାନଙ୍କ ସମ୍ପର୍କରେ ସମସ୍ତ ଜ୍ଞାତବ୍ୟ ତଥ୍ୟ ସଂଗ୍ରହ କରି ନେଇଥିଲେ । ତେଣୁ ସେ ଖୋର୍ଦ୍ଧା ବାଟ ଛାଡ଼ି ପୁରୀବାଟ ଦେଇ କଟକ ଅଭିଯାନ କରିବାକୁ ଅଧିକ ନିରାପଦ ଓ ସୁବିଧାଜନକ ମନେ କରିଥିଲେ ଏବଂ ସେଥିପାଇଁ ଜଗନ୍ନାଥଙ୍କ ସେବକମାନଙ୍କ ମୁଖ୍ୟଙ୍କ ପାଖକୁ ତ୍ରିବେଣୀ ପଣ୍ଡିତଙ୍କଠାରୁ ଏହି ମର୍ମରେ ଚିଠି ଖଣ୍ଡିଏ ଲେଖାଇ ଆଣିଲେ- ''ଇଂରେଜ ଶାସନ ଭାରି ଭଲ, ତାଙ୍କ ଶାସନରେ ଜଗନ୍ନାଥ ଭଲରେ ରହିବେ, ତୁମେମାନେ ବି ଭଲରେ ରହିବ ।'' ତ୍ରିବେଣୀ ପଣ୍ଡିତଙ୍କୁ ବଡ଼ପଣ୍ଡା ଖୁବ୍ ଖାତିର କରୁଥିଲେ । ତାଙ୍କ ଚିଠି ହାରକୋର୍ଟଙ୍କ ପୁରୀ ଅଭିଯାନପାଇଁ ପଥ ପରିଷ୍କାର କରିଦେଲା । ପଣ୍ଡାମାନେ ଫୁଲମାଳ ଧରି ମାଣିକପାଟଣାଠାରୁ ଇଂରେଜମାନଙ୍କୁ ପୁରୀ ସହରକୁ ପାଛୋଟି ଆଣିଲେ । ତଥାପି ରାଜଗୁରୁଙ୍କ ବାରଣ ନ ମାନି ଆଗରୁ ମୁକୁନ୍ଦଦେବ ହାରକୋର୍ଟଙ୍କ ସହ ଓକିଲଙ୍କ ମାଧ୍ୟମରେ ମୌଖିକଚୁକ୍ତି କରିଥିଲେ ।

## ବଙ୍କିଙ୍କୁ ମେଲଭିଲ୍‌ଙ୍କ ପତ୍ର ଓ ପରମଗୁରୁଙ୍କ ହାତରେ ମେଲଭିଲ୍‌ଙ୍କୁ ବଙ୍କିଙ୍କ ଉତ୍ତର

*''ବକସିଙ୍କଠାକୁ ଲେଖିଲେକ ପତ୍ର ବାଣପୁର ସଲଖେ ଆମ୍ଭଙ୍କୁ ଦିଅ ପଥ
ପତ୍ର ଘେନି ଦେଶାଭର ବହନ ଚଳିଲା ବାଣପୁର ଦ୍ୱାରେ ପ୍ରବେଶ ହୋଇଲା ।
ଦ୍ୱାରୀଙ୍କି ବୋଇଲାରେ ଲେଖିଛି ସାହେବ ଜଗବନ୍ଧୁ ବିଦ୍ୟାଧରଙ୍କୁ ଏ ପତ୍ର ଦେବ ।
ସେ ଚିଟିକି ଆଣି ଦ୍ୱାରୀ ବକସିଙ୍କି ଦେଲା ସାହେବଙ୍କ ପତ୍ରବୋଲି ଆଗରେ କହିଲା ।
ଶୁଣିଣ ବକସି ବୋଲନ୍ତିରେ ବାଇ ଏବାଟେ ଯିବାକୁ ନୃପତି ଆଜ୍ଞା ନାହିଁ
ସେ ସଲଖେ ମୁହିଁ କେମନ୍ତେ ଦେବି ବାଟ ମହାବଳୀଥାଉ ଯେ ରାଜନ ମୁକୁଟ ।
ଏତେବୋଲି ଚିଟାଉ ଲେଖିଲେ ବକସି ଲଘୁଉମପରମଗୁରୁଙ୍କୁ ଦେଲେପେଷି ।
ଚିଟି ଘେନିଣ ଯେ ପରମଗୁରୁ ଗଲା ମିଲିମିଲି ସାହେବର ହାତରେ ଲେଖାଦେଲା ।
x x x x x x
ମିଲିମିଲି ସାହେବ ପଚାରେ ଗୁରୁଙ୍କୁ ନୃପତିର ତେଜ ଲାଗେ କେତେକ ଦୂରକୁ ।
x x x x x x
x x x x x ପରମ ଗୁରୁ କହେ ଏହା କାହିଁକି ପଚାର
ଯେତେଦୂର ଜଗନ୍ନାଥ ମହିମା ବିକାଶଇ ତେତେଦୂର ନୃପତିର ତେଜ ପ୍ରକାଶଇ ।
x x x x x x
ଶୁଣିଣ ଫିରିଙ୍ଗି ବଡ଼ ଆନନ୍ଦ ହୋଇଲା ରାଜାର ବ୍ରାହ୍ମଣ ବୋଲି ଶାଳ ଧୋତିଦେଲା ।
ଅନେକ ପ୍ରକାରେ ବହୁ କଲା ପଉରୁଷ ନୃପତିଙ୍କ ଶ୍ରୀଛାମୁକୁ ଲେଖିଲା ଉଦ୍ଦେଶ୍ୟ ।
ଦେଖା ଦରଶନୀ ଧନ ଅନେକ ସେ ଦେଲା ଦୁଇ ଜଣଙ୍କୁ ଡାକି ଛାମୁକୁ ପେଶିଲା ।''

❑ ❑ ❑

ମିଲିମିଲି = ମେଲଭିଲ୍ - ଫିରିଙ୍ଗି * କଳିଭାରତ, ୮ମ ଅଧ୍ୟାୟ ପୃ ୧୮୬-୧୮୯

## ତୃତୀୟ ଅଧ୍ୟାୟ

# ସ୍ୱାଧୀନତା ସଂଗ୍ରାମର ପ୍ରଥମ ସହିଦ ଜୟୀ ରାଜଗୁରୁ

ବସ୍ତୁତଃ ଜୟୀ ରାଜଗୁରୁ ସେତେବେଳେ ଖୋର୍ଦ୍ଧା ରାଜ୍ୟରେ ଜଣେ ବିବାଦୀୟ ବ୍ୟକ୍ତିଭାବେ ବିବେଚିତ ହେଉଥିଲେ। କାରଣ ସେ ରାଜଗୁରୁ ଥାଇ ମଧ୍ୟ ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଓ ଦେୱାନ ହରିହର ଭ୍ରମରବର ରାୟଙ୍କ ସହିତ ରାଜାଙ୍କର ବ୍ୟକ୍ତିଗତ ମନାନ୍ତରର ଦୁର୍ଯୋଗ ସୃଷ୍ଟି କରାଇ ୧୮୦୨ ଖ୍ରୀଷ୍ଟାବ୍ଦ ଶେଷରେ ରାଜା ଓ ରାଜପରିବାରଙ୍କୁ ଖୋର୍ଦ୍ଧାଗଡ଼ରୁ ନେଇ ପୁରୀ ବାଲିସାହି ପୁରୁଣା ନହରରେ ରଖାଇଥିଲେ ଏବଂ ବକ୍ସି ଓ ଦେୱାନ୍‌ଙ୍କୁ ସମ୍ପୂର୍ଣ୍ଣଭାବେ ରାଜାଙ୍କଠାରୁ ଦୂରେଇ ରଖି ନିଜେ ରାଜାଙ୍କ ପାଖେପାଖେ ରହି ନାବାଳକ ମୁକୁନ୍ଦଦେବଙ୍କ ଅଭିଭାବକଭାବେ ସମସ୍ତ ରାଜକାର୍ଯ୍ୟ ଚଳାଉଥିଲେ। ସୁତରାଂ ୧୮୦୩ ଓ ୧୮୦୪ ଖୋର୍ଦ୍ଧା ରାଜ୍ୟ ତଥା ଓଡ଼ିଶାର ଭାଗ୍ୟ ନିୟାମକ ଏହି ଦୁଇଟି ଦୁର୍ଭାଗ୍ୟପୂର୍ଣ୍ଣ ବର୍ଷରେ ହିଁ ଜୟୀ ରାଜଗୁରୁ ନିଜର ରାଜପୁରୋହିତ ଦାୟିତ୍ୱ ସହିତ ଖୋର୍ଦ୍ଧା ରାଜ୍ୟର ଦେୱାନ୍ ଓ ସେନାପତିଙ୍କ ଦାୟିତ୍ୱ ନିଜ ହାତକୁ ନେଇଥିଲେ। ଜୟୀ ରାଜଗୁରୁଙ୍କ ସମସାମୟିକ କବି ମଧୁସୂଦନ ବିପ୍ର ଏହାର ମୂଳକାରଣ ସମ୍ପର୍କରେ 'ଫିରିଙ୍ଗି କଳିଭାରତ'ରେ ସମ୍ୟକ ସୂଚନା ଦେଇଛନ୍ତି- ଯାହା ଏଠାରେ ଆଲୋଚ୍ୟ ନୁହେଁ। ଓଡ଼ିଆ ଜାତିର ସେହି ଘଡ଼ିସନ୍ଧି ମୁହୂର୍ତ୍ତରେ ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ ଓ ଦେବାନ୍ ହରିହର- ପ୍ରତ୍ୟେକେ ନିଜ ନିଜ କର୍ମକ୍ଷେତ୍ରରେ ସକ୍ରିୟ ରହି ମୁକୁନ୍ଦଦେବଙ୍କୁ ସୁଚିନ୍ତିତ ମିଳିତ ପରାମର୍ଶ ଦେଇଥିଲେ ଇତିହାସର ଗତି ହୁଏତ ଭିନ୍ନ ପ୍ରକାର ହୋଇଥାନ୍ତା। ସ୍ୱୟଂ ଇଂରେଜ ଐତିହାସିକମାନେ ସ୍ୱୀକାର କରିଛନ୍ତି ଯେ, ଚିଲିକା ମୁହାଣ ପାରିହେବା ସମୟରେ ଇଂରେଜ ସୈନ୍ୟମାନଙ୍କ ଉପରେ ସାମାନ୍ୟ ଆକ୍ରମଣ ବା ବିରୋଧ କରାଯାଇଥିଲେ ସେମାନେ ଦାରୁଣ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥାନ୍ତେ। ସେମାନେ ଆହୁରି ଆଶ୍ଚର୍ଯ୍ୟ ପ୍ରକଟ କରି ଲେଖିଛନ୍ତି ଯେ, ପ୍ରତିରୋଧ ପରିବର୍ତ୍ତେ ପଞ୍ଚାଏ

ଶୁକ୍ଳାମ୍ବରଧାରୀ ବ୍ରାହ୍ମଣ ସେମାନଙ୍କୁ ମାଣିକପାଟଣାରେ ସ୍ୱାଗତ ଜଣାଇ ପୁରୀକୁ ପାଛୋଟି ଆଣିଥିଲେ । ଏ ଶୁକ୍ଳାମ୍ବରଧାରୀମାନେ ହିଁ ଜଗନ୍ନାଥଙ୍କ ସେବକ ଥିଲେ । "The Pandas of the Jagannath Temple had no objection if the British occupied the town and managed the temple, provided they were given a little money."[୨୦] ସୁତରାଂ ସେହି ଶୁକ୍ଳାମ୍ବରଧାରୀ ପଣ୍ଡାମାନଙ୍କ ମଧ୍ୟରେ ଯେ ଜୟୀ ରାଜଗୁରୁ ନ ଥିଲେ ଏହା ନିଶ୍ଚିତ କଥା ।

କର୍ଣ୍ଣେଲ୍ ହାରକୋର୍ଟଙ୍କ ସହିତ ମୁକୁନ୍ଦଦେବଙ୍କର ଅଲିଖିତ ଚୁକ୍ତି ମୁତାବକ ସିରାଇ, ପୁରୁଷୋତ୍ତମ, ରାହାଙ୍ଗ ଓ ଚବିଶକୁଦ- ଏ ୪ ମାହାଲର ମାଲିକାନା ଫେରି ପାଇବାପାଇଁ ମୁକୁନ୍ଦଦେବଙ୍କ ତରଫରୁ ଜୟୀ ରାଜଗୁରୁ ସାଙ୍ଗରେ ୨୦୦ ପାଇକଙ୍କୁ ଧରି କଟକ ଯାଇ ବାରବାଟୀ ଦୁର୍ଗରେ ହାରକୋର୍ଟଙ୍କୁ ସାକ୍ଷାତ କରିଥିଲେ । ହାରକୋର୍ଟ କହିଲେ ୪ ପ୍ରଗଣା କଥା ତେଣିକି ଥାଉ, ଚକାଏ ଜମି ମଧ୍ୟ ଦିଆଯାଇପାରିବ ନାହିଁ । ହତାଶ ଓ ଉତ୍‌କ୍ଷିପ୍ତ ହୋଇ ଜୟୀ ରାଜଗୁରୁ ଫେରିଆସି ମୁକୁନ୍ଦଦେବଙ୍କୁ କହିଲେ- "ମୁଁ ପ୍ରଥମରୁ ହିଁ ଇଂରେଜ ସେନାପତି ସହିତ କୌଣସି ସାଲିସ୍ ଚୁକ୍ତି ନ କରିବାକୁ ଏବଂ ଇଂରେଜ ସୈନ୍ୟମାନଙ୍କୁ ପୁରୀ ବାଟଦେଇ ଯିବାକୁ ଅନୁମତି ନ ଦେବାକୁ ଆପଣଙ୍କୁ ସତର୍କ କରିଦେଇଥିଲି ।"[୨୧] ଜୟୀ ରାଜଗୁରୁଙ୍କର ଏହି ଉକ୍ତିରୁ ଏହା ସୂଚିତ ହେଉଛି ଯେ ସେ ଇଂରେଜ ଶକ୍ତିକୁ ଓଡ଼ିଶାକୁ ଡାକିଆଣିବାକୁ ମୂଳରୁ ଚାହୁଁ ନ ଥିଲେ । କିନ୍ତୁ ନାବାଳକ ମୁକୁନ୍ଦଦେବଙ୍କ ପ୍ରତିନିଧିଭାବେ ରାଜାଙ୍କ ଇଚ୍ଛାମତେ ହାରକୋର୍ଟଙ୍କ ସହିତ ମୌଖିକ ଚୁକ୍ତି କରିବାକୁ ବାଧ୍ୟ ହୋଇଥିଲେ । ସେ ଦୃଷ୍ଟିରୁ ବିଚାର କଲେ, ଆମେମାନେ ଏଯାବତ୍ ଜୟୀ ରାଜଗୁରୁଙ୍କ ମହାନ୍ ଜାତୀୟ ଚେତନାର ସଠିକ୍ ମୂଲ୍ୟାୟନ କରିପାରି ନାହୁଁ । ଇଂରେଜ ଐତିହାସିକମାନଙ୍କଦ୍ୱାରା ଜୟୀ ରାଜଗୁରୁଙ୍କପ୍ରତି ପ୍ରକ୍ଷିପ୍ତ କର୍ଣ୍ଣେଲ୍ ହାରକୋର୍ଟଙ୍କ ଦୁରଭିସନ୍ଧିମୂଳକ ଦୃଷ୍ଟିକୋଣ ବିରୋଧରେ ଆମେ ଏଯାଏ ନିଜ ପ୍ରଦେଶରେ ଜାତୀୟ ସଚେତନତା ସୃଷ୍ଟିକରି ପାରି ନାହୁଁ । ଭାରତବର୍ଷ ତ ଆମପାଇଁ କାହିଁ କେତେଦୂର ! ଓଡ଼ିଶାର ସ୍ୱନାମଧନ୍ୟ ଜାତୀୟତାବାଦୀ ଔପନ୍ୟାସିକ ତଥା ପ୍ରଖ୍ୟାତ କଥାକାର ସ୍ୱର୍ଗତ ସୁରେନ୍ଦ୍ର ମହାନ୍ତି 'ଶତାବ୍ଦୀର ସୂର୍ଯ୍ୟ'ରେ ଲେଖିଛନ୍ତି- "ଯେଉଁଦିନ ଚିଲିକାକୂଳ ପ୍ରୟାଗୀ ଗାଁରୁ ଛଅଶହ ୟୁରୋପିୟାନ୍, ତିନି ଶହ ତେଲଙ୍ଗା ସିପାହି ଆଉ ଆଠଶହ ଶଗଡ଼ ରସଦ ସାଙ୍ଗରେ ଧରି ହାରକୋର୍ଟ ଓ ମେଲଭିଲ୍ ଚିଲିକା ପାଣିବାଟରେ ଆସିଥିଲେ ସେଦିନ ଖୋର୍ଦ୍ଧା ରାଜା ମୁକୁନ୍ଦଦେବ ଓ ଜୟୀ ରାଜଗୁରୁ ସେମାନଙ୍କର ସାମାନ୍ୟ ପ୍ରତିରୋଧ କରିଥିଲେ ଓଡ଼ିଶା ଇତିହାସ ହୁଏତ ଅନ୍ୟ ଗତି ଧରିଥାନ୍ତା । କିନ୍ତୁ ଗୋଟାଏ ଜାତିର ଇତିହାସରେ ଯେତେବେଳେ ବିଳୟ ଓ ଅଧଃପତନର ବିଡ଼ମ୍ବିତ ମୁହୂର୍ତ୍ତ ଆସେ,

---

*୨୦- ୪୩/୮୯     ୨୧- ୪ର୍ଥ ଅଧ୍ୟାୟ ଦ୍ରଷ୍ଟବ୍ୟ*

ସେତେବେଳେ ତାହାର ପ୍ରଥମ ବିକୃତି ଆରମ୍ଭହୁଏ ଜାତିର ଚେତନା ଓ ଭାଗ୍ୟ-ନିୟନ୍ତାମାନଙ୍କର ବିବେକ ଓ ପ୍ରାଣଶକ୍ତିରେ। ବିଳୟର ସେହି ବିକୃତି ସେଦିନ ରାଜା ମୁକୁନ୍ଦଦେବ ଓ ତାଙ୍କ ମନ୍ତ୍ରଣାଦାତା ଜୟୀ ରାଜଗୁରୁଙ୍କ ବିବେକରେ ମଧ୍ୟ ଆରମ୍ଭ ହୋଇଥିଲା।[୨୨] ଜୟୀ ରାଜଗୁରୁ ରାଜା ମୁକୁନ୍ଦଦେବଙ୍କର ମନ୍ତ୍ରଣାଦାତା ଥିଲେ ଏହା ପ୍ରମାଣିତ; କିନ୍ତୁ ହାରକୋର୍ଟଙ୍କ ସହିତ ସାଲିସଚୁକ୍ତି ନ କରିବାକୁ ଏବଂ ଇଂରେଜ ବାହିନୀକୁ ପୁରୀ ବାଟଦେଇ ଓଡ଼ିଶା ଅଭିଯାନପାଇଁ ଅନୁମତି ନ ଦେବାକୁ ଜୟୀ ରାଜଗୁରୁ ପ୍ରଥମେ ମୁକୁନ୍ଦଦେବଙ୍କୁ ଉପଦେଶ ଦେଇଥିଲେ ଏବଂ ସେ ଉପଦେଶ ଗ୍ରହଣ ନ କରି ମୁକୁନ୍ଦଦେବ ଇଂରେଜଙ୍କୁ ପୁରୀ ବାଟଦେଇ ଯିବାକୁ ଅନୁମତି ଦେଇଥିଲେ - ଏହା ମଧ୍ୟ ପ୍ରମାଣିତ। ଖୋଦ୍ ମୁକୁନ୍ଦଦେବ ୧୮୦୭ରେ ମେଦିନୀପୁର ଜେଲ୍‌ରୁ ଗଭର୍ଣ୍ଣର ଜେନେରାଲଙ୍କ ଉଦ୍ଦେଶ୍ୟରେ ପଠାଇଥିବା ଦରଖାସ୍ତରେ ଏବଂ ୧୮୧୮ରେ ବକ୍ସି ଜଗବନ୍ଧୁ ଦେଓ୍ୱାନ କୃଷ୍ଣଚନ୍ଦ୍ର ଇଂରେଜ ସରକାରଙ୍କ ଉଦ୍ଦେଶ୍ୟରେ ପଠାଇଥିବା ଚିଟାଉରେ ଜୟୀ ରାଜଗୁରୁଙ୍କ ଇଂରେଜ ବିରୋଧୀ ଭୂମିକା ସମ୍ପର୍କରେ ବର୍ଣ୍ଣିତ ତଥ୍ୟରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ଜୟୀ ରାଜଗୁରୁ ପ୍ରଥମରୁ ହିଁ ଇଂରେଜଙ୍କୁ ବିରୋଧ କରୁଥିଲେ। ତେଣୁ ଜୟୀ ରାଜଗୁରୁଙ୍କ ଜାତୀୟ ଚରିତ୍ରର ନିଷ୍ଠା ପ୍ରତି ସନ୍ଦେହର ଅବକାଶ ନାହିଁ।

୧୮୦୭ ବେଳକୁ ମୁକୁନ୍ଦଦେବଙ୍କ ବୟସ ହୋଇଥିଲା ୨୨ ବର୍ଷ। ତାର ବର୍ଷକ ପୂର୍ବରୁ ୧୮୦୬ରେ ଇଂରେଜମାନେ ଜୟୀ ରାଜଗୁରୁଙ୍କୁ ରାଜଦ୍ରୋହ ଅପରାଧରେ ଫାଶି ଦେଇଥିଲେ। ୨୨ ବର୍ଷର ଯୁବକ ମୁକୁନ୍ଦଦେବ ରାଜ୍ୟ, ରାଜପ୍ରାସାଦ, ଧନସମ୍ପଦ ଇତ୍ୟାଦି ସର୍ବସ୍ୱ ହରାଇ ପରିବାରରୁ ବିଚ୍ଛିନ୍ନ ହୋଇ ତିନି ବର୍ଷକାଳ ଜେଲ୍‌ଦଣ୍ଡ ଭୋଗିବାଫଳରେ ଭୟଙ୍କର ମାନସିକ ଯନ୍ତ୍ରଣାରେ ବୁଡ଼ି ଛଟପଟ ହେବା ସ୍ୱାଭାବିକ। ବୁଡ଼ି ଯାଉଥିବା ଲୋକର ହାତରେ ଯାହା ପଡ଼େ ସେ ତାକୁ ଧରିପକାଇ ରକ୍ଷା ପାଇଯିବାକୁ ଚେଷ୍ଟାକରେ। ମୁକୁନ୍ଦଦେବ ସେଇ ଅବସ୍ଥାରେ ପଡ଼ି ନିଜ ଉପରୁ ଇଂରେଜ ବିରୋଧୀ ଦୋଷ ଝାଡ଼ି ସବୁତକ ଇଂରେଜ-ବିରୋଧୀଦୋଷ ପରଲୋକଗତ ରାଜଗୁରୁଙ୍କ ଉପରେ ପକେଇଦେଇ ଇଂରେଜଙ୍କ ଅନୁକମ୍ପା ଲାଭକରି ଜେଲ୍‌ରୁ ମୁକୁଳିଯିବାକୁ ଚେଷ୍ଟା କରିଥିଲେ, ଏବଂ ସେ ଚେଷ୍ଟା ତାଙ୍କର ସଫଳ ହେଲା। ମୁକୁନ୍ଦଦେବ ଜାଣିଥିଲେ ଯେ ରାଜଗୁରୁ ତାଙ୍କର ମନ୍ତ୍ରଣାଦାତାଭାବେ ସବୁ ନାଟର ଗୋବର୍ଦ୍ଧନ ଥିଲେବୋଲି ହାରକୋର୍ଟଙ୍କର ଦୃଢ଼ଧାରଣା ଥିଲା ଏବଂ ସେହି କାରଣରୁ ତାଙ୍କୁ ଇଂରେଜ ସରକାର ପ୍ରଧାନଶତ୍ରୁଭାବେ ଧରି ଫାଶି ଦେଇଥିଲେ। ବସ୍ତୁତଃ ରାଜଗୁରୁ ଇଂରେଜଙ୍କର ପ୍ରଧାନ ବିରୋଧୀ ଥିଲେ। ତେଣୁ ଯେଉଁ ଦୋଷପାଇଁ ଇଂରେଜମାନେ ରାଜଗୁରୁଙ୍କୁ ଫାଶିଦେଲେ ବର୍ଷକପରେ ପରଲୋକଗତ ରାଜଗୁରୁଙ୍କ ଉପରେ ସେଇ

---

*୨୨- ୨୧/୨୪୩*

ଦୋଷାରୋପ କରି ଯଦି ନିଜର ମୁକ୍ତିପାଇଁ ଇଂରେଜଙ୍କ ଅନୁକମ୍ପା ଲାଭ ସମ୍ଭବ ହୋଇପାରିଲା ସେଥିପାଇଁ ମୁକୁନ୍ଦଦେବଙ୍କୁ ସମାଲୋଚନା କରିବା ଉଚିତ ନୁହେଁ; କାରଣ ଇଂରେଜମାନଙ୍କପାଇଁ ଜୟୀ ରାଜଗୁରୁଙ୍କର ଯାହା ଦୋଷ ବୋଲି ବିବେଚିତ ହେଉଥିଲା, ଜୟୀ ରାଜଗୁରୁଙ୍କର ତାହାଥିଲା ଜଣେ ସ୍ୱାଧୀନତାପ୍ରେମୀ ଯୋଦ୍ଧା ଭାବରେ ସର୍ବୋତ୍କୃଷ୍ଟ ଗୁଣ, ଏବଂ ସେହି ଗୁଣପାଇଁ ଓଡ଼ିଆ ଜାତିର ଜଣେ ଅମର ସହିଦ ରୂପେ ସେ ଚିରସ୍ମରଣୀୟ ହୋଇ ରହିବେ ।

ଇଂରେଜ ଶାସକବର୍ଗଙ୍କ କପୋଳକଳ୍ପିତ ଏକ ଅହେତୁକ ସମ୍ଭାବନାପୁଷ୍ଟ ଅଭିଯୋଗର ଶରବ୍ୟ ହୋଇଥିବା ଓଡ଼ିଆ ଜାତିର ଅନ୍ୟତମ ଇତିହାସ ପୁରୁଷ ଜୟୀ ରାଜଗୁରୁ ସେମାନଙ୍କ ଦୃଷ୍ଟିରେ ଜଣେ କୁଖ୍ୟାତ୍ ଖଳନାୟକ ଥିଲେ । ଦୁର୍ଭାଗ୍ୟଜନକଭାବେ ଇତିହାସ ପୃଷ୍ଠାରେ ମଧ ଜୟୀ ରାଜଗୁରୁଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ସେହି ବିଡ଼ମ୍ବିତ ମୁହୂର୍ତ୍ତର ଛାପ ରହିଗଲା । ଆଶ୍ୱାସନାର ବିଷୟ ଯେ ପ୍ରଖ୍ୟାତ ଐତିହାସିକ ସ୍ୱର୍ଗତ କେଦାରନାଥ ମହାପାତ୍ର, ଜୟୀ ରାଜଗୁରୁଙ୍କର ପ୍ରଥମରୁ ଶେଷଯାଏଁ ଇଂରେଜ ବିରୋଧୀ ଭୂମିକା ସମ୍ପର୍କରେ ସଠିକ୍ ବିବରଣୀ ପ୍ରଦାନ କରିଛନ୍ତି ।

ଇଂରେଜ ଶାସକମାନେ ଏକ ସମୟରେ ଜୟୀ ରାଜଗୁରୁଙ୍କୁ ରାଜଦ୍ରୋହ ଅପରାଧରେ ଅଭିଯୁକ୍ତ କରି ଫାଶି ଦେଇଥିଲେ । କିନ୍ତୁ ଆମେମାନେ ତାଙ୍କର ସ୍ୱର୍ଗତ ଆତ୍ମାକୁ ୧୮୦୩ ଓ ୧୮୦୪ରେ ଓଡ଼ିଆ ଜାତିର ଭାଗ୍ୟ ବିପର୍ଯ୍ୟୟପାଇଁ ଦାୟୀ ନ କରି ସାରା ଭାରତରେ ସର୍ବପ୍ରଥମେ ସେ ବ୍ରିଟିଶଶକ୍ତି ବିରୋଧରେ ସଶସ୍ତ୍ର ସଂଗ୍ରାମ କରିଥିବାହେତୁ ଫାଶିଦଣ୍ଡ ପାଇ ଯେଉଁ ବିରଳ ଦୃଷ୍ଟାନ୍ତ ସୃଷ୍ଟିକରି ଯାଇଛନ୍ତି, ସେଥିପାଇଁ ତାଙ୍କୁ ସର୍ବଭାରତୀୟସ୍ତରରେ ଜାତୀୟ ସହିଦ୍ ବୀରର ମର୍ଯ୍ୟାଦା ପ୍ରଦାନପାଇଁ ମିଳିତ ଉଦ୍ୟମ କରିବା ଆବଶ୍ୟକ । ଜୟୀ ରାଜଗୁରୁଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ, ଅସାଧାରଣ ଦେଶପ୍ରେମ, ଅସାମାନ୍ୟ ବୀରତ୍ୱ, ଅସୀମ ସାହସ ଏବଂ ଖୋର୍ଦ୍ଧାର ସ୍ୱାଭିମାନ ତଥା ସ୍ୱାଧୀନତାପାଇଁ ଅଭିନନ୍ଦନୀୟ ଆତ୍ମୋତ୍ସର୍ଗକୁ ନେଇ ସୁସମୃଦ୍ଧ ତାଙ୍କର ମହାନ୍ ଜାତୀୟ ଚରିତ୍ରକୁ ଆମର ପ୍ରବୀଣ ତଥା ନବୀନ ଐତିହାସିକମାନେ ଏକ ସ୍ୱରରେ ଉଦ୍‌ଘୋଷିତ କରି ଓଡ଼ିଆ ଜାତିର ପ୍ରାଣତନ୍ତ୍ରୀକୁ ପ୍ରତିଧ୍ୱନିତ କରନ୍ତୁ- ଏହା ହିଁ ଆଗାମୀ କାଲିପାଇଁ ଆଜିର ଆହ୍ୱାନ ।



# ଚତୁର୍ଥ ଅଧ୍ୟାୟ
# ଖୋର୍ଦ୍ଧା ରାଜାଙ୍କ ଦରଖାସ୍ତ

୧୮୦୪ରେ ଖୋର୍ଦ୍ଧାଦୁର୍ଗର ପତନ ଘଟାଇ ଇଂରେଜମାନେ ଖୋର୍ଦ୍ଧାର ରାଜା ମୁକୁନ୍ଦଦେବଙ୍କୁ ପ୍ରଥମେ କଟକରେ ଓ ତାପରେ ନେଇ ମେଦିନୀପୁର ଜେଲ୍‌ରେ ବନ୍ଦିକରି ରଖିଥିଲେ । ତିନି ବର୍ଷ କାଳ ଜେଲଦଣ୍ଡ ଭୋଗିବାପରେ ୧୮୦୭ରେ ମୁକୁନ୍ଦଦେବ ସେଇ ଜେଲ୍‌ଖାନା ଭିତରୁ ବ୍ରିଟିଶ ଗଭର୍ଣ୍ଣର ଜେନେରାଲଙ୍କ ଉଦ୍ଦେଶ୍ୟରେ ଖଣ୍ଡିଏ ଦରଖାସ୍ତ ଲେଖି ତାଙ୍କୁ ଜେଲ୍‌ରୁ ମୁକ୍ତି ଦେବାପାଇଁ ସେ ଦରଖାସ୍ତରେ ପ୍ରାର୍ଥନା କରିଥିଲେ । ସଂପ୍ରତି ଓଡ଼ିଶା ରାଜ୍ୟ ଅଭିଲେଖାଗାରରେ ବୋର୍ଡ଼ ଅଫ୍ ରେଭିନ୍ୟୁର ୧୦ ନମ୍ବର ମ୍ୟାନୁସ୍କ୍ରିପଟ୍ ଭଲ୍ୟୁମ୍‌ର ୧୦ରୁ ୧୪ ପୃଷ୍ଠାରେ ଥିବା ଖୋର୍ଦ୍ଧାରାଜାଙ୍କ ଦରଖାସ୍ତର ଇଂରେଜୀ ଅନୁବାଦର ପ୍ରତିଲିପି ଏ ପୁସ୍ତକର ପରିଶିଷ୍ଟରେ ସଂଯୋଗ କରାଯାଇଛି । ସେହି ଦରଖାସ୍ତ ପ୍ରାର୍ଥନାମତେ ସମ୍ଭବତଃ ମୁକୁନ୍ଦଦେବ ୧୮୦୭ରେ ମେଦିନୀପୁର ଜେଲ୍‌ରୁ ଖଲାସ ହୋଇ ପୁରୀରେ ରହିବାପାଇଁ ଅନୁମତି ପାଇଥିଲେ । ତେଣୁ ଦରଖାସ୍ତଟି ମୁକୁନ୍ଦଦେବଙ୍କପାଇଁ ସମୟୋପଯୋଗୀ ହୋଇଥିଲା ବୋଲି କୁହାଯାଇପାରେ ।

ଉକ୍ତ ଦରଖାସ୍ତରେ ମୁକୁନ୍ଦଦେବ ୧୮୦୩ରେ ହାରକୋର୍ଟଙ୍କ ପୁରୀ ଅଭିଯାନ ପୂର୍ବରୁ ଇଂରେଜଶାସକ ଗଞ୍ଜାମ ମ୍ୟାଜିଷ୍ଟ୍ରେଟ୍‌ଙ୍କ ସହିତ ତାଙ୍କର ସୁସମ୍ପର୍କ ସ୍ଥାପନଠାରୁ ଆରମ୍ଭକରି ୧୮୦୪ରେ ଇଂରେଜଙ୍କଦ୍ୱାରା ଖୋର୍ଦ୍ଧାଦୁର୍ଗ ଓ ଖୋର୍ଦ୍ଧାରାଜ୍ୟ ଅଧିକାର ପର୍ଯ୍ୟନ୍ତ ସମସ୍ତ ଘଟଣା ବର୍ଣ୍ଣନା କରିଥିବା ଦୃଷ୍ଟିରୁ ପରବର୍ତ୍ତୀ କାଳରେ ଉକ୍ତ ଦରଖାସ୍ତଟି ଏକ ଐତିହାସିକ ଦଲିଲ୍‌ର ମାନ୍ୟତା ଲାଭକରିଛି । ଦରଖାସ୍ତ ବର୍ଣ୍ଣିତ ଘଟଣାଗୁଡ଼ିକ ସମ୍ପର୍କରେ ପର୍ଯ୍ୟାୟକ୍ରମେ ସୂଚନା:

୧. ଦରଖାସ୍ତରେ ପ୍ରଥମରୁ ମୁକୁନ୍ଦଦେବ ଲେଖିଛନ୍ତି ଯେ ବ୍ରିଟିଶ ଇଷ୍ଟଇଣ୍ଡିଆ କମ୍ପାନୀଙ୍କ ଅନୁଗ୍ରହ ଲାଭ ଉଦ୍ଦେଶ୍ୟରେ ତାଙ୍କ ପୂର୍ବପୁରୁଷଙ୍କ ଅମଳରୁ ଗଞ୍ଜାମର ମ୍ୟାଜିଷ୍ଟ୍ରେଟ୍‌ଙ୍କ ସହିତ

ବନ୍ଧୁତ୍ୱପୂର୍ଣ୍ଣ ସଦ୍‌ଭାବ ଓ ସୁସମ୍ପର୍କ ରକ୍ଷାକରା ହୋଇ ଆସୁଥିଲା । ଏହାର କାରଣ ସମ୍ପର୍କରେ ମୁକୁନ୍ଦଦେବ ଦରଖାସ୍ତରେ କିଛି ସୂଚାଇ ନ ଥିଲେ ମଧ ଖୋର୍ଦ୍ଧା ରାଜ୍ୟର ତତ୍‌କାଳୀନ ରାଜନୈତିକ ପରିସ୍ଥିତି ଦୃଷ୍ଟିରୁ ଏଥିପାଇଁ ଦୁଇଟି କାରଣ ନିର୍ଦ୍ଧାରଣ କରାଯାଇପାରେ ।

ପ୍ରଥମତଃ ଇଂରେଜମାନେ ବହୁବର୍ଷ ପୂର୍ବେ ମାନ୍ଦ୍ରାଜ ଅଧିକାର କରି ଖୋର୍ଦ୍ଧାରାଜ୍ୟର ଦକ୍ଷିଣ ସୀମାକୁ ଲାଗିଥିବା ଗଞ୍ଜାମ ଜିଲ୍ଲାକୁ ମାନ୍ଦ୍ରାଜ ପ୍ରେସିଡେନ୍ସି ପରିସରଭୁକ୍ତ କରିରଖିଥିଲେ । ଇଂରେଜମାନେ ଖୁବ୍ ଶକ୍ତିଶାଳୀ ହୋଇଉଠିଥିଲେ; କେବଳ ଓଡ଼ିଶାକୁ ଛାଡ଼ି ଉତ୍ତରରେ କଲିକତାଠାରୁ ଦକ୍ଷିଣରେ ମାନ୍ଦ୍ରାଜ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ଶାସନ ବିସ୍ତାର କରିଥିଲେ ଏବଂ ଯେକୌଣସି ସମୟରେ ଉଭୟ ଦିଗରୁ ଓଡ଼ିଶାକୁ ମାଡ଼ିଆସିବାର ଆଶଙ୍କା ଥିଲା । ସେ ଦୃଷ୍ଟିରୁ ଖୋର୍ଦ୍ଧାରାଜାଙ୍କର ବ୍ରିଟିଶ ଶାସିତ ଗଞ୍ଜାମର ମ୍ୟାଜିଷ୍ଟ୍ରେଟ୍‌ଙ୍କ ସହିତ ଉତ୍ତମ ପଡ଼ୋଶୀ ସମ୍ପର୍କ ସ୍ଥାପନର ଆବଶ୍ୟକତା ଥିଲା ।

ଦ୍ୱିତୀୟତଃ, ସେତେବେଳକୁ ଓଡ଼ିଶା ମରହଟ୍ଟା ଶାସନାଧୀନ ଥିଲା ଏବଂ ମରହଟ୍ଟାଙ୍କ ସହିତ ଖୋର୍ଦ୍ଧା ରାଜାଙ୍କର ଉତ୍ତମ ସମ୍ପର୍କ ନ ଥିଲା । ମୁକୁନ୍ଦଦେବଙ୍କ ପଣଗୋସାଇଁବାପା ବୀରକେଶରୀ ଦେବଙ୍କ ରାଜତ୍ୱରେ ୧୭୬୦ ଖ୍ରୀଷ୍ଟାବ୍ଦରେ ମରହଟ୍ଟା ଶାସକ ଶିବରାମ ଭଟ୍ଟ ଶାଠେ ପାରଳା ରାଜା ନାରାୟଣ ଦେବଙ୍କ ଖୋର୍ଦ୍ଧା ଆକ୍ରମଣକୁ ପ୍ରତିହତ କରିବାରେ ବୀରକେଶରୀଦେବଙ୍କୁ ସାମରିକ ସହାୟତା ଯୋଗାଇଥିବାରୁ ଶାଠେ ତାଙ୍କ ସାମରିକ ଖର୍ଚ୍ଚ ଦାବି ଏକଲକ୍ଷ ଟଙ୍କା ବୀରକେଶରୀ ଦେବଙ୍କଠାରୁ ପାଇ ନ ପାରି ପୁରୁଷୋତ୍ତମ କ୍ଷେତ୍ର ସହିତ ୪ ଗୋଟି ପ୍ରଧାନ ମାହାଲ- ଲେମ୍ବାଇ, ସିରାଇ, ରାହାଙ୍ଗ ଓ ଚବିଶକୁଦ ପ୍ରଗଣାକୁ ଦଖଲ କରିନେଇଥିଲେ । ବୀରକେଶରୀ ଦେବ ସମ୍ଭବତଃ ଆଶାକରିଥିଲେ ଯେ ଉକ୍ତ ୪ ଗୋଟି ପ୍ରଗଣାର ଆୟ ଅମଳ କିଛିବର୍ଷ ଆଦାୟକରି ନେବାପରେ ମରହଟ୍ଟାମାନେ ପୁଣି ତାଙ୍କ ମାହାଲ ତାଙ୍କୁ ଫେରାଇଦେବେ । କିନ୍ତୁ ସେମାନେ ଆଉ ଫେରାଇଲେ ନାହିଁ । ପୁରୁଷୋତ୍ତମ କ୍ଷେତ୍ର ସହିତ ୪ ପ୍ରଗଣା ହରାଇବା ପରେ ବୀରକେଶରୀଦେବ ବର୍ଷ ପରେ ବର୍ଷ କ୍ରମାଗତଭାବେ ଦାରୁଣ ଆର୍ଥିକ ସଙ୍କଟର ସମ୍ମୁଖୀନ ହୋଇ ଶେଷକୁ ପାଗଳ ହୋଇଗଲେ ଏବଂ ନିଜର ୪ ଗୋଟି ପୁଅଙ୍କୁ ହତ୍ୟାକରିଦେଲେ । ସେହି ଅପରାଧହେତୁ ମରହଟ୍ଟା ସୁବାଦାର ରାଜାରାମ ପଣ୍ଡିତ ୧୭୭୯ ଖ୍ରୀଷ୍ଟାବ୍ଦରେ ବୀରକେଶରୀ ଦେବଙ୍କୁ ବନ୍ଦିକରି କଟକ ବାରବାଟୀ ଦୁର୍ଗ ଭିତରେ ରଖିଲେ । ୧୭୯୩ ଖ୍ରୀଷ୍ଟାବ୍ଦରେ ବୀରକେଶରୀଦେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ ତାଙ୍କ ଅଙ୍କ ଗଣା ହେଉଥିଲେ ହେଁ ତାଙ୍କର ନାତି (ଜଗନ୍ନାଥ ରାୟଙ୍କ ପୁଅ) ଦିବ୍ୟସିଂହ ଦେବ ୧୭୮୧ ଖ୍ରୀଷ୍ଟାବ୍ଦରୁ ଗାଦିନସୀନ ହୋଇ ରାଜ୍ୟ ଶାସନ କରୁଥିଲେ ।[୨୩] ଦିବ୍ୟସିଂହ ଦେବ ଅଗତ୍ୟା ମରହଟ୍ଟାମାନଙ୍କୁ ବାର୍ଷିକ

୨୩- ୩/୨୬୬

ଦଶହଜାର ଟଙ୍କା ପେସ୍‌କିସ୍ ଦେବାକୁ ଚୁକ୍ତିକରି କେବଳ ଲେମ୍ବାଇ ପ୍ରଗଣା ଫେରିପାଇଥିଲେ ହେଁ, ଏହି ପ୍ରଗଣାର ମାଲିକାନା, ସମ୍ଭବତଃ ମରହଟ୍ଟାମାନେ ବାର୍ଷିକ ଦଶହଜାର ଟଙ୍କା ପେସ୍‌କିସ୍ ପାଇବାରେ ଚୁକ୍ତି ଖିଲାପି ହେତୁ ହେଉ, ବା ଅନ୍ୟ କୌଣସି କାରଣରୁ ହେଉ, ପୁନର୍ବାର ଦିବ୍ୟସିଂହ ଦେବଙ୍କଠାରୁ ଛଡ଼ାଇ ନେଇଥିଲେ । ତେଣୁ ବୀରକେଶରୀ ଦେବଙ୍କ ଅମଳରୁ ଦିବ୍ୟସିଂହ ଦେବଙ୍କ ଅମଳ ପର୍ଯ୍ୟନ୍ତ ମରହଟ୍ଟାଙ୍କ ବିରୋଧରେ ଲାଗିରହିଥିବା ଅସନ୍ତୋଷର ମାତ୍ରା ମୁକୁନ୍ଦଦେବଙ୍କ ଅମଳକୁ ବିଶେଷ ବଢ଼ିଯାଇଥିଲା । ସେଥିପାଇଁ ସେ କୌଣସି ସମୟରେ ଇଂରେଜ (ଇଷ୍ଟ ଇଣ୍ଡିଆ କମ୍ପାନୀ)ଙ୍କ ଅନୁଗ୍ରହ ଲାଭର ସୁଯୋଗ ପାଇଲେ ଶକ୍ତିଶାଳୀ ଇଂରେଜ ଶାସକଙ୍କ ସହାୟତାରେ ମରହଟ୍ଟାଙ୍କଠାରୁ ଉପରୋକ୍ତ ୪ପ୍ରଗଣା ଫେରାଇ ଆଣିପାରିବେ ବୋଲି ମନେ ମନେ ଆଶାପୋଷଣ କରି ରହିଥିଲେ ଏବଂ ସେହି କାରଣରୁ ତାଙ୍କ ଓକିଲଙ୍କୁ ଗଞ୍ଜାମର ମ୍ୟାଜିଷ୍ଟ୍ରେଟଙ୍କ ସହିତ ସଦ୍‌ଭାବ ସ୍ଥାପନାକରି ତାଙ୍କ ପାଖେ ପାଖେ ରହିବାକୁ ନିର୍ଦ୍ଦେଶ ଦେଇଥିଲେ ।

୨. ମୁକୁନ୍ଦଦେବ ଯେତେବେଳେ ଓକିଲଙ୍କ ମାଧମରେ ଖବର ପାଇଲେ ଯେ ଇଂରେଜ ବାହିନୀ ସେନାପତି କର୍ଣ୍ଣେଲ ହାରକୋର୍ଟ ପୁରୀ ବାଟ ଦେଇ କଟକକୁ ସୈନ୍ୟ ଚଳାଇ ଯିବାକୁ ତାଙ୍କର ଅନୁମତି ଲୋଡ଼ିଛନ୍ତି ସେତେବେଳେ ସେ ଉପରୋକ୍ତ ୪ ପ୍ରଗଣା ଫେରିପାଇବା ସହ ଇଂରେଜ ସୈନ୍ୟଙ୍କୁ ପୁରୀ ବାଟଦେଇ କଟକ ଯିବାକୁ ଆବଶ୍ୟକସ୍ଥଳେ ମରହଟ୍ଟାଙ୍କ ବିପକ୍ଷରେ ସହାୟତା ପ୍ରଦାନପାଇଁ ହାରକୋର୍ଟଙ୍କଠାରୁ ଏକ ଲକ୍ଷ ଟଙ୍କା ପାଉଣା ଦାବି କରିବାକୁ ଓକିଲଙ୍କୁ ନିର୍ଦ୍ଦେଶ ଦେଇଥିଲେ ଏବଂ ହାରକୋର୍ଟ ମୁକୁନ୍ଦଦେବଙ୍କର ସେହି ଦୁଇଟିଯାକ ଦାବିର ସର୍ତ୍ତ ମାନି ନେବା ପରେ ଗଞ୍ଜାମରୁ ସମୁଦ୍ର କୂଳେ କୂଳେ ସୈନ୍ୟ ଚଳାଇ ପୁରୀକୁ ଯାଇ ସେଠୁ କଟକ ଅଭିଯାନ ଚଳାଇଥିଲେ । କାହାରି କାହାରି ମତରେ ମୁକୁନ୍ଦଦେବ ତାଙ୍କ ପ୍ରତିଶ୍ରୁତିମତେ ଇଂରେଜ ସୈନ୍ୟମାନଙ୍କୁ କଟକ ଯିବା ବାଟରେ କୌଣସି ପ୍ରକାର ସହାୟତା ପ୍ରଦାନ କରି ନ ଥିଲେ । କିନ୍ତୁ ହାରକୋର୍ଟ ଯେପରି ବିନା ବାଧାରେ ଖୋର୍ଦ୍ଧାରାଜ୍ୟ ଭିତରେ ପଶି ନିରାପଦରେ ସମୁଦ୍ର କୂଳେ କୂଳେ ଯାଇ ପୁରୀରେ ପହଞ୍ଚିପାରିଲେ ଖୋର୍ଦ୍ଧାରାଜା ଯଦି ବାଧାଦେଇଥାନ୍ତେ ଅଥବା ବାଧା ଦେବାକୁ ଚାହଥାନ୍ତେ ତା' ସମ୍ଭବପର ହୋଇପାରି ନ ଥାନ୍ତା । ପୁଣି ଚିଲିକା ମୁହାଣ ପାରିହେବାପାଇଁ ମାଲୁଦ ତାଲୁକଦାର ହାରକୋର୍ଟଙ୍କୁ ଯେପରି ସହାୟତା କଲେ ଅଥବା ମାଣିକପାଟଣାଠାରୁ ଜଗନ୍ନାଥଙ୍କ ପଣ୍ଡାମାନେ ଯେପରି ହାରକୋଟଙ୍କୁ ସମ୍ବର୍ଦ୍ଧନା କରି ପୁରୀକୁ ପାଛୋଟିନେଲେ, ରାଜା ମୁକୁନ୍ଦଦେବଙ୍କ ସଦିଚ୍ଛା ଓ ସମର୍ଥନ ବିନା ତାହା ମଧ ସମ୍ଭବପର ହୋଇ ନ ଥାଆନ୍ତା ।

୩. ହାରକୋର୍ଟ ପୁରୀରୁ କଟକ ଯିବା ବାଟରେ ଠାଏ ଠାଏ ମରହଟ୍ଟାମାନେ ତାଙ୍କୁ ଯେପରି ବାଧାଦେବାକୁ ଉଦ୍ୟମ କରିଥିଲେ ତାହା ହାରକୋର୍ଟଙ୍କ ପକ୍ଷେ ଏତେ ନଗଣ୍ୟ ଥିଲା ଯେ

ହାରକୋର୍ଟ ସେ ସବୁକୁ ଅନାୟାସରେ ଅତିକ୍ରମ କରି ଯାଇଥିଲେ ଏବଂ ସେଥିପାଇଁ ମୁକୁନ୍ଦଦେବଙ୍କଠାରୁ ସେ କୌଣସି ସହାୟତା ଲୋଡ଼ି ନ ଥିଲେ । ସେହିପରି ବାରବାଟୀ ଦୁର୍ଗକୁ ମଧ ହାରକୋର୍ଟ ଅତି ସହଜରେ ଅଧିକାର କରିଥିଲେ । ସୁତରାଂ ମରହଟ୍ଟାମାନଙ୍କ ସହିତ ସମ୍ପର୍କ ଛିନ୍ନକରିବାପାଇଁ ହାରକୋର୍ଟଙ୍କ ସର୍ତ୍ତକୁ ମୁକୁନ୍ଦଦେବ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ, ଏବଂ ତା' କରି ନ ଥିଲେ ହାରକୋର୍ଟ କଦାପି ଏତେ ନିରାପଦଭାବେ କଟକରେ ପହଞ୍ଚି ବାରବାଟୀ ଦୁର୍ଗରୁ ମରହଟ୍ଟାମାନଙ୍କୁ ତଡ଼ି ଦେଇପାରି ନ ଥାନ୍ତେ ।

୪. କିନ୍ତୁ ବାରବାଟୀ ଦୁର୍ଗ ଅଧିକାର କଲାପରେ ହାରକୋର୍ଟଙ୍କ ଆଭିମୁଖ୍ୟରେ ଅଦ୍ଭୁତ ପରିବର୍ତ୍ତନ ଘଟିଲା । ମୁକୁନ୍ଦଦେବଙ୍କ ପ୍ରତିନିଧିଭାବେ ଯେତେବେଳେ ଜୟୀ ରାଜଗୁରୁ କଟକ ଯାଇ ବାରବାଟୀ ଦୁର୍ଗରେ ହରକୋର୍ଟଙ୍କୁ ଭେଟି ପ୍ରତିଶ୍ରୁତିମତେ ଏକଲକ୍ଷ ଟଙ୍କା ସହିତ ୪ପ୍ରଗଣା ଫେରାଇଦେବାପାଇଁ ଅନୁରୋଧ କଲେ ହାରକୋର୍ଟ ଏକଲକ୍ଷରୁ ଆଂଶିକ କିଛି ଟଙ୍କା (୪୦ ହଜାର) ଦେଇ ଅବଶିଷ୍ଟ ପରେ ଦେବେ ବୋଲି କହିଲେ ଏବଂ "୪ ପ୍ରଗଣା ତ ଦୂର କଥା, ଚକାଏ ବି ଜମି ମୁକୁନ୍ଦଦେବଙ୍କୁ ଦିଆଯିବ ନାହିଁ" ବୋଲି ଧମକପୂର୍ଣ୍ଣ ଦମ୍ଭୋକ୍ତି ପ୍ରକାଶକଲେ ।

ପ୍ରଶ୍ନଉଠେ - ରାଜଗୁରୁ ଏକ ବନ୍ଧୁତାପୂର୍ଣ୍ଣ ଚୁକ୍ତି ହାସଲ ଉଦ୍ଦେଶ୍ୟରେ ଯାଇ ସାଙ୍ଗରେ କାହିଁକି ଦୁଇଶହ ପାଇକଙ୍କୁ ନେଇଥିଲେ ? ପାଇକମାନେ ବାରବାଟୀ ଦୁର୍ଗ ଆକ୍ରମଣ କରିବାକୁ ଯାଇ ନ ଥିଲେ କି ଇଂରେଜମାନଙ୍କୁ ଧମକେଇ ପ୍ରତିଶ୍ରୁତି ଆଦାୟ କରିବାକୁ ଯାଇ ନ ଥିଲେ । ଅନୁମାନ କରାଯାଏ- ଜୟୀ ରାଜଗୁରୁ ରାଜ୍ୟର ସମସ୍ତ ହାଲ୍‌ଚାଲ୍ ବୁଝୁଥିବାରୁ ବହୁଦିନରୁ ବେତନ ନ ପାଇ ହଇରାଣ ହେଉଥିବା ପାଇକମାନେ ଇଂରେଜଙ୍କଠାରୁ ଏକ ଲକ୍ଷ ଟଙ୍କା ଆଣିବାକୁ ରାଜଗୁରୁ କଟକ ଯାଉଥିବା ଖବର ପାଇ ରାଜଗୁରୁଙ୍କୁ ବେଢ଼ିଯାଇ ବାକୀ ବେତନପାଇଁ ଅନୁରୋଧ ଜଣାଇଥିଲେ ଏବଂ ରାଜଗୁରୁ କଟକରୁ ଲକ୍ଷେ ଟଙ୍କା ଆଣିବାପରେ କାଳେ ସିଏ ନିଜେ କିମ୍ବା ରାଜା ସେ ଟଙ୍କାରୁ ପାଇକମାନଙ୍କ ବାକୀ ବେତନ ନ ଦେଇ ଅନ୍ୟ ଦିଗରେ ଖର୍ଚ୍ଚକରିଦେବେ, ସେଥିପାଇଁ ପାଇକମାନେ ରାଜଗୁରୁଙ୍କ ସଙ୍ଗେ ସଙ୍ଗେ କଟକଯାଏଁ ଯାଇଥିଲେ । ରାଜା ମୁକୁନ୍ଦଦେବ ତାଙ୍କ ଦରଖାସ୍ତରେ ଲେଖିଛନ୍ତି ଯେ ହାରକୋର୍ଟ ରାଜଗୁରୁଙ୍କୁ କେତେ ଟଙ୍କା ଦେଲେ ସେ ଜାଣନ୍ତି ନାହିଁ, କିନ୍ତୁ ରାଜଗୁରୁ ସେହି ଟଙ୍କାକୁ ଆଣି ପାଇକସୈନ୍ୟମାନଙ୍କୁ ଦେଇଦେଲେ । ଏଥିରୁ ଉପରୋକ୍ତ ଅନୁମାନ ସତ୍ୟ ପ୍ରମାଣିତ ହୁଏ ।

କିନ୍ତୁ ରାଜଗୁରୁ ସେହି ଟଙ୍କାକୁ ନେଇ ମୁକୁନ୍ଦଦେବଙ୍କୁ ନ ଦେଇ ସୈନ୍ୟମାନଙ୍କୁ ବାଣ୍ଟିଦେବା ହେତୁ ହିଁ ମୁକୁନ୍ଦଦେବ ରାଜଗୁରୁଙ୍କ ଉପରେ କ୍ଷୁବ୍ଧ ହେଲେ- ଏହା ମୁକୁନ୍ଦଦେବଙ୍କ

ଦରଖାସ୍ତରୁ ପ୍ରମାଣିତ ହେଉଛି । ୧୭୯୮ରେ ନାବାଳକ ମୁକୁନ୍ଦଦେବ ଖୋର୍ଦ୍ଧା ରାଜଗାଦିରେ ବସିବାଠାରୁ ଏପର୍ଯ୍ୟନ୍ତ ଦୀର୍ଘ ସାତ ବର୍ଷ ଧରି ରାଜଗୁରୁ ହିଁ ରାଜ୍ୟ ଶାସନର ସମସ୍ତ ଦାୟିତ୍ୱ ତୁଲାଉଥିଲେ ଏବଂ ମୁକୁନ୍ଦଦେବ କେବଳ ନାମକୁମାତ୍ର ରାଜା ଥିଲେ ବୋଲି ସେ ଦରଖାସ୍ତରେ ଉଲ୍ଲେଖ କରିଛନ୍ତି । ସେ ଦୃଷ୍ଟିରୁ ରାଜଗୁରୁ ପାଇକ ସୈନ୍ୟମାନଙ୍କୁ ବେତନ ଦେବାକୁ ବାଧଥିଲେ, ତେଣୁ ଇଂରେଜ ସେନାପତିଙ୍କଠାରୁ ଯାହା ପାଇଲେ ସୈନ୍ୟମାନଙ୍କୁ ଦେଇଦେଲେ । କିନ୍ତୁ ତାଙ୍କ ପକ୍ଷେ ଉଚିତ ହୋଇଥାନ୍ତା ସେ ଯଦି ସେ ଟଙ୍କାକୁ ନେଇ ରାଜାଙ୍କୁ ଦେଇଥାନ୍ତେ ଓ ସୈନ୍ୟମାନଙ୍କ ବେତନ ଦେଇଦେବାପାଇଁ ରାଜାଙ୍କୁ ପରାମର୍ଶ ଦେଇଥାନ୍ତେ । କିନ୍ତୁ ବୋଧହୁଏ ବେତନ ନ ପାଇ ହଇରାଣ ଭୋଗୁଥିବା ସୈନ୍ୟମାନଙ୍କର ପ୍ରବଳ ଚାପହେତୁ ରାଜାଙ୍କୁ ନ ଦେଇ ଅଥବା ରାଜାଜ୍ଞାପ୍ରତି ଅପେକ୍ଷା ନ କରି ସୈନ୍ୟମାନଙ୍କୁ ଟଙ୍କା ଦେଇଦେବାକୁ ସେ ବାଧହୋଇଥିଲେ ।

୫. ରାଜା ଆଉ ରାଜଗୁରୁଙ୍କ ମଧ୍ୟରେ ଏହିପରି ମତଭେଦ ସୃଷ୍ଟିହେବା ଖବର ନିଶ୍ଚୟ ହାରକୋର୍ଟ ସାହେବ ପାଇଯାଇଥିବେ । ସେ ଏ ପରିସ୍ଥିତିର ପୂର୍ଣ୍ଣ ସୁଯୋଗ ଆଦାୟ କରିବା ଲକ୍ଷ୍ୟରେ ଗଡ଼ଜାତ ରାଜାମାନଙ୍କ ଉଦ୍ଦେଶ୍ୟରେ ପ୍ରସ୍ତୁତ ''ବଶ୍ୟତା ସ୍ୱୀକାର ଚୁକ୍ତିନାମା'' କାଗଜ ଖଣ୍ଡିକ କଟକ ସଦର କାନୁନ୍‌ଗୋଙ୍କ ହାତରେ ଖୋର୍ଦ୍ଧାରାଜାଙ୍କ ଦସ୍ତଖତପାଇଁ ପଠାଇଦେଲେ । ମରହଟ୍ଟା ଶାସକଙ୍କଦ୍ୱାରା ନିଯୁକ୍ତ ହୋଇଥିବା ଏହି ସଦର କାନୁନ୍‌ଗୋ ମହାଶୟଙ୍କ ନାମ ଥିଲା ନରେନ୍ଦ୍ର ରାୟ ମହାଶୟ ଏବଂ ଏହି ମହାଶୟ ସାଙ୍ଗିଆଧାରୀ ବଙ୍ଗାଳୀ ସଦର କାନୁନ୍‌ଗୋ ମହାଶୟଙ୍କ ପରାମର୍ଶମତେ ୧୮୦୩ ଖ୍ରୀଷ୍ଟାବ୍ଦ ଶେଷରେ ଖୋର୍ଦ୍ଧାର ପ୍ରଥମ ଶାସନକର୍ତ୍ତା ମେଜର୍ ଫ୍ଲେଚର କଲେକ୍ଟର ଗ୍ରୋଏମ୍‌ଙ୍କଦ୍ୱାରା ଖୋର୍ଦ୍ଧାରାଜ୍ୟର ପ୍ରଥମ ବର୍ଷିକିଆ ବନ୍ଦୋବସ୍ତ କରାଇଥିଲେ ବୋଲି ମ୍ୟାଡ଼କ୍ସଙ୍କ ସେଟଲ୍‌ମେଣ୍ଟର ରିପୋର୍ଟରୁ ଜଣାଯାଏ ।[୨୪] ମୁକୁନ୍ଦଦେବ ଲେଖିଛନ୍ତି– ସଦର କାନୁନ୍‌ଗୋ ଆଣିଥିବା ଚୁକ୍ତିପତ୍ରରେ ରାଜଗୁରୁଙ୍କୁ ଜଣାଇ ସେ ଦସ୍ତଖତ କରିଥିଲେ । କିନ୍ତୁ ରାଜଗୁରୁ ତା ପରେ ସୈନ୍ୟମାନଙ୍କୁ ବେତନପାଇଁ ତାଙ୍କ ପାଖକୁ ପଠାଇଦେଲେ ଏବଂ ସୈନ୍ୟମାନେ ତାଙ୍କପ୍ରତି ଜୁଲମ କରି ଦୁଇ ଦିନକାଳ ତାଙ୍କୁ ଉପବାସ ରଖାଇ ଦେଇଥିଲେ । ତା'ପରେ ମୁକୁନ୍ଦଦେବ ସୈନ୍ୟମାନଙ୍କୁ ସେ ରଖି ନ ଥିଲେ ''ଯିଏ ରଖିଥିଲେ ତାଙ୍କଠାରୁ ବେତନ ନିଅ'' ବୋଲି କହିବାରୁ ସୈନ୍ୟମାନେ ରାଜଗୁରୁଙ୍କୁ ଯାଇ ସେ କଥା କହିଲେ ଏବଂ ରାଜଗୁରୁ କୌଣସି ସୂତ୍ରରୁ ଅର୍ଥ ସଂଗ୍ରହ କରି ସୈନ୍ୟମାନଙ୍କ ବେତନ ଦେଲେ ।

୬. ତା ପରେ ଜୟୀ ରାଜଗୁରୁ ଇଂରେଜଙ୍କ ବିରୋଧରେ ବିଦ୍ରୋହକରି ଯାହାସବୁ କଲେ ସେଥିପାଇଁ ମୁକୁନ୍ଦଦେବ ରାଜଗୁରୁଙ୍କପ୍ରତି ଯେଉଁସବୁ ଦୋଷାରୋପ କରିଛନ୍ତି ସେ ସମ୍ପର୍କରେ

---

*୨୪- ୪୭/୧୬୨*

ସ୍ୱତନ୍ତ୍ର ବ୍ୟାଖ୍ୟା ପୂର୍ବ ଅଧ୍ୟାୟରେ ଦିଆଯାଇଛି । ରାଜଗୁରୁଙ୍କୁ ସହିତ ସାମୟିକ ମତଭେଦ ସତ୍ତ୍ୱେ ମୁକୁନ୍ଦଦେବ ତାଙ୍କ ଉପରୁ ଭରସା ତୁଟାଇ ନ ଥିଲେ । ଭରସା ତୁଟାଇଥିଲେ, ସେ ଖୋର୍ଦ୍ଧା ଦୁର୍ଗ ଉପରେ ଆକ୍ରମଣ ପରେ ହାରକୋର୍ଟଙ୍କ ସହିତ ସାକ୍ଷାତ ବୁଝାମଣାପାଇଁ ଅପେକ୍ଷା ନ କରି ପୂର୍ବରୁ ସଦର କାନୁନଗୋ ଆଣିଥିବା ଇଂରେଜଙ୍କ ପ୍ରତି ''ବଶ୍ୟତା ସ୍ୱୀକାର ଚୁକ୍ତିନାମା''ରେ ଦସ୍ତଖତ କରି ତାଙ୍କରି ସାଙ୍ଗରେ କଟକ ଯାଇ ହାରକୋର୍ଟଙ୍କ ସହିତ ସାକ୍ଷାତ ବୁଝାମଣା ସୂତ୍ରରେ ଜୟୀ ରାଜଗୁରୁଙ୍କୁ ଇଂରେଜଙ୍କଦ୍ୱାରା ଜବତ୍ କରିପାରିଥାନ୍ତେ ଏବଂ ନିଜେ ଜଣେ ଗଡ଼ଜାତ ରାଜାପରି ଇଂରେଜ ସରକାରଙ୍କ ବଶ୍ୟତା ସ୍ୱୀକାରପୂର୍ବକ ଖୋର୍ଦ୍ଧାକୁ କରଦ ରାଜ୍ୟରେ ପରିଣତ କରି ନିଜେ ସୁଖରେ ରହିପାରିଥାନ୍ତେ । କିନ୍ତୁ ସେ ତାହା ନ କରି ଶେଷ ସଂଗ୍ରାମଯାଏଁ ରାଜଗୁରୁଙ୍କ ଉପରେ ଭରସା ରଖିଛନ୍ତି ।

୭. ମୁକୁନ୍ଦଦେବଙ୍କ ଦରଖାସ୍ତରେ ବର୍ଣ୍ଣିତ ସର୍ବାପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ଘଟଣା ହେଉଛି କର୍ଣ୍ଣେଲ ହାରକୋର୍ଟଙ୍କ ଚୁକ୍ତିଭଙ୍ଗ ପ୍ରସଙ୍ଗ । ଇଂରେଜ ସରକାରଙ୍କ ବନ୍ଦିଶାଳାରୁ ମୁକ୍ତିପାଇବାଲାଗି ଇଂରେଜ ସରକାରଙ୍କୁ ପ୍ରାର୍ଥନାକରି ଲେଖିଥିବା ଦରଖାସ୍ତରେ ହାରକୋର୍ଟଙ୍କ ଭଳି ସର୍ବୋଚ୍ଚ ପ୍ରଭାବଶାଳୀ ଇଂରେଜ ସେନାପତିଙ୍କ ବିରୋଧରେ ରାଜା ମୁକୁନ୍ଦଦେବ ମିଥ୍ୟାଭିଯୋଗ ଆଣିବା କଦାପି ସମ୍ଭବପର ନୁହେଁ, ଏବଂ ସେ ଅଭିଯୋଗ ମିଥ୍ୟା ହୋଇଥିଲେ ମୁକୁନ୍ଦଦେବଙ୍କୁ କଦାପି ଜେଲ୍‌ଦଣ୍ଡରୁ ମୁକ୍ତି ମିଳି ନ ଥାନ୍ତା । ତେଣୁ କର୍ଣ୍ଣେଲ ହାରକୋର୍ଟ ଯେଭଳି ଅନ୍ୟାୟର ଆଶ୍ରୟ ନେଇ ମୁକୁନ୍ଦଦେବଙ୍କ ସହିତ ବିଶ୍ୱାସଘାତକତା କରି ଚୁକ୍ତି ଭଙ୍ଗକଲେ ଏବଂ ରାଜଗୁରୁଙ୍କ ଉପରେ ରାଗ ସାରିବା ଆଳରେ ଖୋର୍ଦ୍ଧା ରାଜ୍ୟକୁ ବଳ ପ୍ରୟୋଗ କରି ମୁକୁନ୍ଦଦେବଙ୍କଠାରୁ ଛଡ଼ାଇନେଲେ ତାଦ୍ୱାରା ସେ ବ୍ରିଟିଶ ଜାତିର ଛାତି ଉପରେ ଯୁଗଯୁଗପାଇଁ ଜଘନ୍ୟ ନିନ୍ଦା ଓ କଳଙ୍କର ଅଲିଭା ଦାଗ ରଖିଦେଇଗଲେ ।



# ପଞ୍ଚମ ଅଧ୍ୟାୟ

# ଓଡ଼ିଶାର ଗୌରବ ବକ୍ସି ଜଗବନ୍ଧୁ

ଜୟୀ ରାଜଗୁରୁଙ୍କ ପରେ ଆମେ ଅଭିଯୋଗ କରିଛୁ ଭାରତ ତଥା ଓଡ଼ିଶାର ୨ୟ ସ୍ୱାଧୀନତା ସଂଗ୍ରାମୀ, ଖୋର୍ଦ୍ଧା ଇତିହାସର ପ୍ରବାଦପୁରୁଷ ଏବଂ ଖୋର୍ଦ୍ଧାର ପାଇକକୁଳର ମଉଡ଼ମଣି ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ବିରୋଧରେ । ବକ୍ସି ଇଂରେଜ ସେନାପତି ହାରକୋର୍ଟଙ୍କ ପୁରୀ ଅଭିଯାନରେ ସହାୟତା ପ୍ରଦାନ କରିଥିଲେ ବୋଲି ଆମ ଇତିହାସ ପୃଷ୍ଠାରେ ଦୈବାତ୍ ଲିପିବଦ୍ଧ ହୋଇଗଲା । ଓଡ଼ିଶାର ବିଶିଷ୍ଟ ଗବେଷକ ଓ ପ୍ରତ୍ନତତ୍ତ୍ୱ ବିଶାରଦ ସ୍ୱର୍ଗତ କେଦାରନାଥ ମହାପାତ୍ର ଖୋର୍ଦ୍ଧାମାଟିର ସନ୍ତାନ, ପ୍ରବୀଣ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଐତିହାସିକଭାବେ ଓଡ଼ିଶାର ଏକ ବିରଳ ପ୍ରତିଭାର ପ୍ରତୀକ ଥିଲେ; ତା' ସତ୍ତ୍ୱେ ଇଂରେଜ ଐତିହାସିକଙ୍କ ଛାପରେ ଏପରି ଦୁର୍ଭାଗ୍ୟଜନକ ତଥ୍ୟ ତାଙ୍କ 'ଖୁରୁଧା ଇତିହାସ'ରେ ସ୍ଥାନ ପାଇଗଲା । ଏହା ଓଡ଼ିଆ ଜାତିର ଭାଗ୍ୟଦୋଷ ଏବଂ ଓଡ଼ିଶାର ସ୍ୱାଭିମାନପ୍ରତି ଏକ ଦୁଃଖଦ ବିଡ଼ମ୍ବନା କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୮୧୭ର ଖୋର୍ଦ୍ଧା ପାଇକ ବିଦ୍ରୋହର ନେତା ଥିଲେ ବକ୍ସି ଜଗବନ୍ଧୁ । ସେ ପାଇକ ବିଦ୍ରୋହ ଶକ୍ତିଶାଳୀ ଇଂରେଜ ଶାସନପ୍ରତି କିପରି ଆତଙ୍କ ସୃଷ୍ଟିକରିଥିଲା ତାହାର ସଂକ୍ଷିପ୍ତ ସୂଚନା ଦେଇ ଇଂରେଜ ଏତିହାସିକ ଟୟନବୀ ଲେଖିଛନ୍ତି - "It was not long, however, before we had to encounter a storm which burst with such sudden fury as to threaten our expulsion, if not from the whole of Orissa, at least from the territory of Khurda. This was the rebellion of the Paiks, a kind of local militia, to whom the English conquest had brought little, but ruin and oppression"[(25)] ଏହା ଥିଲା ଐତିହାସିକ ପାଇକବିଦ୍ରୋହ ସମ୍ପର୍କରେ ଇଂରେଜ ଶାସକମାନଙ୍କର ପ୍ରତ୍ୟକ୍ଷ ଅନୁଭୂତିର ସୂଚନାମାତ୍ର । କିନ୍ତୁ ଦୁର୍ଭାଗ୍ୟର କଥା, ଏ ପାଇକବିଦ୍ରୋହ ସମ୍ପର୍କରେ ଆମ ମାଦଳାପାଞ୍ଜିର ବିବରଣୀ ଅତ୍ୟନ୍ତ ନୈରାଶ୍ୟଜନକ । "xx୨୪ ଅଙ୍କ ସନ ୧୮୧୬ ମସିହାରେ ଏହାଙ୍କ (ମୁକୁନ୍ଦଦେବ-୨ଙ୍କ) ପାତ୍ର ଜଗବନ୍ଧୁ

୨୫- ୪୬/୧୧

ଭ୍ରମରବର ରାଏଙ୍କ ସକାଶ ରାଜାଙ୍କୁ ଜେନାମଣିଙ୍କି ମଧ କଟକ ବାରବାଟୀରେ ରଖାଇଥିଲେ । କାରଣ ଇଂରେଜ କର୍ମଚାରୀଙ୍କ ଶାସନ ନ ମାନି ପାଇକମାନଙ୍କୁ ସାହାଯ୍ୟ କରି ଇଂରେଜଙ୍କ ସଙ୍ଗେ ଯୁଦ୍ଧ ନ କରି ଲୁଚିକରି ଅନେକ ଲୋକ ମାରି ଖଞ୍ଜଣାଖାନା ଲୁଟି କଲେ ।''[୨୬] ଏହା ହିଁ ହେଉଛି ପାଇକ ବିଦ୍ରୋହ ଓ ତାର ନେତା ବକ୍ସି ଜଗବନ୍ଧୁଙ୍କ ସମ୍ପର୍କରେ ଆମ ମାଦଳାପାଞ୍ଜିର ମନ୍ତବ୍ୟ । ଅଧିକ ବିଡ଼ମ୍ବନାର କଥା ଏହି ଯେ, ଖୋର୍ଦ୍ଧା ରାଜ୍ୟର ସୁଯୋଗ୍ୟ ସେନାପତିଭାବେ ବକ୍ସି ଜଗବନ୍ଧୁଙ୍କ ବହୁ ବୀରତ୍ୱପୂର୍ଣ୍ଣ ଭୂମିକାର ଭୂୟସୀ ପ୍ରଶଂସା ଗାନରେ ଶତମୁଖ ହୋଇଉଠିଥିବା ''ଫିରିଙ୍ଗି କଳିଭାରତ''ର ଲେଖକ ବକ୍ସିଙ୍କ ପାଇକ ବିଦ୍ରୋହର ବର୍ଣ୍ଣନା ଗୋଟିଏ ମାତ୍ର ପଦରେ ଶେଷକରିଛନ୍ତି - ''ତହିଁ ପରେ ଜଗବନ୍ଧୁ ପାଇକ ଧରିଣ, ଫିରିଙ୍ଗି ସହିତ ଯୁଦ୍ଧ କରିଥିଲେ ପୁଣ,''- ପାଇକ ବିଦ୍ରୋହରେ ବକ୍ସିଙ୍କ ଭୂମିକା ସମ୍ପର୍କରେ ଏତିକି କହି ସେ ନୀରବ ରହିଛନ୍ତି ।[୨୭]

ଖୋର୍ଦ୍ଧାର ପାଇକ ବିଦ୍ରୋହ ଇଂରେଜ ଶାସକମାନଙ୍କ ମନରେ କିଭଳି ଆତଙ୍କ ଓ ହୃତ୍‌କମ୍ପ ସୃଷ୍ଟିକରିଥିଲା ଏବଂ ପାଇକ ବିଦ୍ରୋହର ନେତା ବକ୍ସି ଜଗବନ୍ଧୁଙ୍କର ଆତ୍ମଗୋପନ ସମୟରେ ସେମାନେ କିଭଳି ଆତଙ୍କିତ ଅବସ୍ଥାରେ ଥିଲେ, ତାହା ସେମାନଙ୍କର ସେଇ ବିଦ୍ରୋହ ପରବର୍ତ୍ତୀ ପ୍ରତିକ୍ରିୟାରୁ ହିଁ ଜାଣିହୁଏ । ସ୍ୱର୍ଗତ ସୁଧାକର ପଟ୍ଟନାୟକ ତାଙ୍କର "New Light on the Khurda Paik Rising - 1817" ଶୀର୍ଷକ ପ୍ରବନ୍ଧରେ[୨୮] - ଇଂରେଜ ସରକାର ଦୀର୍ଘ ଆଠ ବର୍ଷ କାଳ ସମସ୍ତ ଶକ୍ତି ଖଟାଇ ବକ୍ସି ଜଗବନ୍ଧୁଙ୍କୁ ଧରିବାକୁ କ୍ରମାଗତ ଅଭିଯାନ ଚଳାଇ ମଧ କିପରି ବିଫଳହୋଇଥିଲେ ଏବଂ ଶେଷକୁ ସମ୍ମାନର ସହିତ ବକ୍ସିଙ୍କୁ କଟକରେ ରଖାଇବାର ସୁବ୍ୟବସ୍ଥା କରି ମୁହଁରକ୍ଷା ଉଦ୍ଦେଶ୍ୟରେ ତାହାକୁ ସ୍ୱେଚ୍ଛାକୃତ ଆତ୍ମସମର୍ପଣ ଆଖ୍ୟା ଦେଇଥିଲେ ତାହା ବିସ୍ତୃତଭାବେ ବର୍ଣ୍ଣନା କରିଛନ୍ତି । ଓଡ଼ିଶା ରାଜ୍ୟ ଅଭିଲେଖାଗାରର ପୂର୍ବତନ କ୍ୟୁରେଟର ଶ୍ରୀ ସୁଶୀଲଚନ୍ଦ୍ର ଦେଙ୍କ ଦ୍ୱାରା ସମ୍ପାଦିତ ''ଗାଇଡ୍ ଟୁ ଓରିଶାନ୍ ରେକର୍ଡ଼ସ'' ଶୀର୍ଷକ ଇଂରାଜି ସଂକଳନର ୩ୟ ଖଣ୍ଡରେ ପାଇକବିଦ୍ରୋହ ପରବର୍ତ୍ତୀକାଳୀନ ବକ୍ସିଙ୍କ ସମ୍ପର୍କୀୟ ସମସ୍ତ ତଥ୍ୟ ଆମୂଳାନ୍ତ ପ୍ରକାଶିତ ହୋଇଛି - ଯାହାକି ତତ୍କାଳୀନ୍ ଇଂରେଜ ପ୍ରଶାସକମାନଙ୍କଦ୍ୱାରା ହିଁ ଲିପିବଦ୍ଧ କରାଯାଇଥିଲା ।

୧୮୧୭ ପାଇକ ବିଦ୍ରୋହର ସ୍ରଷ୍ଟା ଓ ନେତା ଥିଲେ ଖୋର୍ଦ୍ଧାର ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର । ସେହି କାରଣରୁ ଏହାକୁ ଖୋର୍ଦ୍ଧାର ପାଇକ ବିଦ୍ରୋହ ଆଖ୍ୟା ଦିଆଯାଇଥିଲେ ହେଁ ଏହା କେବଳ ଖୋର୍ଦ୍ଧାରେ ସୀମିତ ନ ରହି ଗଞ୍ଜାମରୁ କଟକ ପର୍ଯ୍ୟନ୍ତ ବିସ୍ତୃତ ବ୍ରିଟିଶ ଶାସିତ ଅଞ୍ଚଳକୁ ବ୍ୟାପିଯାଇଥିଲା । ଖୋର୍ଦ୍ଧା ପରି କଟକର କୁଜଙ୍ଗରେ ଏ

---

୨୬- ୪୬/୧୧    ୨୭- ୧୭/୩୫    ୨୮- ୫୨/୧୫୫

ବିଦ୍ରୋହ ମଧ୍ୟ ଅତ୍ୟନ୍ତ ବ୍ୟାପକ ହୋଇଉଠିଥିଲା । କିନ୍ତୁ ଆମର ଆଲୋଚନା କେବଳ ବିଦ୍ରୋହ ପରବର୍ତ୍ତୀ ଖୋର୍ଦ୍ଧାର ବକ୍ସି ଜଗବନ୍ଧୁ ଓ ତାଙ୍କର କେତେକ ପ୍ରଧାନ ସହଯୋଗୀଙ୍କ ସମ୍ପର୍କରେ ସୀମିତ ।

୧୮୧୭ ପାଇକ ବିଦ୍ରୋହ ସମୟରେ ଖୋର୍ଦ୍ଧାରେ ସାମରିକ ଆଇନ ଜାରି କରାଯାଇଥିଲା ।[୨୯] ୧୮୧୮ ଫେବୃଆରୀ ସୁଦ୍ଧା କେବଳ ବକ୍ସି ଜଗବନ୍ଧୁ ଓ ତାଙ୍କର କେତେକ ପ୍ରଧାନ ସହଯୋଗୀଙ୍କଦ୍ୱାରା ଏଠି ସେଠି କାଁଭାଁ ଅଶାନ୍ତି ସୃଷ୍ଟି କରାଯିବାର ପ୍ରଚେଷ୍ଟା ଲାଗିରହିଥିଲେ ହେଁ, ବିଦ୍ରୋହକୁ ସମ୍ପୂର୍ଣ୍ଣଭାବେ ଦମନ କରାଯାଇ ପାରିଥିଲା ବୋଲି ଇଂରେଜ ସରକାରଙ୍କର ହୃଦ୍‌ବୋଧ ହେବାରୁ ଖୋର୍ଦ୍ଧାରୁ ସାମରିକ ଆଇନକୁ ଉଠାଇନିଆଯାଇ ବକ୍ସି ଜଗବନ୍ଧୁ ଓ ତାଙ୍କର ସହଯୋଗୀମାନଙ୍କୁ ଧରି ଶାସ୍ତି ଦେବାପାଇଁ ପ୍ରଶାସନିକ ସ୍ତରରେ ବ୍ୟାପକ ପ୍ରସ୍ତୁତି ଚାଲିଲା ।[୩୦]

କଲିକତା ଫୋର୍ଟ ଉଇଲିୟମସ୍ଥିତ ଇଂରେଜ ସରକାରଙ୍କ ମୁଖ୍ୟ ଦପ୍ତରରୁ ଚିଫ୍ ସେକ୍ରେଟେରୀ ଡବ୍ଲିଉ.ବି. ବେଲିଙ୍କର କଟକ କମିଶନରଙ୍କ ସଚିବ ମି. ଏ.ଷ୍ଟାର୍ଲିଂଙ୍କୁ ୨୮.୪.୧୮୧୮ ତାରିଖର ପତ୍ର ମୁତାବକ ମି. ଆର୍.କେରଙ୍କୁ ବ୍ୟାପକ କ୍ଷମତା ପ୍ରଦାନ ସହିତ କଟକରେ କମିଶନରଭାବେ ନିଯୁକ୍ତି ଦିଆଗଲା ଏବଂ କମିଶନରଙ୍କୁ ସବୁମନ୍ତେ ସାମରିକ ସହାୟତା ଯୋଗାଇଦେବାକୁ କଟକର ସାମରିକ କମାଣ୍ଡିଙ୍ଗ ଅଫିସରଙ୍କୁ ନିର୍ଦ୍ଦେଶ ଦିଆଗଲା । ଡବ୍ଲିଉ.ଉଇଲ୍‌କିନ୍‌ସନ୍‌ଙ୍କୁ ଖୋର୍ଦ୍ଧା ଓ ବାଣପୁର ଥାନା ଦାୟିତ୍ୱରେ ଏବଂ ମି. ଫରେଷ୍ଟର୍‌ଙ୍କୁ ପିପିଲି, ଗୋପ, ହରିଶପୁର ଓ ତିରନ୍ ଥାନା ଦାୟିତ୍ୱରେ ଜଏଣ୍ଟ ମାଜିଷ୍ଟ୍ରେଟଭାବେ କମିଶନର ନିଯୁକ୍ତ କଲେ[୩୧] ବୋଲି ମି. ଏ ଷ୍ଟାର୍ଲିଂ ୨୭.୪.୧୮୧୮ ତାରିଖରେ ଚିଫ୍ ସେକ୍ରେଟେରୀଙ୍କୁ ଜଣାଇଦେଇଥିଲେ । କିନ୍ତୁ ମି.ଆର୍.କେର୍ ୧୦-୬-୧୮୧୮ ତାରିଖରେ ଦାୟିତ୍ୱ ଗ୍ରହଣ କରିବାରେ ଖୋର୍ଦ୍ଧା ଓ ପିପିଲିଥାନାକୁ ଅଧିକ ଉପଦ୍ରୁତ ଅଞ୍ଚଳ ବୋଲି ମନେକରି ମି. ଫରେଷ୍ଟର୍‌ଙ୍କୁ କେବଳ ପିପିଲି ଥାନା ଦାୟିତ୍ୱ ସହିତ ଖୋର୍ଦ୍ଧା ଥାନା ଦାୟିତ୍ୱରେ ଉଇଲକିନ୍‌ସନ୍‌ଙ୍କୁ ସହଯୋଗ କରିବାପାଇଁ ନିର୍ଦ୍ଦେଶ ଦେଲେ ଏବଂ ପୁରୀ ଓ ଗୋପ ଥାନା ସହିତ କଟକର ହରିଶପୁର ଓ ତିରନ୍ ଥାନା ଦାୟିତ୍ୱରେ ଡବ୍ଲିଉ.ଏଚ.ଏଲ.ମୌଲଭୀଲଙ୍କୁ କଟକରେ ଜଏଣ୍ଟ ମ୍ୟାଜିଷ୍ଟ୍ରେଟଭାବେ ନିଯୁକ୍ତ କଲେ । (ମି. କେରଙ୍କର, ବ୍ରିଗେଡ଼ିୟର ଥୋମାସ୍‌ଙ୍କୁ ୩୦.୭.୧୮୧୮ର ଚିଠି) ।[୩୨] ବୋଲଗଡ଼ରେ ଜଣେ ଅସ୍ଥାୟୀ କମାଣ୍ଡିଙ୍ଗ ଅଫିସରଙ୍କୁ ଅବସ୍ଥାପିତ କରାଯାଇ ସମ୍ବଲପୁରରେ ଅବସ୍ଥାପିତ କମାଣ୍ଡିଙ୍ଗ ଅଫିସର୍ ମେଜର ରଫସେଜଙ୍କୁ ମଧ୍ୟ ଗଡ଼ଜାତ ଇଲାକାରେ ବକ୍ସିଙ୍କ ସନ୍ଧାନ ନେବାକୁ ଓ ଆବଶ୍ୟକସ୍ଥଳେ ସାମରିକ କାର୍ଯ୍ୟାନୁଷ୍ଠାନ କରିବାକୁ ନିର୍ଦ୍ଦେଶ ଦିଆଯାଇଥିଲା

---

୨୯- ୫୭/୨୦ ୩୦- ୫୭/୩୦ ୩୧- ୫୭/୩୦ ୩୨- ୫୭/୩୧

ବୋଲି ପରବର୍ତ୍ତୀ ଘଟଣା ପ୍ରବାହରୁ ଜଣାପଡ଼େ । ବାଣପୁରରେ ଲେଫ୍ଟନ୍ୟାଣ୍ଟ ଜି.ବି.ବେଲ୍ ସାମରିକ କମାଣ୍ଡିଙ୍ଗ ଅଫିସରଭାବେ ଅବସ୍ଥାପିତ ହେଲେ ।

ଦୃଢ଼ ପ୍ରଶାସନିକ ଓ ସାମରିକ ପ୍ରସ୍ତୁତି ପରେ ବକ୍ସି ଏବଂ ତାଙ୍କର ସହଯୋଗୀ ବିଦ୍ରୋହୀମାନଙ୍କୁ ଧରି ଶାସ୍ତିଦେବା ଉଦ୍ଦେଶ୍ୟରେ ବ୍ରିଟିଶ ସରକାରଙ୍କ ପକ୍ଷରୁ ମୁଖ୍ୟତଃ ନିମ୍ନୋକ୍ତ ପନ୍ଥାମାନ ଗ୍ରହଣ କରାଯାଇଥିଲା ।

(୧) ବିଦ୍ରୋହ ଓ ବିଦ୍ରୋହୀଙ୍କ ସମ୍ପର୍କରେ ଗୁପ୍ତତଥ୍ୟ ସଂଗ୍ରହ ଉଦ୍ଦେଶ୍ୟରେ ଉତ୍କୋଚ ବା ପୁରସ୍କାର ମାଧ୍ୟମରେ ବିଶ୍ୱାସଘାତକତାପାଇଁ ପ୍ରୋତ୍ସାହନ ।

(୨) ବିଦ୍ରୋହୀମାନଙ୍କୁ ଧରାଇଦେବାପାଇଁ, ଧରାଇବାରେ ସହାୟତା କରିବାପାଇଁ ଲୋଭନୀୟ ପୁରସ୍କାର ଘୋଷଣା ।

(୩) ବିଦ୍ରୋହୀଙ୍କୁ କୌଣସି ପ୍ରକାର ପ୍ରଶ୍ରୟ ନ ଦେବାପାଇଁ ଏବଂ ଧରିବା ଲକ୍ଷ୍ୟରେ ସରକାରଙ୍କ ସାମରିକ କାର୍ଯ୍ୟାନୁଷ୍ଠାନରେ ସହଯୋଗ କରିବାପାଇଁ ରାଜା ଜମିଦାରମାନଙ୍କ ଉପରେ ଚାପପ୍ରୟୋଗ ।

(୪) ବକ୍ସି, ଦେବାନ୍ ଏବଂ କେତେକ ପ୍ରମୁଖ ବିଦ୍ରୋହୀନେତାଙ୍କ ବ୍ୟତୀତ ଅନ୍ୟ ଆତ୍ମଗୋପନକାରୀ ବିଦ୍ରୋହୀମାନେ ଆପେ ଆପେ ଆତ୍ମସମର୍ପଣ କଲେ ସେମାନଙ୍କୁ କ୍ଷମା ପ୍ରଦାନ ସହିତ ନିଜ ନିଜ ଜାଗିରି ଫେରାଇ ଦିଆଯିବବୋଲି ଘୋଷଣା ।

(୫) ବକ୍ସିଙ୍କୁ ଧରିବାପାଇଁ ସ୍ୱତନ୍ତ୍ର ସାମରିକ କାର୍ଯ୍ୟାନୁଷ୍ଠାନ, ଜଙ୍ଗଲରେ ଘେରାଉ, ଖାଦ୍ୟ ଯୋଗାଣ ନିଷେଧ, ପରିବାରବର୍ଗଙ୍କୁ କାରାଦଣ୍ଡ, ସମ୍ପତ୍ତି ବାଜ୍ୟାପ୍ତି ଇତ୍ୟାଦି ।

ବ୍ରିଟିଶ ସରକାରଙ୍କ କର୍ମକର୍ତ୍ତାମାନଙ୍କର ଚିଠିପତ୍ର ଆଦାନପ୍ରଦାନର ତାରିଖ କ୍ରମରେ ଉପରୋକ୍ତ କାର୍ଯ୍ୟପନ୍ଥା ଗ୍ରହଣ ସମ୍ପର୍କିତ ବିବରଣୀ ସଂକ୍ଷେପରେ ପ୍ରଦାନ କରାଗଲା :-

| | |
|---|---|
| **<u>ତା୨୧।୭।୧୮୧୮</u>**<br>**ଆକ୍ଟିଙ୍ଗ ଚିଫ୍ ସେକ୍ରେଟେରୀ ଡବ୍ଲିଉ.ବି.ବୈଲେଙ୍କର କଟକର କମିଶନରଙ୍କୁ ପତ୍ର** | ୧୮୧୭ ପାଇକ ବିଦ୍ରୋହ ସମୟରେ ଟାଙ୍ଗି ଓ ବାଣପୁର ଅଞ୍ଚଳରେ ସୁଦର୍ଶନ ନରେନ୍ଦ୍ର ଦଳବେହେରା ଓ ସନାତନ ପଟ୍ଟନାୟକ ନାମରେ ଦୁଇ ଜଣ ବ୍ୟକ୍ତି ସରକାରଙ୍କୁ 'ମୂଲ୍ୟବାନ୍ ସହାୟତା' ପ୍ରଦାନ କରିଥିବାରୁ ପ୍ରତ୍ୟେକଙ୍କୁ ୧୦୦ଟଙ୍କା ପୁରସ୍କାର ପ୍ରଦାନ କରାଗଲା ।[୩୩] |

୩୩- ୫୭/୩୧

**ତା ୨୯।୮।୧୮୧୮**
**ବାଣପୁରସ୍ଥ କମାଣ୍ଡିଙ୍ଗ ଅଫିସର ଲେଫ୍ଟନ୍ୟାଣ୍ଟ ଜି.ବି.ବେଲଙ୍କ ପତ୍ର ଖୋର୍ଦ୍ଧା ଜଏଣ୍ଟ ମ୍ୟାଜିଷ୍ଟ୍ରେଟ୍‌ଙ୍କୁ**

ପ୍ରମୁଖ ବିଦ୍ରୋହୀ ନେତା ରଥୀ ସାମନ୍ତ ସିଂହାର ଓ ତାଙ୍କର ତିନି ଜଣ ସହଯୋଗୀ ବିଦ୍ରୋହୀ- ବିଶ୍ୱେଶ୍ୱର ପାଇକରା, ପରମାନନ୍ଦ ଓ ସତ୍ୟବାଦୀ ଧରାହେଲେ ।[୩୪]

**ତା ୯।୯।୧୮୧୮**
**ଖୋର୍ଦ୍ଧାର ଜଏଣ୍ଟ ମ୍ୟାଜିଷ୍ଟ୍ରେଟ ଫରେଷ୍ଟରଙ୍କର କଟକ କମିଶନର କେର୍‌ଙ୍କୁ ଦୀର୍ଘ ରିପୋର୍ଟ ଓ ସୁପାରିସ ପତ୍ର**[୩୫]

ଖୋର୍ଦ୍ଧାର ପାଇକ ଏବଂ ଦଳାଇ, ଦଳବେହେରା ଓ ସରବରାକାରମାନଙ୍କ ଜାଗିରି ଉଚ୍ଛେଦ କରାଯିବା ଫଳରେ ସେମାନେ ଦାରିଦ୍ର୍ୟର ତାଡ଼ନାରେ ଘରଦ୍ୱାର ଛାଡ଼ି ଜଙ୍ଗଲକୁ ପଳାଉଛନ୍ତି । ଖୋର୍ଦ୍ଧାରେ ବିଦ୍ରୋହ ଜନିତ ଅଶାନ୍ତି ଲାଗିରହିଛି । ବାଣପୁର ଅଞ୍ଚଳରେ ଘୁମୁସରର ପାଣ ଓ କନ୍ଧମାନଙ୍କର ଉତ୍ପାତ ଓ ଉପଦ୍ରବ ମଧ୍ୟ ଲାଗିରହିଛି । ବନ୍ୟାବିଧ୍ୱସ୍ତ ପିପିଲି ଅଞ୍ଚଳରେ ପାଇକମାନଙ୍କ ଦୁଃଖଦୁର୍ଦ୍ଦଶା ବେଳକୁବେଳ ବଢ଼ିଚାଲିଛି । ତେଣୁ ଯେଉଁ ବିଦ୍ରୋହୀମାନେ ଆପେ ଆପେ ଆସି ଧରାଦେଉଛନ୍ତି ଏବଂ ଧରାଦେବେ ସେମାନଙ୍କୁ କ୍ଷମା ଦେଇ ଛାଡ଼ି ଦେବା ସହିତ ପାଇକ, ଦଳାଇ ଦଳବେହେରା ଓ ସରବରାକାରମାନଙ୍କ ଜାଗିରିବୃତ୍ତି ଫେରାଇ ଦେବାକୁ ସୁପାରିସ କରାଗଲା । ବକ୍ସି ଜଗବନ୍ଧୁ ମଧ୍ୟ ଆପେ ଆପେ ଧରାଦେଲେ ତାଙ୍କୁ କ୍ଷମାଦିଆଯାଇପାରେ । କିନ୍ତୁ ସେ ଧରାଦେବାରେ ଯଥେଷ୍ଟ ସନ୍ଦେହ ଅଛି ।

**ତା ୨୬।୯।୧୮୧୮**
**ବୌଦରେ ଅବସ୍ଥାପିତ କମାଣ୍ଡିଙ୍ଗ ଅଫିସରଙ୍କର କମିଶନର କେର୍‌ଙ୍କୁ ପତ୍ର**

ବକ୍ସି ଜଗବନ୍ଧୁ ବୌଦ-ଦଶପଲ୍ଲା ଅଞ୍ଚଳରେ ରହିଥିବାର ଗୁପ୍ତ ଖବର ପାଇ ସମ୍ବଲପୁରସ୍ଥ କମାଣ୍ଡିଙ୍ଗ ଅଫିସର ମେଜର ରଫସେଜ ବୌଦ ରାଜାଙ୍କୁ ଭେଟି ବକ୍ସିଙ୍କୁ ଧରିବାପାଇଁ ଉଦ୍ଦିଷ୍ଟ ସାମରିକ କାର୍ଯ୍ୟାନୁଷ୍ଠାନରେ ସହାୟତା କରିବାକୁ କହିଲେ ଏବଂ ବୌଦରାଜା ସେଥିରେ ରାଜିହେଲେ । ତା ପରେ ମେଜର ରଫସେଜ୍ ଆଉ ଜଣେ କମାଣ୍ଡିଙ୍ଗ ଅଫିସରଙ୍କ ସହିତ ଏକ ସଶସ୍ତ୍ର ସୈନ୍ୟଦଳଙ୍କୁ ୨-୯-୧୮୧୮ତାରିଖରେ ବୌଦକୁ ପଠାଇଲେ । କିନ୍ତୁ ସୈନ୍ୟମାନେ ବକ୍ସିଙ୍କୁ ଘେରାଉ କରିବା ପୂର୍ବରୁ ବକ୍ସି ସେ ଅଞ୍ଚଳରୁ ଖସିଗଲେ, ଯାହା ଫଳରେ ବୌଦ କମାଣ୍ଡିଙ୍ଗ ଅଫିସରଙ୍କ ସାମରିକ ଅଭିଯାନ ବିଫଳହେଲା ।[୩୬]

**ତା ୩୦।୯।୧୮୧୮**
**ଫରେଷ୍ଟରଙ୍କର କମିଶନରଙ୍କୁ ଆଉ ଏକ ପତ୍ର**

ପାଇକ ବିଦ୍ରୋହର ଅନ୍ୟତମ ପ୍ରମୁଖ ନେତା ପିଣ୍ଡିକ ବାହୁବଳେନ୍ଦ୍ରଙ୍କୁ ଧରିବାପାଇଁ ଏକ ସଶସ୍ତ୍ର ଅଭିଯାନ କରାଯାଇଥିଲା । କିନ୍ତୁ ଏହି ଅଭିଯାନ ଫଳରେ ପିଣ୍ଡିକ

---

୩୪- ୫୭/୩୨ ୩୫ - ୫୭/୩୨ ୩୬- ୫୭/୩୨

ବାହୁବଳେନ୍ଦ୍ରଙ୍କ ତିନି ଜଣ ପ୍ରଧାନ ସହଯୋଗୀ ସାଧୁଚରଣ ମଙ୍ଗରାଜ, ବିଷ୍ଣୁ ପାଇକରା ଏବଂ ଧ୍ରୁବ ଜେନା ଧରାପଡ଼ିଥିଲେ ମଧ ପିଣ୍ଡିକ ଖସିଗଲେ । ଆପେ ଆପେ ଆତ୍ମସମର୍ପଣ କରିଥିବା ମଧୁ ମହାନ୍ତି ଓ ବିଷ୍ଣୁ ମହାନ୍ତି ପିଣ୍ଡିକଙ୍କ ସହଯୋଗୀମାନଙ୍କୁ ଧରାଇବାରେ ବିଶେଷ ସହାୟତା କରିଥିବାରୁ ସେ ଦୁହିଁଙ୍କୁ ସର୍ବକ୍ଷମା ପ୍ରଦାନ ସହିତ ଉଚିତ ପୁରସ୍କାର ପ୍ରଦାନପାଇଁ ଏବଂ ପିଣ୍ଡିକ ବାହୁବଳେନ୍ଦ୍ରଙ୍କୁ ଧରାଇଦେବାପାଇଁ ଟ୧୦୦୦/- ପୁରସ୍କାର ଘୋଷଣା ନିମନ୍ତେ ସୁପାରିସ କରାଗଲା ।[୩୭]

**ତା୫।୧୦।୧୮୧୮**
**କମିଶନରଙ୍କ ସଚିବ ଏ.ଷ୍ଟାର୍ଲିଂଙ୍କର କଟକ, ଜଜ୍ ଏବଂ ମ୍ୟାଜିଷ୍ଟ୍ରେଟ, ଏମ୍.ଏଚ.ଟର୍ନବୁଲ୍‌ଙ୍କୁ ପତ୍ର**

ବୌଦ ଅଞ୍ଚଳରେ ଧରାପଡ଼ିଥିବା ବକ୍ସି ଜଗବନ୍ଧୁଙ୍କର କେତେଜଣ ଅନୁଗାମୀଙ୍କ କହିବାମତେ ବକ୍ସି ବୌଦ ଘୁମୁସର ସୀମାନ୍ତ ଅଞ୍ଚଳରେ କେତେଦିନ ଧରି ରହିଛନ୍ତି ।

ଏହା ଜଣାପଡ଼ିବାପରେ ବକ୍ସି ଜଗବନ୍ଧୁଙ୍କୁ ଘେରାଉକରି ଧରିବାପାଇଁ ବହୁ ସ୍ଥାନରେ ପୋଲିସବାହିନୀ ଓ ସୈନ୍ୟବାହିନୀଙ୍କୁ ମୁତୟନ କରାଗଲା । କଟକରୁ ଅଧିକ ପୋଲିସ ଓ ସୈନ୍ୟଙ୍କୁ ଅଣାଗଲା । ଏହି ଅଭିଯାନରେ ଏତେ ବ୍ୟାପକ ପରିମାଣରେ ପୋଲିସ୍ ଫୌଜ, ସୈନ୍ୟବାହିନୀ ଏବଂ ପ୍ରଶାସନିକ ଅଫିସରମାନଙ୍କୁ ବିଭିନ୍ନ ସ୍ଥାନରେ ମୁତୟନ କରାଗଲା ଏବଂ ସେଥିନିମନ୍ତେ ବ୍ରିଟିଶ ସରକାରଙ୍କୁ ଏପରି ଆର୍ଥିକ, ସାମରିକ ଓ ପ୍ରଶାସନିକ ଶକ୍ତିକ୍ଷୟର ବୋଝ ମୁଣ୍ଡାଇବାକୁ ପଡ଼ିଲା ଯେ କୌଣସିମତେ ବକ୍ସି ଜଗବନ୍ଧୁଙ୍କୁ ଧରି ଶାସ୍ତିଦେବେ, କିମ୍ବା ତା' କରି ନ ପାରିଲେ, ତାଙ୍କୁ ସର୍ବକ୍ଷମା ପ୍ରଦାନସହ ମାସିକ ଭତ୍ତା ଦେଇ ଥଇଥାନ କରାଇବା ସର୍ତ୍ତରେ ଆତ୍ମସମର୍ପଣ କରିବାକୁ ରାଜିକରାଇ ତାଙ୍କ ସହିତ ବ୍ରିଟିଶ ସରକାରଙ୍କର ଏ ପ୍ରକାର ଦୁଃସ୍ଥିତିପୂର୍ଣ୍ଣ ଦୌଡ଼ାଦୌଡ଼ି ଖେଳର ପରିସମାପ୍ତି ଘଟାଇବେ - ସେଥିପାଇଁ ଚିନ୍ତିତ ହୋଇପଡ଼ିଲେ ।[୩୮]

**ତା୭।୧୦।୧୮୧୮**
**କମିଶନରଙ୍କ ସଚିବ ଷ୍ଟାର୍ଲିଂଙ୍କର ମ୍ୟାଜିଷ୍ଟ୍ରେଟ ମେଲ୍‌ଭିଲ୍‌ଙ୍କୁ ପତ୍ର**

ରୋଡ଼ଙ୍ଗକିଲ୍ଲାର ଭୁଗୁନିଦାସ ବକ୍ସି ଜଗବନ୍ଧୁଙ୍କୁ ଗୋପନରେ ନେଇ ଖାଦ୍ୟଦ୍ରବ୍ୟାଦି ଯୋଗାଇ ଦେଉଥିଲା ବୋଲି ଖବର ମିଳିବାରୁ ଭୁଗୁନିଦାସ ଆଉ ଯେପରି ତା' ନ କରେ ସେପାଇଁ ତାକୁ କଡ଼ା ସତର୍କ କରିଦିଆଗଲା ଏବଂ ବକ୍ସି ଜଗବନ୍ଧୁ ଯେପରି ଆଉ କୌଣସି ଆଡୁ କିଛି ଖାଦ୍ୟ ଦ୍ରବ୍ୟାଦି ପାଇ ନ ପାରିବେ ସେଥିପାଇଁ ଦୃଢ଼ କଟକଣା ଜାରିକରାଗଲା ।[୩୯]

---

୩୭- ୫୭/୩୩ ୩୮- ୫୭/୩୩ ୩୯- ୫୭/୩୪

**ତା୨୩।୧୦।୧୮୧୮**
**ଚିଫ୍ ସେକ୍ରେଟେରୀ**
**ଡବ୍ଲିଉ ବୈଲେଙ୍କର**
**କମିଶନରଙ୍କୁ ପତ୍ର**

ବକ୍ସି ଜଗବନ୍ଧୁଙ୍କୁ ଯେକୌଣସିମତେ ଜଙ୍ଗଲରେ ଘେରାଉକରି ଧରିବାର ଆଶା କ୍ରମଶଃ କ୍ଷୀଣରୁ କ୍ଷୀଣତର ହୋଇଆସୁଛି । ତେଣୁ ଜଗବନ୍ଧୁଙ୍କୁ ମାସିକ ଭତ୍ତା ପ୍ରଦାନ ଓ କଲିକତା ପ୍ରେସିଡେନ୍ସି ଭିତରେ କୌଣସିଠାରେ ଥଇଥାନ ସର୍ତ୍ତରେ ସର୍ବକ୍ଷମା ପ୍ରଦାନ ଭଳି ବିକଳ୍ପ ପ୍ରସ୍ତାବ ଉପରେ କମିଶନର ନିଜର ମତାମତ ଜଣାନ୍ତୁ । କମିଶନର ଏ ପ୍ରସ୍ତାବ ଉପରେ ଜଏଣ୍ଟ ମ୍ୟାଜିଷ୍ଟ୍ରେଟ ଉଇଲିଅମ୍ ଫରେଷ୍ଟର୍ ଓ ବ୍ରିଗେଡ଼ିଅର୍ ଥୋମାସ୍‌ଙ୍କ ମତାମତ ଲୋଡ଼ିଲେ ।[୪୦]

**ତା୨୬।୧୦।୧୮୧୮**
**ସମ୍ବଲପୁରସ୍ଥ କମ୍ୟାଣ୍ଡିଙ୍ଗ**
**ଅଫିସର ମେଜର**
**ରଫସେଜ୍‌ଙ୍କର କମିଶନର**
**ରବର୍ଟ କେର୍‌ଙ୍କୁ ପତ୍ର**

ମେଜର ରଫ୍‌ସେଜ୍ ବୌଦ ରାଜାଙ୍କ ସହଯୋଗରେ ବକ୍ସି ଜଗବନ୍ଧୁଙ୍କୁ ଧରିବାପାଇଁ ବ୍ୟାପକ ସାମରିକ ଅଭିଯାନ ଚଳାଇ ବିଫଳ ହେବା ପରେ ଏକ ଗୁପ୍ତ ଖବର ପାଇଲେ ଯେ ବକ୍ସି ଜଗବନ୍ଧୁଙ୍କର ଆତ୍ମଗୋପନସ୍ଥାନ ସମ୍ପର୍କରେ ଘୁମୁସର ରାଜା ଅବଗତ ଅଛନ୍ତି । ତେଣୁ ରଫସେଜ୍ ତୁରନ୍ତ ଘୁମୁସର ରାଜାଙ୍କ ସହାୟତା ଲୋଡ଼ିଲେ ଏବଂ ତାଙ୍କ ସହାୟତାରେ ବକ୍ସିଙ୍କୁ ଧରିବାପାଇଁ ଆଉ ଏକ ବ୍ୟାପକ ସାମରିକ ଅଭିଯାନ ଚଳାଇଲେ । ଏ ଅଭିଯାନରେ ତାଙ୍କୁ ସହାୟତା କରିବାପାଇଁ ଘୁମୁସର ରାଜାଙ୍କ ପରାମର୍ଶକ୍ରମେ ସେ ଘୁମୁସରର ପ୍ରଭାବଶାଳୀ ବ୍ୟକ୍ତି ଶାମ ବିଶୋଇ ଓ ଆଉ ଜଣେ ପ୍ରଭାବଶାଳୀ କନ୍ଧଜମିଦାରଙ୍କୁ ନିଯୁକ୍ତକଲେ । ଏଥର ମେଜର ରଫସେଜ୍ ବକ୍ସିଙ୍କୁ ଧରିବାରେ ନିଶ୍ଚୟ ସଫଳ ହେବେ ବୋଲି ତାଙ୍କର ଦୃଢ଼ ଆଶା ସଦର୍ପ କମିଶନରଙ୍କୁ ଜଣାଇଦେଲେ । କିନ୍ତୁ ତାଙ୍କର ସମସ୍ତ ଆଶା ଓ ଉଦ୍ୟମ ବିଫଳ ହେଲା ।[୪୧]

**ତା ୬।୧୧।୧୮୧୮**
**ଚିଫ୍‌ସେକ୍ରେଟେରୀ**
**ବୈଲେଙ୍କର କମିଶନର**
**ରବର୍ଟ କେର୍‌ଙ୍କୁ ପତ୍ର**

ପିଣ୍ଡିକ ବାହୁବଳେନ୍ଦ୍ରଙ୍କୁ ଧରାଇଦେବାପାଇଁ ଟ୧୦୦୦/ ପୁରସ୍କାର ଘୋଷଣା ପ୍ରସ୍ତାବ ମଞ୍ଜୁର କରାଗଲା । ତାଙ୍କର ସହଯୋଗୀ ତିନି ଜଣଙ୍କୁ ଧରାଇଦେବାରେ ବିଷ୍ଣୁ ମହାନ୍ତି ଓ ନିଧି ମହାନ୍ତି ସହାୟତା କରିଥିବାରୁ ତାଙ୍କୁ ସର୍ବକ୍ଷମା ପ୍ରସ୍ତାବ ମଞ୍ଜୁର କରାଯାଇ ପ୍ରତ୍ୟେକଙ୍କୁ ଟ୨୫୦/- ପୁରସ୍କାର ଦେବାପାଇଁ ନିର୍ଦ୍ଦେଶ ହେଲା । ଜଗବନ୍ଧୁଙ୍କୁ ଗୁପ୍ତ ସମ୍ବାଦ ଯୋଗାଉଥିବା ଅପରାଧରେ ଧରାପଡ଼ିଥିବା ମରହଟ୍ଟା ସୈନ୍ୟ ଭୂପବରଣ ସିଂଙ୍କୁ ମଧ କ୍ଷମାଦେଶହେଲା।[୪୨]

---

*୪୦- ୫୭/୩୪ ୪୧- ୫୭/୩୩ ୪୨- ୫୭/୩୪*

**ତା୮।୧୧।୧୮୧୮**
**କଟକର କମ୍ୟାଣ୍ଡିଙ୍ଗ ଅଫିସର ବ୍ରିଗେଡ଼ିୟର୍ ଏଲ.ଥୋମାସଙ୍କର କମିଶନର କେର୍‌ଙ୍କୁ ପତ୍ର**

ଅନ୍ୟତମ ବିଦ୍ରୋହୀନେତା ଦୀନବନ୍ଧୁ ସାନ୍ତରା କ୍ୟାପ୍ଟେନ୍ ୱାଟନ୍‌ଙ୍କ ନିକଟରେ ଆତ୍ମସମର୍ପଣ କରି କ୍ଷମା ଭିକ୍ଷା କରିଛନ୍ତି । ତେଣୁ ତାଙ୍କୁ କ୍ଷମା ଦେବା ସମ୍ପର୍କରେ କମିଶନର ତାଙ୍କ ମତାମତ ଜଣାନ୍ତୁ ।[୪୩]

**ତା୧୦।୧୨।୧୮୧୮**
**ସଦରନିଜାମତ୍ ଅଦାଲତ ରେଜିଷ୍ଟ୍ରାର ଡବ୍ଲିଉ.ଡୋରିନ୍‌ଙ୍କ ମ୍ୟାଜିଷ୍ଟ୍ରେଟ ମେଲଭିଲଙ୍କୁ ପତ୍ର**

ଏ ପର୍ଯ୍ୟନ୍ତ ଯେଉଁ ବିଦ୍ରୋହୀମାନେ ଧରାପଡ଼ି ବିଚାରାଧୀନ ଥିଲେ ସେମାନଙ୍କ ମଧ୍ୟରୁ ୧୧୨ଜଣଙ୍କୁ ଦୋଷୀ ସାବ୍ୟସ୍ତ କରାଗଲା । ସେ ୧୧୨ଜଣଙ୍କ ମଧ୍ୟରୁ ନଅ ଜଣଙ୍କୁ ୧୪ବର୍ଷ ସଶ୍ରମ ଓ ରାଜ୍ୟ ବାହାରେ ନିର୍ବାସନ କାରାଦଣ୍ଡ ଏବଂ ଅନ୍ୟ ୧୦୩ ଜଣଙ୍କୁ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡାଦେଶ ହେଲା ।[୪୪]

**ତା୨୧।୧୨।୧୮୧୮**
**ସଦରନିଜାମତ୍ ଅଦାଲତ ଆଦେଶ**

କୁଜଙ୍ଗ ପାଇକଙ୍କର ପ୍ରଖ୍ୟାତ ବିଦ୍ରୋହୀ ନେତା ନାରାୟଣ ପରମଗୁରୁ ଏବଂ ବାମଦେବ ପଟ୍ଟଯୋଷୀଙ୍କୁ କଠିନ ପରିଶ୍ରମ ସହ ଯାବଜ୍ଜୀବନ ରାଜ୍ୟ ବାହାରେ ଆଲିପୁର ଜେଲରେ ନିର୍ବାସନ କାରାଦଣ୍ଡାଦେଶ ହେଲା ।

**ତା୧୪।୧୨।୧୮୧୮**
**କମିଶନର ରବର୍ଟକେରଙ୍କ ଚିଫ୍‌ସେକ୍ରେଟେରୀ ଡବ୍ଲିଉ. ବି.ବୈଲେଙ୍କୁ ପତ୍ର**

ଏକ ସମୟରେ କେବଳ ପୋଲିସ ଓ ସାମରିକ ଅଫିସର ମାନଙ୍କ ବୟାନ କ୍ରମେ ରାଜଦ୍ରୋହ ଅଭିଯୋଗରେ ବହୁ ନିରୀହ ଲୋକଙ୍କ ଉପରେ ଅକଥନୀୟ ଦମନଲୀଳା ଓ ଧରପଗଡ଼ ଚଳାଇ ବକ୍ସି ଜଗବନ୍ଧୁ ଓ ତାଙ୍କର ସହକର୍ମୀମାନଙ୍କୁ ଧରିବାପାଇଁ ଦୃଢ଼ ସାମରିକ ଅଭିଯାନ ଜାରିରଖିଥିବାବେଳେ ବକ୍ସି ଜଗବନ୍ଧୁଙ୍କୁ ସର୍ତ୍ତମୂଳକ କ୍ଷମା ପ୍ରଦାନପାଇଁ ମଧ ସରକାରୀ କର୍ମକର୍ତ୍ତାମାନଙ୍କ ମନ୍ତ୍ରଣା ଚାଲିଥିଲା । ବକ୍ସି ଜଗବନ୍ଧୁ ଓ ଦେବାନ କୃଷ୍ଣଚନ୍ଦ୍ରଙ୍କୁ ଧରାଇଦେବାପାଇଁ ଯଥାକ୍ରମେ ଟ୫୦୦୦/- ଓ ଟ୧୦୦୦/- ପୁରସ୍କାର ଘୋଷଣା କରାଯାଇଥିଲା । ବକ୍ସି ମାସିକ ଟ୩୦୦/- ଭତ୍ତାସହ କଲିକତା କିମ୍ବା କଲିକତା ନିକଟବର୍ତ୍ତୀ କୌଣସି ସ୍ଥାନରେ ରହିବା ସର୍ତ୍ତରେ ତାଙ୍କୁ କ୍ଷମା ପ୍ରଦାନ କରିବାପାଇଁ ଏବଂ ତାଙ୍କର ପ୍ରମୁଖ ସହଯୋଗୀ ପିଣ୍ଡିକ ବାହୁବଳେନ୍ଦ୍ର, ଗୋପାଳ ଛୋଟରା ଏବଂ ପଦ୍ମନାଭ ଛୋଟରା - ପ୍ରତ୍ୟେକଙ୍କୁ ଧରାଇଦେବାପାଇଁ ଟ୧୦୦୦/-ପୁରସ୍କାର ଘୋଷଣା କରି ସେମାନଙ୍କ ବ୍ୟତୀତ ଅନ୍ୟ ପାଇକମାନଙ୍କୁ, ପାଇକଙ୍କ ମୁଖିଆମାନଙ୍କୁ ଏବଂ ଦଳାଇ ଓ ଦଳବେହେରାମାନଙ୍କୁ ନିଃସର୍ତ୍ତ କ୍ଷମା ପ୍ରଦାନପାଇଁ କମିଶନର ପ୍ରସ୍ତାବ କଲେ ।

---

*୪୩- ୫୭/୩୪ ୪୪- ୫୭/୩୪*

ସେ ପୁଣି ଜଣାଇଲେ ଯେ, ବକ୍ସି ଜଗବନ୍ଧୁଙ୍କର ପ୍ରମୁଖ ସହଯୋଗୀ ବିଦ୍ରୋହୀମାନଙ୍କ ମଧ୍ୟରୁ ଉପେନ୍ଦ୍ର ଜଗଦ୍ଦେବ, ଦୀନବନ୍ଧୁ ସାନ୍ତରା, ଅନ୍ତର୍ଯାମୀ ପାହାଡ଼ସିଂହ, ଧରମୁ ହରିଚନ୍ଦନ, ରାମଚନ୍ଦ୍ର ସାମନ୍ତସିଂହାର ଏବଂ ଆଦିକନ୍ଦ ବିଦ୍ୟାଧର ଆତ୍ମସମର୍ପଣ କରିଛନ୍ତି, ଲୋକନାଥ ବଳିଆର ସିଂହ ମଧ୍ୟ ଖୁବ୍ ଶୀଘ୍ର ଆତ୍ମସମର୍ପଣ କରିବାର ଅଛି । ଦାମ ସୁବୁଦ୍ଧି, କରୁଣାକର ପରମଗୁରୁ ଓ ହରି ମାନସିଂହଙ୍କୁ ପୋଲିସ ଧରିବାକୁ ସକ୍ଷମ ହୋଇଛି ଏବଂ ଭଗବାନ ସିଂହ ମୃତ୍ୟୁବରଣ କରିଛନ୍ତି ।(୪୫)

**ତା।୨୮।୧୨।୧୮୧୮ ବ୍ରିଗେଡ଼ିୟର୍ ଥୋମାସ୍‌ଙ୍କର କମିଶନର କେର୍‌ଙ୍କୁ ପତ୍ର** ବ୍ରିଟିଶ ସରକାରଙ୍କର ବିରୋଧରେ ବକ୍ସି ଜଗବନ୍ଧୁ ମରହଟ୍ଟାଙ୍କ ସହିତ ଷଡ଼ଯନ୍ତ୍ର ଚଳାଇଥିଲେ ବୋଲି ବକ୍ସିଙ୍କ ବିରୋଧରେ ପୋଲିସକୁ ଖବର ଦେଇଥିବା ଚରଣ ପଟ୍ଟନାୟକଙ୍କୁ ସ୍ପଷ୍ଟ ଦିବାଲୋକରେ ବିଦ୍ରୋହୀମାନେ ସମସ୍ତ ଗ୍ରାମବାସୀଙ୍କ ସମ୍ମୁଖରେ ହତ୍ୟା କରିଥିବାବେଳେ କେହି ଜଣେହେଲେ ଗ୍ରାମବାସୀ ଚରଣଙ୍କୁ ରକ୍ଷାକରିବାକୁ ଆଗେଇ ଆସି ନ ଥିବାରୁ ଉକ୍ତ ହତ୍ୟାକାଣ୍ଡପାଇଁ ସମସ୍ତ ଗ୍ରାମବାସୀଙ୍କୁ ଦାୟୀକରାଯାଉବୋଲି ବ୍ରିଗେଡ଼ିୟର୍ ଥୋମାସ୍ ସୁପାରିସ କରିଥିଲେ ।(୪୬)

**ତା।୧୫।୧।୧୮୧୯ ସମ୍ବଲପୁରର କମ୍ୟାଣ୍ଡିଙ୍ଗ ଅଫିସର ମେଜର୍ ରଫସେଜଙ୍କର କମିଶନର କେର୍‌ଙ୍କୁ ପତ୍ର** ଘୁମସରର ରାଜା, ମୁଖିଆ ଶାମ ବିଶୋଇ, କନ୍ଧ ଜମିଦାରଙ୍କ ସହାୟତାକ୍ରମେ ମେଜର୍ ରଫସେଜ୍ ଦୀର୍ଘ ଅଢ଼େଇମାସ କାଳ ବକ୍ସି ଜଗବନ୍ଧୁଙ୍କୁ ଧରିବାପାଇଁ ଦୃଢ଼ ସାମରିକ ଅଭିଯାନ ସହ ସଦର୍ପ ଉଦ୍ୟମ ଚଳାଇବା ସତ୍ତ୍ୱେ ବକ୍ସି ଧରା ନ ପଡ଼ି ଖସିଗଲେ । ରଫ୍‌ସେଜ୍ ଏହି ଚରମ ବିଫଳତାପାଇଁ ଦୁଃଖ ପ୍ରକାଶକରି କମିଶନରଙ୍କୁ ହତାଶ ବାର୍ତ୍ତା ଦେଲେ ।(୪୭)

**ତା।୫।୨।୧୮୧୯ ଚିଫ୍ ସେକ୍ରେଟେରୀ ବୈଲେଙ୍କର କମିଶନର କେର୍‌ଙ୍କୁ ପତ୍ର** ଜଏଣ୍ଟ ମ୍ୟାଜିଷ୍ଟ୍ରେଟ ଫରେଷ୍ଟର୍‌ଙ୍କର ୯।୯।୧୮୧୮ ତାରିଖର ପ୍ରସ୍ତାବ ଉପରେ କମିଶନରଙ୍କ ସୁପାରିସ ଭିତ୍ତିରେ ଗଭର୍ଣ୍ଣର ଜେନେରାଲ ପିଣ୍ଡିକ ବାହୁବଳେନ୍ଦ୍ର, ପଦ୍ମନାଭ ଛୋଟରା, ପୀତବାସ ମଙ୍ଗରାଜ ଏବଂ କରୁଣାକର ପରମଗୁରୁଙ୍କ ବ୍ୟତୀତ ଅନ୍ୟ ଯେଉଁ ବିଦ୍ରୋହୀ ପାଇକ, ପାଇକ ମୁଖିଆ, ଦଳାଇ ଓ ଦଳବେହେରାମାନେ ଦୁଇ ମାସ ମଧ୍ୟରେ ଜଙ୍ଗଲରୁ ନିଜ ନିଜ ଘରକୁ ଫେରିଆସି ଜଏଣ୍ଟ ମ୍ୟାଜିଷ୍ଟ୍ରେଟଙ୍କ ପାଖେ ଆତ୍ମସମର୍ପଣ କରିବେ ସେମାନଙ୍କୁ ସମ୍ପୂର୍ଣ୍ଣ ନିଃସର୍ତ୍ତ କ୍ଷମା ପ୍ରଦାନପାଇଁ ଆଦେଶକଲେ, କିନ୍ତୁ ଗଭର୍ଣ୍ଣର ଜେନେରାଲ ବକ୍ସି ଜଗବନ୍ଧୁଙ୍କୁ ସର୍ତ୍ତମୂଳକ କ୍ଷମାପ୍ରଦାନପାଇଁ କମିଶନରଙ୍କ ସୁପାରିସକୁ ପ୍ରତ୍ୟାଖ୍ୟାନ କରିଦେଲେ । କାରଣ ଦର୍ଶାଇଲେ ଯେ ପାଇକ ଓ ଦଳାଇ ଦଳବେହେରାମାନଙ୍କୁ ସରକାର ନିଃସର୍ତ୍ତ କ୍ଷମା ପ୍ରଦାନକଲେ ସେମାନେ ଆଉ

---

୪୫- ୫୭/୩୫ ୪୬- ୫୭/୩୫ ୪୭- ୫୭/୩୬

ବକ୍ସିଙ୍କ ପ୍ରତି ଆନୁଗତ୍ୟ ନ ରଖି ସରକାରଙ୍କ ପ୍ରତି ଆନୁଗତ୍ୟ ରଖିବେ । ତେଣୁ ବକ୍ସିଙ୍କର ନେତାପଣିଆ ମୂଲ୍ୟହୀନ ହୋଇଯିବ ଏବଂ ତାଙ୍କର ପ୍ରଭାବ ଓ ଲୋକପ୍ରିୟତା ଆପେ ଆପେ ଲୋପପାଇଯିବ । ସେହି ଆଦେଶରେ ବିଦ୍ରୋହୀ ପଦ୍ମନାଭ ଛୋଟରା ଓ ପୀତବାସ ମଙ୍ଗରାଜଙ୍କୁ ଧରାଇଦେବାପାଇଁ ଯଥାକ୍ରମେ ଟ୧୦୦୦/- ଓ ଟ୩୦୦/- ପୁରସ୍କାର ଘୋଷଣାକରାଗଲା ।[୪୮]

**<u>ତା୪।୩।୧୮୧୯</u>**
**ନିଜାମତ ଅଦାଲତର ରେଜିଷ୍ଟ୍ରାରଙ୍କ ଠାରୁ କଟକର ଜଜ ଓ ମ୍ୟାଜିଷ୍ଟ୍ରେଟଙ୍କୁ ପତ୍ର**

୨୫ଜଣ ବିଦ୍ରୋହୀ କଏଦୀଙ୍କୁ ମେଦିନୀପୁର ଜେଲରେ **ସଦର** ଏବଂ ୪୦ଜଣଙ୍କୁ ଆଲିପୁର ଜେଲରେ ରହିବାପାଇଁ ଯାବଜ୍ଜୀବନ ଦେଶାନ୍ତର କାରାଦଣ୍ଡାଦେଶ ହେଲା ।[୪୯]

**<u>ତା୬।୪।୧୮୧୯</u>**
**ଜଜ୍ ଓ ମ୍ୟାଜିଷ୍ଟ୍ରେଟ ଟର୍ଣ୍ଣବୁଲଙ୍କର ଫରେଷ୍ଟରଙ୍କୁ ପତ୍ର**

ସମ୍ବଲପୁରର ରାଣୀଙ୍କ ଦେୱାନ୍ ସଦାଶିବ ରାୟଙ୍କ ହତ୍ୟା-ଅପରାଧରେ ପର୍ଶୁରାମ ରାଉତରାଙ୍କୁ ପ୍ରାଣଦଣ୍ଡାଦେଶ ହେଲା ।[୫୦]

**<u>ତା୧୮।୪।୧୮୧୯</u>**
**ଟର୍ଣ୍ଣବୁଲଙ୍କର ଫରେଷ୍ଟରଙ୍କୁ ପତ୍ର**

ଚରଣ ପଟ୍ଟନାୟକ ହତ୍ୟା ଅପରାଧରେ ସଚ୍ଚିଦାନନ୍ଦ ପଟ୍ଟନାୟକଙ୍କୁ ପ୍ରାଣଦଣ୍ଡାଦେଶ ହେଲା ।[୫୧]

**<u>ତା୧୦।୪।୧୮୧୯</u>**
**ଖୋର୍ଦ୍ଧାର ଜଏଣ୍ଟ ମ୍ୟାଜିଷ୍ଟ୍ରେଟ ଫରେଷ୍ଟରଙ୍କର ଗଞ୍ଜାମର ମ୍ୟାଜିଷ୍ଟ୍ରେଟଙ୍କୁ ପତ୍ର**

ଘୁମସର ଓ ଖଲ୍ଲିକୋଟ ଅଞ୍ଚଳର କେତେକ ପାଣ ଓ କନ୍ଧ ବାଣପୁର ସୀମାନ୍ତ ଅଞ୍ଚଳବର୍ତ୍ତୀ ଗ୍ରାମମାନଙ୍କ ଉପରେ ବାରମ୍ବାର ଚଢ଼ାଉକରି ଲୁଟତରାଜ, ଗୃହଦାହ ଇତ୍ୟାଦି ଘଟାଇଛନ୍ତି ଏବଂ ସେହି ଗ୍ରାମମାନଙ୍କରୁ ୧୫୦ ଗୃହପାଳିତ ପଶୁ ଅପହରଣ କରିନେଇଛନ୍ତି । ତେଣୁ ଗଞ୍ଜାମ ପ୍ରଶାସନ ସେମାନଙ୍କ ବିରୋଧରେ ଜରୁରୀ ପଦକ୍ଷେପ ନେବା ଦରକାର ।[୫୨]

**<u>ତା ୯।୬।୧୮୧୯</u>**
**ଫରେଷ୍ଟରଙ୍କର ଗଞ୍ଜାମ ମ୍ୟାଜିଷ୍ଟ୍ରେଟଙ୍କୁ ଆଉ ଏକ ପତ୍ର**

ବକ୍ସି ଜଗବନ୍ଧୁଙ୍କ ପ୍ରରୋଚନାରେ ଘୁମସର ଓ ଖଲିକୋଟର ପାଣ, କନ୍ଧମାନେ ଏପରି ଉପଦ୍ରବ ଘଟାଇଥିବାର ଖବର ପାଇ ଏବଂ ଏକ ନିର୍ଦ୍ଦିଷ୍ଟ ଦିନରେ ବାଣପୁର ନିକଟବର୍ତ୍ତୀ ଘୁମସରର ଆଙ୍କୋଲା ଗ୍ରାମରେ ବକ୍ସି ରହିଥିବା ଜାଣିପାରି ଉକ୍ତ ଆଙ୍କୋଲା ଗ୍ରାମକୁ ସେହିଦିନ ଅଚାନକଭାବେ ପୋଲିସ୍ ଘେରାଉ କରିଥିଲେ । କିନ୍ତୁ ତା'ସତ୍ତ୍ୱେ ବକ୍ସି ଜଗବନ୍ଧୁଙ୍କୁ ଧରିବାକୁ ପୋଲିସ ସକ୍ଷମ ହୋଇପାରିଲେ ନାହିଁ, ବକ୍ସି ପୋଲିସ୍ ଆଖିରେ ଧୂଳି ଦେଇ

---

୪୮- ୫୬/୩୬ ୪୯- ୫୬/୩୬ ୫୦- ୫୬/୩୮
୫୧- ୫୬/୩୮ ୫୨- ୫୬/୩୬

ଖସିଗଲେ । ସେହି ପତ୍ରରେ ଫରେଷ୍ଟର୍ ଗଞ୍ଜାମ ମ୍ୟାଜେଷ୍ଟ୍ରଟଙ୍କୁ ଅନୁରୋଧ କଲେ ଯେ ବକ୍ସିଙ୍କୁ ଧରାଇଦେବାପାଇଁ ସେ ଘୁମୁସର ରାଜାଙ୍କୁ ପ୍ରବର୍ତ୍ତାନ୍ତୁ ।[୫୩]

**ତା ୧୨।୭।୧୮୧୯**
**କଟକର କମ୍ୟାଣ୍ଡିଙ୍ଗ ଅଫିସର ବ୍ରିଗେଡ଼ିୟର ଥୋମାସ୍‌ଙ୍କୁ କମିଶନରଙ୍କ ପତ୍ର**

ବକ୍ସି ଜଗବନ୍ଧୁ ଖୋର୍ଦ୍ଧା ନିକଟ ପାନବରଜରେ ଥିବାର କୌଣସି ସୂତ୍ରରୁ ଗୁପ୍ତ ଖବର ପାଇ ବ୍ରିଗେଡ଼ିଅର୍ ଥୋମାସ୍ ଖୋର୍ଦ୍ଧାର ବିଭିନ୍ନ ସ୍ଥାନରୁ ପାନବରଜର ଚାରିଆଡ଼ୁ ଅତର୍କିତ ଭାବେ ସୈନ୍ୟ ଚାଳନା କରି ପାନବରଜ ଗ୍ରାମ ଉପରେ ଚଢ଼ାଉକଲେ । କିନ୍ତୁ ବକ୍ସି ଜଗବନ୍ଧୁ ତାଙ୍କର ଗଣ୍ଠିଲି ପତ୍ରସହ ସହକର୍ମୀଙ୍କୁ ଛାଡ଼ି ଆଶ୍ଚର୍ଯ୍ୟଜନକଭାବେ ଖସିଗଲେ । ଜଗନ୍ନାଥ ରାୟ ନାମକ ଧରାପଡ଼ିଥିବା ତାଙ୍କର ଜଣେ ଅନୁଗାମୀ କହିଲେ ଯେ ବକ୍ସି ବଉଦ ଅଞ୍ଚଳକୁ ଚାଲିଯିବେ । ତାଙ୍କର ଗଣ୍ଠିଲି ସହ କେତେଜଣ ଅନୁଗାମୀ ଧରାପଡ଼ିଥିବାରୁ ଏହି ଚଢ଼ାଉରେ ବ୍ରିଗେଡ଼ିୟର୍ ଥୋମାସ୍‌ଙ୍କର ଆଂଶିକ ସଫଳତାପାଇଁ କମିଶନର୍ ୧୨।୭।୧୮୧୯ ତାରିଖରେ ତାଙ୍କୁ ସାଧୁବାଦ ଜଣାଇଲେ ।[୫୪]

**ତା ୯।୭।୧୮୧୯**
**ଫରେଷ୍ଟରଙ୍କର କମିଶନ୍‌ର କେର୍‌ଙ୍କୁ ପତ୍ର**

ବକ୍ସିଙ୍କ ପ୍ରରୋଚନାକ୍ରମେ ଘୁମୁସରର ଶିବ ନାଏକଙ୍କ ନେତୃତ୍ୱରେ କନ୍ଧ ଓ ପାଣମାନେ ବାଣପୁର ସୀମାନ୍ତ ଅଞ୍ଚଳରେ ଉପଦ୍ରବ ଘଟାଇଛନ୍ତି ବୋଲି ଖବର ମିଳିଛି । ତେଣୁ ଶିବ ନାଏକଙ୍କୁ ଧରାଇଦେବାପାଇଁ ଟ୩୦୦/- ଓ ତାର ୧୧ ଜଣ ଅନୁଗାମୀ ପ୍ରତ୍ୟେକଙ୍କୁ ଧରାଇବାପାଇଁ ଟ୧୦୦/- ଲେଖାଏଁ ପୁରସ୍କାର ଘୋଷଣା କରାଯାଉ ।[୫୫]

**ତା ୨୫।୭।୧୮୧୯**
**ବୋଲଗଡ଼ର କମ୍ୟାଣ୍ଡିଙ୍ଗ ଅଫିସରଙ୍କର କଟକସ୍ଥ ଜଜ୍ ଓ ମ୍ୟାଜିଷ୍ଟ୍ରେଟ୍ ଟର୍ନବୁଲଙ୍କୁ ପତ୍ର**

ପାନବରଜ ଚଢ଼ାଉବେଳେ ବକ୍ସିଙ୍କର ଯେଉଁ ଗଣ୍ଠିଲି ଜବତ ହୋଇଥିଲା ତା' ଭିତରେ ଥିବା ପ୍ରାୟ ୧ ଫୁଟ ଲମ୍ବ ଅଧଫୁଟ ଓସାର ଓ ୩ ଇଞ୍ଚ ଉଚ୍ଚତା ବିଶିଷ୍ଟ ଏକ ଧୂସର ରଙ୍ଗର ବାକ୍ସ ଉକ୍ତ ଗଣ୍ଠିଲି ଭିତରୁ ଆଶ୍ଚର୍ଯ୍ୟଜନକ ଭାବେ ଉଭାନ୍ ହୋଇଯାଇଛି । ବାଣପୁରରେ ଧରାହୋଇ ଅଟକଥିବା ବକ୍ସି ଜଗବନ୍ଧୁଙ୍କର ଜଣେ ଭୃତ୍ୟର ବୟାନ ଅନୁଯାୟୀ ଉଭାନ୍ ହୋଇଯାଇଥିବା ବକ୍ସିଙ୍କ ବାକ୍ସ ଭିତରେ ପ୍ରାୟ ୧୦୦୦ଟଙ୍କା ମୂଲ୍ୟର ନିମ୍ନୋକ୍ତ ଜିନିଷମାନ ଥିଲା:- ୧ ଗୋଟି ମୁକ୍ତାଖଚିତ ସ୍ୱର୍ଣ୍ଣହାର, ୧ଗୋଟି ମୁକ୍ତାଖଚିତ ସୂକ୍ଷ୍ମତାରକସି ସ୍ୱର୍ଣ୍ଣହାର, ୧ ଗୋଟି ମୁକ୍ତାଖଚିତ ସ୍ୱର୍ଣ୍ଣମୁଦ୍ରିକା, ୨ଗୋଟି ମୁକ୍ତାଖଚିତ ସ୍ୱର୍ଣ୍ଣକର୍ଣ୍ଣାଭରଣ, ୨ଗୋଟି ମୁକ୍ତାଖଚିତ ସୁବର୍ଣ୍ଣର ମଣିବନ୍ଧାଭରଣ, ୧୦୦ଗୋଟି ସିକାମୋହର (ଏହା ମୁଦ୍ରାଭାବେ ୧୭୭୩ରେ ଇଷ୍ଟଇଣ୍ଡିଆ କମ୍ପାନୀ ଦ୍ୱାରା ପ୍ରଚଳିତ ହୋଇଥିଲା) ଏବଂ ୧୦୦ ଗୋଟି କାମ୍ପାନୀ ଟଙ୍କା[୫୬]

---

୫୩- ୫୭/୩୭ ୫୪- ୫୭/APP.XL ୫୫- ୫୭/୩୬ ୫୬- ୫୭/APP.XLI

**ତା ୨୯।୧୦।୧୮୧୯ ବ୍ରିଗେଡ଼ିୟର ଥୋମାସଙ୍କର କମିଶନରଙ୍କୁ ପତ୍ର** ଏହା ମଧରେ ବକ୍ସି ଜଗବନ୍ଧୁ ଘୁମୁସର ମାଳ ଅଞ୍ଚଳରେ ଥିବା ଖବର ପାଇ ପୁଣି ଥରେ ଉକ୍ତ ଅଞ୍ଚଳ ଉପରେ ତନାଘନା ଚଢ଼ାଉ କରାଯାଇଥିଲା । ବକ୍ସି ଜଗବନ୍ଧୁଙ୍କ ପରିବାରବର୍ଗ ଧରାପଡ଼ିଲେ, କିନ୍ତୁ ସେ ନିଜେ ଖସିଗଲେ ।[୫୭]

**ତା ୩୦।୧୨।୧୮୧୯ ଜଏଣ୍ଟ ମ୍ୟାଜିଷ୍ଟ୍ରେଟ ଫରେଷ୍ଟରଙ୍କର ଥାକ୍ସିଂ କମିଶନର ଜେ. ପ୍ୟାକେନ୍‌ହାମଙ୍କୁ ପତ୍ର** ରାଜଦ୍ରୋହ ଅପରାଧରେ ଧରାପଡ଼ି ପ୍ରାଣଦଣ୍ଡ ପାଇଥିବା ଗୋପାଳ ଛୋଟରାଙ୍କୁ ଧରିଥିବାରୁ ଖୋର୍ଦ୍ଧା ଦାରୋଗା ଶିବପ୍ରସାଦ ରାୟଙ୍କୁ ୧୦୦୦ଟଙ୍କା ପୁରସ୍କାର ଦିଆଗଲା, ଯେହେତୁ ତାଙ୍କୁ ଧରାଇଦେବାପାଇଁ ଆଗରୁ ୧୦୦୦ଟଙ୍କା ପୁରସ୍କାର ଘୋଷଣା କରାଯାଇଥିଲା । ସେହିପରି ପଦ୍ମନାଭ ଛୋଟରାଙ୍କୁ ଧରାଇଦେବାପାଇଁ ମଧ ୧୦୦୦ଟଙ୍କା ପୁରସ୍କାର ଘୋଷଣା କରାଯାଇଥିଲା ଏବଂ ତାଙ୍କୁ ଧରାଇ ଦେଇଥିବାହେତୁ ରାମ ମହାପାତ୍ରଙ୍କୁ ୫୦୦ଟଙ୍କା, ଭରତ ମହାନ୍ତିଙ୍କୁ ୧୦୦ ଟଙ୍କା, ଜଗବନ୍ଧୁ ମଙ୍ଗରାଜଙ୍କୁ ୧୦୦ଟଙ୍କା, ନବୀନ ବାହୁବଳୀନ୍ଦ୍ରଙ୍କୁ ୧୦୦ଟଙ୍କା, ସେର୍ ଖାଁଙ୍କୁ ୧୦୦ ଟଙ୍କା ଏବଂ ଧୁନୁ ପ୍ରଧାନଙ୍କୁ ୧୦୦ ଟଙ୍କା ପୁରସ୍କାର ବଣ୍ଟାଗଲା ।[୫୮]

ଏହିପରି ଭାବରେ ଇଂରେଜ ସରକାରଙ୍କର ବହୁବିଧ କୂଟକୌଶଳ, ସାମରିକ ଅଭିଯାନ ଓ ପ୍ରଶାସନିକ କ୍ଷମତା ପ୍ରୟୋଗ ସତ୍ତ୍ୱେ ୧୮୧୮ ଓ ୧୮୧୯ ଦୁଇଟି ସଂଘର୍ଷପୂର୍ଣ୍ଣ ବର୍ଷ ଚରମ ବ୍ୟର୍ଥତା ଭିତରେ କଟିଗଲା । ବକ୍ସି ଜଗବନ୍ଧୁଙ୍କୁ ଧରି ଶାସ୍ତିଦେବାର କଳ୍ପନା ବ୍ରିଟିଶ ପ୍ରଶାସକମାନଙ୍କ କଳ୍ପନାରେ ହିଁ ରହିଗଲା ।

୧୮୨୦ ଓ ୧୮୨୧ ଦୁଇ ବର୍ଷ ମଧରେ ବି ବ୍ୟାପକ ଉଦ୍ୟମ ଓ ଅଭିଯାନ ସତ୍ତ୍ୱେ ଇଂରେଜ ସରକାର ବକ୍ସି ଜଗବନ୍ଧୁଙ୍କୁ ଧରିପାରିଲେ ନାହିଁ । ବକ୍ସିଙ୍କର ଅନ୍ୟତମ ପ୍ରଧାନ ସହଯୋଗୀ ପୀତବାସ ମଙ୍ଗରାଜଙ୍କୁ ଧରାଇଦେବାପାଇଁ ପୂର୍ବଘୋଷିତ ପୁରସ୍କାର ୩୦୦ଟଙ୍କାରୁ ୧୦୦୦ଟଙ୍କାକୁ ବୃଦ୍ଧିକଲେ ।[୫୯]

ବକ୍ସି ଜଗବନ୍ଧୁଙ୍କ ପରିବାରବର୍ଗଙ୍କୁ କଟକ ବାରବାଟୀ ଦୁର୍ଗରେ ଅଟକବନ୍ଦିଭାବେ ରଖାଯାଇଥିଲା । ପରିବାରରେ ଥିଲେ ବକ୍ସିଙ୍କ ୧ମ ସ୍ତ୍ରୀ ରାଧାମଣି ଜେମାଦେଈ, ୨ୟା ସ୍ତ୍ରୀ ଚତୁରାମଣି ଜେମାଦେଈ, ପୁଅ ଗୋପୀନାଥ ବିଦ୍ୟାଧର, ପୋଷ୍ୟପୁତ୍ର ଶ୍ୟାମସୁନ୍ଦର ରାୟ, ପୋଷ୍ୟ କନ୍ୟା ପଦ୍ମାଦେଈ, ଝିଆରୀ (ଭାଇଙ୍କ ଝିଅ) ଉପର୍ଣ୍ଣା ଦେଈ ଓ ଭାଇଙ୍କ ରକ୍ଷିତା ସ୍ତ୍ରୀ ଗୁରୁବାରୀ- ସର୍ବମୋଟ ସାତ ଜଣ ।[୫୯] ସେମାନଙ୍କପାଇଁ ସରକାର ବାରବାଟୀ ଦୁର୍ଗ ରହଣି ସମୟରେ ମାସିକ ଖର୍ଚ୍ଚ ୫୦ଟଙ୍କା ଦେଉଥଲେ । ସେମାନଙ୍କପ୍ରତି ଉପଯୁକ୍ତ ସମ୍ମାନ

---

୫୭- ୫୭/୩୮ ୫୮- ୫୭/୩୮ ୫୯- ୫୭/୩୮

ଓ ସାରଲ୍ୟ ପ୍ରଦର୍ଶନ କରିବାକୁ ଏବଂ କୌଣସି ପ୍ରକାର ଅସମ୍ମାନ, ଅସୌଜନ୍ୟ ଓ ଅବହେଳା ପ୍ରଦର୍ଶନ ନ କରିବାକୁ ଖୋଦ୍ ଗଭର୍ଣ୍ଣର ଜେନେରାଲଙ୍କର ନିର୍ଦ୍ଦେଶ ୨୫।୭।୧୮୨୦ ତାରିଖରେ ଚିଫ୍ ସେକ୍ରେଟେରୀ କମିଶନର ଉଇଲିଅମ୍ ବ୍ଲଣ୍ଟଙ୍କୁ ଜଣାଇଦେଲେ ।[୬୦] ଗଭର୍ଣ୍ଣର ଜେନେରାଲଙ୍କର ଯେତେବେଳେ ହୃଦ୍‌ବୋଧ ହେଲା ଯେ ପରିବାରବର୍ଗଙ୍କୁ ବର୍ଷବର୍ଷଧରି ଅଟକ ରଖିବା ସତ୍ତ୍ୱେ ବି ବକ୍ସି ଜଗବନ୍ଧୁଙ୍କ ମୁଣ୍ଡ ନଇଁଲା ନାହିଁ କି ନଇଁବ ନାହିଁ, ସେତେବେଳେ ଆଉ ଅଧିକ କାଳ ତାଙ୍କ ପରିବାରଙ୍କୁ ଅଟକ ରଖିବା ନିରର୍ଥକ ମନେକଲେ ଏବଂ ସେମାନଙ୍କୁ ଛାଡ଼ିଦେବାକୁ ନିର୍ଦ୍ଦେଶ ଦେଲେ ସେହି ବର୍ଷ ନଭେମ୍ବର ମାସରେ ବକ୍ସିଙ୍କ ପରିବାରବର୍ଗଙ୍କୁ ସସମ୍ମାନ ବାରବାଟୀ ଦୁର୍ଗରୁ ବିଦାୟଦିଆଗଲା ବୋଲି ଉଇଲ୍‌କିନ୍‌ସନ୍ ସାହେବ କମିଶନରଙ୍କ ସେକ୍ରେଟାରୀ ଷ୍ଟାର୍ଲିଂଙ୍କୁ ଜଣାଇଦେଲେ (୨୦।୧୧।୧୮୨୦ ତାରିଖ ପତ୍ରରେ)[୬୧]। ୨୧।୨।୧୮୨୧ ତାରିଖରେ ଉଇଲକିନ୍‌ସନ୍ ଆକ୍ଟିଙ୍ଗ କମିଶନର ପ୍ୟାକେନ୍‌ହାମ୍‌ଙ୍କୁ ଲେଖି ଜଣାଇଲେ ଯେ ସକଳପ୍ରକାର ସତର୍କତାମୂଳକ ପଦକ୍ଷେପ ଓ ସାମରିକ ଅଭିଯାନ ସତ୍ତ୍ୱେ ଘୁମସରର ପାଣ ଓ କନ୍ଧମାନେ ବାରମ୍ବାର ବାଣପୁର ଅଞ୍ଚଳରେ ଉପଦ୍ରବ କରୁଛନ୍ତି ଏବଂ ଏହା ନିଶ୍ଚିତଭାବେ ବକ୍ସି ଜଗବନ୍ଧୁଙ୍କ ଇଙ୍ଗିତରେ ହେଉଛି ।[୬୨]

୧୮୨୨ ମସିହାରେ ବକ୍ସି ଜଗବନ୍ଧୁଙ୍କୁ ଧରିବାର ଆଶା ବା ସମ୍ଭାବନା କ୍ରମଶଃ କ୍ଷୀଣ ହୋଇଆସିଲା । ତେଣୁ ବକ୍ସି ଜଗବନ୍ଧୁ ଓ ଦେବାନ୍ କୃଷ୍ଣଚନ୍ଦ୍ରଙ୍କୁ ସର୍ତ୍ତମୂଳକ କ୍ଷମା ପ୍ରସ୍ତାବକୁ ଆଗରୁ ଗଭର୍ଣ୍ଣର୍ ଜେନେରାଲ ନାକଚ କରିଦେଇଥିଲେ ହେଁ ପରବର୍ତ୍ତୀ ପରିସ୍ଥିତି ଦୃଷ୍ଟେ ତହିଁର ପୁନର୍ବିଚାର ଉଦ୍ଦେଶ୍ୟରେ ପୁଣି ଥରେ କମିଶନର୍‌ଙ୍କଠାରୁ ୨୨।୬।୧୮୨୨ ତାରିଖରେ ଚିଫ୍ ସେକ୍ରେଟେରୀଙ୍କ ପାଖକୁ ବକ୍ସି ଓ ଦେବାନ୍‌ଙ୍କୁ ସର୍ତ୍ତମୂଳକ କ୍ଷମା ପ୍ରଦାନପାଇଁ ସାନି ପ୍ରସ୍ତାବ ପଠାଗଲା ଏବଂ ଏଥର ଗଭର୍ଣ୍ଣର ଜେନେରାଲ ସେହି ପ୍ରସ୍ତାବକୁ ସଙ୍ଗେସଙ୍ଗେ ମଞ୍ଜୁରକଲେ ।[୬୩] ପ୍ରସ୍ତାବ ହେଲା ବକ୍ସି ଯଦି କଟକରେ ମାସିକ ଭତ୍ତା ପାଇ ରହିବାକୁ ଏବଂ ସରକାରଙ୍କ ଅନୁମତିବିନା କଟକ ନ ଛାଡ଼ିବାକୁ ରାଜିହେବେ ଏବଂ ଆଉ ଖୋର୍ଦ୍ଧାର ବକ୍ସିପଣ ବା ରୋଡ଼ଙ୍ଗର ଜମିଦାରପଣ ଦାବି ନ କରିବେ, ତାଙ୍କୁ ସର୍ବକ୍ଷମା ପ୍ରଦାନ ସହିତ କଟକରେ ସସମ୍ମାନ ଥଇଥାନ କରାଯିବ ଏବଂ ତାଙ୍କୁ ମାସିକ ୧୦୦ଟଙ୍କା ଓ ଦେବାନ୍ କୃଷ୍ଣଚନ୍ଦ୍ରଙ୍କୁ ମାସିକ ୫୦ଟଙ୍କା ଭତ୍ତା ପ୍ରଦାନ କରାଯିବ। ତା ୨୨।୮।୧୮୨୨ରେ ସେକ୍ରେଟେରୀ ପ୍ରିନ୍ସେପ କମିଶନର୍ ବ୍ଲଣ୍ଟଙ୍କୁ ଗଭର୍ଣ୍ଣର୍ ଜେନେରାଲଙ୍କର ଏହି ଐତିହାସିକ ନିର୍ଦ୍ଦେଶନାମା ପଠାଇ ତା' ଉପରେ କମିଶନର୍‌ଙ୍କ ମତାମତ ପୁଣି ଥରେ ଲୋଡ଼ିଲେ ।

ଉପରୋକ୍ତ ନିର୍ଦ୍ଦେଶନାମା ପଠାଇବା ପରେ ପରେ ୧୨।୯।୧୮୨୨ ତାରିଖରେ ବକ୍ସି ଜଗବନ୍ଧୁ ଓ ଦେବାନ୍ କୃଷ୍ଣଚନ୍ଦ୍ରଙ୍କର ସମସ୍ତ ଭୂସମ୍ପତ୍ତିକୁ ବାଜ୍ୟାପ୍ତ ଘୋଷଣା କରି

୬୦- ୫୭/APP.XLIX ୬୧- ୫୭/୩୯ ୬୨- ୫୭/୩୯

ସରକାରୀ ସମ୍ପତ୍ତି ତାଲିକାଭୁକ୍ତ କରିବାକୁ ଗଭର୍ଣ୍ଣର୍ ଜେନେରାଲ କଟକର କମିଶନରଙ୍କୁ କ୍ଷମତା ପ୍ରଦାନକଲେ ଏବଂ ସେହି କ୍ଷମତାବଳରେ କମିଶନର୍ ବକ୍ସି ଜଗବନ୍ଧୁ ଓ ଦେବାନ କୃଷ୍ଣଚନ୍ଦ୍ରଙ୍କର ସମସ୍ତ ଭୂସମ୍ପତ୍ତିକୁ ବାଜ୍ୟାପ୍ତ ଘୋଷଣା କରି ୪।୯।୧୮୨୩ ତାରିଖରେ ଚିଫ୍ ସେକ୍ରେଟେରୀଙ୍କୁ ଜଣାଇଦେଲେ; କିନ୍ତୁ ଏଥିରୁ କୌଣସି ସୁଫଳ ନ ମିଳିବାରୁ ସରକାର ଚିନ୍ତିତ ହୋଇପଡ଼ିଲେ ।[୬୪]

ବସ୍ତୁତଃ ବ୍ରିଟିଶ ସରକାର ବହୁପୂର୍ବରୁ ଜମିଜମା ବନ୍ଦୋବସ୍ତରେ ଚଞ୍ଚକତା କରି ବକ୍ସି ଜଗବନ୍ଧୁ ଓ ଦେବାନ୍ କୃଷ୍ଣଚନ୍ଦ୍ରଙ୍କୁ ନିଜ ନିଜ ପୈତୃକ ଭୂସମ୍ପତ୍ତିରୁ ବଞ୍ଚିତ କରିସାରିଥିଲେ । ତେଣୁ ଏବେ ପୁଣି ଭୂସମ୍ପତ୍ତିକୁ ବାଜ୍ୟାପ୍ତ ଘୋଷଣା କରିବାର ପ୍ରଭାବ ସେମାନଙ୍କ ଉପରେ କାହିଁକି ବା ପଡ଼ନ୍ତା ! ୧୮୨୩ ମସିହା ଶେଷ ଆଡ଼କୁ ଉଇଲକିନ୍ସନ୍ କୌଣସି ସୂତ୍ରରୁ ଖବର ପାଇଲେ ଯେ ବକ୍ସି ଜଗବନ୍ଧୁ ନୟାଗଡ଼ ରାଜ୍ୟରେ ରାଜାଙ୍କ ଆଶ୍ରୟରେ ଆତ୍ମଗୋପନ କରି ରହିଛନ୍ତି । ତେଣୁ ଉଇଲ୍‌କିନ୍ସନ୍ କମିଶନରଙ୍କୁ ପ୍ରସ୍ତାବ ଦେଲେ ଯେ ବକ୍ସି ଜଗବନ୍ଧୁଙ୍କୁ ନୟାଗଡ଼ ରାଜା ଗୋପନ ଆଶ୍ରୟ ଦେଇଥିବାରୁ ରାଜାଙ୍କୁ ବ୍ୟକ୍ତିଗତଭାବେ ଡକାଇ ପଚରାଯାଉ ଏବଂ ବକ୍ସି ଜଗବନ୍ଧୁଙ୍କୁ ଧରିବାପାଇଁ ନୟାଗଡ଼ ରାଜ୍ୟକୁ ସଶସ୍ତ୍ର ସୈନ୍ୟବାହିନୀ ପଠାଯାଉ ।[୬୫] କମିଶନର ଉଇଲକିନସନ୍‌ଙ୍କର ଏହି ପ୍ରସ୍ତାବକୁ ଚିଫ୍ ସେକ୍ରେଟେରୀଙ୍କୁ ଜଣାଇଦେଲେ । କିନ୍ତୁ ଚିଫ୍ ସେକ୍ରେଟେରୀ ଉଇଲକିନ୍‌ସନ୍‌ଙ୍କ ପ୍ରସ୍ତାବକୁ ଆଂଶିକ ଅନୁମୋଦନ କରି ତାଙ୍କର ୨.୧୨.୧୮୨୩ ତାରିଖର ପତ୍ରରେ ଉଇଲକିନ୍‌ସନଙ୍କୁ ଲେଖିଲେ ଯେ ବକ୍ସି ଜଗବନ୍ଧୁ ଯଦି ନୟାଗଡ଼ ରାଜ୍ୟରେ ଅଛନ୍ତି ତାଙ୍କୁ ଘେରାଉ କରି ଧରିବାପାଇଁ ନୟାଗଡ଼କୁ ସଶସ୍ତ୍ର ସୈନ୍ୟବାହିନୀ ପଠାଇବାରେ କିଛି ଆପତ୍ତି ଉଠି ନ ପାରେ । କିନ୍ତୁ ନୟାଗଡ଼ର ରାଜା ପ୍ରକୃତରେ ବକ୍ସି ଜଗବନ୍ଧୁଙ୍କର ଆତ୍ମଗୋପନ ଘଟଣା ସହିତ ସମ୍ପୃକ୍ତ ଅଛନ୍ତି କି ନାହିଁ, ତାହା ବ୍ୟାପକଭାବେ ଅନୁସନ୍ଧାନ କରି ସଠିକ୍‌ଭାବେ ଜାଣିବା ପର୍ଯ୍ୟନ୍ତ ନୟାଗଡ଼ ରାଜାଙ୍କୁ ଡକାଇ ଜେରାକରିବା ଉଚିତ ହେବ ନାହିଁ ।[୬୬]

ସୁତରାଂ ନୟାଗଡ଼ର ରାଜା ବକ୍ସି ଜଗବନ୍ଧୁଙ୍କୁ ତାଙ୍କ ରାଜ୍ୟରେ କୌଣସି ପ୍ରକାର ସହାୟତା ବା ଆଶ୍ରୟ ଦେଉଛନ୍ତି କି ନାହିଁ ଏବଂ ବକ୍ସି ଜଗବନ୍ଧୁ ନୟାଗଡ଼ରେ ଅଛନ୍ତି କି ନାହିଁ ସେ ସମ୍ପର୍କରେ ବ୍ୟାପକ ଅନୁସନ୍ଧାନ ଚଳାଇବାରେ ଦୀର୍ଘ ପ୍ରାୟ ବର୍ଷେକାଳ ବିତିଗଲା । ପ୍ରାୟ ବର୍ଷକ ପରେ ୧୭.୧୧.୧୮୨୪ ତାରିଖରେ ଉଇଲ୍‌କିନ୍‌ସନ୍‌ଙ୍କ ରିପୋର୍ଟ ଭିତ୍ତିରେ ଆକ୍ଟିଙ୍ଗ କମିଶନର୍ ଜେ.ପ୍ୟାକେନ୍‌ହାମ୍ ଚିଫ୍ ସେକ୍ରେଟେରୀ ବୈଲେଙ୍କୁ ପତ୍ର ଲେଖି ଜଣାଇଲେ ଯେ ପ୍ରକୃତରେ ବକ୍ସି ଜଗବନ୍ଧୁ ନୟାଗଡ଼ ରାଜ୍ୟରେ ରାଜାଙ୍କ ବାହୁଛାୟାତଳେ ଆତ୍ମଗୋପନ କରି ରହିଛନ୍ତି ଏବଂ ପୁନର୍ବାର ନୟାଗଡ଼ ସୀମାନ୍ତ ଖୋର୍ଦ୍ଧା ଅଞ୍ଚଳରେ ଉପଦ୍ରବ ସୃଷ୍ଟିପାଇଁ ଦଳବଳ ସାଜୁଛନ୍ତି ।[୬୭]

---

୬୪- ୫୭/୩୯ ୬୫- ୫୭/୩୯ ୬୬- ୫୭/୪୦ ୬୭- ୫୭/୪୦

ଏ ରିପୋର୍ଟ ପଠାଇବା ସଙ୍ଗେସଙ୍ଗେ କମିଶନର ଖୋର୍ଦ୍ଧା ଓ ପୁରୀରେ ବହୁ ଅଧିକ ସଂଖ୍ୟକ ସଶସ୍ତ୍ର ସୈନ୍ୟ ମୁତୟନକଲେ ଏବଂ ଉଇଲ୍‌କିନ୍‌ସନ୍‌ଙ୍କୁ ଆବଶ୍ୟକ ହେଲେ ସୈନ୍ୟ ସଂଖ୍ୟା ବୃଦ୍ଧି ଓ ସୈନ୍ୟଚାଳନାପାଇଁ କ୍ଷମତା ପ୍ରଦାନସହ ଖୋର୍ଦ୍ଧାକୁ ପଠାଇଲେ । କମିଶନର ବ୍ଲଣ୍ଟ ମଧ୍ୟ ସୈନ୍ୟଚାଳନା ସମ୍ପର୍କରେ ସମସ୍ତ ପ୍ରସ୍ତୁତି ଅନୁଧ୍ୟାନ କରିବାପାଇଁ ଉଇଲକିନ୍‌ସନ୍‌ଙ୍କ ସହ ଖୋର୍ଦ୍ଧା ଯାତ୍ରାକଲେ ।[୬୮]

ଏହା ପରବର୍ତ୍ତୀ ଛଅ ମାସ ଥିଲା ଓଡ଼ିଶାର ଗୌରବ ତଥା ଓଡ଼ିଆ ଜାତିର ମଉଡ଼ମଣି ବୀରଶ୍ରେଷ୍ଠ ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ରଙ୍କର ମହାପ୍ରତାପୀ ବ୍ରିଟିଶ ସରକାର ବିରୋଧରେ ଦୀର୍ଘ ଆଠ ବର୍ଷବ୍ୟାପୀ ବୀରତ୍ୱପୂର୍ଣ୍ଣ ସଂଘର୍ଷ ଓ ବିଦ୍ରୋହକୁ ଦମନ କରିବାପାଇଁ ବ୍ରିଟିଶ ସରକାରର ସଶସ୍ତ୍ର ସାମରିକ ଅଭିଯାନ ଏବଂ କୂଟନୈତିକ କ୍ଷମତା ପ୍ରୟୋଗର ଚୂଡ଼ାନ୍ତ ପର୍ଯ୍ୟାୟ ।

ବକ୍ସି ଜଗବନ୍ଧୁଙ୍କ ଆଶ୍ରୟଦାତା ନୟାଗଡ଼ ରାଜାଙ୍କ ଉପରେ କୂଟନୈତିକ ତଥା ସାମରିକ ଚାପ ପ୍ରୟୋଗ ନ କଲେ ବକ୍ସି ଜଗବନ୍ଧୁଙ୍କୁ ପାଇବା ସମ୍ଭବପର ହେବ ନାହିଁ ବୋଲି ନିଶ୍ଚିତ ହେବାପରେ ଉଇଲକିନ୍‌ସନ୍ ବିରାଟ ସଶସ୍ତ୍ର ସୈନ୍ୟବାହିନୀ ଚଳାଇ ଚାଲିଲେ ନୟାଗଡ଼କୁ । କୌଣସି କାର୍ଯ୍ୟାନୁଷ୍ଠାନ ପୂର୍ବରୁ ସେ ନୟାଗଡ଼ ରାଜାଙ୍କୁ ରାଜବାଟିରେ ଭେଟି ବକ୍ସି ଜଗବନ୍ଧୁଙ୍କୁ ଧରାଇ ନ ଦେଲେ ପରିଣାମ ଭୟାବହ ହେବବୋଲି ସତର୍କ କରାଇଦେଲେ ।[୬୯]

ଧନ୍ୟ ସେହି ନୟାଗଡ଼ର ମହାମନା ରାଜା ବ୍ରଜବଲ୍ଲଭ ସିଂହ, * ସେ ୧୮୨୩ ଖ୍ରୀଷ୍ଟାବ୍ଦରେ ରାଜଗାଦିରେ ବସିବା ପରଠାରୁ କ୍ରମାଗତ ଦୁଇ ବର୍ଷ ଧରି ବୀରଶ୍ରେଷ୍ଠ ବକ୍ସି ଜଗବନ୍ଧୁଙ୍କର ସ୍ୱାଭିମାନ ଓ ସମ୍ମାନକୁ ବିଦେଶୀ ବ୍ରିଟିଶ ଶକ୍ତିର ପାଦତଳେ ଭୂଲୁଣ୍ଠିତ ହେବାକୁ ଦେଇ ନ ଥିଲେ । ଆଜି ମଧ୍ୟ ବ୍ରିଟିଶ୍‌ବାହିନୀ ହାତରୁ ବକ୍ସି ଜଗବନ୍ଧୁଙ୍କ ସମ୍ମାନର ସୁରକ୍ଷାପାଇଁ କୃତସଂକଳ୍ପ ସେହି ଦୃଢ଼ମନା ରାଜା ଉଇଲ୍‌କିନ୍‌ସନ୍‌ଙ୍କୁ କହିଲେ- ''ଆପଣ ଗୋଟାଏ ଜିଲ୍ଲାର ମ୍ୟାଜିଷ୍ଟ୍ରେଟଭାବରେ ଆଉ ମୁଁ ଗୋଟାଏ ରାଜ୍ୟର ରାଜା ଭାବରେ ଉଭୟେ କେବଳ ନିଜନିଜର ପ୍ରତିଷ୍ଠିତ ପଦବୀ ଓ ଆସନ ଭିତ୍ତିରେ ଉଚ୍ଚ କ୍ଷମତା ଓ ସମ୍ମାନର ଅଧିକାରୀ; କିନ୍ତୁ ବକ୍ସି ଜଗବନ୍ଧୁର କ୍ଷମତା ଆଉ ସମ୍ମାନ ଲକ୍ଷ ଲକ୍ଷ ଲୋକଙ୍କ ହୃଦୟ-ଆସନ ଉପରେ ସୁପ୍ରତିଷ୍ଠିତ । ତା' ନ ହୋଇଥିଲେ ବ୍ରିଟିଶ ସରକାର ଦୀର୍ଘ ଆଠ ବର୍ଷ କାଳ ସମସ୍ତ ଶକ୍ତି ଖଟାଇ ମଧ୍ୟ ବକ୍ସି ଜଗବନ୍ଧୁଙ୍କୁ ଧରି ନ ପାରିବା ଭଳି ବିଡ଼ମ୍ବନା ସମ୍ଭବପର ହୋଇ ନ ଥାନ୍ତା

---

*୬୮- ୫୭/୪୦ ୬୯- ୫୭/୪୦*

** ପରେ ପୁଣି ବ୍ରଜବଲ୍ଲଭ ସିଂହ ଇଂରେଜଙ୍କ ବିରୋଧରେ ନିଜରାଜ୍ୟରେ ବିଦ୍ରୋହ କରିବାରୁ ଇଂରେଜ ସରକାର ୧୮୪୮ରୁ ତାଙ୍କ ରାଜ୍ୟକୁ କୋର୍ଟଅଫ୍‌ୱାର୍ଡ଼ସ ଅଧୀନରେ ରଖି ତାଙ୍କୁ କଟକରେ ନଜର ବନ୍ଦି କରି ରଖିଥିଲେ । ସେଇ ନଜରବନ୍ଦି ଅବସ୍ଥାରେ ସେ ୧୮୫୧ରେ କଟକରେ ପ୍ରାଣତ୍ୟାଗ କଲେ । ୭୯/୮୭*

ସାହେବ ! କେବଳ ଖୋର୍ଦ୍ଧା ନୁହେଁ; ଗଞ୍ଜାମରୁ ଘୁମୁସର, ବୌଦ, ରଣପୁର, ନୟାଗଡ଼, ଦଶପଲ୍ଲା ଧରି କଟକ ପର୍ଯ୍ୟନ୍ତ ସମଗ୍ର ଓଡ଼ିଶାର ହୃଦୟକୁ ଅଧିକାର କରିବସିଛନ୍ତି ବକ୍ସି ଜଗବନ୍ଧୁ । ତେଣୁ ଆଜି ଯଦି ତାଙ୍କର ସମ୍ମାନ ପ୍ରତି ଆମେ ସାମାନ୍ୟ ଆଘାତ କରିବା ଲକ୍ଷ ଲକ୍ଷ ଲୋକଙ୍କ ହୃଦୟର ପ୍ରତିକ୍ରିୟାରେ ତାର ପରିଣାମ କେତେ ଭୀଷଣ ହୋଇଉଠିବ ଚିନ୍ତା କରନ୍ତୁ ସାହେବ !'' ଉଇଲ୍‌କିନ୍‌ସନ୍ ତତ୍‌କ୍ଷଣାତ୍ ପ୍ରତ୍ୟୁତ୍ତର କଲେ - ବ୍ରିଟିଶ ସରକାର ବକ୍ସି ଜଗବନ୍ଧୁଙ୍କ ଉଚ୍ଚ ସମ୍ମାନପ୍ରତି ବହୁଆଗରୁ ସଚେତନ ଅଛନ୍ତି ରାଜା ! ଆମେ ତାଙ୍କୁ ଅସମ୍ମାନିତ କଲାଭଳି କୌଣସି କାର୍ଯ୍ୟାନୁଷ୍ଠାନ କରିବୁ ନାହିଁ । ରାଜା ତାଙ୍କର ଅତି ବିଶ୍ୱସ୍ତ ବେବର୍ତ୍ତା ବରଜୁ ପାଇକରାଙ୍କୁ ନିଜର ବାର୍ତ୍ତା ଦେଇ କହିଲେ - ଯାଅ ବରଜୁ ! ଡାକିଆଣ ବକ୍ସିଙ୍କୁ; ମୋ ତରଫରୁ ତାଙ୍କୁ କଥା ଦିଅ– ସେ ଆମ ଜାତିର ବୀର- ଓଡ଼ିଆ ଜାତିର ବୀର; ତାଙ୍କ ସମ୍ମାନକୁ ଆମେ ଆମ ସମ୍ମୁଖରେ କଦାପି କ୍ଷୁଣ୍ଣ ହେବାକୁ ଦେବା ନାହିଁ । ତାଙ୍କର ଆତ୍ମସମର୍ପଣପାଇଁ ନୁହଁ, ଆତ୍ମପ୍ରକାଶପାଇଁ ପ୍ରକୃଷ୍ଟ ସମୟ ଆସିଛି । ନୟାଗଡ଼ ରାଜବାଟି ଅତିଥିଶାଳାରେ ନିରବ ନିସ୍ତବ୍ଧ ଉଦ୍‌ବିଗ୍ନଭାବେ ଚାହିଁରହିଥିଲେ ଉଇଲକିନ୍‌ସନ୍ ଦୀର୍ଘକାଳ ଅଭିଳଷିତ ବକ୍ସି ଜଗବନ୍ଧୁଙ୍କ ଆଗମନ ଅପେକ୍ଷାରେ ।

ଦୀପରୁ ତୈଳ ନିଃଶେଷ ହୋଇଆସୁଥିଲା, ତଥାପି ଦୀପଶିଖା ନିଷ୍ପ୍ରଭ ହୋଇ ନ ଥିଲା, ନିଘଞ୍ଚ ଅରଣ୍ୟ ଭିତରେ ନିଃସହାୟତାର ଘୂର୍ଣ୍ଣିବାତ୍ୟାରେ ବି ଦୀପର ସଳିତା ଦାଉଦାଉ ଜଳିଉଠୁଥିଲା । ଠିକ୍ ସେଇ ବିଡ଼ମ୍ବିତ ମୁହୂର୍ତ୍ତରେ ଦୀପରେ ତୈଳ ସଂଯୋଗକଲେ ବିପଦ ବେଳର ବିଶ୍ୱସ୍ତ ଦରଦୀବନ୍ଧୁ ବରଜୁ ପାଇକରା -

''ଉଠ ବକ୍ସି ! ତୁମର ବିଜୟହୋଇଛି । ପ୍ରବଳ ପ୍ରତାପୀ ବ୍ରିଟିଶ ଶକ୍ତି ଆଜି ନଇଁ ଆସିଛି ତୁମ ପାଖକୁ - ତୁମକୁ ଶୃଙ୍ଖଳାବଦ୍ଧ କରିନେବାପାଇଁ ନୁହେଁ; ତୁମର ବ୍ୟକ୍ତିତ୍ୱ, ତୁମର ବୀରତ୍ୱ, ତୁମର ଦାମ୍ଭିକତା ଓ ସ୍ୱାଭିମାନପ୍ରତି ସମୁଚିତ ସମ୍ମାନ ପ୍ରଦର୍ଶନ କରି ବିଶ୍ୱ ସମକ୍ଷରେ ତୁମର ଗରିମା, ତୁମ ମହାନତାର ପ୍ରତିଷ୍ଠା ବଢ଼ାଇବାପାଇଁ । ଦୀର୍ଘ ଦୁଇ ଦଶନ୍ଧିଧରି ତୁମର ଅବିଶ୍ରାନ୍ତ ଓ ଅପରାଜେୟ ସଂଗ୍ରାମ ଭିତରେ ତୁମେ ବହୁ ଦୈନ୍ୟ ନିର୍ଯାତନା ଭୋଗିଛ । ବହୁ ଶାରୀରିକ ଆଉ ମାନସିକ ଯନ୍ତ୍ରଣା ଭୋଗିଛ । ଖୋର୍ଦ୍ଧା ରାଜ୍ୟ ଯାଇଛି । ଖୋର୍ଦ୍ଧାର ରାଜଗାଦି ଯାଇଛି । ତୁମର ରୋଡ଼ଙ୍ଗ ଜମିଦାରୀ ଯାଇଛି, ବକ୍ସିବାଡ଼ ଜାଗିରି ବି ଯାଇଛି, ଖୋର୍ଦ୍ଧାର ବକ୍ସିବାହିନୀ ଭାଙ୍ଗି ଛିନ୍‌ଛତ୍ର ହୋଇଯାଇଛି । କିନ୍ତୁ ଖୋର୍ଦ୍ଧାର ବକ୍ସି ଜଗବନ୍ଧୁ ଏବେ ବି ବିଶ୍ୱ ସମ୍ମୁଖରେ ଅଛି, ଯୁଗଯୁଗପାଇଁ ବିଶ୍ୱ ସମକ୍ଷରେ ରହିଥିବ, ତାକୁ କେହି ବି କେବେ ଯୁଗ-ଜାଗୃତିର ଆଲେଖ୍ୟପଟରୁ ଦୂରେଇ ଦେଇପାରିବ ନାହିଁ । ଆସ ବକ୍ସି, ଏବେ ତୁମପାଇଁ ବିଶ୍ରାମ ଲୋଡ଼ା, ଦୀର୍ଘ ଦିନର ସଂଘର୍ଷମୟ ଜୀବନରୁ ବିଚ୍ଛିନ୍ନ ହୋଇପଡ଼ିଥିବା ପରିବାର ସହ ତୁମର ଶେଷଜୀବନରେ କିଛି ଶାନ୍ତି, କିଛି ସାନ୍ତ୍ୱନା ଲୋଡ଼ା । ବ୍ରିଟିଶ ସରକାର ସେଥିପାଇଁ ସମସ୍ତ ବ୍ୟବସ୍ଥା କରିଛନ୍ତି । ତୁମେ ସପରିବାର କଟକରେ ରହିବ, ତୁମପାଇଁ ଘର ଓ ମାସିକ ଖର୍ଚ୍ଚପାଇଁ ଭତ୍ତା ସରକାର ଯୋଗାଇଦେବେ । ତୁମକୁ

କେବଳ ଲେଖିଦେବାକୁ ହେବ ସରକାର ଅନୁମତି ନ ନେଇ ତୁମେ କଟକ ଛାଡ଼ିବ ନାହିଁ। ତା ହେଉ ପଛକେ - ତୁମେ ଆଉ ବିଳମ୍ବକରନା, ମହାରାଜା ତୁମପାଇଁ ଅପେକ୍ଷା କରିଛନ୍ତି। ଖୋର୍ଦ୍ଧାର କଲେକ୍ଟର ଆଉ ମ୍ୟାଜିଷ୍ଟ୍ରେଟ୍ ଉଇଲକିନ୍‌ସନ୍ ସାହେବ ତୁମକୁ ଉତ୍ସୁକତା ସହିତ ଅପେକ୍ଷା କରି ଚାହିଁରହିଛନ୍ତି, ଆଉ ମହାରାଜାଙ୍କୁ କଥା ଦେଇଛନ୍ତି ତୁମର ସମ୍ମାନପ୍ରତି ଯେପରି କୌଣସି ପ୍ରକାର ଆଞ୍ଚ ନ ଆସେ ତୁମକୁ ସେହିପରିଭାବେ କଟକରେ ନେଇ ପହଞ୍ଚାଇବେ। ମହାରାଜାଙ୍କ ପ୍ରସ୍ତାବମତେ କଟକଯାଏଁ ତୁମ ସହିତ କେବଳ ଗଡ଼ଜାତ ମାହାଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ଦେବାନ୍ ୱାଜ୍ ମହମ୍ମଦ୍ ଯିବେ, ଆଉ କେହି ନୁହେଁ। ଆସ ବକ୍ସି ମୋ ସଙ୍ଗେ ଆସ।''

୧୮୨୫ ମସିହା ମଇ ମାସ ୨୫ ତାରିଖ। ବେବର୍ତ୍ତା ବରକୁ ପାଇକରାଙ୍କ ସହିତ ବକ୍ସି ଜଗବନ୍ଧୁ ବିଦ୍ୟାଧର ନୟାଗଡ଼ ରାଜବାଟିକୁ ଯାଇ ରାଜାଙ୍କ ଉପସ୍ଥିତିରେ ଭେଟିଲେ ଉଇଲକିନ୍‌ସନ୍‌ଙ୍କୁ। ରାଜା, ସାହେବଙ୍କ ସହିତ ବକ୍ସିଙ୍କୁ ପରିଚିତ କରାଇଦେଲେ ଆଉ ଇଂରେଜ ସରକାରଙ୍କର ବକ୍ସିଙ୍କୁ କ୍ଷମାପ୍ରଦାନର ସର୍ତ୍ତ ଆମୂଳାନ୍ତ ପଢ଼ି ବୁଝାଇଦେଲେ। ସେ ସର୍ତ୍ତ ଗ୍ରହଣ କରିବାକୁ ରାଜିହେଲେ ବକ୍ସି।[୭୦] ଏହା ହିଁ ଥିଲା ଇଂରେଜ ସରକାରଙ୍କ ସହିତ ଜଗବନ୍ଧୁଙ୍କର ଆତ୍ମପ୍ରକାଶପାଇଁ ଦ୍ୱିପାକ୍ଷିକ ଆପୋସ୍-ଚୁକ୍ତିର ସର୍ତ୍ତ। କିନ୍ତୁ ଯେଉଁ ବକ୍ସି ଜଗବନ୍ଧୁ ଇଂରେଜ ସରକାର ସହିତ ଦୀର୍ଘ ଆଠ ବର୍ଷ ବ୍ୟାପୀ ସଂଘର୍ଷ ଭିତରେ ଗୋଟିଏ ମୁହୂର୍ତ୍ତପାଇଁ ସୁଦ୍ଧା ନିଜ ଟାଣପଣରୁ ନଇଁ ନ ଥିଲେ, ତାଙ୍କର ଟାଣପଣ ଆଗରେ ବ୍ରିଟିଶ ସରକାରଙ୍କର ନୈତିକ ପରାଜୟ ତ ବହୁପୂର୍ବରୁ ହୋଇସାରିଥିଲା- ତାଙ୍କପ୍ରତି କରାଯାଇଥିବା ଅନ୍ୟାୟ ଓ ଅବିଚାରକୁ ସ୍ୱୀକାରକରି ଲିପିବଦ୍ଧ କରାଯାଇଥିବା ଟ୍ରାୱେରଙ୍କ ରିପୋର୍ଟରେ; ଏବେ ପୁଣି ନିଜର ଶାକ୍ତିକ ପରାଜୟ ପ୍ରମାଣିତ ହୋଇଯିବା ପୂର୍ବରୁ ସେଇ ବ୍ରିଟିଶ ସରକାର ନିଜ ମୁହଁର କଳଙ୍କ ଦାଗକୁ ଘୋଡ଼ାଇବାକୁ ଯାଇ କ୍ରମେ କ୍ରମେ ମୁଣ୍ଡ ନୁଆଇଁ ଆସି ଶେଷକୁ ନିଜ ମୁହଁ ରକ୍ଷାଲାଗି ତାଙ୍କୁ ସର୍ତ୍ତ ମୂଳକ କ୍ଷମାପ୍ରଦାନ ଆଳରେ ତାଙ୍କ ପାଖେ ଆତ୍ମସମର୍ପଣ କଲା, - ପୂର୍ବବର୍ଣ୍ଣିତ ସେଇ ବ୍ରିଟିଶ୍ ସରକାରଙ୍କଦ୍ୱାରା ଲିପିବଦ୍ଧ ଦୀର୍ଘ ଆଠ ବର୍ଷ ସଂଘର୍ଷର ରୋମାଞ୍ଚକର ବିବରଣୀ ଭିତ୍ତିରେ - ଏହା ଯୁଗଯୁଗପାଇଁ ଇତିହାସ ଘୋଷଣା କରିଚାଲିବ।*

ନୟାଗଡ଼ରୁ କଟକ - ସମ୍ଭବତଃ ହସ୍ତୀପୃଷ୍ଠରେ ଯିବାପାଇଁ ବକ୍ସିଙ୍କୁ ଦୁଇ ଦିନ ଲାଗିଲା। ସାଙ୍ଗରେ ଥିଲେ ଗଡ଼ଜାତ ମାହାଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ଦେବାନ୍ ୱାଜ୍ ମହମ୍ମଦ। ମଇମାସ ୨୭ ତାରିଖରେ ବକ୍ସି କଟକରେ ପହଞ୍ଚିଲେ। କିନ୍ତୁ ବକ୍ସି ପହଞ୍ଚିବାର ଦିନକ

---

୭୦- ୫୭/୪୦

*Though rising was suppressed within six months Jagabandhu remained at large causing serious worry to the authorities for long seven years. They tried their best ot capture him but faild. They had virtually to admit their defeat by affering him pardon."

୫୭/୪୧

ପୂର୍ବରୁ ମଇ ୨୬ ତାରିଖରେ ବକ୍ସିଙ୍କ କଟକ ଯାତ୍ରା ଖବର କମିଶନର୍ ବ୍ଲଣ୍ଟଙ୍କ ପାଖେ ପହଞ୍ଚିସାରିଥିଲା । କମିଶନରଙ୍କ ଆକ୍ଟିଙ୍ଗ ସେକ୍ରେଟେରୀ ଡେଣ୍ଟ ସେହି ୨୬ ତାରିଖରେ କଟକର ଅଫିସିଏଟିଙ୍ଗ୍ ମ୍ୟାଜିଷ୍ଟ୍ରେଟ ମିଡ଼ଲଷ୍ଟୋନ୍‌ଙ୍କ ପାଖକୁ ଜରୁରୀ ବାର୍ତ୍ତା ଦେଇ ଲେଖିଲେ - ବକ୍ସି ଜଗବନ୍ଧୁ ଆସନ୍ତାକାଲି ଅର୍ଥାତ୍ ମଇ ୨୭ ତାରିଖରେ ଆସି କଟକରେ ପହଞ୍ଚିବେବୋଲି ମୁଁ ଖବର ପାଇଛି । ତେଣୁ ଆପଣ ସମସ୍ତ ପୋଲିସ ଅଫିସର୍ ଏବଂ ଆପଣଙ୍କ ତଳିଆ କର୍ମଚାରୀମାନଙ୍କୁ ଏ ଖବର ଜଣାଇ ଦେବା ସଙ୍ଗେସଙ୍ଗେ ସେମାନଙ୍କୁ ଏପରି ନିର୍ଦ୍ଦେଶ ଦେବେ ଯେପରି ବକ୍ସି ଜଗବନ୍ଧୁଙ୍କପ୍ରତି କଟକରେ କେହି ଅଫିସର ବା ତଳିଆ କର୍ମଚାରୀ କୌଣସି ପ୍ରକାର ଅସମ୍ମାନ ବା ଅସୌଜନ୍ୟମୂଳକ ବ୍ୟବହାର ପ୍ରଦର୍ଶନ କରିବେ ନାହିଁ ।[୭୧]

ବକ୍ସିଙ୍କର ଆଉ ଯେଉଁ ସହଯୋଗୀ ବିଦ୍ରୋହୀମାନେ ଆତ୍ମସମର୍ପଣ କଲେ ସେମାନେ ହେଲେ ଗୌରାଙ୍ଗ ବୈରୀଶଲ, ବନ୍ଧୁ ସାନ୍ତରା, କେଳେଇ ମାନସିଂହ, ହରି ସାନ୍ତରା, ମଧୁ ବିଶୋଇ, ଭଗବାନ ଜେନା, ରାଜୀବ ବିଶୋଇ ଓ ଉଛବ ନାଏକ । କମିଶନର୍ ଏ ସମସ୍ତଙ୍କୁ କ୍ଷମାଦେଇ ଛାଡ଼ିଦେବାକୁ ଏବଂ ସେମାନଙ୍କର ଜାଗିରି ବୃତ୍ତି ଫେରାଇଦେବାକୁ ୪-୬-୧୮୨୫ ତାରିଖରେ ଚିଫ୍ ସେକ୍ରେଟେରୀ ବେଲିଙ୍କୁ ସୁପାରିସ ପତ୍ର ଲେଖିଲେ । ସେହି ପତ୍ରରେ ବକ୍ସିଙ୍କ ମାସିକ ଭତ୍ତା ୧୦୦ଟଙ୍କାରୁ ୧୫୦ଟଙ୍କାକୁ ବୃଦ୍ଧି କରିବାକୁ, ନୟାଗଡ଼ ରାଜାଙ୍କର ବର୍ଷକର ଦେୟ ପେସକିସ୍ ଛାଡ଼କରିବାକୁ ଏବଂ ବରଜୁ ପାଇକରାଙ୍କୁ ଟ୨୦୦୦ ଓ ଓ୍ବାଜ ମହମ୍ମଦଙ୍କୁ ୧୦୦୦ଟଙ୍କା ପୁରସ୍କାର ଦେବାକୁ ମଧ୍ୟ ସୁପାରିସକଲେ । ସେହି ପତ୍ରରେ ମଧ୍ୟ କମିଶନର ବ୍ଲଣ୍ଟ ଚିଫ୍ ସେକ୍ରେଟେରୀଙ୍କୁ ଲେଖିଥିଲେ ଯେ କେବଳ କମିଶନରଙ୍କ ଅନୁମତି ବିନା କଟକ ଛାଡ଼ିବେ ନାହିଁ ବୋଲି ବକ୍ସିଙ୍କଠାରୁ ଏକ ମୁଚାଲିକା ଲେଖାଇନେବା ବ୍ୟତୀତ ତାଙ୍କ ପ୍ରତି ଅନ୍ୟ କୌଣସି ପ୍ରତିଶୋଧମୂଳକ ସର୍ତ୍ତ ବା କଟକଣା ଆରୋପ କରାଯିବା ଅନାବଶ୍ୟକ ।[୭୨]

ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର କଟକରେ ପରିବାର ସହିତ ମାତ୍ର ୩ ବର୍ଷ ୮ ମାସ ରହିବା ପରେ ୧୮୨୯ ମସିହା ଜାନୁଆରୀ ମାସ ୨୪ ତାରିଖ ଶନିବାର ଦିନ ପ୍ରାଣତ୍ୟାଗ କଲେ । ୨୬.୧.୧୮୨୯ ତାରିଖରେ ଏହି ଦୁଃସମ୍ବାଦ ଆର୍. ହଣ୍ଟର ପ୍ୟାକେନ୍‌ହାମଙ୍କୁ ଲେଖି ଜଣାଇଦେଲେ ।[୭୩]

ଓଡ଼ିଆ ପାଇକବୀର ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ରଙ୍କର ବ୍ୟକ୍ତିତ୍ୱ କିପରି ଅନମନୀୟ ଏବଂ ତାଙ୍କର ନେତୃତ୍ୱ କିପରି ଅଦମନୀୟ ଥିଲା ତାହା ବ୍ରିଟିଶ ସରକାରଙ୍କ ତତ୍କାଳୀନ ନଥିପତ୍ରରୁ ପ୍ରମାଣିତ ଉପରୋକ୍ତ ଘଟଣା ପ୍ରବାହରୁ ଅନୁମାନ କରାଯାଇପାରେ । ଖୋର୍ଦ୍ଧାର ପାଇକମାନଙ୍କ ମଧ୍ୟରେ ବକ୍ସିଙ୍କର ଅଖଣ୍ଡ ପ୍ରଭାବ ଇଂରେଜ ଜାତିକୁ ଛାନିଆ କରି ନ ଥିଲେ ଏତେ ବଡ଼ ସାମ୍ରାଜ୍ୟବିସ୍ତାରକ ଭାରତ ବିଜେତା ବ୍ରିଟିଶଶକ୍ତି ଏକ କ୍ଷୁଦ୍ର ପ୍ରାନ୍ତୀୟ

୭୧- ୫୭/APPXLII ୭୨- ୫୭/APPXLII ୭୩- ୪୬/୧୩ ପାଦଟୀକା

ବିଜିତ ରାଜ୍ୟର ଜଣେ ସର୍ବହରା ପଳାତକ ଆତ୍ମଗୋପନକାରୀ ବ୍ୟକ୍ତି ସହିତ ପାଇକବିଦ୍ରୋହ ପ୍ରଶମିତ ହେବାର ଦୀର୍ଘ ଆଠ ବର୍ଷ ପରେ ଦ୍ୱିପାକ୍ଷିକ ଆପୋସ ମିଳାମିଶା କରି ତାଙ୍କୁ ମୃତ୍ୟୁପର୍ଯ୍ୟନ୍ତ ଏପରି ସମ୍ମାନ ପ୍ରଦର୍ଶନ କରି ନ ଥାନ୍ତେ । କେବଳ ସେତିକି ନୁହେଁ, ପାଇକ ବିଦ୍ରୋହର ନିଆଁ ଶାସକ ବର୍ଗଙ୍କୁ ଏପରି ଛାନିଆ କରିଥିଲା ଯେ ଆଉ ଥରେ ଯେପରି ପାଇକବିଦ୍ରୋହର ସୂତ୍ରପାତ ନ ହୁଏ ସେଥିପାଇଁ ବିଦ୍ରୋହର କାରଣଗୁଡ଼ିକ ସମ୍ପର୍କରେ ସମ୍ୟକ୍ ଅନୁସନ୍ଧାନ କରି ଯଥାସମ୍ଭବ ପ୍ରତିବିଧାନପାଇଁ ସତର୍କତାମୂଳକ ପଦକ୍ଷେପସ୍ୱରୂପ ବ୍ରିଟିଶ ସରକାର ଇଓ୍ୱେର ସାହେବଙ୍କୁ ତଦନ୍ତ କମିଶନଭାବେ ନିଯୁକ୍ତକରିଥିଲେ । ଇଓ୍ୱେର ସାହେବ ବକ୍ସିଙ୍କ ଶାରୀରିକ ଶକ୍ତି ସମ୍ପର୍କରେ ସୁଦ୍ଧା ଲୋକମୁଖରୁ ଶୁଣିଥିବା କୌତୂହଳପ୍ରଦ କିମ୍ବଦନ୍ତୀଟିଏ ତାଙ୍କ ତଦନ୍ତ ରିପୋର୍ଟରେ ଉଲ୍ଲେଖ କରିବାକୁ ଭୁଲି ନାହାନ୍ତି । ସେ କିମ୍ବଦନ୍ତୀ ଅନୁଯାୟୀ... ବକ୍ସିଙ୍କ ପିଠିରେ ଖଣ୍ଡିଏ ଯାଦୁ ଥିଲା, ୧୦ ଫୁଟ ଲମ୍ବ, ୫ ଫୁଟ ଓସାର ଓ ୨ ୧/୨ ଫୁଟ ଉଚ୍ଚା ଗୋଟାଏ ମୁଗୁନିପଥର ଖଣ୍ଡକୁ ବକ୍ସି ଭୂଇଁ ଉପରେ ସଳଖି ନିଜ ପିଠି ଉପରେ ଡେରିରଖୁଥିଲେ ଓ ତା' ଦେହରେ ପିଠି ଘଷି ଘଷି ଯାଦୁର କଣ୍ଡୁ ମାରୁଥିଲେ । ସେ ପଥର ଖଣ୍ଡିକ ଖୋର୍ଦ୍ଧାର କୌଣସି ପୁରୁଣା ମନ୍ଦିର ସମ୍ମୁଖରେ ପଡ଼ିଥିଲା ବୋଲି ମଧ୍ୟ ସେ ଲେଖିଛନ୍ତି ।[୭୪] ପ୍ରଶାସନ କ୍ଷେତ୍ରରେ ଯେଉଁ ଇଂରେଜ ଜାତି ଖୋର୍ଦ୍ଧାର ପାଇକ ବିଦ୍ରୋହ ଏବଂ ତାର ନେତା ବକ୍ସି ଜଗବନ୍ଧୁଙ୍କ ସାମାଜିକ, ସାଂଗଠନିକ, ଶାରୀରିକ ତଥା ସାମରିକ ଶକ୍ତି ଓ ସାମର୍ଥ୍ୟ ପ୍ରତି ଏତେ ଗୁରୁତ୍ୱ ଆରୋପ କରିଛି, ସମ୍ଭବତଃ ବିଜେତାର ନୈତିକ ପରାଜୟଜନିତ ଅପମାନ ଓ ଗ୍ଲାନିର କଳାଦାଗ ଇତିହାସ ପୃଷ୍ଠାରୁ ପୋଛି ଲିଭାଇ ଦେବାପାଇଁ ସେ ଜାତିର ମୁଷ୍ଟିମେୟ ଲେଖକଙ୍କ ଅପଚେଷ୍ଟାକୁ କାଳ ସାହିପାରିଲା ନାହିଁ । ପାଇକବିଦ୍ରୋହ ସମ୍ପର୍କୀୟ ପ୍ରଶାସନିକ ନଥିପତ୍ରକୁ ସେମାନେ ହୁଏତ ଶାସକ ହିସାବରେ ସବୁଦିନପାଇଁ ଗୋପନୀୟ କରି ରଖିପାରିବେ ବୋଲି ଭାବିଥିଲେ । ସେ ଭାବନା ସେମାନଙ୍କର ଭ୍ରାନ୍ତ ପ୍ରମାଣିତ ହେଲା । ସମୟର ଆହ୍ୱାନରେ ସେମାନେ ଏ ଦେଶର ଶାସନଗାଦିରୁ ହଟିଗଲେ । ଯେଉଁସବୁ ଐତିହାସିକ ତଥ୍ୟ ସମ୍ବଳିତ ନଥିପତ୍ରକୁ ସେମାନେ 'ଗୋପନୀୟ' କରି ଲୁଚେଇରଖିଥିଲେ କ୍ରମେ କ୍ରମେ ସେ ସବୁ ଉନ୍ମୋଚିତହେଲା । ବକ୍ସିଙ୍କୁ ଇଂରେଜ ଫୌଜ ଗୋଡ଼େଇ ଗୋଡ଼େଇ ହତ୍ୟାକରିଥିବା ତଥ୍ୟ ଭ୍ରାନ୍ତ ପ୍ରମାଣିତ ହୋଇଛି । ଇଂରେଜ ଫୌଜ ପାଇକ ବିଦ୍ରୋହକୁ ଦମନ କଲାପରେ ମଧ୍ୟ ପାଇକ ବିଦ୍ରୋହର ପ୍ରଧାନ ନାୟକ ବକ୍ସିଙ୍କର ଆତ୍ମଗୋପନ କାଳରେ ତାଙ୍କ ଅକଳନୀୟ ଶକ୍ତି ଓ ସାମର୍ଥ୍ୟର ଛାୟା-ଭୂତ ଶାସକ ଇଂରେଜ ଶକ୍ତିକୁ ଦୀର୍ଘ ଆଠ ବର୍ଷ କାଳ ଶାସନ କ୍ଷେତ୍ରରେ ଗୋଡ଼େଇ ଗୋଡ଼େଇ ଡରେଇଛି ଏବଂ ଅବଶେଷରେ ସେହି ପ୍ରବଳ ପରାକ୍ରମୀ ବ୍ରିଟିଶ ଶକ୍ତିର ମଥାନତ କରିଦେଇଛି । ସେଇମାନଙ୍କ ନଥିପତ୍ରରୁ ଏ ଇତିହାସ ଉଦ୍‌ଘାଟିତ ହୋଇଛି । ଏ ଇତିହାସ କେବଳ ବକ୍ସି ଜଗବନ୍ଧୁ କି ଦେବାନ୍ କୃଷ୍ଣଚନ୍ଦ୍ରଙ୍କର ଇତିହାସ ନୁହେଁ, ଏ ଇତିହାସ

---

*୭୪ - ୪୬/୧୩ ପାଦଟୀକା*

ଓଡ଼ିଶାର ଇତିହାସ, ବୀର ଓଡ଼ିଆଜାତିର ଇତିହାସ, ବୀରଭୂମି ଖୋର୍ଦ୍ଧାର ଇତିହାସ । ଶୁଦ୍ଧ ସୁବର୍ଣ୍ଣକୁ ଯେତେ ପୋଡ଼ିଲେ ମଧ୍ୟ ସେ ଯେପରି ବେଳକୁ ବେଳ ଦାଉ ଦାଉ ହୋଇ ନିଆଁରେ ଝଟକୁଥାଏ, ସେହିପରି ବୀର ଓଡ଼ିଆ ବକ୍ସି ଜଗବନ୍ଧୁଙ୍କର ଜୀବନକୁ ଇତିହାସ ଯେତେ ଅଧିକ ପରୀକ୍ଷା ନିରୀକ୍ଷା କରୁଥିବ ତାଙ୍କର ଗୌରବ ସେତେ ଅଧିକ ବଢୁଥିବ ସିନା, କଦାପି କମିବ ନାହିଁ । ବକ୍ସିଙ୍କ ସମ୍ପର୍କରେ ଏ ଯାବତ୍ ଯେତିକି ତଥ୍ୟ ସଂଗୃହୀତ ଓ ପ୍ରକାଶିତ ହୋଇଛି ତାହା ସେହି ପ୍ରଚଣ୍ଡ ଶକ୍ତିଧର ଜାତୀୟ ବୀରଙ୍କର ଜୀବନ ପ୍ରବାହର ଏକ କ୍ଷୁଦ୍ର ଉର୍ମିମାତ୍ର ଏବଂ ତାଙ୍କ ସମ୍ପର୍କରେ ଏବେ ବି ଅନେକ ତଥ୍ୟ ଅନୁଦ୍‌ଘାଟିତ ହୋଇ ରହିଛିବୋଲି ଏ ଲେଖକର ଦୃଢ଼ ଧାରଣା । ଫିରିଙ୍ଗି କଳିଭାରତ ଏ ଧାରଣାକୁ ପୋଷକତା କଲାଭଳି କିଛି ଉପାଦାନ ଯୋଗାଉଛି; କିନ୍ତୁ ତାହା ମଧ୍ୟ ପର୍ଯ୍ୟାପ୍ତ ନୁହେଁ ।

କିନ୍ତୁ ଏସବୁ ସତ୍ତ୍ୱେ ବ୍ରିଟିଶ ଶାସକଙ୍କଦ୍ୱାରା ପ୍ରଦତ୍ତ ବକ୍ସିଙ୍କ ଭାବମୂର୍ତ୍ତିରେ ଆଞ୍ଚ ଆଣିବାଭଳି ବିଡ଼ମ୍ବିତ ଓ ବିଭ୍ରାନ୍ତିକର ତଥ୍ୟ ଓଡ଼ିଶାର ଇତିହାସରେ ସ୍ଥାନ ପାଇଯାଇଛି । ଓଡ଼ିଶାର ପ୍ରଖ୍ୟାତ ଐତିହାସିକ ସ୍ୱର୍ଗତ କେଦାରନାଥ ମହାପାତ୍ର 'ଖୁରୁଧା ଇତିହାସ' ଲେଖି ଖୋର୍ଦ୍ଧା ତଥା ଓଡ଼ିଶାର ଜନସାଧାରଣଙ୍କ ନିକଟରେ ଚିରସ୍ମରଣୀୟ ହୋଇ ରହିବେ ଏଥିରେ ସନ୍ଦେହ ନାହିଁ । ବହୁ ଗବେଷଣାଲବ୍ଧ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ସମ୍ବଳିତ ଖୁରୁଧା ଇତିହାସରେ ସେ ଖୋର୍ଦ୍ଧାରାଜ୍ୟ ତଥା ଖୋର୍ଦ୍ଧା ଭୋଇ ରାଜବଂଶର ପ୍ରତିଷ୍ଠାଠାରୁ ପରିସମାପ୍ତି ପର୍ଯ୍ୟନ୍ତ ସୁବିସ୍ତୃତ ବିବରଣୀ ପ୍ରଦାନ କରି ଓଡ଼ିଶା ଇତିହାସରେ ଖୋର୍ଦ୍ଧାର ଏକ ସ୍ୱତନ୍ତ୍ର ସମ୍ମାନଜନକ ସ୍ଥାନ ନିରୂପଣ କରିଯାଇଛନ୍ତି । କିନ୍ତୁ ଦୈବାତ୍ ସେ କେବଳ ଅନୁମାନ ଭିତ୍ତିରେ ବକ୍ସି ହାରକୋର୍ଟଙ୍କ ପୁରୀ ଅଭିଯାନରେ ସହାୟତା କରିଥିଲେ ବୋଲି ଲେଖିଛନ୍ତି ।

ସେ ଲେଖିଛନ୍ତି - ''ବକ୍ସି ଜଗବନ୍ଧୁ ପୁରୁଷାନୁକ୍ରମେ ଚିଲିକା ନିକଟବର୍ତ୍ତୀ ରୋଡ଼ଙ୍ଗ କିଲାର ମାଲିକଥିଲେ । କର୍ଣ୍ଣେଲ ହାର୍‌କୋର୍ଟ ସେହି ବାଟେ ପୁରୀକୁ ଅଭିଯାନ ଚଳାଇବା ସମୟରେ ଜଗବନ୍ଧୁ ତାଙ୍କୁ ସାହାଯ୍ୟଦେଇଥିଲେ । ଓଡ଼ିଶା ଅଧିକାର ପରେ ୧୮୦୪ରେ ରୋଡ଼ଙ୍ଗ କିଲ୍ଲା ନିମନ୍ତେ ବକ୍ସି ଜଗବନ୍ଧୁଙ୍କ ସଙ୍ଗେ ଇଂରେଜ ସରକାରଙ୍କର ବନ୍ଦୋବସ୍ତ ମଧ୍ୟ ହୋଇଥିଲା ।''[୭୫] ପ୍ରଥମତଃ ହାର୍‌କୋର୍ଟ ରୋଡ଼ଙ୍ଗ ମାହାଲ ଭିତରଦେଇ ଯାଇ ନ ଥିଲେ, ଯାଇଥିଲେ ସମୁଦ୍ର କୂଳେ କୂଳେ । ଦ୍ୱିତୀୟତଃ ବକ୍ସି ରୋଡ଼ଙ୍ଗ ମାହାଲର ମାଲିକ ଥିଲେ ଏବଂ ତା'ଛଡ଼ା ତାଙ୍କର ସିରାଇ ଇତ୍ୟାଦି ଅନ୍ୟାନ୍ୟ ମାହାଲରେ ମଧ୍ୟ 'ବକ୍ସିବାତ' ଜାଗିରି ଜମି ରହିଥିଲା । ସେ ଓଡ଼ିଶାର ଓ ଖୋର୍ଦ୍ଧାରାଜ୍ୟର ସେନାପତିଭାବେ ଏଇସବୁ ଜାଗିରି ପାଇଥିଲେ । ତେଣୁ ସେ ରହୁଥିଲେ ଖୋର୍ଦ୍ଧାରେ; ଇଓ୍ୱେର ସାହେବଙ୍କ ବର୍ଣ୍ଣିତ ବକ୍ସିଙ୍କ ପିଠିଘଷା ପଥର ଖଣ୍ଡିକ ଆଜିସୁଦ୍ଧା ଖୋର୍ଦ୍ଧାଗଡ଼ର ଏକ ପୁରୁଣା ମନ୍ଦିର ସମ୍ମୁଖରେ ପଡ଼ିଛି । ତେଣୁ ସେଇ ପାଖରେ ବକ୍ସି ରହୁଥିଲେ ବୋଲି ବିଶ୍ୱାସ କରାଯାଏ । ଜାଗିରି ମାହାଲ

---

୭୫- ୩/୨୭୩

ବୁଝିବାପାଇଁ ତାଙ୍କର ଲୋକ ଥିଲେ, ସେଥିପାଇଁ ସେ ରୋଡ଼ଙ୍ଗରେ ରହୁ ନ ଥିଲେ କି ରହିବାର ଆବଶ୍ୟକତା ନ ଥିଲା । ତୃତୀୟତଃ ଫିରିଙ୍ଗିକଳି ଭାରତ ବିବରଣୀ ଅନୁଯାୟୀ ହାରକୋର୍ଟଙ୍କ ଖୋର୍ଦ୍ଧା ବାଟଦେଇ ଯିବା ଅନୁରୋଧକୁ ବକ୍ସି ପ୍ରତ୍ୟାଖ୍ୟାନ କରିଦେଇଥିଲେ । ସୁତରାଂ ହାର୍‌କୋର୍ଟଙ୍କ ପୁରୀ ଅଭିଯାନରେ ବକ୍ସି ସହାୟତା କରିବାଭଳି କୌଣସି ପ୍ରମାଣ ନ ଥାଇ, କେବଳ ତାଙ୍କ ରୋଡ଼ଙ୍ଗ ମାହାଲ ପାଖବାଟଦେଇ ହାରକୋର୍ଟ ପୁରୀ ଆସିଥିବାରୁ ସେ ସାହାଯ୍ୟ କରିଥିଲେ ବୋଲି ଅନୁମାନ କରିବା ସମ୍ପୂର୍ଣ୍ଣ ଅଯୌକ୍ତିକ । ତେଣୁ ହାରକୋର୍ଟଙ୍କ ପୁରୀ ଅଭିଯାନରେ ବକ୍ସି ସାହାଯ୍ୟ କରିଥିବା ଅଭିଯୋଗ ସମ୍ପୂର୍ଣ୍ଣ ଅମୂଳକ ।

୧୮୦୨ ମସିହାରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ରଣପୁର ଯୁଦ୍ଧ ସମ୍ପର୍କରେ ଫିରିଙ୍ଗି କଳିଭାରତରୁ ଜଣାଯାଏ । କିନ୍ତୁ ୧୮୦୨ ପୂର୍ବରୁ ବକ୍ସି ଜଗବନ୍ଧୁଙ୍କ ସମ୍ପର୍କରେ କିଛି ତଥ୍ୟ ମିଳେ ନାହିଁ । ୧୮୨୯ ମସିହା ଜାନୁୟାରୀ ୨୪ ତାରିଖ ଶନିବାରଦିନ କଟକରେ ବକ୍ସିଙ୍କର ଦେହାନ୍ତ ହୋଇଗଲା । ତା ପରଦିନ ୨୫ ତାରିଖ ରବିବାର ଛୁଟି ଦିନ ଥିବାରୁ କଟକ କଲେକ୍ଟର ରବର୍ଟ ଥୋମାସ୍ ୨୬ ତାରିଖରେ ବକ୍ସିଙ୍କ ମୃତ୍ୟୁଖବର ଲେଖି କମିସନ୍‌ର ଥୋମାସ୍ ପାକେନ୍‌ହାମ୍‌ଙ୍କୁ ଜଣାଇ ଦେଇଥିଲେ । ସେଇ ଚିଠିଟି-

To,

T. Pakeham Esqr. Commissioner, Cuttack

Sir,

I have the honor to report the demise on Saturday Last of Jagabundoo Biddiadhur who received a pension from this office of Rs 150/- per mensum.

2. The deceased has left two widows and a son named Gopinath Biddiadhur aged about 9 years.

3. The pension sanctioned as communicated in Mr. Commissioner Blunt's orders of the 1st July 1825. I presume escheat to Government and the arrears now due will be paid to whoever may be duly authorised to receive them.

I beg to remain

Sir

Your most obedeint-servant

Sd-

Collector

Cuttack Collector's Office

26th January, 1829



# ଷଷ୍ଠ ଅଧ୍ୟାୟ

## ରୋଡ଼ଙ୍ଗ ମାହାଲ ବନ୍ଦୋବସ୍ତ

ବକ୍ସିଙ୍କଠାରୁ ରୋଡ଼ଙ୍ଗ ଜମିଦାରୀ ମାହାଲକୁ ଯେଭଳି ଜଘନ୍ୟ ଦୁର୍ନୀତି ଓ ଚଞ୍ଚକତାପୂର୍ଣ୍ଣ ଷଡ଼ଯନ୍ତ୍ର କରି ଜୋରଜବରଦସ୍ତ ଛଡ଼ାଇନିଆଗଲା ସେ ସମ୍ପର୍କରେ ନ୍ୟାୟବିଚାର ଦାବିକରି ବକ୍ସି ଜଗବନ୍ଧୁ ୧୮୧୩ ଖ୍ରୀଷ୍ଟାବ୍ଦରେ ଇଂରେଜ କର୍ମକର୍ତ୍ତାଙ୍କୁ ଏକ ଦରଖାସ୍ତ ଦେଇଥିଲେ। ସେହି ଦରଖାସ୍ତ ଉପରେ ବ୍ୟାପକ ତଦନ୍ତ କରି କଲେକ୍ଟର ଉଇଲିଅମ ଟ୍ରାୱେର ୨୫।୮।୧୮୧୩ ତାରିଖରେ ବକ୍ସିଙ୍କୁ ଯେଭଳି ଅନ୍ୟାୟଭାବରେ ରୋଡ଼ଙ୍ଗ ଜମିଦାରୀ ମାହାଲରୁ ଉଚ୍ଛେଦ କରାଯାଇଥିଲା ତହିଁର ପୂର୍ଣ୍ଣ ବିବରଣୀ ଲେଖି ରିଚାର୍ଡ଼ସନ୍ (କମିଶନର)ଙ୍କୁ ଏକ ଦୀର୍ଘ ରିପୋର୍ଟ ଦେଇଥିଲେ।[୭୬] କିନ୍ତୁ ସେତେବେଳେ କଲେକ୍ଟର ଟ୍ରାୱେରଙ୍କ ରିପୋର୍ଟ ଉପରେ ଉଚ୍ଚକର୍ତ୍ତୃପକ୍ଷ ସାମାନ୍ୟ ଗୁରୁତ୍ୱ ସୁଦ୍ଧା ଆରୋପ କରି ନ ଥିଲେ। ଘଟଣା ସବୁ ଯେପରିଭାବେ ବର୍ଣ୍ଣିତ ହୋଇଛି ସେଥିରୁ ମନେହେବ ଯେ ପାଇକବିଦ୍ରୋହ ପର୍ଯ୍ୟନ୍ତ କେବଳ ଟ୍ରାୱେରଙ୍କ ବ୍ୟତୀତ ଅନ୍ୟ ଇଂରେଜ ପ୍ରଶାସକ ଓ ଉଚ୍ଚ କର୍ତ୍ତୃପକ୍ଷଙ୍କ ନିକଟରେ ବକ୍ସି ଜଗବନ୍ଧୁ ଜଣେ ସମ୍ପୂର୍ଣ୍ଣ ଅଜ୍ଞାତ ଓ ମାମୁଲି ମଣିଷ ଥିଲେ। କିନ୍ତୁ ୧୮୧୭ରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପାଇକବିଦ୍ରୋହର ବ୍ୟାପକତା ଓ ଭୟାବହତା ଉପଲବ୍ଧି କଲାପରେ ଯାଇ ବକ୍ସିଙ୍କ ପ୍ରକୃତ ସ୍ୱରୂପ ଓ ପରିଚୟ ଇଂରେଜ ପ୍ରଶାସକ ମାନଙ୍କ ପାଖରେ ପ୍ରକାଶପାଇଲା। ପାଇକ ବିଦ୍ରୋହର କାରଣ ଅନୁସନ୍ଧାନ କରି କମିଶନର୍ ଇୱେର ସାହେବ ପାଞ୍ଚ ବର୍ଷ ତଳର କଲେକ୍ଟର ଟ୍ରାୱେରଙ୍କ ରିପୋର୍ଟରେ ବର୍ଣ୍ଣିତ ବକ୍ସିଙ୍କ ରୋଡ଼ଙ୍ଗ ମାହାଲ ଅପହରଣ ଘଟଣା ହିଁ ପାଇକ ବିଦ୍ରୋହର ଅନ୍ୟତମ ମୁଖ୍ୟ କାରଣ ବୋଲି ଜାଣିପାରି ୧୩.୫.୧୮୧୮ ତାରିଖରେ ଟ୍ରାୱେରଙ୍କ ରିପୋର୍ଟ ବର୍ଣ୍ଣିତ ସମସ୍ତ ତଥ୍ୟ ଚିଫ୍ ସେକ୍ରେଟେରୀ ବେଲିଙ୍କୁ ଲେଖି ଜଣାଇଲେ। ଓଡ଼ିଶା ହିଷ୍ଟୋରିକାଲ ରିସର୍ଚ୍ଚ ଜର୍ନାଲ ୩ୟ ଭାଗ ୪ର୍ଥ ସଂଖ୍ୟା ଏବଂ ୪ର୍ଥ ଭାଗ ୧ମ ଓ ୨ୟ ସଂଖ୍ୟାରେ ପ୍ରକାଶିତ ଇଂରେଜ

---

୭୬- ୫୭/୧୨

ସରକାରଦ୍ୱାରା ୧୮୦୪ ରୁ ୧୮୧୪ ମଧ୍ୟରେ କରାଯାଇଥିବା ଖୋର୍ଦ୍ଧାର ଜମିଜମା ବନ୍ଦୋବସ୍ତ ସମ୍ପର୍କିତ ଇଓ୍ୱେରଙ୍କର ଦୀର୍ଘ ରିପୋର୍ଟରେ ବକ୍ସି ଜଗବନ୍ଧୁଙ୍କ ରୋଡ଼ଙ୍ଗ ମାହାଲ ବନ୍ଦୋବସ୍ତ ସମ୍ପର୍କରେ ବିସ୍ତୃତ ବିବରଣୀ ସ୍ଥାନପାଇଛି ।

ଟ୍ରାଓ୍ୱେର ଲେଖିଥିଲେ - ୧୮୦୪ ଖ୍ରୀଷ୍ଟାବ୍ଦ, ଇଂରେଜ ଶାସନର ୧ମ ବର୍ଷରେ ହିଁ କଲେକ୍ଟର ଗ୍ରୋଏମ୍‌ଙ୍କ ଦ୍ୱାରା ଯେଉଁ ବର୍ଷିକିଆ ବନ୍ଦୋବସ୍ତ କରାଯାଇଥିଲା ସେଥିରେ ବକ୍ସିଙ୍କ ନାମରେ ରୋଡ଼ଙ୍ଗ କିଲ୍ଲାର ବନ୍ଦୋବସ୍ତ କରାଯାଇଥିଲା । ୧୮୦୫ରେ ଗ୍ରୋଏମଙ୍କ ସ୍ଥାନରେ ଓଏବ୍ କଲେକ୍ଟର ହୋଇ ଆସିଲେ ଏବଂ ସେ ସେହି ବର୍ଷ ପୁଣି ତିନି ବର୍ଷପାଇଁ ଆଉ ଏକ ବନ୍ଦୋବସ୍ତ କରାଇଲେ । ସେହି ତିନି ବର୍ଷିଆ ବନ୍ଦୋବସ୍ତରେ ମଧ୍ୟ ବକ୍ସି ଜଗବନ୍ଧୁଙ୍କ ନାମରେ ରୋଡ଼ଙ୍ଗ ମାହାଲ ବନ୍ଦୋବସ୍ତ କାଏମ୍ ରହିଥିଲା । କିନ୍ତୁ ତା'ପରେ ଲାଲା କୃଷ୍ଣଚନ୍ଦ୍ର ସିଂହ ନାମକ ଜଣେ ବଙ୍ଗାଳୀ କିରାଣି କଲେକ୍ଟରଙ୍କ ଅଫିସ୍‌ରେ ଷଡ଼ଯନ୍ତ୍ର କରି ବକ୍ସିଙ୍କଠାରୁ ରୋଡ଼ଙ୍ଗ ମାହାଲକୁ ଯେପରି ଛଡ଼ାଇନେଇଥିଲେ ତହିଁର ସ୍ପଷ୍ଟ ଚିତ୍ର ଦିଆଯାଇଛି ।[୭୭]

ଲାଲା କୃଷ୍ଣଚନ୍ଦ୍ର ସିଂହ କଲିକତା ନିକଟ ପାଇକପଡ଼ାର ବାସିନ୍ଦା ଥିଲେ ଏବଂ ଇଂରେଜୀ ଭାଷା ଜାଣିଥିବାରୁ ପ୍ରଥମରୁ ୧୮୦୪ରେ କଲେକ୍ଟର ଗ୍ରୋଏମ୍‌ଙ୍କର ଅଫିସ୍ ସିରସ୍ତାଦାରଭାବେ କଟକରେ ମୁକରିର ହୋଇଥିଲେ । ତାଙ୍କୁ ମଧ୍ୟ କଲେକ୍ଟରଙ୍କ ପେସ୍କାର ଏବଂ କେହି କେହି କଲେକ୍ଟରଙ୍କ ଦେବାନ୍ ବୋଲି କହୁଥିଲେ । ଇଂରେଜ ପ୍ରଶାସକମାନେ ଓଡ଼ିଆଭାଷା ଜାଣି ନ ଥିଲେ କି କେହି ବି ଓଡ଼ିଆ ସେତେବେଳେ ଇଂରାଜୀଭାଷା ଜାଣି ନ ଥିଲେ । ଅନ୍ୟ ପକ୍ଷରେ ଚୈତନ୍ୟଙ୍କ ସମୟରୁ ଓଡ଼ିଶାରେ ବଙ୍ଗଳାଭାଷାର କିଛିଟା ପ୍ରଚଳନ ଥିଲା । ତେଣୁ ଏ ପରିସ୍ଥିତିର ପୂର୍ଣ୍ଣ ସୁଯୋଗ ନେଇ ଓଡ଼ିଶା ପ୍ରଶାସନ ସମ୍ପର୍କରେ କୃଷ୍ଣଚନ୍ଦ୍ର କଲେକ୍ଟରଙ୍କୁ ଯାହା କହିଲେ କଲେକ୍ଟର ତାକୁ ବେଦରଗାରପରି ଗ୍ରହଣକଲେ । ଫଳତଃ କୃଷ୍ଣଚନ୍ଦ୍ର କଲେକ୍ଟର ଅଫିସରେ ସର୍ବେସର୍ବା ହୋଇଗଲେ । ଯେଉଁ ୪ ପ୍ରଗଣାର ମାଲିକାନାପାଇଁ ଖୋର୍ଦ୍ଧାରାଜା ଓ ଇଂରେଜଙ୍କ ମଧ୍ୟରେ ସଂଘର୍ଷ ଲାଗିଲା ଓ ଖୋର୍ଦ୍ଧାରାଜା ରାଜ୍ୟ ହରାଇଲେ, ସେ ୪ଟି ପ୍ରଗଣାର ମାଲିକାନା କଲେକ୍ଟରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ରହିଥିଲା । ବସ୍ତୁତଃ କୃଷ୍ଣଚନ୍ଦ୍ର ହିଁ ସେ ୪ଟି ପ୍ରଗଣାର ମାଲିକ ହୋଇଗଲେ ଏବଂ ସେ ୪ଟି ପ୍ରଗଣାପାଇଁ ନିଜର ଜଣେ ଭାଇ ଗୌରହରି ସିଂହଙ୍କୁ ୧୮୦୪ରେ ତହସିଲଦାରଭାବେ ମୁକରିରକରି ତାଙ୍କୁ ରାଜସ୍ୱ ଆଦାୟର କ୍ଷମତା ଦେଇଥିଲେ । ୧୮୦୫ରେ ଗ୍ରୋଏମ୍‌ଙ୍କ ସ୍ଥାନରେ ଓ୍ୱେବ କଲେକ୍ଟର ହୋଇ ଆସିଲେ ଏବଂ ଦୈବାତ୍ ସେତିକିବେଳକୁ ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କର ଗଦାଧର ରାୟ ନାମକ ଜଣେ ସମ୍ପର୍କୀୟ ପୁତୁରା ରୋଡ଼ଙ୍ଗ ମାହାଲ

---

୭୭- ୫୭/୧୨

ଉପରେ ନିଜର ସ୍ୱତ୍ୱ ଦାବିକରି କଲେକ୍ଟରଙ୍କ ପାଖେ ବକ୍ସିଙ୍କ ନାମରେ କରାଯାଇଥିବା ୧୮୦୫ରେ ରୋଡ଼ଙ୍ଗ ମାହାଲର ତିନି ବର୍ଷିଆ ବନ୍ଦୋବସ୍ତ ବିପକ୍ଷରେ ଏକ ଆପତ୍ତି ଦରଖାସ୍ତ କଲେ।[୭୮] ଏହି ଦରଖାସ୍ତଟି ପାଇଲା ପରେ କୃଷ୍ଣଚନ୍ଦ୍ରଙ୍କର ୪ ପ୍ରଗଣା ସାଙ୍ଗକୁ ରୋଡ଼ଙ୍ଗ ମାହାଲପାଇଁ ପାଟିରୁ ଲାଳ ଗଡ଼ିଲା। ତାକୁ ପାଇବାପାଇଁ ସେ ମନେ ମନେ ଯୋଜନା ପ୍ରସ୍ତୁତ କରିନେଇ ନିଜର ଆଉ ଜଣେ ଭାଇ ଚନ୍ଦ୍ରପ୍ରସାଦ ସିଂହଙ୍କୁ କଲେକ୍ଟର ଅଫିସରେ ସିରସ୍ତାଦାର ରୂପେ ରଖି ନିଜେ ଚାକିରି ଛାଡ଼ିଦେଲେ, କିନ୍ତୁ କଟକ ଛାଡ଼ିଲେ ନାହିଁ। ୧୮୦୫ ବନ୍ଦୋବସ୍ତ ମତେ ରୋଡ଼ଙ୍ଗ ମାହାଲର ଜମିଦାର ଭାବରେ ବକ୍ସି ଜଗବନ୍ଧୁ ସିଧାସଳଖ କଲେକ୍ଟର ଅଫିସରେ ରାଜସ୍ୱ ଜମା ଦାଖଲ କରିବା କଥା। କିନ୍ତୁ ଚନ୍ଦ୍ରପ୍ରସାଦ ସିଂହ ବକ୍ସିଙ୍କଠାରୁ ରୋଡ଼ଙ୍ଗର ରାଜସ୍ୱ ଗ୍ରହଣ ନ କରି ପୁରୀରେ ଥିବା ତହସିଲଦାର ଗୌରହରି ସିଂହଙ୍କୁ ଦେବାପାଇଁ ପରାମର୍ଶ ଦେଲେ। ବକ୍ସି ଚନ୍ଦ୍ରପ୍ରସାଦଙ୍କ ଚାଲ ବୁଝି ନ ପାରି ତାଙ୍କ ପରାମର୍ଶମତେ ଗୌରହରି ସିଂହଙ୍କୁ ରୋଡ଼ଙ୍ଗର ରାଜସ୍ୱ ଟ ୨୩୦୦ ଦେଇଦେଲେ। ରାହାଙ୍ଗ, ସିରାଇ, ପୁରୁଷୋତ୍ତମ ଓ ଚବିଶକୁଦ - ୪ଟି ମାହାଲର ବାର୍ଷିକ ରାଜସ୍ୱ ଜମା ଟ୨୪,୭୦୦ ସହିତ ରୋଡ଼ଙ୍ଗର ଜମା ଟ୨୩୦୦କୁ ମିଶାଇ 'ରାହାଙ୍ଗ ଓଗେର' ମାହାଲର ଜମା ଟ୨୭୦୦୦ ବାବଦକୁ ବକ୍ସି ଟ୨୩୦୦ ଦେଲେ ବୋଲି ଗୌରହରି ସିଂହ ରୋଡ଼ଙ୍ଗର ନାମ ସୁଦ୍ଧା ଉଲ୍ଲେଖ ନ କରି ରେକର୍ଡ଼ରେ ଦର୍ଶାଇଲେ। ଏହି ରାହାଙ୍ଗ ଓଗେର ମାହାଲ ଭିତରେ ରୋଡ଼ଙ୍ଗ ଜମିଦାରୀକୁ ଏହିପରିଭାବେ ମିଶାଇଦିଆଗଲା। ଗୌରହରି ସିଂହ ୧୮୦୪ରୁ ୧୮୦୯-୧୦ ବନ୍ଦୋବସ୍ତ ଶେଷ ପର୍ଯ୍ୟନ୍ତ ରାହାଙ୍ଗ ଓଗେର ମାହାଲର ତହସିଲଦାରଭାବେ ଏବଂ ଚନ୍ଦ୍ରପ୍ରସାଦ ସିଂହ ୧୮୧୧ରେ ଚାକିରିରୁ ତଡ଼ାଖାଇବା ପର୍ଯ୍ୟନ୍ତ କଲେକ୍ଟର ଅଫିସରେ ସିରସ୍ତାଦାର ରହିଥିଲେ।[୭୯]

୧୮୦୭ରେ ରାହାଙ୍ଗ ଓଗେର ଜମିଦାରୀ ମାହାଲକୁ ବର୍ଷିକିଆ ନିଲାମ ଭିତ୍ତିରେ ପଟ୍ଟା ଦେବାକୁ କଲେକ୍ଟର ବିଜ୍ଞପ୍ତି ପ୍ରକାଶକଲେ। କୃଷ୍ଣଚନ୍ଦ୍ର ସିଂହ ଓ ଚନ୍ଦ୍ରପ୍ରସାଦ ସିଂହଙ୍କର ଆଉ ଜଣେ ସମ୍ପର୍କୀୟ ଲକ୍ଷ୍ମୀନାରାୟଣ ରାୟ ନିଲାମ ଧରି ଉକ୍ତ ମାହାଲକୁ ୧୮୦୭-୮ ବର୍ଷପାଇଁ ବର୍ଷିକିଆ ପଟ୍ଟା ନେଲେ। ତାଙ୍କୁ ସେ ବର୍ଷପାଇଁ ରୋଡ଼ଙ୍ଗର ରାଜସ୍ୱ ଦେବାପାଇଁ ବକ୍ସିଙ୍କୁ କୁହାଗଲା ଓ ସେ ତାହା କଲେ। ପୁଣି ତା' ପର ବର୍ଷ ୧୮୦୮-୯ ପାଇଁ ସୁମନ୍ତ ପଟ୍ଟଯୋଷୀ ନାମକ ଆଉ ଜଣେ ବ୍ୟକ୍ତି ରାହାଙ୍ଗ ଓଗେର ମାହାଲର ନିଲାମ ଧରି ପଟ୍ଟାନେଲେ। ସେ ବର୍ଷର ରାଜସ୍ୱ ଦେୟ ବକ୍ସି ସୁମନ୍ତ ପଟ୍ଟଯୋଷୀଙ୍କୁ ଦେଲେ। କିନ୍ତୁ ତା ପରବର୍ଷ ଅର୍ଥାତ୍ ୧୮୦୯-୧୦ରେ ରାହାଙ୍ଗ ଓଗେର ମାହାଲକୁ ସ୍ଥାୟୀଭାବେ ନିଲାମ କରି ବିକିଦେବାକୁ କଲେକ୍ଟର ବିଜ୍ଞପ୍ତି ପ୍ରକାଶକଲେ। ଏଥର ସ୍ୱୟଂ ଲାଲା କୃଷ୍ଣଚନ୍ଦ୍ର ସିଂହ ନିଲାମ

---

*୭୮- ୪୬/୧୪ ୭୯- ୫୦/୨୧୫, ପାରା ୧୨ରୁ ୧୬*

ଧରି ରାହାଙ୍ଗ ଓଗେର ମାହାଲକୁ କିଣିନେଇ ରାତାରାତି ଗୋଟାଏ ବିରାଟ ମାହାଲର ଜମିଦାର ହୋଇଗଲେ ।[୮୦] ତାଙ୍କ ନାମାନୁସାରେ ସେହି ଜମିଦାରୀକୁ ଲାଲାବାବୁ ଇଷ୍ଟେଟ ଏବଂ ତାଙ୍କ ଜନ୍ମସ୍ଥାନ ନାମାନୁଯାୟୀ ପାଇକପଡ଼ା ଇଷ୍ଟେଟ କୁହାଗଲା ।

ତା'ପରେ ଯେତେବେଳେ ଲାଲା କୃଷ୍ଣଚନ୍ଦ୍ର ସିଂହ ରୋଡ଼ଙ୍ଗ ମାହାଲ ଦଖଲ କରିବାକୁ ଲୋକପଠାଇଲେ, ସେତେବେଳେ ବକ୍ସି ଜଗବନ୍ଧୁଙ୍କ ଲୋକେ ପ୍ରବଳ ବାଧା ଦେବାରୁ କୃଷ୍ଣଚନ୍ଦ୍ର ଦଖଲ ପାଇ ପାରିଲେ ନାହିଁ । ଏତିକିବେଳେ ଦୀପଚାନ୍ଦ ରାୟ ନାମକ କଚେରିରେ ଚାକିରି କରୁଥିବା ଆଉ ଜଣେ ଲୋକକୁ କୃଷ୍ଣଚନ୍ଦ୍ର ରୋଡ଼ଙ୍ଗର ଦଖଲ ନେବାପାଇଁ ଅସ୍ତ୍ରଭାବେ ବ୍ୟବହାରକଲେ । ଦୀପଚାନ୍ଦ ହୁଏତ ପ୍ରଥମରୁ କୃଷ୍ଣଚନ୍ଦ୍ରଙ୍କ ବିରୋଧୀଭାବେ ଅଭିନୟ କରି ବକ୍ସିଙ୍କ ପ୍ରତି ରୋଡ଼ଙ୍ଗ ମାହାଲ ବନ୍ଦୋବସ୍ତ କାରସାଦିପାଇଁ ସହାନୁଭୂତି ପ୍ରକାଶକରି ବକ୍ସିଙ୍କଠାରୁ ଉକ୍ତ ମାହାଲକୁ ବର୍ଷକପାଇଁ ପଟ୍ଟାନେଇ ଦଖଲ କରିବାକୁ ସକ୍ଷମ ହୋଇଥିଲେ; କିନ୍ତୁ ତା'ପରେ ପରେ ସେ ବକ୍ସିଙ୍କଠାରୁ ନେଇଥିବା ପଟ୍ଟାକୁ ଚିରିଦେଇ କୃଷ୍ଣଚନ୍ଦ୍ର ସିଂହଙ୍କଠାରୁ ଆଉ ଏକ ପଟ୍ଟା ଲେଖାଇନେଲେ । ଫଳତଃ ତାଙ୍କରି ମାର୍ଫତ୍‌ରେ ଲାଲା କୃଷ୍ଣଚନ୍ଦ୍ର ସିଂହ ରୋଡ଼ଙ୍ଗରୁ ବକ୍ସିଙ୍କ ଦଖଲ ଉଚ୍ଛେଦକରି ନିଜେ ଦଖଲକଲେ ।[୮୧]

ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କର ଉଚ୍ଚ ରାଜବଂଶୀୟ କୁଳଗରିମା ଏବଂ ଉଚ୍ଚ ପଦମର୍ଯ୍ୟାଦା ପରମ୍ପରାର ନଜିର ଦେଇ କଲେକ୍ଟର ଟ୍ରାଓ୍ୱେର ବକ୍ସିଙ୍କ ପ୍ରତି କରାଯାଇଥିବା ଅନ୍ୟାୟ ପ୍ରତି ଉଚ୍ଚକର୍ତ୍ତୃପକ୍ଷଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ଉଦ୍ୟମ କରିଥିଲେ । ସେ ଲେଖିଥିଲେ (ଏହି ଅଧ୍ୟାୟ ଶେଷରେ ଉଦ୍ଧୃତାଂଶ ଦ୍ରଷ୍ଟବ୍ୟ) "ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଭ୍ରମରବରରାୟ ପୁରୁଷାନୁକ୍ରମେ ଖୋର୍ଦ୍ଧା ରାଜ୍ୟର ସେନାପତି ବା ବକ୍ସି ପଦବୀର ଅଧିକାରୀ ଥିଲେ । ଖୋର୍ଦ୍ଧା ରାଜାଙ୍କ ତଳକୁ ତାଙ୍କର ସ୍ଥାନ ଥିଲା ଦ୍ୱିତୀୟ ଏବଂ ବାସ୍ତବ କ୍ଷେତ୍ରରେ ରାଜାଙ୍କ ଅପେକ୍ଷା ତାଙ୍କର ଅଧିକ କ୍ଷମତା ଥିଲା । ପାଇକ ସୈନ୍ୟବାହିନୀ ଉପରେ ତାଙ୍କର ଅଖଣ୍ଡ ଆଧିପତ୍ୟ ହେତୁ ଓଡ଼ିଶାର ସମସ୍ତ ଗଡ଼ଜାତର ରାଜାମାନେ ଏବଂ ଉପକୂଳ ଅଞ୍ଚଳବର୍ତ୍ତୀ ଜମିଦାରମାନେ ତାଙ୍କୁ ରାଜାଙ୍କପରି ମାନ୍ୟତା ଦେଉଥିଲେ । ଗଞ୍ଜାମର ଶେରଗଡ଼ ଏବଂ କଟକ ନିକଟବର୍ତ୍ତୀ ବଡ଼ମ୍ବାର ରାଜପରିବାର ସହିତ ତାଙ୍କର ବୈବାହିକ ସମ୍ପର୍କ ଥିଲା ।[୮୨] ତାଙ୍କର ପରିବାର ପୁରୁଷ ପୁରୁଷ ଧରି ରୋଡ଼ଙ୍ଗ ଜିଲ୍ଲାର ମାଲିକ ଥିଲେ ଏବଂ ଓଡ଼ିଶାରେ ବ୍ରିଟିଶ ଶାସନ ପ୍ରତିଷ୍ଠାର ପ୍ରଥମ ବର୍ଷ ବନ୍ଦୋବସ୍ତରେ ଏବଂ ତା' ପର ବର୍ଷର ତିନି ବର୍ଷିଆ ବନ୍ଦୋବସ୍ତରେ ରୋଡ଼ଙ୍ଗ କିଲ୍ଲା ବକ୍ସିଙ୍କ ନାମରେ ବନ୍ଦୋବସ୍ତ କରାଯାଇଥିଲା ।

---

*୮୦- ୫୭/୧୩    ୮୧- ୫୭/୧୩    ୮୨- ୫୭/୧୧*

*ଏହି ଅଧ୍ୟାୟ ଶେଷରେ ଉଦ୍ଧୃତାଂଶ ଦ୍ରଷ୍ଟବ୍ୟ ।*

ସୁତରାଂ ୧୮୦୩ ଶେଷରେ କର୍ଣ୍ଣେଲ ହାରକୋର୍ଟଙ୍କ ପ୍ରତି ନିଜର ଆନୁଗତ୍ୟ ପ୍ରକାଶ କରିବାରେ ବକ୍ସି ଜଗବନ୍ଧୁ ପ୍ରଥମ ବ୍ୟକ୍ତି ଥିଲେ।"[୮୩]

କିନ୍ତୁ କଲେକ୍ଟର ଟ୍ରାଓ୍ୱେରଙ୍କ ଏପରି ଏକ ରିପୋର୍ଟ ସତ୍ତ୍ୱେ ୧୮୧୮ରେ କମିଶନର ଇଓ୍ୱେର ପାଇକବିଦ୍ରୋହର କାରଣ ଅନୁସନ୍ଧାନ କରି ଟ୍ରାଓ୍ୱେରଙ୍କ ରିପୋର୍ଟ ପଢ଼ିବାପର୍ଯ୍ୟନ୍ତ ଇଂରେଜ ସରକାର ବକ୍ସି ଜଗବନ୍ଧୁଙ୍କର ପ୍ରକୃତ ପରିଚୟ ପାଇପାରି ନ ଥିଲେ - ଏହା ବିଶ୍ୱାସଯୋଗ୍ୟ ହେବ କିପରି ?

ଟ୍ରାଓ୍ୱେର ଜଣେ ସାଧାରଣ ଅଫିସର ନ ଥିଲେ; ସେ ଥିଲେ ଜିଲ୍ଲାର କଲେକ୍ଟର, ବ୍ରିଟିଶ ସରକାରଙ୍କର ଜିଲ୍ଲାସ୍ତରରେ ସର୍ବୋଚ୍ଚ ପ୍ରତିନିଧି। ସୁତରାଂ ସେ ଯେଉଁ ରିପୋର୍ଟ ପ୍ରଦେଶର ପ୍ରଶାସନିକ ମୁଖ୍ୟ କଟକସ୍ଥ କମିଶନରଙ୍କୁ ଦେଲେ, କମିଶନର୍ ସେ ରିପୋର୍ଟକୁ ନ ପଢ଼ି ଅଳିଆ କାଗଜ ଝୁଡ଼ି ଭିତରକୁ ଫିଙ୍ଗି ଦେଇଥିବେ ଅଥବା ବିଡ଼ାବାନ୍ଧି ଫାଇଲତଳେ ଚାପିଦେଇଥିବେ ଏପରି ଚିନ୍ତା କରାଯାଇ ନ ପାରେ। ଟ୍ରାଓ୍ୱେରଙ୍କ ରିପୋର୍ଟରେ ପ୍ରଦତ୍ତ ତଥ୍ୟ ସମ୍ପର୍କରେ ତଳୁ ଉପର ପର୍ଯ୍ୟନ୍ତ, ଅର୍ଥାତ୍ କଲେକ୍ଟର ଅଫିସ୍ କିରାଣିଠାରୁ ଆରମ୍ଭକରି କଲିକତାସ୍ଥିତ ପ୍ରେସିଡେନ୍ସି ମୁଖ୍ୟ ଦପ୍ତରର କର୍ମକର୍ତ୍ତା ଏବଂ ବ୍ରିଟିଶ ଭାରତର ଗଭର୍ଣ୍ଣର ଜେନେରାଲଙ୍କ ପର୍ଯ୍ୟନ୍ତ ସମସ୍ତେ ପ୍ରଶାସନିକ ପ୍ରକ୍ରିୟା ମାଧ୍ୟମରେ ନିଶ୍ଚିତଭାବେ ଅବଗତ ହୋଇଥିବେ। ପ୍ରଶାସନିକ ପ୍ରକ୍ରିୟାରେ ତଥ୍ୟସବୁ ପତ୍ର ଆକାରରେ ଅବଗତି ଓ ପ୍ରତିକାରପାଇଁ ପ୍ରେରିତ ହୁଏ। ଏ କ୍ଷେତ୍ରରେ ଅବଗତି ରହିଲା, କିନ୍ତୁ ପ୍ରତିକାର ହେଲା ନାହିଁ। ତାର କାରଣ ଥିଲା ହାରକୋର୍ଟଙ୍କ ନୀତି।

ଖୋର୍ଦ୍ଧାରାଜାଙ୍କୁ ଗାଦିଚ୍ୟୁତ କରି ଖୋର୍ଦ୍ଧାରାଜ୍ୟକୁ ନିଜର ବିଶାଳ ସାମ୍ରାଜ୍ୟରେ ସାମିଲ କରିବାଲକ୍ଷ୍ୟରେ ୪ ପ୍ରଗଣା ଉପରେ ଖୋର୍ଦ୍ଧାରାଜାଙ୍କ ଦାବିସମ୍ବଳିତ ନିଜର ପ୍ରତିଶ୍ରୁତିକୁ ନିଜେ ଆଗ୍ରହ୍ୟକରି କର୍ଣ୍ଣେଲ ହାରକୋର୍ଟ ଯେଉଁ ବିଶ୍ୱାସଘାତକତାପୂର୍ଣ୍ଣ କୂଟନୀତିର ମଞ୍ଜି ପୋତି ଓଡ଼ିଶାରେ ବ୍ରିଟିଶ ଶାସନବୃକ୍ଷ ଉଭାରିଥିଲେ ତା ମୂଳରେ ସେଇ ବିଶ୍ୱାସଘାତକତାପୂର୍ଣ୍ଣ କୂଟନୀତିର ପାଣି ଢାଳି ବଢ଼ାଇବାପାଇଁ ସେ ପ୍ରଶାସନକୁ ସଜାଗ କରି ରଖିଥିଲେ। ତେଣୁ ଖୋର୍ଦ୍ଧାରାଜାଙ୍କୁ ବନ୍ଦିକରି ତାଙ୍କର ପ୍ରଧାନ ସହାୟକ ଜୟୀ ରାଜଗୁରୁଙ୍କୁ ଫାଶି ଦେବାପରେ ଆଉ କେହି ଯେପରି କସ୍ମିନ୍‌କାଳେ ବ୍ରିଟିଶ ଶାସନବୃକ୍ଷକୁ ସାମାନ୍ୟ ଆଘାତ ଦେଲାଭଳି କୁରାଢ଼ିଟିଏ କି କଟୁରି ଖଣ୍ଡେ ପାଇବା ଅବସ୍ଥାରେ ନ ରହିବେ ସେଥିପାଇଁ ପ୍ରଶାସନ ସ୍ତରରେ ତାଙ୍କର ସେଇ ନୀତି ହିଁ ବଳବତ୍ତର ରହିଥିଲା। ସେଇ ନୀତିଗତ ନିର୍ଦ୍ଦେଶ ନେଇ ଫ୍ଲେଚର ଖୋର୍ଦ୍ଧାର ପ୍ରଥମ ପ୍ରଶାସକ ହୋଇ ଆସିଥିଲେ। ଖୋର୍ଦ୍ଧାର ରାଜପଦ ଲୋପହେବାପରେ

୮୩- ୬୩/୫୨

ରାଜ୍ୟର ବକ୍ସିପଦ ଓ ଦେବାନ ପଦର ଯେପରି କିଛି ମାତ୍ର ଗୁରୁତ୍ୱ ନ ରହେ, ସେଥିପାଇଁ ସେ ପ୍ରଥମ ପଦକ୍ଷେପ ସ୍ୱରୂପ ବକ୍ସିଙ୍କ ଜାଗିରି ବକ୍ସିବାଡ଼ ଓ ଦେବାନ୍‌ଙ୍କ ଜାଗିରି ଦେବାନ୍‌ବାଡ଼ ମାହାଲ ଉଚ୍ଛେଦ କରି ସରକାରଙ୍କ ଖାସ୍‌କରିଦେଲେ । ପାଇକ, ଦଳାଇ ଓ ଦଳବେହେରାମାନଙ୍କ ଜାଗିରିସବୁ ଉଚ୍ଛେଦ କରିଦେଲେ । ୧୭୯୯ରେ ମେଦିନୀପୁରରେ ପାଇକ ଜାଗିରି ଉଚ୍ଛେଦ କରିବା ଫଳରେ ଇଂରେଜମାନଙ୍କୁ ଯେଉଁ ତିକ୍ତ ଅନୁଭୂତି ମିଳିଥିଲା, ମାତ୍ର ପାଞ୍ଚ ବର୍ଷ ପରେ ସେମାନେ ସେ ତିକ୍ତ ଅନୁଭୂତିକୁ ଭୁଲିଯିବା ସ୍ୱାଭାବିକ ନ ଥିଲେ ହେଁ, ଖୋର୍ଦ୍ଧାରାଜ୍ୟ ପ୍ରତି ହାରକୋର୍ଟଙ୍କର ଅସ୍ୱାଭାବିକ ଅସହିଷ୍ଣୁତା ଏବଂ ଚରମ ବିଶ୍ୱାସଘାତକତାର ବଶବର୍ତ୍ତୀ ହୋଇ ମେଜର ଫ୍ଲେଚର ଖୋର୍ଦ୍ଧାର ପାଇକଙ୍କ ଜାଗିରି ଉଚ୍ଛେଦ କରିଦେଲେ ।[୮୪]

Major Fletcher had been allowed to resume their service lands shortly after the confiscation of the Khurda Estate. xxx Deprieved of the lands they were subjected to grossest extortion and oppression .... Toynbee[୮୫]

ବକ୍ସିଙ୍କ 'ବକ୍ସିବାଡ଼' ଓ ଦେଓ୍ୱାନଙ୍କ 'ଦେଓ୍ୱାନବାଡ଼' ଜାଗିରିକୁ ମଧ ମେଜର ଫ୍ଲେଚର ଖାସ୍ କରିନେଲେ । କିନ୍ତୁ ରୋଡ଼ଙ୍ଗ ମାହାଲ ତ ବକ୍ସିଙ୍କର ଜାଗିରି ନ ଥିଲା, ତାଙ୍କ ପୂର୍ବପୁରୁଷ ମୋଗଲ ସୁବାଦାରଙ୍କ ସହାୟତାରେ ରୋଡ଼ଙ୍ଗରୁ ରାୟପିତାମ୍‌ଙ୍କୁ ତଡ଼ି ନିଜେ ଅଧିକାର କରିଥିଲେ ।[୮୬] ବକ୍ସିଙ୍କର ରୋଡ଼ଙ୍ଗ ନାମରେ ଆଉ ଏକ ମାହାଲ ଥିଲା ବୋଲି ଫ୍ଲେଚର ଜାଣିପାରି ନ ଥିଲେ । ଜାଣିଥିଲେ, ରୋଡ଼ଙ୍ଗ ମଧ ବକ୍ସିବାଡ଼ ପରି ପ୍ରଥମ ବନ୍ଦୋବସ୍ତରୁ ଖାସ୍ ହୋଇଯାଇଥାନ୍ତା । ତେଣୁ ଫ୍ଲେଚରଙ୍କ ଅଗୋଚରରେ ରୋଡ଼ଙ୍ଗ ୧୮୦୪-୫ର ବର୍ଷିକିଆ ଓ ୧୮୦୫-୬ର ତିନିବର୍ଷିଆ ବନ୍ଦୋବସ୍ତରେ ବକ୍ସିଙ୍କର ବ୍ୟକ୍ତିଗତ ସାବିକ୍ ମାହାଲରୂପେ କାଏମ ରହିଗଲା । କିନ୍ତୁ ବକ୍ସିଙ୍କ ପୁତୁରା ଗଦାଧର ରାୟ ରୋଡ଼ଙ୍ଗ ଉପରେ ସ୍ୱତ୍ୱ ଦାବିକରି ଆପତ୍ତି ଦରଖାସ୍ତ ଦେବା ପରେ ଧୂର୍ତ୍ତ ଓ କୁଚକ୍ରୀ କୃଷ୍ଣଚନ୍ଦ୍ର ରୋଡ଼ଙ୍ଗରୁ ମଧ ବକ୍ସିଙ୍କୁ ଉଚ୍ଛେଦ କରିବାକୁ ଲାଗିପଡ଼ିଲେ ଏବଂ ସେଥିରେ ସେ ସଫଳତା ଲାଭକଲେ ।[୮୭] ତାଙ୍କର ସେହି ସଫଳତା ପଛରେ ଯେ ହାରକୋର୍ଟଙ୍କ ନୀତି ଓ ନିର୍ଦ୍ଦେଶ ମୂଳରୁ ଶେଷଯାଏଁ ସ୍ପଷ୍ଟଭାବେ କାର୍ଯ୍ୟ କରିଥିଲା ଏଥିରେ ସନ୍ଦେହର ଅବକାଶ ନାହିଁ । ହାରକୋର୍ଟ ଥିଲେ ଓଡ଼ିଶାରେ ବ୍ରିଟିଶ ଶାସନ ପ୍ରତିଷ୍ଠା କରିବାରେ ମୁଖ୍ୟନାୟକ, ସେଥିପାଇଁ ତାଙ୍କର ନୀତି ଓ ନିର୍ଦ୍ଦେଶକୁ ଟାଳିବାଭଳି ଦୁଃସାହସ କୌଣସି ପ୍ରଶାସକଙ୍କର ନ ଥିଲା । ତେଣୁ ୧୮୦୪ରୁ ୧୮୧୨-୧୩ ପର୍ଯ୍ୟନ୍ତ ରୋଡ଼ଙ୍ଗ ବନ୍ଦୋବସ୍ତକୁ ନେଇ ଯେଉଁସବୁ ନାଟକୀୟ ଘଟଣା ଘଟିଗଲା ଜଣେ ସାମାନ୍ୟ କିରାଣିର କାରସାଦି ହେତୁ ବ୍ରିଟିଶ୍ ପ୍ରଶାସକମାନଙ୍କ ଅଗୋଚରରେ ସେ ସବୁ ସମ୍ଭବପର ହୋଇପାରିଲା ବୋଲି କଦାପି କୁହାଯାଇ ନ ପାରେ । ସୁତରାଂ ସରକାରୀ କଳର ଅସାବଧାନତା ହେତୁ ବକ୍ସିଙ୍କ ନାଁରେ ରୋଡ଼ଙ୍ଗ ବନ୍ଦୋବସ୍ତ ଘଟଣା ଜଣାପଡ଼ିବା ପରେ ସେଇ ସରକାରୀ କଳ ହିଁ ବକ୍ସିଙ୍କଠାରୁ ରୋଡ଼ଙ୍ଗକୁ ଛଡ଼ାଇନେବାପାଇଁ ଲାଲାଙ୍କୁ ମାଧମକରି ଷଡ଼ଯନ୍ତ୍ର କରିଥିଲା -ଏହା ନିଃସନ୍ଦେହ ।

୮୪- ୫୬ INXIX ୮୫- ୬୩/୫୧ ୮୬- ୧୬/୧୬ ୮୭- ୫୦/୨୧୧

ଇଓ୍ୱେର ସାହେବ ରୋଡ଼ଙ୍ଗ ବନ୍ଦୋବସ୍ତ ସମ୍ପର୍କରେ ପ୍ରଶାସକଙ୍କ ଅଜ୍ଞତାଭିତ୍ତିରେ ଆଉ ଏକ ବିସମ୍ବାଦ ଦେବାକୁ ମଧ୍ୟ ଭୁଲି ନାହାନ୍ତି । ସେ ଲେଖିଛନ୍ତି କଲେକ୍ଟର ଗ୍ରୋଏମଙ୍କ ଅଫିସରେ ଥିବା ଏକ ନଥି ମନ୍ତବ୍ୟରୁ ଜଣାଯାଏ ଯେ ସେ ଭଦ୍ରଲୋକ (ଗ୍ରୋଏମ୍) ଖୋର୍ଦ୍ଧାପାଇଁ ୧୮୦୪-୫ରେ ପ୍ରଥମ ବର୍ଷିକିଆ ଜମିଜମା ବନ୍ଦୋବସ୍ତ (ଚିଲିକା ଉପକୂଳବର୍ତ୍ତୀ ଦକ୍ଷିଣାଞ୍ଚଳର) କାର୍ଯ୍ୟ କରୁଥିବା ବେଳେ ବକ୍ସି କେଉଁଠି ଥିଲେ, ତାଙ୍କର ପରିଚୟ ଏବଂ ରୋଡ଼ଙ୍ଗକିଲ୍ଲା ସହିତ ତାଙ୍କର ସମ୍ପର୍କ କଣ ଜାଣି ନ ଥିଲେ । ତେଣୁ ସେ ତାଙ୍କ ମନ୍ତବ୍ୟରେ ଲେଖିଥିଲେ ଯେ, ''କୋକଲ ଓ ରୋଡ଼ଙ୍ଗ କିଲ୍ଲା ତହସିଲଦାରଙ୍କ ଅଧୀନରେ ଥିବାରୁ ଏବଂ ରାଜାଙ୍କଠାରୁ ବେତନଭୋଗୀ ଦଳାଇ, ଦଳବେହେରା ଓ ପାଇକମାନେ ଏ ମାହାଲ ବୁଝାସୁଝା ଦାୟିତ୍ୱରେ ଥିବାରୁ, ଏ ମାହାଲକୁ କାହାରି ନାମରେ ବନ୍ଦୋବସ୍ତ କରାଯାଇ ପାରିବ ନାହିଁ । କିନ୍ତୁ ସେହି କଲେକ୍ଟରଙ୍କ ଅଫିସ୍‌ରେ ଥିବା କବୁଲିୟତରୁ ଜଣାପଡ଼େ ଯେ ରୋଡ଼ଙ୍ଗ ବକ୍ସିଙ୍କ ନାମରେ ହିଁ ବନ୍ଦୋବସ୍ତ କରାଯାଇଥିଲା ।[୮୮]'' ନିଜେ ବକ୍ସି ମଧ୍ୟ ଇଂରେଜ ସରକାରଙ୍କ ଉଦ୍ଦେଶ୍ୟରେ ପୋଷ୍ୟପୁତ୍ର ମାଧ୍ୟମରେ ପଠାଇଥିବା ଚିଟାଉରେ ଉଲ୍ଲେଖକରିଛନ୍ତି ଯେ ରୋଡ଼ଙ୍ଗ ତିନିବର୍ଷିଆ ବନ୍ଦୋବସ୍ତରେ ସୁଦ୍ଧା ତାଙ୍କ ନାମରେ ବନ୍ଦୋବସ୍ତ କରାଯାଇଥିଲା । ସେହିପରି କଲେକ୍ଟର ଟ୍ରାଓ୍ୱେର ମଧ୍ୟ ରୋଡ଼ଙ୍ଗ ବନ୍ଦୋବସ୍ତରେ ବକ୍ସି ଜଗବନ୍ଧୁଙ୍କ ସମ୍ପର୍କରେ ଫ୍ଲେଚରଙ୍କ ଉଦାସୀନତାକୁ ନେଇ କଟୁ ମନ୍ତବ୍ୟ ପ୍ରକାଶକରି କହିଛନ୍ତି-ସବୁ ବିଷୟରେ ବ୍ୟାପକ ଅନୁସନ୍ଧାନ ଚଳାଇ ସବୁ ବିଷୟ ଜାଣିବାପାଇଁ ତାଙ୍କ ହାତରେ ଯଥେଷ୍ଟ ସୁଯୋଗ ରହିଥିଲେ ହେଁ ସେ ତାହା କରି ନ ଥିଲେ । ବକ୍ସି ଜଗବନ୍ଧୁ ମଧ୍ୟ ତାଙ୍କ ଚିଟାଉରେ ଫ୍ଲେଚରଙ୍କୁ ପ୍ରଥମରୁ ଭେଟି ସବୁକଥା ଜଣାଇବା ସତ୍ତ୍ୱେ ସେ ସମ୍ପୂର୍ଣ୍ଣ ଉଦାସୀନ ରହି ତାଙ୍କ ଦାବିପ୍ରତି କର୍ଣ୍ଣପାତ କରି ନ ଥିଲେ ବୋଲି ଅଭିଯୋଗ କରିଛନ୍ତି । ସୁତରାଂ ପ୍ରଶାସକମାନଙ୍କ ଅଗୋଚରରେ ବକ୍ସିଙ୍କ ରୋଡ଼ଙ୍ଗମାହାଲ ବନ୍ଦୋବସ୍ତରେ ଏତେ ବଡ଼ ଜଘନ୍ୟ ଷଡ଼ଯନ୍ତ୍ର କାର୍ଯ୍ୟକାରୀ ହୋଇଗଲା- ଏହା କେବଳ ନିଜଦୋଷକୁ ଘୋଡ଼ାଇବାପାଇଁ ଇଂରେଜ ପ୍ରଶାସକମାନଙ୍କର ଏକ ଛଳନା ମାତ୍ର । ପ୍ରଶାସକମାନଙ୍କ ଅଜ୍ଞତା, ଅସାବଧାନତା, ଅବହେଳା ଅଥବା ଆଉ ଯେଉଁ ଦୋଷରୁ ହେଉ ପଛକେ- ରୋଡ଼ଙ୍ଗ ବନ୍ଦୋବସ୍ତ କାରସାଦି ବ୍ରିଟିଶ ଶାସନର କାର୍ଯ୍ୟଧାରା ଭିତରେ କଲେକ୍ଟରଙ୍କଦ୍ୱାରା ସମ୍ପାଦିତ ହୋଇଥିଲା । ତେଣୁ ସେ କଳଙ୍କର ଅଲିଭାଦାଗ ବ୍ରିଟିଶ ସରକାର ନିଜ ମୁହଁ ଉପରେ ବହନ କରିବାକୁ ବାଧ୍ୟ ।

ତା'ପରେ ପ୍ରଶ୍ନ ଉଠୁଛି ''୧୮୦୩ରେ ହିଁ ବକ୍ସି ଜଗବନ୍ଧୁ ହାରକୋର୍ଟଙ୍କୁ ନିଜର ଆନୁଗତ୍ୟ ଅର୍ପଣ କରିଦେଇଥିଲେ'' ବୋଲି ଇଓ୍ୱେରଙ୍କ ମନ୍ତବ୍ୟ ସତ୍ୟ ଉପରେ ଆଧାରିତ କି ?

---

*୮୮- ୫୦/୨୧୫, ପାରା ୧୩*

୧୮୦୪-୫ରେ ବର୍ଷିକିଆ ବନ୍ଦୋବସ୍ତରେ ଏବଂ ୧୮୦୫-୬ରେ ତିନିବର୍ଷିଆ ବନ୍ଦୋବସ୍ତରେ ବକ୍ସିଙ୍କ ନାମରେ ରୋଡ଼ଙ୍ଗ ମାହାଲ ବନ୍ଦୋବସ୍ତ କରାଯାଇଥିବାରୁ ବକ୍ସି ହାଇକୋର୍ଟଙ୍କୁ ପ୍ରଥମରୁ ଆନୁଗତ୍ୟ ଅର୍ପଣ କରିଦେଇଥିଲେ ବୋଲି ଇଓ୍ୱେର ଲେଖିଛନ୍ତି। କିନ୍ତୁ ଇଓ୍ୱେରଙ୍କ ରିପୋର୍ଟରେ ପ୍ରକାଶିତ ଗ୍ରୋଏମ୍‌ଙ୍କ ମନ୍ତବ୍ୟ - (ରୋଡ଼ଙ୍ଗକୁ କାହାରି ନାମରେ ବନ୍ଦୋବସ୍ତ କରାଯାଇପାରିବ ନାହିଁ) ସତ୍ତ୍ୱେ ରୋଡ଼ଙ୍ଗକୁ ବକ୍ସି ଜଗବନ୍ଧୁଙ୍କ ନାମରେ ବନ୍ଦୋବସ୍ତ କରାଯାଇଥିବାରୁ ୧୮୦୪ ବର୍ଷିକିଆ ବନ୍ଦୋବସ୍ତରେ ବକ୍ସିଙ୍କ ନାମରେ ରୋଡ଼ଙ୍ଗ ମାହାଲକୁ ସାବିକ ରେକର୍ଡ଼ ମତେ କାଏମ୍ ରଖାଯାଇଥିଲା - ଏହା ସ୍ପଷ୍ଟ ପ୍ରମାଣିତ ହେଉଛି; ଏବଂ ତା' ପରବର୍ତ୍ତୀ ତିନି ବର୍ଷିଆ ବନ୍ଦୋବସ୍ତରେ ମଧ ସେହି ସାବିକ ରେକର୍ଡ଼କୁ କାଏମ ରଖାଯାଇଥିଲା। ତେଣୁ ବକ୍ସି ହାରକୋର୍ଟଙ୍କୁ ଆନୁଗତ୍ୟ ଅର୍ପଣ କରିଥିବାରୁ ତାଙ୍କ ନାମରେ ରୋଡ଼ଙ୍ଗ ମାହାଲ ବନ୍ଦୋବସ୍ତ କରାଯାଇଥିଲା ବୋଲି କହିବା ଅଯୌକ୍ତିକ।[୮୯]

ମ୍ୟାଡ଼କ୍ସ ସେଟଲ୍‌ମେଣ୍ଟ୍ ରିପୋର୍ଟରେ କୁହାଯାଇଛି ଯେ କଟକ ସଦର କାନୁନ୍‌ଗୋ ନରେନ୍ଦ୍ରରାୟ ମହାଶୟ ଓ ରେକର୍ଡ଼କିପର ଗୋପାଳ ପଣ୍ଡିତଙ୍କ ଦ୍ୱାରା ପ୍ରଦତ୍ତ ତଥ୍ୟ ଭିତ୍ତିରେ ୧୮୦୩ ଖ୍ରୀଷ୍ଟାବ୍ଦ ଶେଷଭାଗରେ ବର୍ଷକପାଇଁ ବନ୍ଦୋବସ୍ତ କରାଯାଇଥିଲା। ଏଥିପାଇଁ ପ୍ରସ୍ତୁତ ଅଧିନିୟମରେ କୁହାଯାଇଥିଲା ଯେ କୌଣସି ଜମିଦାର ବା ପ୍ରୋପ୍ରାଇଟର ଯଦି ତାଙ୍କର ଖଳ ଓ ମନ୍ଦ ପ୍ରକୃତି ହେତୁ ଅଥବା ଅନ୍ୟପ୍ରକାର ଯଥେଷ୍ଟ ଉତ୍ତମ କାରଣ ହେତୁ ଅଯୋଗ୍ୟ ବିବେଚିତ ହେଉ ନ ଥିବେ ତାଙ୍କ ନାମରେ ତାଙ୍କ ମାହାଲକୁ ଏକ ବର୍ଷପାଇଁ ବନ୍ଦୋବସ୍ତ କରାଯିବ ଏବଂ ତା'ପରେ ସରକାରଙ୍କ ସନ୍ତୋଷ ବିଧାନ ଭିତ୍ତିରେ ତିନି ବର୍ଷପାଇଁ ମଧ୍ୟ ତାଙ୍କରି ନାମରେ ବନ୍ଦୋବସ୍ତ କରାଯିବ।[୮୯]

ପ୍ରଥମତଃ, ୧୮୦୩ରେ ଯଦି ବକ୍ସି ଜଗବନ୍ଧୁ ହାରକୋର୍ଟଙ୍କୁ ଆନୁଗତ୍ୟ ଅର୍ପଣ କରିବାରେ ୧ମ ବ୍ୟକ୍ତି ଥିଲେ, ତା'ହେଲେ ତ ସରକାରଙ୍କ ସନ୍ତୋଷବିଧାନ କରିବାରେ ପ୍ରଥମ ବ୍ୟକ୍ତିଭାବେ ସେ ବିବେଚିତ ହୋଇଥାନ୍ତେ, ତା ନ ହୋଇ ସେ ଅଯୋଗ୍ୟ ବିବେଚିତ ହୋଇ ସେହି ବର୍ଷିକିଆ ବନ୍ଦୋବସ୍ତରେ ହିଁ ନିଜର ବକ୍ସିବାଡ଼ ଜାଗିରି ମାହାଲରୁ ଉଚ୍ଛେଦ ହେଲେ କାହିଁକି ?

ଦ୍ୱିତୀୟତଃ, ୧୮୦୩ରେ ବକ୍ସି ଜଗବନ୍ଧୁ ତାଙ୍କର କେଉଁ ଖଳ ଓ ମନ୍ଦ ପ୍ରକୃତି ହେତୁ ଅଥବା ଆଉ କେଉଁ ଯଥେଷ୍ଟ ଉତ୍ତମ କାରଣ ହେତୁ ନିଜର ସାତପୁରୁଷୀ ବକ୍ସିବାଡ଼ ଜାଗିରିର ମାଲିକାନା ବନ୍ଦୋବସ୍ତପାଇଁ ଅଯୋଗ୍ୟ ବିବେଚିତ ହେଲେ ?

ଏ ଦୁଇଟିଯାକ ପ୍ରଶ୍ନର ଉତ୍ତର ହେଉଛି- ବକ୍ସି କଦାପି ହାରକୋର୍ଟଙ୍କୁ ଆନୁଗତ୍ୟ ପ୍ରଦର୍ଶନ କରି ନ ଥିଲେ; ଅନ୍ୟ ପକ୍ଷରେ ତାଙ୍କର ବୀରତ୍ୱ, ତାଙ୍କର ସାମର୍ଥ୍ୟ ଏବଂ ଖୋର୍ଦ୍ଧାରାଜ୍ୟରେ ତାଙ୍କର ପ୍ରତିଷ୍ଠା ଓ ଲୋକପ୍ରିୟତାକୁ ପ୍ରଥମରୁ ହିଁ ଧ୍ୱଂସକରିଦେବା

---

୮୯- ୪୬/୧୬୨

ଲକ୍ଷ୍ୟରେ ତାଙ୍କୁ ହାତରେ ନ ମାରି ଭାତରେ ମାରିଦେବାପାଇଁ ହାରକୋର୍ଟଙ୍କ ନୀତି ନିର୍ଦ୍ଦେଶକୁ ଫ୍ଲେଚରସାହେବ ତତ୍‌କ୍ଷଣାତ୍ କାର୍ଯ୍ୟକାରୀ କରିଦେଇଥିଲେ ।

ତୃତୀୟତଃ, ୧୮୦୩ରେ ଯଦି ବକ୍ସି ହାରକୋର୍ଟଙ୍କୁ ଆନୁଗତ୍ୟ ଅର୍ପଣ କରି ୧୮୦୪ ବର୍ଷିକିଆ ଓ ୧୮୦୫ ତିନିବର୍ଷିଆ ବନ୍ଦୋବସ୍ତରେ ରୋଡ଼ଙ୍ଗ ମାହାଲ ପାଇଥିଲେ, ତା'ହେଲେ ପୁଣି କି ଦୋଷ କଲେ ଯେ ପରବର୍ତ୍ତୀ ବନ୍ଦୋବସ୍ତମାନଙ୍କରେ ରୋଡ଼ଙ୍ଗ ମାହାଲକୁ ସୁଦ୍ଧା ହରାଇଲେ ?

ଚତୁର୍ଥତଃ, ୧୮୦୩ରେ କୌଣସିଠାରେ କୌଣସି ସମୟରେ କୌଣସି କାରଣ ହେତୁ ବକ୍ସି ଜଗବନ୍ଧୁ କର୍ଣ୍ଣେଲ ହାରକୋର୍ଟଙ୍କୁ ଭେଟିଥିବାଭଳି କୌଣସି ପ୍ରମାଣ ଏ ଯାବତ୍ କୌଣସି ସୂତ୍ରରୁ ମିଳିଥିବାର ତଥ୍ୟ କୌଣସି ଐତିହାସିକ ପ୍ରକାଶ କରିନାହାନ୍ତି ।

ପଞ୍ଚମତଃ, ବକ୍ସି ଜଗବନ୍ଧୁ ୧୮୦୩ରେ ହାରକୋର୍ଟଙ୍କୁ ଭେଟିଥିବା ଅଥବା ଆନୁଗତ୍ୟ ଅର୍ପଣକରିଥିବା ଘଟଣା ହାରକୋର୍ଟ କହି ନାହାନ୍ତି କି ଲେଖି ନାହାନ୍ତି । ତା' ହୋଇଥିଲେ ସେପରି ଏକ ଗୁରୁତ୍ୱପୂର୍ଣ୍ଣ ଘଟଣାର ବିବରଣୀ ନିଶ୍ଚୟ ସରକାରୀ ନଥିରେ ଗଚ୍ଛିତ ହୋଇ ରହିଥାନ୍ତା ।

ଷଷ୍ଠତଃ, ବକ୍ସି ଜଗବନ୍ଧୁ ଇଂରେଜଙ୍କ ଉଦ୍ଦେଶ୍ୟରେ ଦେଇଥିବା ଚିଟାଉରେ ପ୍ରଥମରୁ ଫ୍ଲେଚରଙ୍କୁ ଭେଟିଥିବା କଥା ଲେଖିଛନ୍ତି, କିନ୍ତୁ ହାରକୋର୍ଟଙ୍କ ନାମ ସୁଦ୍ଧା ଉଲ୍ଲେଖ କରି ନାହାନ୍ତି । ହାରକୋର୍ଟଙ୍କ ଭଳି ବ୍ରିଟିଶ୍ ଶାସନର ପ୍ରମୁଖ ବ୍ୟକ୍ତିଙ୍କୁ ଭେଟିଥିଲେ ସେ ନିଶ୍ଚୟ ତାଙ୍କ ଚିଟାଉରେ ଲେଖିଥାନ୍ତେ । ସୁତରାଂ "୧୮୦୩ରେ ବକ୍ସି ଜଗବନ୍ଧୁ କର୍ଣ୍ଣେଲ ହାରକୋର୍ଟଙ୍କୁ ନିଜର ଆନୁଗତ୍ୟ ଅର୍ପଣ କରିବାରେ ପ୍ରଥମ ବ୍ୟକ୍ତି ଥିଲେ" ବୋଲି ଇଓ୍ୱେର ଯେଉଁ ମନ୍ତବ୍ୟ ବ୍ୟକ୍ତ କରିଛନ୍ତି ତାହା ସମ୍ପୂର୍ଣ୍ଣ ଅମୂଳକ ଏବଂ ସେହି ମନ୍ତବ୍ୟ ଭିତ୍ତିରେ ଯଦି "ହାରକୋର୍ଟଙ୍କ ପୁରୀ ଅଭିଯାନରେ ବକ୍ସି ଜଗବନ୍ଧୁ ସହାୟତା କରିଥିଲେ" ବୋଲି ଖୁରୁଧା ଇତିହାସରେ ଲେଖାଯାଇଥାଏ ତାହା ମଧ୍ୟ ସମ୍ପୂର୍ଣ୍ଣ ଅମୂଳକ ।

## ୧୮୦୩-୪ରେ ବକ୍ସି କେଉଁଠି ଥିଲେ ? କଣ କରୁଥିଲେ ?

ଓଡ଼ିଶା ତଥା ଖୋର୍ଦ୍ଧାର ଇତିହାସ ଏବଂ ଐତିହାସିକମାନଙ୍କପାଇଁ ଏହା ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ - ଯାହାର ସମାଧାନ ଏଯାଏଁ ହୋଇପାରି ନାହିଁ ।

୧୮୦୩ରେ ଇଂରେଜ ଫୌଜ ଓଡ଼ିଶା ଅଧିକାରକଲେ ଏବଂ ୧୮୦୪ରେ ଖୋର୍ଦ୍ଧାଗଡ଼ ଆକ୍ରମଣକଲେ । ରାଜ୍ୟର ସେନାପତିଙ୍କ ପକ୍ଷରେ ସେହି ରାଜ୍ୟର ଭାଗ୍ୟନିର୍ଣ୍ଣାୟକ ଏହି ଦୁଇଟି ଘଟଣା ଅପେକ୍ଷା ଆଉ ଅଧିକ ଗୁରୁତ୍ୱପୂର୍ଣ୍ଣ ଘଟଣା କଣ ଥାଇପାରେ ? ଅଥଚ ଖୋର୍ଦ୍ଧା ରାଜ୍ୟର ଭାଗ୍ୟ ବିପର୍ଯ୍ୟୟକାରୀ ଏ ଦୁଇଟି ଘଟଣା

ଘଟୁଥିବା ବେଳେ ଖୋର୍ଦ୍ଧାର ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର କେଉଁଠି ଥିଲେ ଓ କଣ କରୁଥିଲେ ସେ ସମ୍ପର୍କରେ ଦେଶୀ କିମ୍ବା ବିଦେଶୀ, ଓଡ଼ିଆ କିମ୍ବା ଅଣଓଡ଼ିଆ କୌଣସି ଗବେଷକ ବା ଐତିହାସିକ ଏଯାବତ୍ ମୁହଁ ସୁଦ୍ଧା ଖୋଲି ନାହାନ୍ତି । ଏହା ଏକ ଦୁର୍ଭାଗ୍ୟଜନକ ବିଡ଼ମ୍ବନା ମାତ୍ର । ଗବେଷକ ତଥା ଐତିହାସିକମାନଙ୍କର ଏ ପ୍ରକାର ସନ୍ଦିଗ୍ଧ ନୀରବତା ସମ୍ପର୍କରେ ୧୯୯୬ ଜୁନ୍‌ରେ ଦୈନିକ 'ପ୍ରଜାତନ୍ତ୍ର' ଓ 'ସମ୍ବାଦ'ରେ ଏକ ନୀତିଗତ ପ୍ରଶ୍ନ ଉତ୍‌ଥାପନ କରି ମଧ କୌଣସି ସୂତ୍ରରୁ କୌଣସି ସୂଚନା ମିଳି ନ ଥିଲା, କିନ୍ତୁ ମିଳିଥିଲା 'ଫିରିଙ୍ଗ କଳିଭାରତ'ରୁ । କବି ମଧୁସୂଦନ ବିପ୍ର ଲେଖିଛନ୍ତି-୧୮୦୨ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧାର ରାଜା ମୁକୁନ୍ଦଦେବଙ୍କ ଆଦେଶରେ ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ଓ ଦେଓ୍ୱାନ୍ ହରିହର ଭ୍ରମରବର ଉଭୟଙ୍କ ମିଳିତ ନେତୃତ୍ୱରେ ଖୋର୍ଦ୍ଧାର ସୈନ୍ୟମାନେ ରଣପୁର ରାଜ୍ୟ ଆକ୍ରମଣକଲେ ଏବଂ ବକ୍ସି ଜଗବନ୍ଧୁ ଓ ଦେଓ୍ୱାନ ହରିହରଙ୍କ ପ୍ରବଳ ଆକ୍ରମଣ ଫଳରେ ରଣପୁର ପରାଜୟ ବରଣକରି ଖୋର୍ଦ୍ଧା ରାଜାଙ୍କ ପଦାନତହେଲା । କିନ୍ତୁ ନାବାଳକ ରାଜା ମୁକୁନ୍ଦଦେବଙ୍କ ଅଭିଭାବକଭାବେ ତାଙ୍କୁ ରାଜକାର୍ଯ୍ୟରେ ପରାମର୍ଶ ଦେଉଥିବା ରାଜଗୁରୁ ଜୟକୃଷ୍ଣ ମହାପାତ୍ର ବକ୍ସି ଓ ଦେଓ୍ୱାନଙ୍କ ରଣପୁର ଜୟଜନିତ ବିଜୟୋଲ୍ଲାସରେ ଈର୍ଷାନ୍ୱିତ ହୋଇ ବକ୍ସି ଓ ଦେଓ୍ୱାନ୍‌ଙ୍କ ବିରୋଧରେ ଚକ୍ରାନ୍ତ ଚଳାଇ ସେ ଦୁହିଁଙ୍କପ୍ରତି ରାଜାଙ୍କର ଅସନ୍ତୋଷ ସୃଷ୍ଟିକରିବାରେ ସକ୍ଷମ ହେଲେ ଏବଂ ସେ ଦୁହିଁଙ୍କୁ ରାଜକାର୍ଯ୍ୟରୁ ଦୂରେଇରଖି ନିଜେ ରାଜକାର୍ଯ୍ୟକୁ ସମ୍ପୂର୍ଣ୍ଣଭାବେ ଅକ୍ତିଆର କରିବା ଲକ୍ଷ୍ୟରେ ରାଜାଙ୍କୁ ସପରିବାର ଖୋର୍ଦ୍ଧାଗଡ଼ରୁ ନେଇ ପୁରୀ ବାଲିସାହିସ୍ଥ ପୁରୁଣା ନଅରରେ ରଖାଇଲେ । ୧୮୧୯ରେ ଇଂରେଜଙ୍କ ଉଦ୍ଦେଶ୍ୟରେ ଲେଖିଥିବା ଚିଟାଉରେ ମଧ ଉଭୟ ବକ୍ସି ଓ ଦେଓ୍ୱାନ ରାଜଗୁରୁଙ୍କ ବିରୋଧରେ ଲେଖିଛନ୍ତି । ସୁତରାଂ 'ଫିରିଙ୍ଗି କଳିଭାରତ'ର ତଥ୍ୟ ସମ୍ପୂର୍ଣ୍ଣ ସତ୍ୟ ଅଟେ । ରାଜା ରାଜଗୁରୁଙ୍କ କୁପରାମର୍ଶରେ ପଡ଼ି ବକ୍ସି ଓ ଦେଓ୍ୱାନ୍‌ଙ୍କ ପ୍ରତି ଅବଜ୍ଞା ଓ ଅବହେଳା ପ୍ରଦର୍ଶନ କରିବାରୁ ବକ୍ସି ଓ ଦେଓ୍ୱାନ୍ ଅଭିମାନରେ ଖୋର୍ଦ୍ଧାରେ ଚୁପ୍‌ଚାପ୍ ରହିଲେ ଏବଂ ରାଜଗୁରୁ ଏହି ମଉକାରେ ଖୋର୍ଦ୍ଧା ରାଜ୍ୟର ଦେଓ୍ୱାନ ଓ ସେନାପତି ଭୂମିକାରେ ଅବତୀର୍ଣ୍ଣ ହେଲେ । କିନ୍ତୁ ଅତିଶୟ ଗର୍ବ, ଅହଙ୍କାର ଓ ଔଦ୍ଧତ୍ୟ ସତ୍ତ୍ୱେ ରାଜଗୁରୁ ଯେପରି ଅସାଧାରଣ ଜ୍ଞାନୀ ଥିଲେ, ସେହିପରି ଅସାଧାରଣ ସାହସୀ ଓ ବିଚକ୍ଷଣ ବୀର ଥିଲେ । ତେଣୁ ସେ ଏକାକୀ ଇଂରେଜମାନଙ୍କୁ ବିରୋଧ କରିଥିଲେ । କିନ୍ତୁ ପିପିଲି (ଡେଲାଙ୍ଗ ଅଞ୍ଚଳ) ଆକ୍ରମଣରେ ତାଙ୍କୁ ଦେଓ୍ୱାନ୍ ହରିହର ଏବଂ ଖୋର୍ଦ୍ଧାଗଡ଼ ଯୁଦ୍ଧରେ ଉଭୟେ ଦେଓ୍ୱାନ ହରିହର ଓ ବକ୍ସି ଜଗବନ୍ଧୁ ସାହାଯ୍ୟ କରିଥିଲେ ବୋଲି 'ଫିରିଙ୍ଗି କଳିଭାରତ'ର ଲେଖକ ସ୍ପଷ୍ଟଭାବେ ବର୍ଣ୍ଣନା କରିଛନ୍ତି ।

୧୮୦୪ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧା ଦୁର୍ଗ ପତନ ସମ୍ପର୍କିତ ଐତିହାସିକ ବିବରଣୀ ଇଂରେଜମାନଙ୍କ କଲମ ମୁନରୁ ଯେପରି ବାହାରିଛି ତାହା ଯେ ସମ୍ପୂର୍ଣ୍ଣଭାବେ ସେମାନଙ୍କ ନିଜସ୍ୱ ଜାତୀୟ ଦୃଷ୍ଟିକୋଣର ନିୟନ୍ତ୍ରଣାଧୀନ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । କିନ୍ତୁ ମଧୁସୂଦନ ବିପ୍ର 'ଫିରିଙ୍ଗି କଳିଭାରତ'ରେ ଖୋର୍ଦ୍ଧା ଦୁର୍ଗ ପତନ ସମ୍ପର୍କରେ ଯେଉଁ ବିବରଣୀ ପ୍ରଦାନକରିଛନ୍ତି ତାହା ସମ୍ପୂର୍ଣ୍ଣ ନିରପେକ୍ଷ ବାସ୍ତବତାର ପ୍ରତିଫଳନ ପରି ପ୍ରତୀୟମାନ ହେଉଛି । ଏପରିକି ଇଂରେଜମାନେ ତରତୁଆ ଓ ଟାଙ୍ଗିଆପଡ଼ାଠାରେ ପଶ୍ଚିମ ଓ ଉତ୍ତରଦିଗରୁ ଖୋର୍ଦ୍ଧା ସୈନ୍ୟଙ୍କୁ ପରାସ୍ତକରି ଗୁରୁଜଙ୍ଗଯାଏଁ ମାଡ଼ିଆସିବା ପରେ ପୂର୍ବରେ ଗଙ୍ଗପଡ଼ାଠାରେ ବୈଷ୍ଣବ ଭାରତୀଙ୍କ ନେତୃତ୍ୱରେ ଖୋର୍ଦ୍ଧାବାହିନୀ ଇଂରେଜବାହିନୀକୁ ଅସ୍ତବ୍ୟସ୍ତ କରିଦେଉଥିବା ଖବର ପାଇ ଗୁରୁଜଙ୍ଗଠାରୁ ଯାଇ ଗଙ୍ଗପଡ଼ାଠାରେ ବୈଷ୍ଣବ ଭାରତୀଙ୍କ ପଛପାଖରୁ ବେଢ଼ିଯାଇଥିବାର ଯେପରି ବର୍ଣ୍ଣନାକରାଯାଇଛି, ତାହା ପ୍ରତ୍ୟକ୍ଷଦର୍ଶୀ ବର୍ଣ୍ଣନା ପରି ବାସ୍ତବଧର୍ମୀ ହୋଇଉଠିଛି । ରାଷ୍ଟ୍ରୀୟ ସ୍ୱାର୍ଥ ପାଖରେ ବ୍ୟକ୍ତିଗତ ସ୍ୱାର୍ଥ ବା ବିଦ୍ୱେଷର ସ୍ଥାନ ନାହିଁ; ସେହିପରି ରାଷ୍ଟ୍ରର ସମ୍ମାନ କ୍ଷେତ୍ରରେ ମଧ ବ୍ୟକ୍ତିଗତ ମାନ ସମ୍ମାନ ପ୍ରଶ୍ନ ଅତି ତୁଚ୍ଛ । ଏହି ମହାନ୍ ଆଦର୍ଶରେ ଅନୁପ୍ରାଣିତ ହୋଇ ରାଷ୍ଟ୍ରୀୟ ବିପତ୍ତି କାଳରେ ରାଷ୍ଟ୍ରର ସ୍ୱାର୍ଥ ଓ ସମ୍ମାନ ରକ୍ଷାପାଇଁ ନିଜର ସ୍ୱାର୍ଥ ଓ ସମ୍ମାନକୁ ତୁଚ୍ଛ ମନେକରିଛନ୍ତି ଖୋର୍ଦ୍ଧାର ଦେଓ୍ୱାନ ହରିହର ଭ୍ରମରବର ରାୟ ଏବଂ ସେନାପତି ବକ୍ସି. ଜଗବନ୍ଧୁ ବିଦ୍ୟାଧର ମହାପାତ୍ର । ତେଣୁ ଇଂରେଜଙ୍କର ଆକ୍ରମଣକୁ ପ୍ରତିହତ କରିବାପାଇଁ ଦେଓ୍ୱାନ୍ ହରିହର ଡେଲାଙ୍ଗ ଯୁଦ୍ଧରେ ଏବଂ ଉଭୟ ଦେଓ୍ୱାନ୍ ହରିହର ଓ ବକ୍ସି ଜଗବନ୍ଧୁ ଖୋର୍ଦ୍ଧାଗଡ଼ ଯୁଦ୍ଧରେ ରାଜଗୁରୁଙ୍କ ସହ ବ୍ୟକ୍ତିଗତ ବିଦ୍ୱେଷ ସତ୍ତ୍ୱେ ତାଙ୍କ ନେତୃତ୍ୱରେ ଇଂରେଜବାହିନୀ ସହ ଲଢ଼ି ସ୍ୱଦେଶ ପ୍ରୀତିର ଏକ ଅସମାନ୍ୟ ଗୌରବମୟ ପରମ୍ପରା ସୃଷ୍ଟିକରିଯାଇଛନ୍ତି । ମଧୁସୂଧନ ବିପ୍ର ଏ କଥା ମଧ ସ୍ପଷ୍ଟଭାବରେ ବର୍ଣ୍ଣନା କରିଛନ୍ତି ଯେ, କର୍ଣ୍ଣେଲ ହାରକୋର୍ଟ କଟକ ଅଭିଯାନ କରିବା ନିମନ୍ତେ ଗଞ୍ଜାମରୁ ବାଣପୁର ଓ ଖୋର୍ଦ୍ଧା ବାଟ ଦେଇ ସୈନ୍ୟ ଚାଳନାପାଇଁ ପ୍ରଥମେ ବକ୍ସିଙ୍କୁ ଚିଠିଲେଖି ଅନୁମତି ପ୍ରାର୍ଥନା କରିଥିଲେ, କିନ୍ତୁ ବକ୍ସି ହାରକୋର୍ଟଙ୍କ ଅନୁରୋଧ ପ୍ରତ୍ୟାଖ୍ୟାନ କରିଦେଇଥିଲେ । ସେଥିପାଇଁ ବକ୍ସିଙ୍କ ଉପରେ ପ୍ରଥମରୁ ହିଁ ହାରକୋର୍ଟଙ୍କ ରାଗ ରହିଥିବ । କାରଣ ଗଞ୍ଜାମରୁ ପୁରୀଦେଇ ସୈନ୍ୟଚାଳନାକରି କଟକ ଯିବାକୁ ତାଙ୍କୁ ଯେତିକି ବାଟ ଓ ସମୟ ଲାଗିଲା ଖୋର୍ଦ୍ଧାବାଟଦେଇ ଯାଇଥିଲେ ତହିଁରୁ ଢେର୍ କମ୍ (ପ୍ରାୟ ଅଧା) ବାଟ ଓ ସମୟ ଲାଗିଥାନ୍ତା । ପୁଣି ଶହ ଶହ ରସଦ ଓ ତମ୍ବୁ ବୋଝେଇ ଶଗଡ଼ ସମୁଦ୍ରକୂଳ ବାଲିରେ ଭିଡ଼ି ଯିବାପାଇଁ ଓ ଚିଲିକାମୁହାଣ ପାରିହେବାପାଇଁ ଯେଉଁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା ଖୋର୍ଦ୍ଧାବାଟେ ତା' ହୋଇ ନ ଥାନ୍ତା ।

ସିରାଇ, ଲେମ୍ବାଇ, ପୁରୁଷୋତ୍ତମ-ରାହାଙ୍ଗ ଓ ଚବିଶକୁଦ - ଏ ୪ ମାହାଲକୁ ଇଂରେଜମାନେ ରାଜା ମୁକୁନ୍ଦଦେବଙ୍କୁ ଫେରାଇଲେ ନାହିଁ, ଅଥଚ ଜଣେ ବାହାରଲୋକ କୃଷ୍ଣଚନ୍ଦ୍ର ସିଂହଙ୍କୁ ନାମକୁ ମାତ୍ର ଶାଗମାଛ ମୂଲ୍ୟରେ ବିକିଦେଲେ; ସେହିପରି ବକ୍ସିଙ୍କୁ ତାଙ୍କ ପୈତୃକ ରୋଡ଼ଙ୍ଗ ମାହାଲରୁ ଜବରଦସ୍ତ ବେଦଖଲ କରି ସେଇ କୃଷ୍ଣଚନ୍ଦ୍ର ସିଂହଙ୍କୁ ନିହାତି ଅନ୍ୟାୟ ଓ ଜାଲିଆତି କରି ମାହାଳିଆ ଦେଇଦେଲେ । ଏହି ଦୁଇଟି ଘଟଣାରୁ ଏହା ସ୍ପଷ୍ଟ ପ୍ରମାଣିତ ହେଉଛି ଯେ, ଇଂରେଜମାନେ ଓଡ଼ିଶା ଅଧିକାର ପୂର୍ବରୁ ମୁକୁନ୍ଦଦେବଙ୍କ ସହିତ ଯେଉଁ ମୈତ୍ରୀଚୁକ୍ତି କରିଥିଲେ, ତାହା କେବଳ ମୁକୁନ୍ଦଦେବଙ୍କୁ ସାମୟିକଭାବେ ଭୁଲାଇ ଭଣ୍ଡିବା ଉଦ୍ଦେଶ୍ୟରେ କରାଯାଇଥିଲା । ତେଣୁ ସେମାନେ ବାରବାଟୀ ଦୁର୍ଗ ଅଧିକାର କରିବା ପରେ ପରେ ହିଁ ଓଡ଼ିଶାର ଅନ୍ୟ ଗଡ଼ଜାତ ରାଜାଙ୍କ ସହିତ ମୁକୁନ୍ଦଦେବଙ୍କୁ ନିଜର ପଦାନତ କରି ରଖିବାଭଳି ସର୍ତ୍ତ ଆରୋପ କରିଥିଲେ । ସେଥିରେ ମୁକୁନ୍ଦଦେବ ଓ ଜୟୀ ରାଜଗୁରୁ ରାଜି ନ ହେବାରୁ ନିଜର ଶାସନକୁ ନିଷ୍କଣ୍ଟକ କରିବା ଲକ୍ଷ୍ୟରେ ଖୋର୍ଦ୍ଧା ରାଜ୍ୟର ସତ୍ତାଲୋପ କରିବା ସଙ୍ଗେ ସଙ୍ଗେ, ରାଜା, ରାଜଗୁରୁ, ସେନାପତି ଓ ଦେଓ୍ୱାନ ତାଙ୍କୁ ବିରୋଧ କରୁଥିବାରୁ ସେ ସମସ୍ତଙ୍କୁ କର୍ଣ୍ଣେଲ ହାରକୋର୍ଟ ନିଜ ବାଟରୁ ହଟେଇଦେବାପାଇଁ ଯୋଜନା କରିଥିଲେ ଏବଂ ସେ ଯୋଜନାକୁ କାର୍ଯ୍ୟକାରୀ କରିଥିଲେ । କ୍ୟାପଟାନ ଲି.ଫାବରେ ୧୮୧୭ ଏପ୍ରିଲ ୧୮ ତାରିଖରେ ଦୋବନ୍ଧାଠାରେ ଯେତେବେଳେ ହଜାର ହଜାର ପାଇକଙ୍କ ଉପରେ ୫୫୦ ବନ୍ଧୁକରୁ କ୍ରମାଗତ ଗୁଳିବର୍ଷଣ କରି ସେମାନଙ୍କୁ ନୃଶଂସଭାବେ ହତ୍ୟାକରି ବିଦ୍ରୋହ ଦମନକଲେ ସେତେବେଳେ ଯଦି ବକ୍ସି ଜଗବନ୍ଧୁ ନିହତ ହୋଇଥାନ୍ତେ ଅଥବା ଧରାପଡ଼ି ଜୟୀ ରାଜଗୁରୁଙ୍କ ଦଶା ଭୋଗିଥାନ୍ତେ, ତା ହେଲେ ଓଡ଼ିଶାରେ ଇଂରେଜମାନଙ୍କର ପ୍ରଥମ ପନ୍ଦର ବର୍ଷର ଘୃଣିତ ଶାସନର ଜଘନ୍ୟ କଳଙ୍କ ବୋଧହୁଏ ଆଉ ଲୋକଲୋଚନକୁ ଆସିପାରି ନ ଥାନ୍ତା । କିନ୍ତୁ ବକ୍ସି ଯେତେ ଅଧିକ କାଳ ଆତ୍ମଗୋପନ କରି ରହିଲେ ସେମାନଙ୍କ କଳଙ୍କିତ ଶାସନର ଅନୀତି ଅନାଚାରର ଅସଲରୂପ ସେତେ ଅଧିକ ମାତ୍ରାରେ ପଦାରେ ପଡ଼ିଲା ଏବଂ ଖୋର୍ଦ୍ଧାର ପାଇକମାନଙ୍କ ମଧ୍ୟରେ ସେମାନଙ୍କ ପ୍ରତି ସେତେ ଅଧିକ ଘୃଣା ଓ ଅସନ୍ତୋଷର ନିଆଁ କୁହୁଳିବାକୁ ଲାଗିଲା । ତେଣୁ ସେମାନେ ବକ୍ସିଙ୍କୁ ସମ୍ମାନ ପ୍ରଦର୍ଶନ କରିବାକୁ ବାଧହୋଇଥିଲେ ।

ସର୍ବୋପରି, ୧୮୧୯ରେ ବକ୍ସି ଜଗବନ୍ଧୁ ଓ ଦେଓ୍ୱାନ କୃଷ୍ଣଚନ୍ଦ୍ରଙ୍କ ତରଫରୁ ଇଂରେଜ ପ୍ରଶାସକଙ୍କୁ ବକ୍ସିଙ୍କ ପୋଷ୍ୟପୁତ୍ର ମାଧମରେ ଦିଆଯାଇଥିବା ଚିଟାଉରୁ ହିଁ ବକ୍ସିଙ୍କର ଅନମନୀୟ ସ୍ୱଦେଶପ୍ରେମ ଓ ସ୍ୱାଧୀନ ଚେତନାର ବଳିଷ୍ଠ ପ୍ରମାଣ ମିଳେ । ପୂର୍ବରୁ କୁହାଯାଇଛି ଯେ ଇଂରେଜ ସରକାର ଦୀର୍ଘ ଦୁଇ ବର୍ଷ କାଳ ସମସ୍ତ ଶକ୍ତି ଓ କ୍ଷମତାର ଅପକୌଶଳ ପ୍ରୟୋଗକରି ବକ୍ସିଙ୍କୁ ଗିରଫ କରିବାକୁ ବିଫଳ ହେବା ପରେ ୧୮୧୯ରେ

କମିଶନର କେର୍‌ଙ୍କ ଘୋଷଣାମତେ ବକ୍ସିଙ୍କ ସହିତ ଆପୋସ ସମାଧାନ କରିବା ନିମନ୍ତେ ପୁରୀର ଜଏଣ୍ଟ ମାଜିଷ୍ଟ୍ରେଟ୍ ମେଲ୍‌ଭିଲ୍ ବକ୍ସିଙ୍କ ପୋଷ୍ୟପୁତ୍ର ଶ୍ୟାମସୁନ୍ଦର ରାଏଙ୍କୁ ପ୍ରବର୍ତ୍ତାଇଥିଲେ । ଏଥିରେ ଉତ୍ସାହିତ ହୋଇ ଶ୍ୟାମସୁନ୍ଦର ବକ୍ସି ଜଗବନ୍ଧୁ ଓ ଦେଓ୍ୱାନ୍ କୃଷ୍ଣଚନ୍ଦ୍ରଙ୍କ ତରଫରୁ ଖଣ୍ଡିଏ ଚିଟାଉ ନେଇ ମେଲ୍‌ଭିଲ୍‌ଙ୍କୁ ଦେଇଥିଲେ । ବାସ୍ତବରେ ଏ ଚିଟାଉ ଇଂରେଜ ସରକାର ପାଖକୁ ଏକ ଦରଖାସ୍ତ ପରି ଲେଖାଯାଇଥିଲା । ଏଥିରେ ପ୍ରଥମରୁ ମହାରାଜା ମୁକୁନ୍ଦଦେବଙ୍କୁ ଜୟୀ ରାଜଗୁରୁଙ୍କ କୁମନ୍ତ୍ରଣାରେ ପରିଚାଳିତ ନ ହେବାପାଇଁ ପରାମର୍ଶ ଦେଇଥିବା ବକ୍ସିଙ୍କର ଉକ୍ତି ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ; କାରଣ ଏହାଦ୍ୱାରା ଇଂରେଜ ପ୍ରଶାସକଙ୍କ ବିରୋଧଭାବାପନ୍ନ ଦୃଷ୍ଟିକୁ ନିଜ ଉପରୁ ଏଡ଼ାଇ ତାଙ୍କୁ ସୁହାଇବାଭଳି ୧୮୦୩ ଓ ୧୮୦୪ରେ ତାଙ୍କ ଶାସନର ପ୍ରତ୍ୟକ୍ଷ ଓ ପ୍ରଧାନ ବିଦ୍ରୋହୀ ଜୟୀ ରାଜଗୁରୁଙ୍କ ସହିତ ନିଜର ଓ ଦେଓ୍ୱାନଙ୍କର ପୂର୍ବ ଆକ୍ରୋଶ ଓ ବିରୋଧଭାବ ଦର୍ଶାଇଛନ୍ତି ମାତ୍ର । ଅଥଚ ସମସ୍ତ ଦରଖାସ୍ତରେ ଇଂରେଜ ସରକାରଙ୍କ ଅନୀତି ଓ ଅପକର୍ମର ବିସ୍ତୃତ ବର୍ଣ୍ଣନା କରାଯାଇଛି । ଉଲ୍ଲେଖଯୋଗ୍ୟ ଯେ ବକ୍ସି ଏ ଚିଟାଉରେ କେବଳ ନିଜ ସ୍ୱାର୍ଥ ସିଦ୍ଧିପାଇଁ ଯୁକ୍ତି ନ ବାଢ଼ି ଇଂରେଜଙ୍କ ଦୁର୍ନୀତିର ଶିକାର ହୋଇଥିବା ନିଜର ପ୍ରଧାନ ସହକର୍ମୀ ଦେଓ୍ୱାନ କୃଷ୍ଣଚନ୍ଦ୍ର ଓ ନିଜର ପ୍ରଭୁ ଗାଦିଚ୍ୟୁତ ରାଜା ମୁକୁନ୍ଦଦେବଙ୍କ ପୁତ୍ର ରାମଚନ୍ଦ୍ରଦେବଙ୍କ ହୃତ-ଗୌରବ ଫେରାଇଦେବାପାଇଁ ଇଂରେଜଙ୍କ ପାଖେ ଦୃଢ଼ ଦାବି କରିଛନ୍ତି । ଏପ୍ରକାର ଜାତୀୟସ୍ୱାର୍ଥସମ୍ବଳିତ ଦାବି କରି ନ ଥିଲେ ହୁଏତ ସେତେବେଳେ ଇଂରେଜମାନେ ତାଙ୍କୁ ରୋଡ଼ଙ୍ଗ ମାହାଲ ଫେରାଇଦେଇ ତାଙ୍କ ସହିତ ଦ୍ୱିପାକ୍ଷିକ ଶାନ୍ତିଚୁକ୍ତି କରାଇନେଇଥାନ୍ତେ । କିନ୍ତୁ ସେ ଏହା ଚାହିଁ ନ ଥିଲେ, ସୁତରାଂ ରୋଡ଼ଙ୍ଗ ମାହାଲପାଇଁ ହାରକୋର୍ଟ ବା ଅନ୍ୟ କାହାରି ପାଖରେ ବକ୍ସି ମୁଣ୍ଡ ନୋଇଁ ନ ଥିଲେ ଏହା ନିଃସନ୍ଦେହରେ କୁହାଯାଇପାରେ । ଚର୍ଚ୍ଚିତ ଚିଟାଉରେ ବକ୍ସି ଜାଗିରି ମାହାଲ ବନ୍ଦୋବସ୍ତ ସମ୍ପର୍କରେ ଖୋର୍ଦ୍ଧାର ପ୍ରଶାସକ ମେଜର ଫ୍ଲେଚରଙ୍କୁ ଏବଂ ଗାଦିଚ୍ୟୁତ ମୁକୁନ୍ଦଦେବ ମେଦିନୀପୁର ଜେଲରୁ ଖଲାସହୋଇଆସି ପୁରୀରେ ଅବସ୍ଥାପିତ ହେବା ପରେ କଟକର ହାକିମମାନଙ୍କୁ ଭେଟିଥିବା ପ୍ରକାଶକରିଛନ୍ତି । ଏହା ନିଶ୍ଚିତଭାବେ ୧୮୦୪ ଓ ୧୮୦୭ର ପରବର୍ତ୍ତୀ ଘଟଣା । ସୁତରାଂ ତା' ପୂର୍ବରୁ ୧୮୦୩ ବା ୧୮୦୪ରେ ବକ୍ସି କର୍ଣ୍ଣେଲ୍ ହାରକୋର୍ଟଙ୍କୁ କୌଣସିଠାରେ ଭେଟ ନ ଥିବାର ଏବଂ ଜୟୀ ରାଜଗୁରୁଙ୍କ ସହିତ 'ଫିରିଙ୍ଗି କଳିଭାରତ' ବର୍ଣ୍ଣନାମତେ ବକ୍ସି ଓ ଦେଓ୍ୱାନଙ୍କର ପୂର୍ବରୁ ଥିବା ପରସ୍ପରବିରୋଧୀ ମନୋଭାବର ପ୍ରତ୍ୟକ୍ଷ ପ୍ରମାଣ ହେଉଛି ବକ୍ସିଙ୍କର ଏହି ଚିଟାଉ ।

ମେଲଭିଲ ସାହେବ ସେହି ଓଡ଼ିଆ ଚିଟାଉ ସହିତ ତାର ଇଂରେଜୀ ଅନୁବାଦ କଟକସ୍ଥ କମିଶନର୍ କେର୍‌ଙ୍କ ପାଖକୁ ପଠାଇଦେଇଥିଲେ । କମିଶନରଙ୍କ ସେକ୍ରେଟେରୀ

ଏ.ଷ୍ଟାର୍ଲିଂ ଫୋର୍ଟ ଉଇଲିଅମ୍ସ୍ଥ ସରକାରଙ୍କ ଚିଫ୍ ସେକ୍ରେଟେରୀ ବେଲିଙ୍କ ପାଖକୁ ପଠାଇଥିବା ତାଙ୍କର ୨୧.୭.୧୮୧୯ ତାରିଖର ସୁଦୀର୍ଘ ରିପୋର୍ଟର ୧୧ଶ ପାରାରେ ଉକ୍ତ ଚିଟାଉର ଆଭାସ ଦେଇ ଚିଟାଉଟିର ଇଂରାଜୀ ଅନୁବାଦ ସହ ଲେଖିଥିଲେ ଯେ, ପ୍ରକୃତରେ ଏହି ଚିଟାଉ ବକ୍ସି ଓ ଦେବାନ୍ ଲେଖିଥିଲେ କି ତାଙ୍କ ନାମରେ ଲେଖିଦିଆଯାଇଥିଲା ତାହା ଜାଣିବାର ଉପାୟ ନ ଥିଲା । ଚିଟାଉର ବିଷୟବସ୍ତୁ ମଧ ଆଦୌ ଗୁରୁତ୍ୱପୂର୍ଣ୍ଣ ନୁହେଁ । କିନ୍ତୁ ରୋଡ଼ଙ୍ଗରେ ରହୁଥିବା ଘୁମୁସର ରାଜପରିବାରର ବକ୍ସିଙ୍କ ପୋଷ୍ୟପୁତ୍ର ସହିତ ବକ୍ସି ଓ ଦେବାନ୍‌ଙ୍କ ସମ୍ପର୍କଦୃଷ୍ଟିରୁ ସେମାନଙ୍କର ମନୋଭାବର ଆଭାସ ଏହି ଚିଟାଉରୁ ମିଳୁଛି । ସ୍ୱର୍ଗତ ସୁଧାକର ପଟ୍ଟନାୟକଙ୍କ ସ୍ୱତନ୍ତ୍ର ପ୍ରବନ୍ଧରେ ପ୍ରକାଶିତ ଏହି ଚିଟାଉର ଇଂରାଜୀ ଅନୁବାଦକୁ ପୁନଶ୍ଚ ଓଡ଼ିଆରେ ଅନୁବାଦକରି ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ତାଙ୍କ ଲିଖିତ ''ପାଇକବିଦ୍ରୋହ' ପୁସ୍ତକରେ ସ୍ଥାନିତକରିଛନ୍ତି । ପାଠକମାନଙ୍କ ଅବଗତି ନିମନ୍ତେ ସେଇ ଓଡ଼ିଆ ଅନୁବାଦକୁ ଅବିକଳ ଉଦ୍ଧାରକରାଗଲା ।

## ବକ୍ସି ଜଗବନ୍ଧୁ ଓ ଦେୱାନ୍ କୃଷ୍ଣଚନ୍ଦ୍ରଙ୍କ ଚିଟାଉ

''କଟକ ପ୍ରଦେଶ ବ୍ରିଟିଶ ସାମରିକ ବାହିନୀଦ୍ୱାରା ଅଧିକୃତ ହେବାର ଚୌଦବର୍ଷ ହୋଇଗଲାଣି । ସେହି ସମୟରେ ମହାରାଜା ମୁକୁନ୍ଦଦେବ ଅଳ୍ପବୟସ୍କ ଯୁବକ ଥିଲେ । ଆମ୍ଭମାନଙ୍କର ହାର୍ଦ୍ଦିକ ପରାମର୍ଶ ଓ ବାରଣ ସତ୍ତ୍ୱେ ସେ ଜୟୀ ରାଜଗୁରୁଙ୍କ କୁପରାମର୍ଶ ବଶରୁ ଇଂରେଜ ରାଜତ୍ୱ ପ୍ରତିଷ୍ଠାର ବିରୋଧ କରିଥିଲେ । ଫଳରେ ସେ ବନ୍ଦିହେଲେ ଏବଂ ମେଦିନୀପୁରକୁ ପ୍ରେରିତହେଲେ । ସେହି ସମୟରେ ମେଜର ଫ୍ଲେଚର ଖୋର୍ଦ୍ଧା ଶାସନ ଦାୟିତ୍ୱରେ ରହିଲେ । ପ୍ରାରମ୍ଭରୁ ଆମ୍ଭେମାନେ ଏହି ଅଫିସରଙ୍କର ନିକଟରେ ହାଜରହୋଇଥିଲୁ । ତାଙ୍କଠାରେ ଦରଖାସ୍ତ ଦେଇ ଆମେ ଓ ଆମର ପୂର୍ବପୁରୁଷମାନେ ଅନାଦିକାଳରୁ ଲିଖିତ ତଫସିଲ ମୁହୁତିରାନ୍ ଖେରିଜି ଓ ଜାଗିରିରୂପରେ ଖୋର୍ଦ୍ଧା ଓ ଚାରି ପରଗଣା (ଲେମ୍ବାଇ, ରାହାଙ୍ଗ, ସିରାଇ, ଚବିଶକୁଦ)ରେ ଯେଉଁ ନିଷ୍କର ଜମି ପାଇଆସିଛୁ ସେ ସବୁ ଜମିର ବିବରଣୀ ଦେଇଥିଲୁ ଏବଂ ଆମ୍ଭେମାନେ ବକ୍ସିବାଡ଼ ଓ ଦେୱାନବାଡ଼ (ବର୍ତ୍ତମାନ ଏଇ ମୂଲ୍ୟବାନ ମୋହାଲଗୁଡ଼ିକ ରାହାଙ୍ଗରେ ସାମିଲ ହୋଇଛି) ଦଖଲ ଉପରେ ବିଶେଷ ଦାବି ଉପସ୍ଥାପିତ କରିଥିଲୁ । କିନ୍ତୁ ମେଜର ଫ୍ଲେଚର ଆମର ଦାବିକୁ ଏକାବେଳେକେ ଆଗ୍ରାହ୍ୟ କରିଦେଲେ ଏବଂ ଆମର ସମସ୍ତ ଜମି ଖାସକରିଦେଲେ, ବଖରାଏ କି ବିଘାଏ ସୁଦ୍ଧା ଜମି ଆମପାଇଁ ଛାଡ଼ିଲେ ନାହିଁ । ମେଦିନୀପୁରରୁ ମହାରାଜାଙ୍କୁ ଫେରାଇଆଣି ତାଙ୍କ ଭରଣପୋଷଣପାଇଁ ନିର୍ଦ୍ଦିଷ୍ଟ ବୃତ୍ତି ଖଞ୍ଜିଦେଇ ତାଙ୍କୁ ପୁରୀରେ ରଖିବା ସମୟରେ ମଧ କଟକର ହାକିମମାନଙ୍କ ନିକଟରେ ଆମ ନିବେଦନ ଜଣାଇଥିଲୁ ଏବଂ ସେଥିରେ ନିବେଦନ କରିଥିଲୁ ଯେ ଆମ୍ଭମାନଙ୍କର କୁଟୁମ୍ବ ଓ ଆଶ୍ରିତ ପ୍ରାୟ ପାଞ୍ଚ ଶହରୁ

ଊର୍ଦ୍ଧ୍ୱ ଲୋକଙ୍କର ଭରଣପୋଷଣ ନିମନ୍ତେ ଆମ୍ଭମାନଙ୍କର କୌଣସି ଉପାୟ ନାହିଁ । ଯଦି ସରକାର ଆମ ଜମି ଆମକୁ ଫେରାଇଦିଅନ୍ତି ତା'ହେଲେ ଆମ୍ଭେମାନେ ପୂର୍ବରୁ ପୁରୁଷାନୁକ୍ରମେ ପ୍ରଦେଶର ମହାରାଜା ଓ ସୁବାଦାର ମାନଙ୍କଠାରୁ ଏହିସବୁ ଜମି ନିଷ୍କର ଜାଗିରିରୂପେ ଭୋଗଦଖଲ କରିଆସୁଥିଲେ ମଧ ଏହି ଜମି ଉପରେ, ଆମର ଦାବିକୁ ଦୃଷ୍ଟିରେ ରଖି ନ୍ୟାୟୋଚିତ କର ଦେବାପାଇଁ ଆମେ ପ୍ରସ୍ତୁତ ଅଛୁ । ଆମର ଦୁର୍ଭାଗ୍ୟକୁ ଆମର ଏହି ନିବେଦନଟି ମଧ ଗୃହୀତ ହେଲା ନାହିଁ । ଦିଲ୍ଲୀ ସମ୍ରାଟ ଆମ' ଭିତରୁ ଜଣଙ୍କର (ବକ୍ସିଙ୍କର) ଜଣେ ପୂର୍ବପୁରୁଷଙ୍କୁ ଯେଉଁ ରୋଡ଼ଙ୍ଗ କିଲ୍ଲା ଜମିଦାରୀ ଜାଗିରି ଦେଇଥିଲେ ଏବଂ ବ୍ରିଟିଶ ସରକାରଙ୍କ ସହିତ ଏହି ଜମି ଉପରେ ଯେଉଁ ତିନି ବର୍ଷିଆ ଚୁକ୍ତି ମଧ ହୋଇଥିଲା ତାହା ତାଙ୍କଠାରୁ (ବକ୍ସିଙ୍କଠାରୁ) ଛଡ଼ାଇନିଆଗଲା । ବର୍ଷ ପରେ ବର୍ଷ ସେ ହାକିମମାନଙ୍କଠାରେ ଏହାର ପ୍ରତିକାରପାଇଁ ନିବେଦନ କରିଥିଲେ ସୁଦ୍ଧା ଏହାର କୌଣସି ଫଳ ହୋଇ ନାହିଁ । ଏହା ଫଳରେ ସେ ଭିକ୍ଷୁକ ଅବସ୍ଥାକୁ ପ୍ରାପ୍ତହେଲେ ଏବଂ ନିଜର ଭରଣପୋଷଣପାଇଁ କେତେକ ଜମିଦାରଙ୍କ ବଦାନ୍ୟତା ଉପରେ ନିର୍ଭର କରିବାକୁ ବାଧହେଲେ । ବହୁ ପୁରୁଷ ପୂର୍ବରୁ ରାଜାମାନେ ଦେଓ୍ୱାନ କୁଟୁମ୍ବକୁ ଯେଉଁ ଚିତ୍ରଗଡ଼ (ଛତ୍ରମାଗଡ଼ !) ଓ ଅନ୍ୟାନ୍ୟ ସ୍ଥାନ ଜାଗିରିରୂପେ ଦାନକରିଥିଲେ ସେ ଗୁଡ଼ିକରୁ ଦେଓ୍ୱାନ ବେଦଖଲ ହେବାରୁ ତାଙ୍କର ଅବସ୍ଥା ମଧ ମୋ ଅବସ୍ଥା ପରି ହେଲା । ବ୍ରିଟିଶ ସରକାରଙ୍କ ଅଧୀନରେ ଦଣ୍ଡିତ ବ୍ୟକ୍ତିମାନେ ମଧ ଖାଦ୍ୟ ଓ ବସ୍ତ୍ର ପାଉଛନ୍ତି ! ଆମେ କଣ କରିଛୁ ଯେ ଆମେମାନେ ଏତେ ହୀନ ଅବସ୍ଥା ଓ ଦାରିଦ୍ର୍ୟ ଭୋଗକରୁଛୁ ! ବ୍ରିଟିଶ ସରକାରଙ୍କ ଅଧୀନରେ କେତେଜଣ ରାଜା ଓ ଜମିଦାର ଦୋଷକରି ମଧ କ୍ଷମା ପାଇ ସ୍ୱରାଜ୍ୟ ଓ ଜମିଦାରୀକୁ ଫେରସ୍ତ ପାଇ ନାହାନ୍ତି ? କିନ୍ତୁ ରାଜା ମୁକୁନ୍ଦଦେବ ତାଙ୍କର ଯୌବନାବସ୍ଥାରେ ଜଣେ ଖଳ ପ୍ରକୃତିର ମନ୍ତ୍ରୀଙ୍କର କୁପରାମର୍ଶରେପଡ଼ି ସରକାରଙ୍କ ବିରୋଧରେ ଦଣ୍ଡନୀୟ କାର୍ଯ୍ୟ କରିଥିବାରୁ ପ୍ରାୟ ଚଉଦବର୍ଷକାଳ ଖୋର୍ଦ୍ଧା ବାହାରେ ରହିଲେ ଏବଂ ପ୍ରାଚୀନ ଓଡ଼ିଶା ରାଜାମାନଙ୍କର ଗାଦି ଓ ରାଜ୍ୟକୁ ଧ୍ୱଂସମୁଖରେ ପକାଇଦିଆଗଲା । ଯଦି ରାଜାଙ୍କୁ ପରମ୍ପରା ଅନୁସାରେ ତାଙ୍କ ରାଜ୍ୟର ଅଧିକାରରେ ରଖାଯାଇଥାଆନ୍ତା ତା'ହେଲେ ରାଜ୍ୟର ତିନିଲକ୍ଷ ଲୋକ ସମୃଦ୍ଧିଶାଳୀ ଓ ଆନନ୍ଦିତ ହୋଇପାରିଥାନ୍ତେ; କିନ୍ତୁ ଗାଦିଶୂନ୍ୟ ହେବାରେ ସେମାନେ ଧ୍ୱଂସହୋଇଗଲେ । ଦାରୁଠେଙ୍ଗଠାରୁ ଛତ୍ରଗଡ଼ ପର୍ଯ୍ୟନ୍ତ ସମସ୍ତ ରାଜ୍ୟକୁ ନିଲାମଦାରଙ୍କ ସହିତ ବନ୍ଦୋବସ୍ତ କରିଦିଆଗଲା... ଇତ୍ୟାଦି । ଯେଉଁଠାରେ ପାଞ୍ଚଟଙ୍କାର ସମ୍ବଳ ଅଛି ସେଠାରେ ଏହି ନିଲାମଦାରମାନେ ପନ୍ଦର ଟଙ୍କାର ଦାବି କଲେ । ଲୁଣ ଦାମ୍ ଏକପଣରୁ ପାଞ୍ଚପଣ ହେଲା । ରୟତମାନଙ୍କ ଅବସ୍ଥା ଏତେ ଖରାପ ହେଲା ଯେ ସେମାନେ ଶାଗ ଓ ପାଣି ଖାଇ ଜୀବନ ଧାରଣ କଲେ । ସେମାନଙ୍କ ଭିତରେ ଜଣକର

ସୁଦ୍ଧା ପାଣିପିଇବାପାଇଁ ବାସନଖଣ୍ଡିଏ ରହିଲା ନାହିଁ । ଶେଷରେ ରାଜ୍ୟର ଲୋକମାନେ ସେମାନଙ୍କର ଦରିଦ୍ର ଓ ଅନାଥ ଅବସ୍ଥା ପରି ଆମର ଅବସ୍ଥା ହୋଇଥିବାରୁ ଦଳବାନ୍ଧି ଆମଠାକୁ ଆସିଲେ ଏବଂ କହିଲେ "ତୁମ୍ଭେମାନେ, ମହାରାଜା ଓ ଆମ୍ଭେମାନେ ଦୁର୍ଦ୍ଦଶାର ନିମ୍ନତମ ସୋପାନରେ ଆସି ପହଞ୍ଚିଗଲେଣି । ବର୍ତ୍ତମାନ ଏହା ଆମର ପରିକଳ୍ପନା- ଚାଲ ସମସ୍ତେ ଜଙ୍ଗଲକୁ ଚାଲିଯିବା ଏବଂ ସେଠାରେ ନିବାସକରିବା । ଏହାଦ୍ୱାରା ଜମି ପଡ଼ିଆପଡ଼ିବ ଓ ଖଜଣା ଆଦାୟ ହୋଇପାରିବ ନାହିଁ- ଏହା ଦେଖି ସମ୍ଭବ ହୋଇପାରେ, ଇଂରେଜମାନେ ଆମ୍ଭମାନଙ୍କ ଅବସ୍ଥାର ବିଚାର କରିବାପାଇଁ ବାଧ ହୋଇପାରନ୍ତି । ଏହି ପରିକଳ୍ପନା ଅନୁଯାୟୀ ଖୋର୍ଦ୍ଧାର ଲୋକେ ବଣଜଙ୍ଗଲକୁ ଚାଲିଗଲେ । କିନ୍ତୁ ଇଂରେଜ କର୍ତ୍ତୃପକ୍ଷ ଲୋକମାନଙ୍କର ଏହି କାର୍ଯ୍ୟକୁ ଯେପରି ଦେଖିବା ଆଶାକରାଯାଉଥିଲା ସେପରି କଲେ ନାହିଁ । ଜଣେ ଓକିଲଙ୍କୁ ପଠାଇବା ପରିବର୍ତ୍ତେ ସେମାନେ ସୈନ୍ୟ ପରିଚାଳନା କରି ଲୋକଙ୍କୁ ହତ୍ୟା ଓ ଦେଶକୁ ଧ୍ୱଂସ କରିବା ଆରମ୍ଭକରିଦେଲେ । ଶେଷକୁ ଶ୍ରୀରାମଚନ୍ଦ୍ର ଦେବଙ୍କ ସୌଭାଗ୍ୟକୁ ଏବଂ ଆମର, ମହାରାଜାଙ୍କର ଓ ଖୋର୍ଦ୍ଧାଲୋକଙ୍କର ମଙ୍ଗଳ ନିମନ୍ତେ ବର୍ତ୍ତମାନର ଶାସକମାନେ ଏହି ପ୍ରଦେଶକୁ ପରିଦର୍ଶନରେ ଆସିଛନ୍ତି । ଆମମାନଙ୍କ ଆପତ୍ତି ଅଭିଯୋଗର ବର୍ତ୍ତମାନ ପୂର୍ଣ୍ଣଭାବରେ ବିଚାରହେଉ ଏବଂ ପ୍ରତ୍ୟେକ ଲୋକ ତାର ନ୍ୟାଯ୍ୟ ଅଧିକାର ପୁନଃ ପ୍ରାପ୍ତହେଉ । ମହାରାଜା ରାମଚନ୍ଦ୍ର ଦେବଙ୍କୁ ଖୋର୍ଦ୍ଧା ରାଜଗାଦିରେ ଅଭିଷିକ୍ତ କରାଯାଉ । ଆମ୍ଭମାନଙ୍କର ପ୍ରାଚୀନ ସମ୍ପତ୍ତି ଓ ପୂର୍ବ ଅବସ୍ଥା ଆମକୁ ଫେରାଇଦିଆଯାଉ ଏବଂ ଖୋର୍ଦ୍ଧାର ଲୋକମାନଙ୍କୁ ସୁଖ ଓ ସମୃଦ୍ଧ ଅବସ୍ଥାକୁ ଫେରାଇନିଆଯାଉ । ଏହାପରେ ଯଦି କେହି ସରକାରଙ୍କ ବିରୋଧରେ ଅପରାଧ କାର୍ଯ୍ୟକରେ ତାହାହେଲେ ଆମ୍ଭେମାନେ ତାହାକୁ ତରବାରିରେ ଧ୍ୱଂସକରିଦେବୁ ଏବଂ ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ଏହି ଅପରାଧ ମାର୍ଜନା କରାଯାଉ ।"

ଉପରୋକ୍ତ ଚିଟାଉର ପ୍ରଥମ ବାକ୍ୟ "କଟକ ପ୍ରଦେଶ ବ୍ରିଟିଶ.. ଦ୍ୱାରା ଅଧିକୃତ ହେବାର ଚୌଦବର୍ଷ ହୋଇଗଲାଣି" ଏବଂ ଶେଷଭାଗରେ "ବର୍ତ୍ତମାନର ଶାସକମାନେ ଏହି ପ୍ରଦେଶକୁ ପରିଦର୍ଶନରେ ଆସିଛନ୍ତି" ଲେଖାରୁ ଅନୁମତି ହୁଏ ଯେ ବକ୍ସି ପାଇକ ବିଦ୍ରୋହର ଅବ୍ୟବହିତ ପୂର୍ବରୁ ନିଜ ଜାଗିରିମାହାଲ ଫେରିପାଇବାକୁ ଇଂରେଜ ହାକିମଙ୍କ ଉଦ୍ଦେଶ୍ୟରେ ଲେଖିଥିବା ଏକ ଦରଖାସ୍ତରେ ବିଦ୍ରୋହ ପରବର୍ତ୍ତୀ ପରିସ୍ଥିତିକୁ ଖାପଖୁଆଇ ଆବଶ୍ୟକ ପରିବର୍ତ୍ତନ କରି କମିଶନର କେର୍‌ଙ୍କ ଘୋଷଣାମତେ ଆପୋସ ସମାଧାନ ଉଦ୍ଦେଶ୍ୟରେ ନିଜ ପୋଷ୍ୟପୁତ୍ର ଶ୍ୟାମସୁନ୍ଦର ହାତରେ ଚିଟାଉ ଆକାରରେ ଦେଇଥିଲେ । କିନ୍ତୁ ମୁକୁନ୍ଦଦେବଙ୍କ ସହଯୋଗକ୍ରମେ ଇଂରେଜମାନେ ଓଡ଼ିଶା ଅଧିକାର କରିସାରିବାର ବର୍ଷକ ପରେ ପୁଣି ଇଂରେଜ ଶାସନ ବିରୋଧରେ ବିଦ୍ରୋହ ନ କରିବାକୁ ବକ୍ସି ଜଗବନ୍ଧୁ ଓ

ଦେବାନ୍ କୃଷ୍ଣଚନ୍ଦ୍ର ମୁକୁନ୍ଦଦେବଙ୍କୁ ପରାମର୍ଶ ଦେଇଥିଲେ ବୋଲି ଯାହା କୁହାଯାଇଛି ତାହା କେବଳ ଇଂରେଜଙ୍କର ବିଶ୍ୱାସଭାଜନ ହେବାପାଇଁ ବିଫଳ ପ୍ରୟାସଭଳି ମନେହୁଏ । ଇଂରେଜ ପ୍ରଶାସକ ଜୟୀ ରାଜଗୁରୁଙ୍କୁ ରାଜଦ୍ରୋହ ଅପରାଧରେ ୧୮୦୬ରେ ଫାଶିଦେଇଥିଲେ ଏବଂ ମୁକୁନ୍ଦଦେବ ୧୮୧୭ ପାଇକବିଦ୍ରୋହ ଅପରାଧରେ ବନ୍ଦିହୋଇ ବନ୍ଦିଶାଳାରେ ମୃତ୍ୟୁବରଣ କରିଥିଲେ । ତେଣୁ ବକ୍ସି ଓ ଦେବାନ୍ ୧୮୦୪ ବିଦ୍ରୋହର ପକ୍ଷପାତୀ ନ ଥିଲେ ବୋଲି ଦର୍ଶାଇ ତହିଁର ପ୍ରମାଣ ଦୁଇ ଜଣ ମୃତ ବ୍ୟକ୍ତିଙ୍କ ଉପରେ ଛାଡ଼ିଦେଇ ନିଜ ସପକ୍ଷରେ ଇଂରେଜ କର୍ମକର୍ତ୍ତାଙ୍କୁ ଭୁଲାଇବାର ଚେଷ୍ଟା କରିଥିବାଭଳି ମନେହୁଏ । କିନ୍ତୁ ଏଥିରୁ ଏହା ମଧ୍ୟ ପ୍ରମାଣିତ ହେଉଛି ଯେ, ପ୍ରଥମରୁ ଅର୍ଥାତ୍ ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜଙ୍କ ଓଡ଼ିଶା ଅଭିଯାନ ଅଥବା ହାରକୋର୍ଟଙ୍କ ପୁରୀ ଅଭିଯାନରେ ବକ୍ସି ଓ ଦେବାନ୍ କଦାପି ସାହାଯ୍ୟ କରି ନ ଥିଲେ । ତା' କରିଥିଲେ ସେମାନେ ଚିଟାଉରେ ନିଜର ନିର୍ଦ୍ଦୋଷତା ପ୍ରମାଣପାଇଁ ମୃତ ରାଜା ଓ ରାଜଗୁରୁଙ୍କୁ ସାକ୍ଷୀ ନ କରି ହାରକୋର୍ଟଙ୍କ ପୁରୀ ଅଭିଯାନରେ ସାହାଯ୍ୟ କରିଥିଲେ ବୋଲି ପ୍ରଥମରୁ ହିଁ ଜଣାଇଥାନ୍ତେ । ସର୍ବୋପରି ତା' କରିଥିଲେ ଇଂରେଜଙ୍କ ସୁଦୃଷ୍ଟିରେ ରହି ସେମାନେ ନିଜର ଜାଗିରି ହରାଇ ନ ଥାନ୍ତେ, କି ଏପରି ଚିଟାଉ ଲେଖିବାର ଆବଶ୍ୟକତା ନ ଥାନ୍ତା ।

ଉକ୍ତ ଚିଟାଉରୁ ଏହା ମଧ୍ୟ ପ୍ରମାଣିତ ହେଉଛି ଯେ, ମୋଗଲ ଓ ମରହଟ୍ଟା ଶାସନାଧୀନ ଓଡ଼ିଶାରେ ଖୋର୍ଦ୍ଧାର ରାଜା ଯେଉଁପରି ସମ୍ମାନଜନକ ସ୍ଥିତିରେ ଥିଲେ ଇଂରେଜମାନେ ବାରବାଟୀ ଦୁର୍ଗ ଦଖଲ କଲାପରେ ମଧ୍ୟ ଖୋର୍ଦ୍ଧାର ରାଜା ସେହିପରି ସମ୍ମାନଜନକ ସ୍ଥିତିରେ ରହନ୍ତୁ-- ଏହା ଥିଲା ବକ୍ସି ଓ ଦେବାନ୍‌ଙ୍କ ମତ ଏବଂ ଚିଟାଉରେ ଏହି ମତକୁ ଦୃଢ଼ଭାବରେ ଉପସ୍ଥାପନା କରିବା ସହ ବିଗତ ଚଉଦ ବର୍ଷ ଇଂରେଜ ଶାସନର ସମସ୍ତ ଅପକର୍ମକୁ ଖୋଲାଖୋଲିଭାବେ ସମାଲୋଚନା କରି ଅତି କଠୋର ଭାଷାରେ କହିଛନ୍ତି- ''ଇଂରେଜ କର୍ତ୍ତୃପକ୍ଷ ସୈନ୍ୟ ପରିଚାଳନା କରି ଲୋକଙ୍କୁ ହତ୍ୟା, ଦେଶକୁ ଧ୍ୱଂସ କରିବା ଆରମ୍ଭ କରିଦେଲେ ।'' "It appears evident that a system of extreme tyranny, violence and oppression has existed, which has proved ruinous to this once flourishing country by the consequent desertion of a great proportion of the cultivators of the soil....."[୯୦] କଲେକ୍ଟର ଟ୍ରାଓ୍ୱେରଙ୍କର ଏହି ମନ୍ତବ୍ୟରୁ ସ୍ପଷ୍ଟ ପ୍ରମାଣିତ ହେଉଛି ଯେ, ବକ୍ସି ଓ ଦେବାନ ତାଙ୍କ ଚିଟାଉରେ ଇଂରେଜ ସରକାରଙ୍କର ଯେଉଁସବୁ ଅପକର୍ମ ସମ୍ପର୍କରେ ଲେଖିଛନ୍ତି ତାହା ଅକ୍ଷରେ ଅକ୍ଷରେ ସତ୍ୟ । ସେମାନଙ୍କପ୍ରତି ଇଂରେଜ ସରକାର ଯେତେସବୁ ଅବିଚାର କରିଥିଲେ, ସେଥିପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରି କହିଛନ୍ତି- ''... ଦଣ୍ଡିତ ବ୍ୟକ୍ତିମାନେ ମଧ୍ୟ ଖାଦ୍ୟ ଓ ବସ୍ତ୍ର ପାଉଛନ୍ତି; ଆମେ କଣ କରିଛୁ ଯେ ଏତେ ହୀନ ଅବସ୍ଥା ଓ ଦାରିଦ୍ର୍ୟ ଭୋଗକରୁଛୁ !'' ଅର୍ଥାତ୍ ଆମେ କୌଣସି ଅପରାଧ ନ କରି ଆମମାନଙ୍କ ପ୍ରତି କାହିଁକି

---

୯୦- ୫୭/୮

ଏ ଅବିଚାର ? ଲକ୍ଷ୍ୟକରିବାର କଥା ଯେ, ଯେଉଁ ଚିଟାଉରେ ବକ୍ସି ଜଗବନ୍ଧୁ ଓ ଦେବାନ୍ କୃଷ୍ଣଚନ୍ଦ୍ରଙ୍କ ପକ୍ଷରୁ ଏତେ ଦୃଢ଼ତା ପ୍ରଦର୍ଶନ କରାଯାଇଛି ଏବଂ 'ଆମେ କ'ଣ କରିଛୁ ! - ଅର୍ଥାତ୍ ଆମେ କିଛି ଅପରାଧ କରି ନାହୁଁ ବୋଲି କୁହାଯାଇଛି, ସେଇ ଚିଟାଉର ଶେଷ ବାକ୍ୟର ଶେଷରେ ''ଏବଂ ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ଏହି ଅପରାଧ ମାର୍ଜନା କରାଯାଉ'' ବୋଲି ଲେଖାଯାଇଛି । ଚିଟାଉ ସହିତ ସାମାନ୍ୟ ସାମଞ୍ଜସ୍ୟ ବା ସମ୍ପର୍କ ନ ଥିବା ଏହି ଯୋଡ଼ା ବାକ୍ୟଟି ଏପରି ଖାପଛଡ଼ା ହୋଇଯାଇଛି ଯେ ଏହା ନିଶ୍ଚିତଭାବେ ବକ୍ସି ଜଗବନ୍ଧୁଙ୍କ ଲେଖା ନୁହେଁ ଏବଂ ତାଙ୍କ ଅଜ୍ଞାତରେ ଆଉ କାହାରିଦ୍ୱାରା ଗୁଞ୍ଜିଦିଆଯାଇଛି ବୋଲି ଛାଏଁ ଛାଏଁ ପ୍ରମାଣିତ ହୋଇଯାଉଛି ।

ବକ୍ସି ଜଗବନ୍ଧୁଙ୍କ ସଂପର୍କରେ ୧୮୧୩ରେ କଲେକ୍ଟର ଟ୍ରାୱେରଙ୍କ ମନ୍ତବ୍ୟ ଭିତ୍ତିରେ ୧୮୧୮ରେ କମିଶନର୍ ଇୱେରଙ୍କ ରିପୋର୍ଟରୁ ଉଦ୍ଧୃତ :-

"xxx Jugubundoo Biddiadhur Mohapatur Bhowurbur Roy, as is well known, inheritade from his ancestors the office of the Bukhshee or commander of the military of the Rajah of Khoordah, Second only to the Rajah in rank and auothority, and possessing perhaps more real power than his master. From his unbounded influence over the military of the country he was looked upto by all the Gurjat chiefs as well as the natives of the plain, next to the representative of their ancient native princes and was allied by marriage to two of the former, the Rajah of Shergurh on the Ghumsur frontier and the Rajah of the Burrumbah, one of the Cuttack tributaries. Besides Jageeri and various perquisities attaching to the important office of Bukhshee, the family of Jugubundoo had been enriched for many generations, by the possession of the valuable estate of Killa Rorung acquired as it would seem by purchase .........

..... ...... ...... ....... ........

The Bukhshee of Khoordha was one of the first to offer submission to Colonel Harcourt at the end of 1803 and the settlement of Killa Rorung was made with him for the first year of the British administration of the affires of the province." ୪୦/VII



## ସପ୍ତମ ଅଧ୍ୟାୟ

# ଖୋର୍ଦ୍ଧାରାଜାଙ୍କ ଦେବାନ୍

ଚର୍ଚ୍ଚିତ ଚିଟାଉରୁ ଖୋର୍ଦ୍ଧାର ଦେବାନ୍‌ଙ୍କ ସମ୍ପର୍କରେ ମଧ୍ୟ କିଛି ଗୁରୁତ୍ୱପୂର୍ଣ୍ଣ ତଥ୍ୟ ମିଳୁଛି - ତାହା ହେଉଛି ଦେଓ୍ୱାନଙ୍କ ଜାଗିରିସମ୍ବନ୍ଧୀୟ । ଦେଓ୍ୱାନଙ୍କ ପୂର୍ବପୁରୁଷ ବକ୍ସିଙ୍କ 'ବକ୍ସିବାଡ଼' ପରି ବିଭିନ୍ନ ସମୟରେ ରାଜାମାନଙ୍କଠାରୁ 'ଦେବାନବାଡ଼' ଜାଗିରି ପାଇଥିଲେ ଏବଂ ସେସବୁ ଜାଗିରି ଜମି ସିରାଇ, ରାହାଙ୍ଗ ଓ ଚବିଶକୁଦ ପ୍ରଗଣାର ଅନ୍ତର୍ଭୁକ୍ତ ଥିଲା । ତା'ଛଡ଼ା ବକ୍ସିଙ୍କ ସ୍ୱତନ୍ତ୍ର ରୋଡ଼ଙ୍ଗ ମାହାଲ ପରି ଦେଓ୍ୱାନଙ୍କର ମଧ୍ୟ 'ଚିତ୍ରଗଡ଼' ନାମରେ ଏକ ସ୍ୱତନ୍ତ୍ର ଜାଗିରିମାହାଲ ଥିଲା । ଏହି 'ଚିତ୍ରଗଡ଼'ର ଅନ୍ୟ ନାମ 'ଛତ୍ରମାଗଡ଼' । କିନ୍ତୁ ଇଂରେଜମାନେ ୧୮୦୫ର ବନ୍ଦୋବସ୍ତ ପରେ ବକ୍ସିଙ୍କୁ ଯେପରି ରୋଡ଼ଙ୍ଗ ଓ ବକ୍ସିବାଡ଼ରୁ ଉଚ୍ଛେଦ କରି ସର୍ବସ୍ୱାନ୍ତ କରିଦେଇଥିଲେ, ଦେଓ୍ୱାନଙ୍କୁ ମଧ୍ୟ ସେହିପରି ଚିତ୍ରଗଡ଼ ଓ ଦେଓ୍ୱାନବାଡ଼ରୁ ଉଚ୍ଛେଦକରି ସର୍ବସ୍ୱାନ୍ତ କରିଦେଇଥିଲେ ।



ଛତ୍ରମାଗଡ଼ର ପରିତ୍ୟକ୍ତ ୨ଟି ବିରାଟ ପୁଷ୍କରିଣୀରୁ ଗୋଟିଏ (ସାମାନ୍ତ ପୋଖରୀ)

ମୋଗଲ ରାଜତ୍ୱ କାଳରେ ଖୋର୍ଦ୍ଧାର ମନ୍ତ୍ରୀଙ୍କୁ ଦେୱାନ୍ ଓ ସେନାପତିଙ୍କୁ ବକ୍ସି ପଦବୀ ମିଳିଲା । ଖୋର୍ଦ୍ଧାରେ ଭୋଇରାଜବଂଶ ପ୍ରତିଷ୍ଠା କାଳରୁ ଅର୍ଥାତ୍ ରାମଚନ୍ଦ୍ର ଦେବ(୧)ଙ୍କ ରାଜତ୍ୱକାଳରୁ, ମନ୍ତ୍ରୀ ଓ ସେନାପତିଙ୍କୁ ଯଥାକ୍ରମେ ଦେୱାନ୍ ଓ ବକ୍ସି କୁହାଯାଉଛି । ଉଭୟେ ଦେୱାନ୍ ଓ ବକ୍ସି ନିଜନିଜର ପଦବୀ ଅନୁକ୍ରମେ ନିଷ୍କର ଜାଗିରିମାନ ପାଇଥିଲେ - ଏହା ଉପରୋକ୍ତ ଚିଟାଉରେ ଦର୍ଶାଯାଇଛି । ମୁକୁନ୍ଦଦେବ(୨)ଙ୍କ ସମୟରେ ୧୮୦୩ ଓ ୧୮୦୪ରେ ଉପୁଜିଥିବା ସ୍ୱତନ୍ତ୍ର ପରିସ୍ଥିତିରେ ଖୋର୍ଦ୍ଧାର ଦେୱାନ୍‌ଙ୍କୁ ଅବଜ୍ଞା କରାଯାଇ ରାଜଗୁରୁଙ୍କୁ ମୁଖ୍ୟ ପରାମର୍ଶଦାତାଭାବେ ଗ୍ରହଣକରାଯାଇଥିଲା ସେ ସମ୍ପର୍କରେ ପୂର୍ବରୁ ସୂଚନା ଦିଆଯାଇଛି । କିନ୍ତୁ ସ୍ୱୟଂ ମୁକୁନ୍ଦଦେବ ରାଜଗୁରୁଙ୍କୁ ଦେବାନ ବୋଲି କହି ନାହାନ୍ତି । ମୁକୁନ୍ଦଦେବ ମେଦିନୀପୁର ଜେଲରୁ ୧୮୦୭ରେ ପଠାଇଥିବା ଦରଖାସ୍ତରେ ଲେଖିଛନ୍ତି ଯେ ସେ ନାବାଳକ ଥିବା ସମୟରେ ରାଜଗୁରୁଙ୍କୁ ତାଙ୍କର ମୁଖ୍ତାରଭାବେ ନିଯୁକ୍ତ କରାଯାଇଥିଲା । ସେ ତାଙ୍କର ଦୀର୍ଘ ଦରଖାସ୍ତରେ* ରାଜଗୁରୁଙ୍କ ନାମୋଲ୍ଲେଖ ନକରି କେବଳ ରାଜଗୁରୁ ବୋଲି ଲେଖିଛନ୍ତି । ସୁତରାଂ ଜୟୀ ରାଜଗୁରୁ କେବଳ ରାଜଗୁରୁ ହିସାବରେ ରାଜ୍ୟ ଶାସନ ସଂପର୍କରେ ନାବାଳକ ମୁକୁନ୍ଦଦେବଙ୍କ ଅଭିଭାବକଭାବେ କାର୍ଯ୍ୟ କରୁଥିଲେ । କିନ୍ତୁ କର୍ଣ୍ଣେଲ ହାର୍‌କୋର୍ଟ୍ ତାଙ୍କର ଚିଠିରେ** ରାଜଗୁରୁଙ୍କୁ ରାଜାଙ୍କ ଦେୱାନ ବୋଲି ଲେଖିଦେଇଥିବାରୁ ପରବର୍ତ୍ତୀ ଐତିହାସିକମାନେ ସେହିପରି ଲେଖିଲେ ।

ଖୋର୍ଦ୍ଧା ତଥା ଓଡ଼ିଶାର ମନ୍ତ୍ରୀ ବା ଦେୱାନ୍‌ମାନଙ୍କ ସମ୍ପର୍କରେ ସ୍ୱର୍ଗତ ଚକ୍ରଧର ମହାପାତ୍ରଙ୍କଦ୍ୱାରା ଲିଖିତ 'ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ' 'ପୁସ୍ତକରେ' ପରିବେଷିତ ତଥ୍ୟ ଅନୁଯାୟୀ ରାଜଗୁରୁମାନେ ପୁରୁଷାନୁକ୍ରମେ ଓଡ଼ିଶାର ଭୌମବଂଶ, ଗଙ୍ଗବଂଶ, ସୂର୍ଯ୍ୟବଂଶ ଏବଂ ଖୋର୍ଦ୍ଧା ଭୋଇବଂଶର ରାଜାମାନଙ୍କର କେବଳ ରାଜପୁରୋହିତ ନ ଥିଲେ; ସେ ମଧ ସେହି ରାଜାମାନଙ୍କର ପ୍ରଧାନମନ୍ତ୍ରୀ ଥିଲେ । ଏବଂ ତତ୍ ସଙ୍ଗେ ସଙ୍ଗେ ସେ ମଧ ରାଜ୍ୟର ପ୍ରଧାନ ସେନାପତିଭାବେ ଦାୟିତ୍ୱ ସମ୍ପାଦନ କରୁଥିଲେ ।

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ, ସ୍ୱର୍ଗତ ଚକ୍ରଧର ମହାପାତ୍ର ବହୁ ଶ୍ରମ ସ୍ୱୀକାରପୂର୍ବକ ବହୁ ଗବେଷଣା କରି ଉତ୍କଳର ଏକ ନିର୍ଦ୍ଦିଷ୍ଟ ରାଜଗୁରୁ ବଂଶର ଏହି ଇତିହାସ ଗ୍ରନ୍ଥ ରଚନା କରିଛନ୍ତି ଏବଂ ଏଥିରେ ବହୁ ଶାସ୍ତ୍ର ପୁରାଣ ଓ ଶିଳାଲେଖର ଉଦ୍ଧୃତି ସହ ରାଜଗୁରୁମାନେ ବିଭିନ୍ନ ସମୟରେ ରାଜାମାନଙ୍କଠାରୁ ପାଇଥିବା ଦାନପତ୍ର ସନନ୍ଦଗୁଡ଼ିକର ଫଟୋଚିତ୍ର ପ୍ରଦାନକରିଛନ୍ତି । ସୁତରାଂ ରାଜଗୁରୁମାନଙ୍କ ଇତିହାସ ସହିତ ଛାଏଁ ଛାଏଁ ରାଜବଂଶ ଓ ରାଜାମାନଙ୍କର ସଂପୃକ୍ତି ଭିତିରେ ଅନେକ ତଥ୍ୟ ଦେଖିବାକୁ ମିଳୁଛି । ସେଥିପାଇଁ ସ୍ୱର୍ଗତ ମହାପାତ୍ର ନିଶ୍ଚିତଭାବରେ ଜଣେ ଗବେଷକ ରୂପେ ସର୍ବଥା ଅଭିନନ୍ଦନୀୟ । କିନ୍ତୁ ସେ ଯେତେସବୁ ଉଦ୍ଧୃତି ତାଙ୍କ ପୁସ୍ତକରେ ଉଦ୍ଧାର

* ପରିଶିଷ୍ଟ (୨)   ** ୪୨/୪୦

କରିଛନ୍ତି, କୌଣସିଟିରେ କୌଣସି ରାଜଗୁରୁ ରାଜ୍ୟର ପ୍ରଧାନମନ୍ତ୍ରୀ ଥିଲେ ବୋଲି ଉଲ୍ଲେଖ ନାହିଁ ଏବଂ ଯେତେସବୁ ସନନ୍ଦର ଫଟୋଚିତ୍ର ପ୍ରକାଶ କରିଛନ୍ତି ସେ ସବୁ କେବଳ 'ରାଜଗୁରୁ' ପଦବୀପାଇଁ ରାଜାମାନଙ୍କର ଭୂମିଦାନପତ୍ର ଛଡ଼ା ଆଉ କିଛି ନୁହେଁ; ତହିଁରୁ ଗୋଟିଏ ହେଲେ ମଧ ମନ୍ତ୍ରୀ ବା ପ୍ରଧାନମନ୍ତ୍ରୀ ପଦବୀପାଇଁ ଜାଗିରିରୂପେ ଦିଆଯାଇ ନାହିଁ। ଅନ୍ୟ ପକ୍ଷରେ ରାଜଗୁରୁଙ୍କୁ ପ୍ରଦତ୍ତ ଦାନପତ୍ର ବା ସନନ୍ଦ ଗୁଡ଼ିକରେ 'ଦେଓ୍ଵାନ'ଙ୍କ ପ୍ରାଧାନ୍ୟ ସୁସ୍ପଷ୍ଟ। କାରଣ ସର୍ବମୋଟ ୧୬ ଗୋଟି ଆଦେଶନାମାରୁ ୫ ଗୋଟି ଦେଓ୍ଵାନଙ୍କ ମାଧମରେ ରାଜାଙ୍କ ଶ୍ରୀହସ୍ତପତ୍ର ହୋଇଥିବାବେଳେ ଆଉ ୫ ଗୋଟି ଖୋଦ୍ ଦେଓ୍ଵାନଙ୍କର ଶାସନମଡ଼ିଆ ଓଗେରଙ୍କୁ ଚିଟାଉ। ହୋଇପାରେ, ଜୟୀ ରାଜଗୁରୁଙ୍କଭଳି ପରମଲକ୍ଷ୍ମୀ ରାଜଗୁରୁ ବା ଆଉ କେହି କୌଣସି ନିର୍ଦ୍ଦିଷ୍ଟ ପରିସ୍ଥିତିରେ ନିଜର ବିଚକ୍ଷଣତା ବଳରେ ରାଜାଙ୍କର ପ୍ରଧାନ ମନ୍ତ୍ରଣାଦାତା ହୋଇପାରିଥିଲେ। ଅଥବା ପ୍ରଧାନ ସେନାପତିପରି ବୀରବେଶରେ ସଜ୍ଜିତହୋଇ କୌଣସି ଯୁଦ୍ଧକ୍ଷେତ୍ରରେ ଯୁଦ୍ଧ କରିଥିଲେ, କିନ୍ତୁ ସେଥିପାଇଁ ସେ ଏକାଧାରରେ ରାଜାଙ୍କର ରାଜଗୁରୁ ଥାଇ ପ୍ରଧାନମନ୍ତ୍ରୀ ଓ ପ୍ରଧାନ ସେନାପତି ପଦବୀର ଅଧିକାରୀ ଥିଲେ ଏପରି କହିବା ଠିକ୍ ହେବ ନାହିଁ। ସେପରି ହୋଇଥିଲେ ମନ୍ତ୍ରୀ ଓ ସେନାପତିଙ୍କ ଜାଗିରି ମଧ ରାଜଗୁରୁଙ୍କୁ ମିଳିଥାନ୍ତା, କିନ୍ତୁ ତା ହୋଇ ନାହିଁ।

ସ୍ୱର୍ଗତ ମହାପାତ୍ର ତାଙ୍କ ପୁସ୍ତକର ୧୩ ପୃଷ୍ଠାରେ ଲେଖିଛନ୍ତି - ''ଏହି ୪୮ ଗୋଟି (ଶାସନ) ଗ୍ରାମର ମତ ଅନୁସାରେ ବେଦବିଦ୍, ନ୍ୟାୟଶାସ୍ତ୍ରଜ୍ଞ, ବହୁଭାଷାଧୁରୀଣ, ଲୋକବାର୍ତ୍ତା ଓ ଦଣ୍ଡନିତୀଜ୍ଞ, ଅଧ୍ୟାତ୍ମବାଦୀ, ଯୁଦ୍ଧବିଦ୍ୟା ପାରଦର୍ଶୀ, ସମାଜସଂସ୍କାରକ ସମଗ୍ର ନୀତିଶାସ୍ତ୍ରବେତ୍ତା, ସୁମନ୍ତ୍ରଣାବାଦୀ ଜଣକୁ ରାଜଗୁରୁ ବା ପ୍ରଧାନମନ୍ତ୍ରୀଭାବେ ରାଜା ସିଦ୍ଧାନ୍ତ କରୁଥିଲେ। ଲୋକପ୍ରତିନିଧି ଶାସନ କହିଲେ ହିଁ ରାଜଗୁରୁଙ୍କୁ ବୁଝାଉଥିଲା। ରାଜା ତାଙ୍କର ସ୍ୱତନ୍ତ୍ର ମନ୍ତ୍ରୀ ରଖି ଶାସନ କରୁଥିଲେ ହେଁ ରାଜଗୁରୁଙ୍କର ମତ ନ ନେଇ କିଛି କରିପାରୁ ନ ଥିଲେ। ରାଜଗୁରୁ ଜଗନ୍ନାଥ ମନ୍ଦିରର ସର୍ବେସର୍ବା ରହୁଥିଲେ। ସେ ସମଗ୍ର ମନ୍ତ୍ରିମଣ୍ଡଳରେ ସଭାପତିତ୍ୱ କରୁଥିଲେ। ପ୍ରଧାନମନ୍ତ୍ରୀ ହେଲେ ହେଁ ରାଷ୍ଟ୍ରର ସର୍ବୋଚ୍ଚ ସେନାପତି ରହୁଥିଲେ।''

ବିଶିଷ୍ଟ ଐତିହାସିକ ଶ୍ରୀଯୁକ୍ତ ମନ୍ମଥନାଥ ଦାସଙ୍କୁ ବ୍ୟକ୍ତିଗତଭାବେ ସାକ୍ଷାତ୍ କରି ଏଥିପ୍ରତି ତାଙ୍କ ଦୃଷ୍ଟି ଆକର୍ଷଣ କରିବାରେ ସେ କହିଲେ ଯେ, ତହିଁରେ ତ୍ରୁଟି ରହିଥିବାରୁ ଏକଦା ଇତିହାସ କଂଗ୍ରେସରେ ସେ ତ୍ରୁଟିକୁ ସଂଶୋଧନ କରିବାପାଇଁ ଲେଖକଙ୍କୁ ପରାମର୍ଶ ଦିଆଯାଇଥିଲା ଏବଂ ପରବର୍ତ୍ତୀ ସଂସ୍କରଣରେ ସେ ତ୍ରୁଟି ସଂଶୋଧନ କରି ଛାପିବେ ବୋଲି ମଧ କହିଥିଲେ। କିନ୍ତୁ ସେ ତ୍ରୁଟି ଆଉ ସଂଶୋଧିତ ହୋଇପାରିଲା ନାହିଁ।

ସେ ଯାହାହେଉ, ସ୍ୱର୍ଗତ ଚକ୍ରଧର ମହାପାତ୍ର ମଧ ତାଙ୍କ ପୁସ୍ତକରେ ଦର୍ଶାଇଛନ୍ତି ଯେ ଖୋର୍ଦ୍ଧା ଭୋଇବଂଶ ରାଜାମାନଙ୍କ ସମୟରେ କହ୍ନେଇ ବିଦ୍ୟାଧର ମହାପାତ୍ର, ପରମାନନ୍ଦ ପଟ୍ଟନାୟକ, ମିର୍ଜା ସୟଦ୍ ବେଗ୍, ବେଣୁ ଭ୍ରମରବର ରାୟ ଓ ପୁରୁଷୋତ୍ତମ

ଭ୍ରମରବର ରାୟ ପ୍ରଭୃତି ମନ୍ତ୍ରୀ ବା ଦେୱାନ ଥିଲେ । ଶେଷୋକ୍ତ ବେଣୁ ଭ୍ରମରବର ରାଏ ଓ ପୁରୁଷୋତ୍ତମ ଭ୍ରମରବର ରାଏଙ୍କ ସହିତ ଦିବ୍ୟସିଂହ ଦେବ ୨ୟ (୧୭୯୩-୧୭୯୮) ଏବଂ ୩ୟ, ମୁକୁନ୍ଦ ଦେବ ୨ୟ (୧୭୯୮-୧୮୧୭)ଙ୍କ ସମୟରେ ଦେୱାନ ଥିବା ହରିହର ଭ୍ରମରବରରାୟ ଓ ତାଙ୍କ ପୁତ୍ର କୃଷ୍ଣଚନ୍ଦ୍ର ଭ୍ରମରବରରାୟଙ୍କର ବଂଶଗତ ସମ୍ପର୍କ ଥିଲା କି ନାହିଁ ଜଣାପଡ଼ି ନାହିଁ ଏବଂ ୨ୟ ରାମଚନ୍ଦ୍ର ଦେବ (୧୭୨୭-୧୭୩୬)ଙ୍କ ସମୟରୁ ଖୋର୍ଦ୍ଧା ରାଜ୍ୟ ଇଂରେଜଙ୍କ ଖାସ୍ ହେବା ପର୍ଯ୍ୟନ୍ତ ଏହି ଭ୍ରମରବରରାୟ ବଂଶ ପୁରୁଷାନୁକ୍ରମେ ଖୋର୍ଦ୍ଧାର ଦେୱାନ ଥିଲେବୋଲି ବିଶ୍ୱାସ କରାଯାଏ ।

କିନ୍ତୁ ଏହି ଦେୱାନ ବଂଶ ସମ୍ପର୍କରେ ଆଜିସୁଦ୍ଧା ଖୋର୍ଦ୍ଧା ଇତିହାସରେ ସମ୍ୟକ ଆଲୋକପାତ କରାଯାଇପାରି ନାହିଁ । ଅଧିକନ୍ତୁ ସ୍ୱର୍ଗତ କେଦାରନାଥ ମହାପାତ୍ରଙ୍କ ଭଳି ପ୍ରଖ୍ୟାତ ଐତିହାସିକ ତାଙ୍କ ଖୁରୁଧା ଇତିହାସରେ ଦେୱାନ କୃଷ୍ଣଚନ୍ଦ୍ର ବକ୍ସିଙ୍କର ପୁତ୍ର ଥିଲେ ବୋଲି କହି କୃଷ୍ଣଚନ୍ଦ୍ର ଭ୍ରମରବର ରାୟ ଓ ତାଙ୍କ ପିତା ଦେୱାନ ହରିହର ଭ୍ରମରବର ରାୟଙ୍କ ପରିଚୟ ସମ୍ପର୍କରେ ସୁଦ୍ଧା ସନ୍ଦେହର କୁହୁଡ଼ି ସୃଷ୍ଟି କରିଯାଇଛନ୍ତି ।[୯୧] ସେହିପରି 'ଫିରିଙ୍ଗି-କଳିଭାରତ'ର ଲେଖକ କବି ମଧୁସୂଦନବିପ୍ର ଦେୱାନ ହରିହର ଭ୍ରମରବର ରାୟଙ୍କ ପ୍ରଶଂସାରେ ଶତମୁଖ ହୋଇ ତାଙ୍କର ଅସାମାନ୍ୟ ବ୍ୟକ୍ତିତ୍ୱ, ସାହସ, ବୀରତ୍ୱ, ବିଚକ୍ଷଣ ପ୍ରଜ୍ଞା ଓ କର୍ମନିଷ୍ଠା ସମ୍ପର୍କରେ ବହୁଳ ବର୍ଣ୍ଣନା କରିଥିବାବେଳେ ଉକ୍ତ ଗ୍ରନ୍ଥକୁ ମୂଳ ତାଳପତ୍ର ପୋଥିରୁ ଉତାରି ବହି ଆକାରରେ ପ୍ରକାଶ କରିଥିବା ଓଡ଼ିଶା ସଂଗ୍ରହାଳୟର ପୂର୍ବତନ ଅଧକ୍ଷ ଡ. ଅର୍ଜୁନ ଯୋଶୀ ତାଙ୍କ ଇଂରାଜୀ ମୁଖବନ୍ଧରେ ଦେୱାନ ହରିହର ଭ୍ରମରବର ରାୟଙ୍କ ପରିଚୟ ସମ୍ପର୍କରେ ଅହେତୁକ ପ୍ରମାଦ ସୃଷ୍ଟିକରିଛନ୍ତି ଯାହାର ବିସ୍ତାରିତ ଆଲୋଚନା ଏ ବହିର ୧୨ଶ ଅଧାୟରେ ସ୍ଥାନପାଇଛି ।

ଖୋର୍ଦ୍ଧା ପାଇକ ବିଦ୍ରୋହ ପରେ ବିଦ୍ରୋହର କାରଣ ଓ ତା'ର ପ୍ରତିକାର ସମ୍ପର୍କରେ ଅନୁଧାନ କରି ଇଓ୍ୱେର ସାହେବ ଯେଉଁ ରିପୋର୍ଟ ସରକାରଙ୍କୁ ଦେଇଥିଲେ ସେଥିରେ ସେ ଦେୱାନ କୃଷ୍ଣଚନ୍ଦ୍ରଙ୍କୁ ପରଲୋକଗତ ଦେୱାନଙ୍କ ପୁତ୍ର ବୋଲି ସ୍ପଷ୍ଟଭାବେ ଉଲ୍ଲେଖ କରିଛନ୍ତି । ଦେୱାନ କୃଷ୍ଣଚନ୍ଦ୍ର ୧୮୧୭ ଖୋର୍ଦ୍ଧା ପାଇକ ବିଦ୍ରୋହରେ ବକ୍ସି ଜଗବନ୍ଧୁଙ୍କର ପ୍ରଧାନ ସହଯୋଗୀ ତଥା ସହକର୍ମୀ ଥିଲେ ଏବଂ ବକ୍ସିଙ୍କ ସହିତ ତାଙ୍କର ଆତ୍ମଗୋପନ କାଳରେ ବ୍ରିଟିଶ ସରକାର ସବୁ ଶକ୍ତି ଖଟାଇ ଖୋଜି ମଧ ତାଙ୍କୁ ଧରି ପାରି ନ ଥିଲେ । ପାଇକ ବିଦ୍ରୋହର କିଛିକାଳ ପୂର୍ବେ ତାଙ୍କ ପିତା ଦେୱାନ ହରିହର ଭ୍ରମରବର ରାୟଙ୍କ ମୃତ୍ୟୁ ପରଠାରୁ ସେ ବକ୍ସି ଜଗବନ୍ଧୁଙ୍କ ସହିତ କାୟା ସଙ୍ଗେ ଛାୟାପରି ମିଶି ରହିଥିଲେ ଏବଂ ବିଦ୍ରୋହରେ ଅଂଶ ଗ୍ରହଣ କରିବାଠାରୁ ଆରମ୍ଭ କରି ୧୮୨୬ରେ ଖୋର୍ଦ୍ଧାର ଜଏଣ୍ଟ ମ୍ୟାଜିଷ୍ଟ୍ରେଟ୍ ୱିଲ୍‌କିନ୍‌ସନଙ୍କ ସମ୍ମୁଖରେ ଆତ୍ମପ୍ରକାଶ କରିବାପର୍ଯ୍ୟନ୍ତ ସେ ବକ୍ସି ଜଗବନ୍ଧୁଙ୍କ

---

୯୧- ୩/୨୭୪

ପଦାଙ୍କ ଅନୁସରଣ କରିଥିଲେ । ତାଙ୍କୁ ମଧ ବ୍ରିଟିଶ ସରକାର ମାସିକ ଏକଶହ ଟଙ୍କା ବୃତ୍ତି ପ୍ରଦାନ କରି ସମ୍ମାନ ପ୍ରଦର୍ଶନ କରିଥିଲେ । ୧୯୬୨ ମସିହାରେ ଓଡ଼ିଶା ରାଜ୍ୟ ଅଭିଲେଖାଗାରର ଅଧକ୍ଷ ଶ୍ରୀ ସୁଶୀଲ ଚନ୍ଦ୍ର ଦେ'ଙ୍କ ଦ୍ୱାରା ସମ୍ପାଦିତ 'ଗାଇଡ୍ ଟୁ ଓରିଶାନ୍ ରେକର୍ଡ଼ସ' ୩ୟ ଖଣ୍ଡରେ ପ୍ରକାଶିତ ଇଂରେଜ ସରକାରଙ୍କର ନଥିପତ୍ରରୁ ଦେବାନ୍ କୃଷ୍ଣଚନ୍ଦ୍ର ଭ୍ରମରବର ରାୟଙ୍କ ସମ୍ପର୍କରେ ସଂଗୃହୀତ ତଥ୍ୟର ସାରାଂଶ:-

<u>ତା ୧୩।୩।୧୮୧୮</u> **କଟକ ଜଏଣ୍ଟ ମ୍ୟାଜିଷ୍ଟ୍ରେଟଙ୍କର ଗଞ୍ଜାମ ମ୍ୟାଜିଷ୍ଟ୍ରେଟଙ୍କୁ ପତ୍ର** — ପାଇକ ବିଦ୍ରୋହରେ ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ରଙ୍କର ପ୍ରଧାନ ସହଯୋଗୀ ଦେବାନ୍ କୃଷ୍ଣଚନ୍ଦ୍ର ଭ୍ରମରବରରାୟଙ୍କୁ ଯିଏ ଧରାଇଦେବେ ବା ଧରାଇ ଦେବାରେ ସହାୟତା କରିବେ ତାଙ୍କୁ ଟ୨୦୦୦/- ପୁରସ୍କାର ମିଳିବ ।[୯୨]

<u>ତା ୯।୯।୧୮୧୮</u> **ଖୋର୍ଦ୍ଧାର ଜଏଣ୍ଟ ମ୍ୟାଜିଷ୍ଟ୍ରେଟ୍ ଡବ୍ଲିଉ. ଫରେଷ୍ଟରଙ୍କର କଟକ କମିସନର କେରଙ୍କୁ ଖୋର୍ଦ୍ଧା ଓ ବାଣପୁର ଅଞ୍ଚଳରେ ପାଇକ ବିଦ୍ରୋହ ପରବର୍ତ୍ତୀ ଅଶାନ୍ତ ପରିସ୍ଥିତି ଓ ତହିଁର ନିରାକରଣ ନିମନ୍ତେ ବିଭିନ୍ନ ସୁପାରିସ୍ ସହ ଦୀର୍ଘ ପତ୍ରର ଶେଷ ୪ପାରା** — ପାରା ୪୯; ବକ୍ସି ଜଗବନ୍ଧୁ ଓ ଦେବାନ୍ କୃଷ୍ଣଚନ୍ଦ୍ରଙ୍କ ଦସ୍ତଖତ ଥିବା ଖଣ୍ଡିଏ ଛୋଟ ଚିଠି ଜଣେ ପାଇକସର୍ଦ୍ଦାର ଠାରୁ ଜବତ କରାଗଲା । ତହିଁରୁ ଜଣାଗଲା ଯେ ଖୋର୍ଦ୍ଧା ଓ ବାଣପୁର ଅଞ୍ଚଳରେ ସେହି ଦୁଇ ଜଣଙ୍କ ପ୍ରରୋଚନା ଓ ନିର୍ଦ୍ଦେଶକ୍ରମେ କ୍ରମାଗତ ଉପଦ୍ରବ ଲାଗିରହିଛି ।[୯୩]

ପାରା ୫୦;ଯଦି ବକ୍ସି ଜଗବନ୍ଧୁଙ୍କୁ କ୍ଷମା ପ୍ରଦାନ ପ୍ରସ୍ତାବ ବିଚାରକରାଯାଏ, ତା'ହେଲେ ତା' ସହିତ ଦେବାନ୍ କୃଷ୍ଣଚନ୍ଦ୍ରଙ୍କୁ ମଧ କ୍ଷମା ପ୍ରଦାନ କରାଯିବା ପ୍ରସ୍ତାବ ବିଚାର କରାଯିବା ଉଚିତ ହେବ ।[୯୪]

ପାରା ୫୧; ବକ୍ସି ଜଗବନ୍ଧୁଙ୍କ ପ୍ରଭାବ ଓ ପ୍ରତିପତ୍ତିର ସମକକ୍ଷ ନ ହେଲେ ମଧ ପୂର୍ବତନ ବୃଦ୍ଧ ଦେବାନ୍‌ଙ୍କ ପୁତ୍ରଭାବେ ତାଙ୍କର ମଧ ଖୋର୍ଦ୍ଧାରେ ଯଥେଷ୍ଟ ପ୍ରଭାବ ଓ ପ୍ରତିପତ୍ତି ରହିଛି । ତେଣୁ ତାଙ୍କୁ ମାସିକ ୧୦୦ଟଙ୍କା ଭତ୍ତା ସହ ଖୋର୍ଦ୍ଧାଠାରୁ କିଛି ଦୂରରେ କୌଣସିଠାରେ ରହିବା ସର୍ତ୍ତରେ କ୍ଷମା ପ୍ରଦାନ ପ୍ରସ୍ତାବ ଦେଇ ଆତ୍ମସମର୍ପଣ କରିବାପାଇଁ ରାଜିକରାଯାଇପାରେ ।[୯୫]

ପାରା ୫୨; ଅନୁସନ୍ଧାନରୁ ଜଣାଯାଇଛି ଯେ ଖୋର୍ଦ୍ଧାର ଦେବାନଙ୍କର ସମସ୍ତ ଭୂସମ୍ପତ୍ତିକୁ (ଜାଗିରି ସମ୍ପତ୍ତିକୁ) ଇଷ୍ଟ ଇଣ୍ଡିଆ କମ୍ପାନୀ ସରକାର ହସ୍ତଗତ କରିନେବା ପରେ ଦେବାନ୍‌ଙ୍କ ପରିବାର ରାଜା ଅମଳରୁ ପାଉଥିବା ସାମାନ୍ୟ ଭତ୍ତା ଉପରେ ନିର୍ଭରଶୀଳ । (ପାଇକ) ବିଦ୍ରୋହର ଅଳ୍ପ ଦିନ ପୂର୍ବରୁ ବୃଦ୍ଧ ଦେବାନ୍‌ଙ୍କର କାଳହୋଇଗଲା ।[୯୬]

---

୯୨- ୫୭/୪୬, ୯୩- ୫୭/୬୦, ୯୪- ୫୭/୬୦, ୯୫- ୫୭/୬୦, ୯୬- ୫୭/APP୬୦

**ତା ୧୪।୧୨।୧୮୧୮**
**କମିଶନ୍‌ର କେରଙ୍କର ସେକ୍ରେଟେରୀ ବୈଲେଙ୍କୁ ପତ୍ର**

ପୂର୍ବତନ ଦେବାନଙ୍କ ପୁତ୍ର କୃଷ୍ଣଚନ୍ଦ୍ର ଭ୍ରମରବର ରାୟ ବକ୍ସି ଜଗବନ୍ଧୁଙ୍କ ସହିତ କିମ୍ବା ତାଙ୍କ ପାଖାପାଖି କୌଣସି ସ୍ଥାନରେ ଘୁମସର ଜଙ୍ଗଲରେ ଥିବାର ଜଣାଯାଏ ।(୯୭)

ଖୋର୍ଦ୍ଧାର ଜଏଣ୍ଟ ମ୍ୟାଜିଷ୍ଟ୍ରେଟ ଫରେଷ୍ଟରଙ୍କ ସୁପାରିସମତେ ମାସିକ ଭତ୍ତା ସହ ଖୋର୍ଦ୍ଧାଠାରୁ କିଛି ଦୂରରେ ରହିବା ସର୍ତ୍ତରେ କୃଷ୍ଣଚନ୍ଦ୍ର ଭ୍ରମରବର ରାୟଙ୍କୁ କ୍ଷମା ପ୍ରଦାନ ପ୍ରସ୍ତାବ ଦିଆଯାଉ ।(୯୮)

**ତା ୨୨।୮।୧୮୨୨**
**କଲିକତା ମୁଖ୍ୟ ସରକାରୀ ଦପ୍ତରରୁ ପ୍ରିନ୍‌ସେପଙ୍କର କଟକ କମିଶନର ବ୍ଲଣ୍ଟଙ୍କୁ ପତ୍ର**

କୃଷ୍ଣଚନ୍ଦ୍ର ଭ୍ରମରବରରାୟଙ୍କୁ ମାସିକ ୫୦ଟଙ୍କା ଭତ୍ତା ସହ ଖୋର୍ଦ୍ଧା ନିକଟରେ ରହିବା ସର୍ତ୍ତରେ କ୍ଷମା ପ୍ରଦାନ ପ୍ରସ୍ତାବ ସରକାର (ଗଭର୍ଣ୍ଣର ଜେନେରାଲ) ମଞ୍ଜୁରକଲେ ।(୯୯)

**ତା ୨୨।୯।୧୮୨୨**
**ପ୍ରିନ୍‌ସେପ୍‌ଙ୍କର ବ୍ଲଣ୍ଟଙ୍କୁ ପତ୍ର**

କୃଷ୍ଣଚନ୍ଦ୍ର ଭ୍ରମରବରରାୟଙ୍କର ସମସ୍ତ ଭୂସମ୍ପତ୍ତି ବାଜ୍ୟାପ୍ତ କରିନେବାକୁ ଗଭର୍ଣ୍ଣର ଜେନେରାଲ କମିଶନର ବ୍ଲଣ୍ଟଙ୍କୁ କ୍ଷମତା ଦେଲେ ।(୧୦୦)

**ତା ୪।୯।୧୮୨୩**
**ବୈଲେଙ୍କୁ ବ୍ଲଣ୍ଟଙ୍କ ପତ୍ର**

କୃଷ୍ଣଚନ୍ଦ୍ର ଭ୍ରମରବରରାୟଙ୍କ ଭୂସମ୍ପତ୍ତି ବାଜ୍ୟାପ୍ତ କରାଗଲା ।(୧୦୧)

**ତା ୨।୧।୧୮୨୬**
**ଖୋର୍ଦ୍ଧାର ଜଏଣ୍ଟ ମ୍ୟାଜିଷ୍ଟ୍ରେଟ ଉଇଲ୍‌କିନ୍‌ସନ୍‌ଙ୍କର କଟକ କମିଶନର ଜେ. ପ୍ୟାକେନ୍‌ହାମ୍‌ଙ୍କୁ ପତ୍ର**

ଖୋର୍ଦ୍ଧାରାଜାଙ୍କ ପୂର୍ବତନ ଦେବାନ୍ କୃଷ୍ଣଚନ୍ଦ୍ର ଭ୍ରମରବରରାୟ ସରକାରଙ୍କ କ୍ଷମାପ୍ରଦାନ ସର୍ତ୍ତରେ ରାଜିହୋଇ ଆତ୍ମସମର୍ପଣ କଲେ। ତାଙ୍କୁ ରାଜି କରାଇ ଥିବା ହେତୁ ପୂର୍ବଘୋଷିତ ୨୦୦୦/- ପୁରସ୍କାର ନିମ୍ନଲିଖିତ ବ୍ୟକ୍ତିମାନଙ୍କ ମଧ୍ୟରେ ବାଣ୍ଟିଦିଆଗଲା:-(୧୦୨)

ଶ୍ୟାମସୁନ୍ଦର ଭଞ୍ଜ - ଟ ୫୦୦/-, ରାଘବ ପଟ୍ଟନାୟକ - ଟ ୫୦୦/-, ଖୋର୍ଦ୍ଧାର ଦାରୋଗା ହେମପ୍ରସାଦ ରାୟ - ଟ୫୦୦/-, ମ୍ୟାଜିଷ୍ଟ୍ରେଟ୍ ଅଫିସ୍ ସିରସ୍ତାଦାର ସେକ୍ ସାଦିକ୍ ଅଲ୍ଲି - ଟ୫୦୦/-

**ତା ୧୨।୧।୧୮୨୬**
**ସରକାରଙ୍କ ଶାସନ ସଚିବଙ୍କର କମିସନ୍‌ର ପ୍ୟାକେନ୍‌ହାମ୍‌ଙ୍କୁ ପତ୍ର**

କୃଷ୍ଣଚନ୍ଦ୍ର ଭ୍ରମରବରରାୟଙ୍କର ମାସିକ ଭତ୍ତା ଟ୫୦/-ରୁ ୧୦୦ଟଙ୍କାକୁ ବୃଦ୍ଧିକରାଗଲା ।(୧୦୩)

---

*୯୭- ୫୭/APP୬୫ ୯୮- ୫୭/APP୬୬ ୯୯- ୫୭/୩୯, ୧୦୦- ୫୭/୩୯*
*୧୦୧- ୫୭/୩୯ ୧୦୨- ୫୭/APP୭୮ ୧୦୩- ୫୭/୪୧*

ଉଲ୍ଲେଖଯୋଗ୍ୟ ଯେ, ବକ୍ସି ଜଗବନ୍ଧୁଙ୍କୁ ଇଂରେଜ ସର୍କାର ଯେଉଁପରି ସମ୍ମାନର ସହିତ କଟକରେ ଥଇଥାନ କରାଇଥିଲେ, କୃଷ୍ଣଚନ୍ଦ୍ର ଭ୍ରମରବରରାୟଙ୍କୁ ମଧ୍ୟ ସେହିପରି ସମ୍ମାନର ସହିତ ଖୋର୍ଦ୍ଧାରୁ ଅଳ୍ପ ଦୂରରେ କୁରାଡ଼ମଲଠାରେ ଥଇଥାନ କରାଇଥିଲେ । ପାଇକବିଦ୍ରୋହ ସମୟରେ ବିଧ୍ୱସ୍ତ ଦେଓ୍ୱାନଙ୍କ ଛତ୍ରମାଗଡ଼ (ଚିତ୍ରଗଡ଼)ର ସ୍ମୃତି ବହନକରି ଏବେ ମଧ୍ୟ କୁରାଡ଼ମଲ ସନ୍ନିକଟ ଅହ୍ଲଣିଆତୋଟାଠାରେ ନୀଳଚକ୍ର ଓ କାବର - ଦୁଇ ପାହାଡ଼ ମଝିରେ ଗଡ଼ମାଟି ପାଚେରିର ଭଗ୍ନସ୍ତୂପ ଓ ଦୁଇଟି ବଡ଼ ପୋଖରୀ (ସାଆନ୍ତପୋଖରୀ) ଦୃଶ୍ୟମାନ । ବକ୍ସି ଜଗବନ୍ଧୁଙ୍କ ପଦାଙ୍କ ଅନୁସରଣ କରି ଇଂରେଜଙ୍କ ସହିତ ଆପୋଷ୍-ଚୁକ୍ତି ସର୍ତ୍ତରେ ଦେବାନ୍ କୃଷ୍ଣଚନ୍ଦ୍ର ଭ୍ରମରବରଙ୍କର ସ୍ୱେଚ୍ଛାକୃତ ଆତ୍ମପ୍ରକାଶକୁ ହିଁ ଇଂରେଜୀ ଆଇନ ଭାଷାରେ କେବଳ ଆତ୍ମସମର୍ପଣ ଆଖ୍ୟା ଦିଆଯାଇଥିଲା । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ, ଏହି ମହାନ୍ ଜାତୀୟ ବୀରଙ୍କୁ ଏପର୍ଯ୍ୟନ୍ତ ଓଡ଼ିଶାରେ ଅଥବା ତାଙ୍କ ଜନ୍ମସ୍ଥାନ ଖୋର୍ଦ୍ଧାରେ ଉପଯୁକ୍ତ ଐତିହାସିକ ସମ୍ମାନ ପ୍ରଦାନ କରିବା ତ ଦୂରରକଥା ତାଙ୍କ ପରିଚୟ ସମ୍ପର୍କରେ ମଧ୍ୟ ଐତିହାସିକମାନେ ସଠିକ ତଥ୍ୟ ଆହରଣ କରି ନାହାନ୍ତି ।



କୁରାଡ଼ମଲ ଦିଆନଙ୍କ ପରିତ୍ୟକ୍ତ ବାସଗୃହ

ସେହିପରି ଦେଓ୍ୱାନ୍ କୃଷ୍ଣଚନ୍ଦ୍ରଙ୍କ ପିତା ଦେଓ୍ୱାନ ହରିହର ଭ୍ରମରବର ରାୟଙ୍କ ସମ୍ପର୍କରେ ଏଯାବତ୍ ଆମର ଐତିହାସିକମାନେ ସମ୍ପୂର୍ଣ୍ଣ ନୀରବ । ଇଓ୍ୱେର ସାହେବ କୃଷ୍ଣଚନ୍ଦ୍ରଙ୍କୁ ପରଲୋକଗତ ଦେଓ୍ୱାନଙ୍କ ପୁତ୍ର ବୋଲି ଲେଖିଥିଲେ ହେଁ ତାଙ୍କ ନାମ ଉଲ୍ଲେଖ କରି ନାହାନ୍ତି । କିନ୍ତୁ ସେହି ପରଲୋକଗତ ଦେଓ୍ୱାନ ଯେ ହରିହର ଭ୍ରମରବରରାୟ ତହିଁର ସଠିକ ପ୍ରମାଣ ଆମେ ତିନି ଗୋଟି ଗୁରୁତ୍ୱପୂର୍ଣ୍ଣ ବିଶ୍ୱସ୍ତ ସୂତ୍ରରୁ ପାଇଛୁ । ପ୍ରଥମତଃ 'ଫିରିଙ୍ଗି କଳିଭାରତ'ରେ କବି ମଧୁସୂଦନ ବିପ୍ର ଖୋର୍ଦ୍ଧା ରାଜା ଦିବ୍ୟସିଂହ ଦେବ (୨ୟ) ଓ ତାଙ୍କ ପୁତ୍ର ମୁକୁନ୍ଦଦେବ (୨ୟ)ଙ୍କ ସୁଯୋଗ୍ୟ ଦେଓ୍ୱାନ ହରିହର ଭ୍ରମରବରରାୟଙ୍କ ବୀରତ୍ୱ, ସାହସ, ବୁଦ୍ଧିମତ୍ତା ଓ କର୍ମନିଷ୍ଠାର ଭୂୟସୀ ପ୍ରଶଂସା କରି ରଣପୁର ଯୁଦ୍ଧ, ବାଙ୍କି ଯୁଦ୍ଧ, ପିପିଲି ଯୁଦ୍ଧ ଓ ଖୋର୍ଦ୍ଧାଗଡ଼ ଯୁଦ୍ଧରେ ତାଙ୍କର କୃତିତ୍ୱ ସମ୍ପର୍କରେ ବିସ୍ତୃତ ବିବରଣୀ ପ୍ରଦାନକରିଛନ୍ତି । ଦ୍ୱିତୀୟତଃ, ନିଜେ ମୁକୁନ୍ଦଦେବ ଇଂରେଜଙ୍କଦ୍ୱାରା ଗାଦିଚ୍ୟୁତ ହୋଇ ବାରବାଟୀ ଦୁର୍ଗରେ ବନ୍ଦିଥିବାବେଳେ ଯେଉଁ ଜନପ୍ରିୟ 'ନୀଳାଦ୍ରିବିହାରୀ ଜଣାଣ' ଲେଖିଥିଲେ ସେଥିରେ ସେ ସେହି ସୁଯୋଗ୍ୟ ଦେଓ୍ୱାନ ହରିହରଙ୍କୁ ମନେ ପକାଇ ବାହୁନିଛନ୍ତି - 'ବାବୁ ହରିହର ସୁପାତ୍ର ମୋହର, ବାରେ ମୋତେ ଦୟାକର... ।' ପୁଣି ୧୮୦୭ ଖ୍ରୀଷ୍ଟାବ୍ଦରେ ମେଦିନୀପୁର ଜେଲ୍‌ରୁ ଲେଖିଥିବା ଦରଖାସ୍ତରେ ମଧ ରାଜଗୁରୁଙ୍କୁ ମୁକୁନ୍ଦଦେବ 'ଦେବାନ' ବୋଲି କହି ନାହାନ୍ତି । ରାଜଗୁରୁ ତାଙ୍କର 'ମୁକ୍ତାର' ଥିଲେ ବୋଲି ଲେଖିଛନ୍ତି ଏବଂ ଖୋର୍ଦ୍ଧାଗଡ଼ ପତନ ପରେ କର୍ଣ୍ଣେଲ ହାରକୋର୍ଟଙ୍କୁ ଭେଟିବାକୁ ଯାଇଥିବା ତାଙ୍କର 'ଦେବାନ'ଙ୍କୁ ହାରକୋର୍ଟ ବନ୍ଦି କରିଥିଲେ ବୋଲି ଲେଖିଛନ୍ତି । ଫିରିଙ୍ଗି କଳିଭାରତରେ କବି ମଧୁସୂଦନବିପ୍ର ଲେଖିଛନ୍ତି ଇଂରେଜମାନେ ଖୋର୍ଦ୍ଧା ଦୁର୍ଗ ଅଧିକାର କଲାପରେ ମୁକୁନ୍ଦଦେବ ଜଙ୍ଗଲରେ ଆତ୍ମଗୋପନ କରି ରହିଥିବା ଅବସ୍ଥାରେ ପ୍ରଥମେ ପିଣ୍ଡିକ ହରିଚନ୍ଦନଙ୍କୁ ଇଂରେଜଙ୍କ ପାଖକୁ ସନ୍ଧିସ୍ଥାପନପାଇଁ ପଠାଇଥିଲେ । କିନ୍ତୁ ଇଂରେଜମାନେ ପିଣ୍ଡିକ ହରିଚନ୍ଦନଙ୍କୁ ଧରି ବନ୍ଦି କଲେ । ତେଣୁ ମୁକୁନ୍ଦଦେବ ପୁଣି ଦେବାନ୍ ହରିହର, ଭ୍ରମରବର ରାୟଙ୍କୁ ଇଂରେଜଙ୍କ ପାଖକୁ ସନ୍ଧିପ୍ରସ୍ତାବ ଦେଇ ପଠାଇଲେ । କିନ୍ତୁ ଇଂରେଜମାନେ ଦେଓ୍ୱାନଙ୍କୁ ମଧ ବନ୍ଦିକଲେ । ୧୮୦୭ ଖ୍ରୀଷ୍ଟାବ୍ଦରେ ମୁକୁନ୍ଦଦେବ ମେଦିନୀପୁର ବନ୍ଦିଶାଳାରୁ ଗଭର୍ଣ୍ଣର ଜେନେରଲଙ୍କ ଉଦ୍ଦେଶ୍ୟରେ ଲେଖିଥିବା ଦରଖାସ୍ତର ତଥ୍ୟ ସହିତ ଏହା ସମ୍ପୂର୍ଣ୍ଣ ମେଳ ଖାଉଛି । ସ୍ୱର୍ଗତ କେଦାରନାଥ ମହାପାତ୍ର... ଖୁରୁଧା ଇତିହାସ ଶେଷରେ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କଦ୍ୱାରା ସଂଗୃହୀତ ଏହି 'ନୀଳାଦ୍ରିବିହାରୀ ଜଣାଣ'ଟିକୁ ସ୍ଥାନିତ କରିଥିଲେ ହେଁ ତହିଁରେ ସୂଚିତ କେବଳ ମୁକୁନ୍ଦଦେବଙ୍କ ପୁତ୍ର ରାମଚନ୍ଦ୍ରଙ୍କ ବ୍ୟତୀତ ସୁପାତ୍ର ହରିହରଙ୍କ ସମେତ ଅନ୍ୟ ଐତିହାସିକ ନାମଗୁଡ଼ିକୁ ଚିହ୍ନଟ କରିବାରେ ବ୍ରତୀ ହୋଇ ନାହାନ୍ତି । କିନ୍ତୁ ନୀଳାଦ୍ରିବିହାରୀ ଜଣାଣରେ ସୂଚିତ ହରିହର ଯେ, ମୁକୁନ୍ଦଦେବଙ୍କର ସୁଦକ୍ଷ ଦେଓ୍ୱାନ ହରିହର ଭ୍ରମରବର ରାୟ, ଉପରୋକ୍ତ ପ୍ରମାଣଦୃଷ୍ଟେ ଏହା ସମ୍ପୂର୍ଣ୍ଣ ନିଃସନ୍ଦେହ ଏବଂ ଦେଓ୍ୱାନ କୃଷ୍ଣଚନ୍ଦ୍ର ଭ୍ରମରବରରାୟ ଯେ ତାଙ୍କରି ପୁତ୍ର ଏହା ମଧ ନିଃସନ୍ଦେହ । ତୃତୀୟତଃ ଚକଡ଼ାପୋଥିର

ମୁଖବନ୍ଧରେ ''ଖୋରଧା କୁରାଢ଼ମଲ ନିବାସୀ ଓଡ଼ିଶା ମହାରାଜାଙ୍କ ଦେବାନ୍ କୃଷ୍ଣଚନ୍ଦ୍ର ଭ୍ରମରବର ରାୟ...'' ବୋଲି ସ୍ପଷ୍ଟଭାବେ ସୂଚିତହୋଇଛି । ଏହା ସର୍ବୋତ୍କୃଷ୍ଟ ପ୍ରମାଣ ।

ସୁତରାଂ ବିଦେଶୀ ବ୍ରିଟିଶ୍ ଶାସନ ବିରୋଧରେ ସ୍ୱାଧୀନତା ସଂଗ୍ରାମର ଭିତ୍ତିଭୂମି ଉପରେ ସୁପ୍ରତିଷ୍ଠିତ ଓଡ଼ିଶା ତଥା ଖୋର୍ଦ୍ଧାର ଗୌରବମୟ ପରମ୍ପରାର ପ୍ରତୀକ ଐତିହାସିକ ବୀରପୁରୁଷ ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ଦେୱାନ ହରିହର ଓ ତାଙ୍କ ପୁତ୍ର ଦେୱାନ କୃଷ୍ଣଚନ୍ଦ୍ରଙ୍କ ଅସାଧାରଣ ସ୍ୱଦେଶପ୍ରୀତି, ଅନାବିଳ ଆତ୍ମୋତ୍ସର୍ଗ ତଥା ଅନମନୀୟ ଜାତୀୟ ଚରିତ୍ରର ମହାନ୍ ଦୃଷ୍ଟାନ୍ତପାଇଁ ଆସନ୍ତୁ ଆମେ ସଭିଏଁ ଏକତ୍ର ହୋଇ ସମ୍ମିଳିତ କଣ୍ଠରେ ସେମାନଙ୍କର ଜୟଗାନକରି ସେମାନଙ୍କ ପ୍ରତି ଉପଯୁକ୍ତ ଜାତୀୟସମ୍ମାନ ପ୍ରଦାନରେ ବ୍ରତୀହେବା ।

## ''ନୀଳାଦ୍ରି ବିହାରୀ'' ଜଣାଣରେ ''ସୁପାତ୍ର ହରିହର''

ଆହେ ନୀଳାଦ୍ରି ବିହାରୀ !
କଟକେ ଅଟକ ହେବାରୁ ମୋଦିନ
ସରୁ ନାହିଁ ଝୁରି ଝୁରି ।୦।
ବାବୁ ଚିନ୍ତାମଣି ତରକ ନ ଜାଣି
ରାମଚନ୍ଦ୍ରଙ୍କୁ ଆଣିଲେ
ରାଜାଧି ପଣ୍ଡିତ କୈବଲ୍ୟ ଲଙ୍ଘିଣ
ବାରବାଟୀ ଧରାଇଲେ ।୧।
ଚକା ଆନନ୍ଦଠାରୁ ବିକାସାଇ ଯାଏ
ଝାଡ଼ ଜଙ୍ଗଲେ ବୁଲିଲି
ତୁମ୍ଭରି ଶ୍ରୀମୁଖ ଦର୍ଶନ ନ ପାଇ
କଟକେ ଅଟକ ହେଲି ।୨।
ବାବୁ ହରିହର ସୁପାତ୍ର ମୋହର
ବାରେ ମୋତେ ଦୟାକର
ଭଣ୍ଡାରରୁ ଖଣ୍ଡା ବାହାର କରିଣ
(ପ୍ରଭୁ ?) ଓଡ଼ିଶା ଶତ୍ରୁ ନିବାର ।୩।
କେଉଁ କର୍ମହୀନ କରୁଛି ଜଣାଣ
କିମ୍ବା ନଗୁଣ ଗୁହାରି
ଶ୍ରୀଚରଣ ତଳେ ଶରଣ ପଶୁଛି
ଓଡ଼ିଶା ନୃପକେଶରୀ ହେ ।୪।

❑ ❑ ❑

## ଅଷ୍ଟମ ଅଧ୍ୟାୟ

# ରାଜଗୁରୁ, ବକ୍ସି ଏବଂ ଦେବାନ୍‌ଙ୍କବଂଶ ପରିଚୟ

ଖୋର୍ଦ୍ଧାର ବକ୍ସି, ଦେବାନ୍ ଓ ରାଜଗୁରୁ ତିନିହେଁ ଇଂରେଜ ସରକାର ବିରୋଧରେ ବିଦ୍ରୋହ କରି ଲଢ଼ିଥିଲେ । ତେଣୁ ସେମାନେ ଆମପାଇଁ ନମସ୍ୟ ଓ ସ୍ମରଣୀୟ । ସେମାନଙ୍କ ଦେଶପ୍ରୀତି ଓ ସ୍ୱାଧୀନତା ସଂଗ୍ରାମପାଇଁ ତାଙ୍କୁ ଆମେ ସମ୍ମାନଦେବା । କିନ୍ତୁ ଇଂରେଜଙ୍କପାଇଁ ତ ସେମାନେ ଶତ୍ରୁ ଥିଲେ, ତେଣୁ ଇଂରେଜମାନେ ସେମାନଙ୍କ ଶାସନକାଳରେ ସେହି ତିନି ଜଣ ବୀରପୁରୁଷଙ୍କ ସ୍ମୃତିକୁ ଜନମାନସରୁ ପୋଛି ଲିଭାଇଦେବାପାଇଁ ସବୁଦିଗରୁ ସଜାଗହେବା ସ୍ୱାଭାବିକ ଥିଲା । ସେଥିପାଇଁ ଇଂରେଜମାନେ ଓଡ଼ିଶା ସମ୍ପର୍କରେ ଯେଉଁ ଇତିହାସ ଲେଖିଲେ ସେଥିରେ ଏଇ ତିନିଜଣ ବୀରପୁରୁଷଙ୍କର ପରିଚୟ ସୁଦ୍ଧା ଦେଲେ ନାହିଁ ଏବଂ ତାଙ୍କରି ଶାସନ କାଳରେ ତାଙ୍କ ଲେଖା ଉପରେ ନିର୍ଭରକରି ଆଉ ଯେଉଁମାନେ ଓଡ଼ିଶାର ଇତିହାସ ଲେଖିଲେ ସେମାନେ ମଧ ଏଇ ତିନିଜଣ ଜାତୀୟ ବୀରଙ୍କର ବଂଶପରିଚୟ ସୁଦ୍ଧା ଲେଖିବାକୁ ମନ ବଳାଇଲେ ନାହିଁ । ଇଂରେଜମାନେ ଆମ ଦେଶରୁ ବିଦାୟ ନେବାର ୨୨ବର୍ଷ ପରେ ୧୯୬୯ ମସିହାରେ ସ୍ୱର୍ଗତ ଚକ୍ରଧର ମହାପାତ୍ର ତାଙ୍କଦ୍ୱାରା ରଚିତ ''ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ''ରେ ବତ୍ସସ ବଂଶୀୟ ରାଜଗୁରୁ ବଂଶର ଇତିହାସ ଲେଖିବାକୁ ଯାଇ କୌଶିକ ଗୋତ୍ରୀୟ ରାଜଗୁରୁ ଗଦାଧର ମହାପାତ୍ରଙ୍କୁ ତୀବ୍ର ସମାଲୋଚନା କରିଥିଲେ ହେଁ ତାଙ୍କର ପୌତ୍ର ରାଜଗୁରୁ ଜୟକୃଷ୍ଣ ମହାପାତ୍ର (ଜୟୀ ରାଜଗୁରୁ)ଙ୍କୁ ଜଣେ ଜାତୀୟ ବୀରଭାବେ ବର୍ଣ୍ଣନା କରି ତାଙ୍କ ବଂଶପରିଚୟ ପ୍ରଦାନକରିଛନ୍ତି [୧୦୪] ଏବଂ ସେହି ବର୍ଷ ମଧ ପ୍ରଖ୍ୟାତ ଐତିହାସିକ ସ୍ୱର୍ଗତ କେଦାରନାଥ ମହାପାତ୍ର ତାଙ୍କ ପ୍ରଣୀତ ''ଖୁରୁଧା ଇତିହାସ''ରେ ଜୟୀ ରାଜଗୁରୁଙ୍କର ବଂଶପରିଚୟ ପ୍ରଦାନକରିଛନ୍ତି[୧୦୫] । ପରେ ପୁଣି ୧୯୯୦ ମସିହାରେ ତାଙ୍କ ନିଜ ଗ୍ରାମ ବୀରହରେକୃଷ୍ଣପୁର ଶାସନରେ ଉତ୍ସାହୀ ଯୁବକମାନେ ''ସହିଦ୍ ଜୟୀ

---

୧୦୪- ୪/୩୦୪ ୧୦୫- ୩/୨୬୯

ରାଜଗୁରୁ ସ୍ମୃତି ସଂସଦ'' ନାମରେ ଏକ ଅନୁଷ୍ଠାନ ଗଢ଼ି ତା' ମାଧମରେ ଜୟୀ ରାଜଗୁରୁଙ୍କ ପାଣ୍ଡିତ୍ୟ, ବୀରତ୍ୱ ଓ ଦେଶପ୍ରୀତି ସମ୍ପର୍କରେ ବିଭିନ୍ନ ଲେଖକମାନଙ୍କର ଉପାଦେୟ ଲେଖା ସମ୍ୱଳିତ 'ସ୍ମରଣିକା' ପ୍ରକାଶକରିଛନ୍ତି ।

**ଜୟୀ ରାଜଗୁରୁଙ୍କ ବଂଶପରିଚୟ**

ବାଜପେୟୀ ଶ୍ରୀକୃଷ୍ଣ ମହପାତ୍ର




ଜନ୍ମ - ୧୭୩୯, ମୃତ୍ୟୁ (ଫାଶି) ତା ୬-୧୧-୧୮୦୬

କିନ୍ତୁ ଇଂରେଜଶାସନରୁ ଦେଶ ମୁକ୍ତିପାଇବାର ଅର୍ଦ୍ଧଶତାବ୍ଦୀ ପରେ ମଧ୍ୟ ଏଯାଏଁ କୌଣସି ଐତିହାସିକ ଖୋର୍ଦ୍ଧାର ବକ୍ସି ଓ ଦେବାନ୍‌ଙ୍କ ସଠିକ ପରିଚୟ ପ୍ରଦାନ କରି ନାହାନ୍ତି, ଅଥଚ ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ରଙ୍କର ବଂଶଧରମାନେ ଭୁବନେଶ୍ୱର, ପୁରୀ, ରୋଡ଼ଙ୍ଗ ଓ ଡେଲାଙ୍ଗ ନିକଟ ଖେଳୌର ଗ୍ରାମରେ ଏବଂ ଦେବାନ୍ କୃଷ୍ଣଚନ୍ଦ୍ର ଭ୍ରମବରରାୟଙ୍କର ବଂଶଧରମାନେ ଖୋର୍ଦ୍ଧା ନିକଟବର୍ତ୍ତୀ କୁରାଢ଼ମଲ ଗ୍ରାମରେ ଏବେ ମଧ୍ୟ ବାସକରୁଛନ୍ତି । ତେବେ ନିକଟ ଅତୀତରେ ୧୯୯୬ ମସିହାରେ ଜଟଣୀ ନିକଟବର୍ତ୍ତୀ ହରିରାଜପୁର ଗ୍ରାମର ଜଣେ ଅବସରପ୍ରାପ୍ତ ସରକାରୀ କର୍ମଚାରୀ ଶ୍ରୀଯୁକ୍ତ ଦିବ୍ୟସିଂହ ଚମୂପତି ବକ୍ସି ବଂଶ ପରିଚୟ ସମ୍ପର୍କରେ କେତେକ ଗୁରୁତ୍ୱପୂର୍ଣ୍ଣ ତଥ୍ୟ 'ବକ୍ସି ଜଗବନ୍ଧୁ ବଂଶର ନୂତନ ଇତିହାସ'' ଶୀର୍ଷକ ପୁସ୍ତକରେ ପ୍ରକାଶକରି ଧନ୍ୟବାଦର ପାତ୍ର ହୋଇଛନ୍ତି । କିନ୍ତୁ ଶ୍ରୀ ଚମୂପତି ତାଙ୍କ ପୁସ୍ତକରେ ଗଡ଼ରୋଡ଼ଙ୍ଗର ଯେଉଁ ଗଡ଼ାଧୀଶମାନଙ୍କର ତାଲିକା ପ୍ରକାଶକରିଛନ୍ତି ତହିଁରେ ଦର୍ଶାଯାଇଥିବା ୧ମ ଓ ୨ୟ ଗଡ଼ାଧୀଶ ଦୁଇ ଜଣ, ଅର୍ଥାତ୍ ଚମ୍ପତି ଓ ଜୟଦେବ ଶ୍ରୀ ଚନ୍ଦନ ବକ୍ସି-ବଂଶଜ ନୁହଁନ୍ତି । ସେମାନେ କୋକଲ ଦାନପାତ୍ରଙ୍କ

ବଂଶଧର[୧୦୬]। ତେଣୁ ଶ୍ରୀ ଚମୂପତିଙ୍କ ପ୍ରଦତ୍ତ ତାଲିକାରେ ପାତ୍ର ପୀତାମ୍ବର ବିଦ୍ୟାଧର ମହାପାତ୍ର ଏବଂ ତାଙ୍କ ପରବର୍ତ୍ତୀ ଗଡ଼ାଧୀଶମାନେ କେବଳ ବଳ୍ପି-ବଂଶଧର ଅଟନ୍ତି ।

ଯେଉଁ ବିଦ୍ୟାଧର ବଂଶରୁ ଖୋର୍ଦ୍ଧାର ଭୋଇ ରାଜବଂଶ ସମ୍ଭୂତ, ସେହି ବଂଶରୁ ହିଁ ବଳ୍ପିଙ୍କ ପୂର୍ବପୁରୁଷମାନେ ସମ୍ଭୂତ ହୋଇଥିଲେ।[୧୦୭] ସୂର୍ଯ୍ୟବଂଶର ରାଜା ଗଜପତି ପ୍ରତାପରୁଦ୍ରଦେବଙ୍କ ପରେ ତାଙ୍କର ଦୁର୍ବଳ ଉତ୍ତରାଧିକାରୀମାନଙ୍କୁ ମାରି ଓ ମରାଇ ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ରାଜାହୋଇଥିଲେ ଏବଂ ତାଙ୍କର ଜଣେ ଭାଇବିରାଦର ଜନାର୍ଦ୍ଦନ ବିଦ୍ୟାଧରଙ୍କୁ ନିଜର ମନ୍ତ୍ରୀ ପଦରେ ନିଯୁକ୍ତ କରିଥିଲେ । ଗୋବିନ୍ଦ ଦେବଙ୍କ ପରେ ଚକ୍ରପ୍ରତାପଦେବ, ନରସିଂହ ଜେନା ଏବଂ ରଘୁରାମ ଛୋଟରାଏ କ୍ରମାନ୍ୱୟରେ ଭୋଇବଂଶର ରାଜା ହୋଇଥିଲେ ଏବଂ ସେମାନଙ୍କ ରାଜତ୍ୱକାଳରେ ମଧ୍ୟ ଜନାର୍ଦ୍ଦନ ବିଦ୍ୟାଧର ମନ୍ତ୍ରୀଥାଇ ଓଡ଼ିଶାର ଦକ୍ଷିଣସୀମାଞ୍ଚଳ ଶାସନ ଦାୟିତ୍ୱରେ ଅବସ୍ଥାପିତ ହୋଇଥିଲେ[୧୦୮]। ତାଙ୍କର ପୁଅ ରମେଇ ରାଉତରା ମଧ୍ୟ ପିତାଙ୍କ ସହିତ ସେଠାରେ ରହୁଥିଲେ । ରମେଇ ରାଉତରା କିପରି ଭାବରେ ରାମଚନ୍ଦ୍ରଦେବ ନାମରେ ଖୋର୍ଦ୍ଧାରାଜ୍ୟ ପ୍ରତିଷ୍ଠା କରି ଖୋର୍ଦ୍ଧା ଭୋଇ ରାଜବଂଶର ପ୍ରଥମ ରାଜା ହେଲେ ତାହା ଆଗରୁ କୁହାଯାଇଛି । ସେ ତାଙ୍କ ପୂର୍ବପୁରୁଷମାନଙ୍କ ପଦାଙ୍କ ଅନୁସରଣ କରି ନିଜର ଜଣେ ଭାଇବିରାଦର ଦାସ ବିଦ୍ୟାଧରଙ୍କୁ ମନ୍ତ୍ରୀ ଓ ଅନ୍ୟଜଣେ ବିରାଦର ଇନ୍ଦ୍ର ବିଦ୍ୟାଧରଙ୍କୁ ସେନାପତି ପଦରେ ରଖିଲେ । ୧୫୯୯ ଖ୍ରୀଷ୍ଟାବ୍ଦରେ ନିଜର ମିତ୍ର କାସିମକୋଟାର ରାଜା ମୁକୁନ୍ଦରାୟଙ୍କୁ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ରାମଚନ୍ଦ୍ରଦେବ ସେନାପତି ଇନ୍ଦ୍ରବିଦ୍ୟାଧରଙ୍କୁ ଖୋର୍ଦ୍ଧାଗଡ଼ର ସୁରକ୍ଷା ଦାୟିତ୍ୱରେ ରଖି ନିଜେ ଗୋଲକୁଣ୍ଡାର ସୁଲତାନଙ୍କ ବିପକ୍ଷରେ ଯୁଦ୍ଧ କରିବାକୁ ଯାଇଥିଲେ[୧୦୯]। ତାଙ୍କର ଅନ୍ୟ ଜଣେ ଭାଇବିରଦାର ଚକିଭ୍ରମରବର ବା ଚକ୍ରଧର ଭ୍ରମରବର ପଟିଆର ରାଜା ହେଲେ । ଦାସ ବିଦ୍ୟାଧର ଦାସ ବିଦ୍ୟାଧରପୁର ଶାସନ ଓ ଚକ୍ରଧର ଭ୍ରମରବର ରାୟଚକ୍ରଧରପୁର ଶାସନ ବସାଇଥିଲେ[୧୧୦]। 'ବିଦ୍ୟାଧର', 'ବିଦ୍ୟାଧର ମହାପାତ୍ର', 'ଭ୍ରମରବର' ଓ 'ଭ୍ରମରବରରାୟ' ଉପାଧି ପରବର୍ତ୍ତୀ ବଂଶଧରମାନେ ସ୍ୱଇଛାମତେ ଧାରଣକଲେ ।

ରାମଚନ୍ଦ୍ର ଦେବଙ୍କ ପରେ ରାଜା ହେଲେ ପୁରୁଷୋତ୍ତମ ଦେବ । ତାଙ୍କ ସମୟରେ ମଧ୍ୟ ଦାସ ବିଦ୍ୟାଧର ମନ୍ତ୍ରୀ ଓ ସେନାପତି ହୋଇ ରହିଲେ । ଓଡ଼ିଶା ମୋଗଲ ଶାସନାଧୀନ ଥିଲା । ମୋଗଲ ସୁବାଦାର କଟକ ବାରବାଟୀ ଦୁର୍ଗରେ ରହୁଥିଲେ, କିନ୍ତୁ ମୋଗଲ ସମ୍ରାଟ ଆକବରଙ୍କ ସ୍ୱୀକୃତିକ୍ରମେ ୧୫୯୨ ଖ୍ରୀଷ୍ଟାବ୍ଦରୁ ତାଙ୍କର ସେନାପତି ମାନସିଂହ ଖୋର୍ଦ୍ଧାରାଜାଙ୍କୁ ସ୍ୱତନ୍ତ୍ର ମାନ୍ୟତା ପ୍ରଦାନ କରିଥିବାରୁ ମୋଗଲ ସୁବାଦାରମାନଙ୍କର ଖୋର୍ଦ୍ଧା

---

*୧୦୬- ୧୬/୧୦   ୧୦୭- ୩/୩୭   ୧୦୮- ୩/୧*
*୧୦୯- ୪/୭୯   ୧୧୦- ୩/୩୭*

ରାଜ୍ୟରେ ପ୍ରତ୍ୟକ୍ଷ ଶାସନ କ୍ଷମତା ନ ଥିଲା । ଖୋର୍ଦ୍ଧାରାଜା ସେମାନଙ୍କୁ କେବଳ ବାର୍ଷିକ ପେସ୍‌କିସ୍ ଦେଉଥିଲେ । କିନ୍ତୁ ପୁରୁଷୋତ୍ତମ ଦେବଙ୍କ ସମୟରେ ମୋଗଲ ସୁବାଦାରମାନେ ବାରମ୍ବାର ଖୋର୍ଦ୍ଧା ଆକ୍ରମଣକରି ଚରମ ବୀଭତ୍ସତା ସୃଷ୍ଟିକରିଥିଲେ । ମୋଗଲ ସୁବାଦାର ରାଜା କଲ୍ୟାଣମଲ୍ଲ ଖୋର୍ଦ୍ଧାର "ମନ୍ତ୍ରୀ ଓ ସୁଦକ୍ଷ ସେନାପତି ଦାସ ବିଦ୍ୟାଧରଙ୍କ ସହିତ କପଟ ମୈତ୍ରୀ ସ୍ଥାପନକରି ତାଙ୍କୁ ଡେରା ଭିତରେ ବିଶ୍ୱାସଘାତକତାପୂର୍ବକ ମାରି ପକାଇଲେ[୧୧୧] ।" ଦାସ ବିଦ୍ୟାଧରଙ୍କ ବିଧବା ପତ୍ନୀ ଆତ୍ମରକ୍ଷାପାଇଁ ନିଜ ଜାମାତା ବାଙ୍କିରାଜାଙ୍କ ପାଖକୁ ପଳାଇଲେ ।

ପୁରୁଷୋତ୍ତମ ଦେବଙ୍କ ପରେ ରାଜା ହେଲେ ନରସିଂହ ଦେବ । ମନ୍ତ୍ରୀ ଦାସ ବିଦ୍ୟାଧରଙ୍କ ହତ୍ୟା ପରେ ତାଙ୍କର ଅନ୍ୟ ଜଣେ ଭାଇବିରାଦର କହ୍ନାଇ ବିଦ୍ୟାଧର ନରସିଂହଦେବଙ୍କ ମନ୍ତ୍ରୀ ଓ ସେନାପତି ହେଲେ[୧୧୨] ସେ କହ୍ନାଇ ବିଦ୍ୟାଧରପୁର ଶାସନ ପ୍ରତିଷ୍ଠାକଲେ ଏବଂ ବଡ଼ଦେଉଳ ଚୂନ ଧଉଳାଇବାରେ ପ୍ରମୁଖ ଭୂମିକା ଗ୍ରହଣକରିଥିଲେ । ଦାସ ବିଦ୍ୟାଧରଙ୍କୁ ମୋଗଲ ସୁବାଦାର ମାରିଥିବାରୁ ନିଜର ନିରାପତ୍ତାପାଇଁ କହ୍ନାଇ ବିଦ୍ୟାଧର ଖୋର୍ଦ୍ଧାରାଜ୍ୟର ମନ୍ତ୍ରୀ ଓ ସେନାପତି ଥାଇ ମଧ ମୋଗଲ ସୁବାଦାରଙ୍କ ସହିତ ସୁସମ୍ପର୍କ ସ୍ଥାପନ କରି ସୁବାଦାରଙ୍କ ବିଶ୍ୱାସଭାଜନ ହୋଇପାରିଥିଲେ । ଏହି ସମୟରେ ଅନ୍ଧାରୀଗଡ଼ ଓ କୋକଲଗଡ଼ର ନାୟକ ତଥା ଜମିଦାର ଧରମୁରାୟ ପିତାମ୍ ବିଶେଷ ବିଭବଶାଳୀ ଓ କ୍ଷମତାଶାଳୀ ଥିଲେ । ସେ ମୋଗଲମାନଙ୍କୁ ପୁରୀରେ ବିରୋଧ କଲେ ଏବଂ ବଡ଼ଦେଉଳରୁ ଘଉଡ଼ାଇଦେଲେ । ସେ ଖୋର୍ଦ୍ଧାର ରାଜାଙ୍କୁ ମଧ ବେଖାତିରକରି ତାଙ୍କ ଜମିଦାରୀର ପେସ୍‌କିସ୍ ରାଜାଙ୍କୁ ନଦେଇ କଟକ ସୁବାରେ ନେଇ ଦେଲେ । ତେଣୁ ମୋଗଲ ସୁବାଦାରଙ୍କ ତରଫରୁ କହ୍ନାଇ ବିଦ୍ୟାଧର ତାଙ୍କୁ ଏକ ଚିଠି ଲେଖି ତାଙ୍କର ଏତାଦୃଶ କାର୍ଯ୍ୟପାଇଁ କୈଫିୟତ୍ ମାଗିଲେ । କିନ୍ତୁ ଧରମୁରାୟ ପିତାମ୍ ସେ ଚିଠିକୁ ଚିରି ଫିଙ୍ଗିଦେଲେ । ତେଣୁ କହ୍ନାଇ ବିଦ୍ୟାଧର[୧୧୩] ସୁବାଦାରଙ୍କ ପୁଅ ବାଖର୍ ଖାଁ ସହିତ ସୈନ୍ୟବଳ ଧରି ଅନ୍ଧାରୀଗଡ଼ ଆକ୍ରମଣ ଉଦ୍ଦେଶ୍ୟରେ ଆସି ଅଲାରଠାରେ ଡେରାପକାଇଲେ । ଧରମୁରାୟ ପିତାମ୍ ଏ ଖବର ପାଇ ଯାଇ ଅଲାରଠାରେ ବାଖରଖାଁଙ୍କୁ ଭେଟିବା ମାତ୍ରେ ବାଖରଖାଁ ତାଙ୍କୁ ଡ଼େରା ଭିତରେ ଅଟକରଖି ଅନ୍ଧାରୀଗଡ଼ ଦଖଲ କଲେ ଏବଂ କହ୍ନାଇ ବିଦ୍ୟାଧରଙ୍କୁ ଅନ୍ଧାରୀଗଡ଼ ଦାୟିତ୍ୱରେ ରଖି କଟକ ପ୍ରତ୍ୟାବର୍ତ୍ତନକଲେ । କହ୍ନାଇ ବିଦ୍ୟାଧର ଚାରି ବର୍ଷ କାଳ ଅନ୍ଧାରୀର ଜମିଦାର ହୋଇ ରହିଥିଲେ ଏବଂ ସେ ମୋଗଲ ପ୍ରତିନିଧିଭାବେ ଜମିଦାରୀ ବୁଝୁଥିବାରୁ ରାଜାଙ୍କ ସ୍ୱାର୍ଥପ୍ରତି ଦୃଷ୍ଟି ଦେଲେ ନାହିଁ । ରାଜା ନରସିଂହଦେବଙ୍କ ୧୨ ଅଙ୍କରେ ବିଶ୍ୱ ସାମନ୍ତସିଂହାର ନାମକ ଜଣେ ବ୍ୟକ୍ତି କହ୍ନାଇ

---

୧୧୧- ୩/୪୩     ୧୧୨- ୩/୩୭     ୧୧୩- ୧୭/୧୧,୧୨

ବିଦ୍ୟାଧରଙ୍କ ବିରୋଧରେ ଯାଇ ରାଜାଙ୍କୁ କହିଲେ ଯେ ଅନ୍ଧାରୀଗଡ଼ ରାଜାଙ୍କର କୋଠଗଡ଼ ହୋଇ ରହୁ । ଏହାପରେ କହ୍ନାଇ ବିଦ୍ୟାଧର ସୁବାଦାର ନିଆମତ୍ ଖାଁଙ୍କୁ କହିଲେ ବାଦଶାହୀଗଡ଼ ଜମିଦାରୀ ମୋର ଥିଲା, ଏବେ ରାଜାଙ୍କ ଲୋକେ ବିବାଦ କରୁଛନ୍ତି; ତେଣୁ ମୋତେ କିଛି ଜାଗିର୍ ବୃତ୍ତି ଦିଆଯାଉ । ତାପରେ କହ୍ନାଇ ବିଦ୍ୟାଧର ଅନ୍ଧାରୀଗଡ଼କୁ ମୋଗଲ ସୁବାଦାରଙ୍କ ଜିମା ଛାଡ଼ିଦେଇ ଶ୍ରୀକ୍ଷେତ୍ରର ଉତ୍ତର ପଶ୍ଚିମରେ ଅବସ୍ଥିତ ପୂର୍ବଦୁଆଇ ମାହାଲକୁ ଜାଗିରିବୃତ୍ତିଭାବେ ଗ୍ରହଣକଲେ[୨] । ବକ୍ସିଙ୍କର ଏହି ଜାଗିରିବୃତ୍ତି ହିଁ ପରବର୍ତ୍ତୀ ବନ୍ଦୋବସ୍ତମାନଙ୍କରେ 'ବକ୍ସିବାଡ଼' ମାହାଲରୂପେ ରେକର୍ଡ଼ କରାଯାଇଥିଲା । ପୁରୁଷୋତ୍ତମ ଦେବଙ୍କ ପାତ୍ର କହ୍ନାଇ ବିଦ୍ୟାଧରଙ୍କ ନାମରେ 'କହ୍ନାଇ ବିଦ୍ୟାଧରପୁର' ଶାସନ ପ୍ରତିଷ୍ଠିତ ହୋଇଥିଲା । ସେ ଉଭୟେ ଖୋର୍ଦ୍ଧାର ରାଜା ଏବଂ କଟକ ମୋଗଲ ସୁବାଦାରଙ୍କ 'ଦୁଇଆଡ଼ି' ଉକିଲ ଥିଲେ । ମୋଗଲଙ୍କଠାରୁ ଜାଗିରି ପାଇବା ପରେ ରାଜାଙ୍କ ଅପେକ୍ଷା ମୋଗଲଙ୍କ ପ୍ରତି ତାଙ୍କର ଅନୁରକ୍ତି ଅଧିକ ହେବା ସ୍ୱାଭାବିକ । ସେଥିପାଇଁ ନରସିଂହ ଦେବ ତାଙ୍କର ଆଉ ଜଣେ ବିରାଦର ଭାନୁ ବିଦ୍ୟାଧରଙ୍କୁ ନିଜର ସ୍ୱତନ୍ତ୍ର ସେନାପତି ରୂପେ ନିଯୁକ୍ତ କରିଥିଲେ ଏବଂ ବକ୍ସି ଭାନୁ ବିଦ୍ୟାଧରଙ୍କ ସହିତ ମିଶି ମୋଗଲ ସୁବାଦାର ଅହମ୍ମଦ ବେଗ୍‌ର ଖୋର୍ଦ୍ଧା ଆକ୍ରମଣକୁ ପ୍ରତିହତ କରିଥିଲେ[୧୧୪] ।

## "କହ୍ନାଇ ବିଦ୍ୟାଧରଙ୍କ ଜାଗିରି ମାହାଲ ପୂର୍ବଦୁଆଇ"

ଚକଡ଼ାପୋଥିର ୨୧ ପୃଷ୍ଠା ଶେଷରେ ରାମଚନ୍ଦ୍ରଦେବଙ୍କ ନାମରେ ବନ୍ଦୋବସ୍ତ ଖଞ୍ଜା ମାହାଲର ବିବରଣୀରେ ଉଲ୍ଲେଖ ଅଛି ଯେ "ରାମଚନ୍ଦ୍ରଦେବଙ୍କ ଦିନେ ଆୟ ହେଉଥିଲା ଏହାଙ୍କ ଖଞ୍ଜା ଦେଲା ପ୍ରମାଣେ - ରାହାଙ୍ଗ, କୋଟରାହାଙ୍ଗ, ବାଣଚାଷ, ପୂର୍ବଦୁଆଇ, ଓଳଧାର, ଡମରାଖଣ୍ଡ, ଅନ୍ତରୋଧ, ପୁରୁଲୋ, କୋଧାର, ଅଠାଇଶ, ସାଇଲୋ, ସାଇବିରି, ପଶ୍ଚିମଦୁଆଇ ଆବର୍ତ୍ତକ, ଅନାବର୍ତ୍ତକ, ବେଦା, ନିର୍ବନ୍ଧ, ଚବିଶକୁଦ, ସିରାଇ, ଶ୍ରୀପୁରୁଷୋତ୍ତମ ସହର, ଅଥାନ୍ତରକୁ ଗାଏ ବା ୧, ୩୮, ୬୯୯ଟିକୁ ଟ ୧,୨୩,୩୬୦ଙ୍କା ।" 'ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ' ୮୭ ପୃଷ୍ଠାରେ ପ୍ରଦର୍ଶିତ 'ରାମଚନ୍ଦ୍ର ଦେବଙ୍କ ହସ୍ତମୁଦୀ ମାହାଲ'ର ମାନଚିତ୍ରରେ ରାହାଙ୍ଗ, କୋଟରାହାଙ୍ଗ, ଓଳଧାର, ଅଠାଇଶ, ଡମାରଖଣ୍ଡ, କୋଧାର, ଅନ୍ତରୋଧ, ଚବିଶକୁଦ, ସିରାଇ ଇତ୍ୟାଦି ମାହାଲ ଦର୍ଶାଯାଇଥିଲେହେଁ, ପୂର୍ବଦୁଆଇ, ପଶ୍ଚିମ ଦୁଆଇ ଇତ୍ୟାଦି ମାହାଲ ଦର୍ଶାଯାଇ ନାହିଁ ।[୧୧୫] କିନ୍ତୁ ମ୍ୟାଡ଼କ୍ସଙ୍କ ସର୍ଭେ ରିପୋର୍ଟ ସହିତ ଦିଆଯାଇଥିବା ପୁରୀଜିଲ୍ଲାର ମାନଚିତ୍ରରେ[୧୧୬] ପୂର୍ବ ଦୁଆଇ, ପଶ୍ଚିମ ଦୁଆଇ ଇତ୍ୟାଦି ମାହାଲଗୁଡ଼ିକ ପୃଥକ୍

---

୧୧୪- ୧୬/୧୧,୧୨ ୧୧୫- ୪/୮୯ ୧୧୬- ୪୬/୫୦୪



କହ୍ନାଇ ବିଦ୍ୟାଧରଙ୍କ ଜାଗିରିମାହାଲ ପୂର୍ବଦୁଆର

ପୃଥକ୍‌ଭାବେ ଦର୍ଶାଯାଇଛି । ଅଧିକନ୍ତୁ ଉକ୍ତ ରିପୋର୍ଟରେ ପୂର୍ବଦୁଆଇ ମାହାଲର ମୋଟ ରାଜସ୍ୱଗ୍ରାମ ସଂଖ୍ୟା ୭୩ ଏବଂ ମୋଟ୍ ପ୍ଲଟ ସଂଖ୍ୟା ୪୫୯୫୯ ଥିବା ସ୍ଥଳେ ମୋଟ ଜମିପରିମାଣ (କ୍ଷେତ୍ରଫଳ) ୨୦୮୮୮ ଏକର ଓ ଚାଷ ଜମି ପରିମାଣ ୧୬୫୫୯ ଏକର ଥିଲା ବୋଲି ଉଲ୍ଲେଖ ଅଛି[୧୧୬] । କିନ୍ତୁ ପୂର୍ବଦୁଆଇ ଓ ଓଳଧାର ମାହାଲର ଅଧିକାଂଶ ଅଞ୍ଚଳ କୁଶଭଦ୍ରା ଓ ଭାର୍ଗବୀ ନଦୀ ବନ୍ୟାଦ୍ୱାରା କ୍ଷତିଗ୍ରସ୍ତ ହେଉଥିବା ଏବଂ ବନ୍ଦୋବସ୍ତ ରିଭିଜନ୍ ସମୟରେ ଉକ୍ତ ଦୁଇମାହାଲର ଖାଲୁଆ ଅଞ୍ଚଳ ସବୁ ପଡ଼ିଆ ପଡ଼ିଥିଲା ବୋଲି ମଧ୍ୟ ରିପୋର୍ଟରେ କୁହାଯାଇଛି[୧୧୮] । ସେହି କାରଣରୁ ପୂର୍ବଦୁଆଇରେ କହ୍ଲାଇ ବିଦ୍ୟାଧରଙ୍କୁ ଦିଆଯାଇଥିବା ବକ୍ସି-ଜାଗିରି ସମ୍ଭବତଃ ବନ୍ୟାଞ୍ଚଳରେ ଥିବାରୁ ପରବର୍ତ୍ତୀ ସମୟରେ ପୂର୍ବ ଦୁଆଇ ପରିବର୍ତ୍ତେ ରାହାଙ୍ଗ, ସିରାଇ, ଲେମ୍ବାଇ ଓ ଚବିଶକୁଦ ମାହାଲରୁ ବକ୍ସିଙ୍କୁ ୨୦୦ ବାଟି ଜାଗିରି ଦିଆଯାଇଥିଲା । ମୋଗଲ ସୁବାଦାରଙ୍କଦ୍ୱାରା ଖଞ୍ଜାଯାଇଥିବା ଏହି ଜାଗିରିକୁ ବକ୍ସିବାଡ଼ ଜାଗିରିରୂପେ ବନ୍ଦୋବସ୍ତରେ ରେକର୍ଡ଼ କରାଗଲା ।

## ଅନିରୁଦ୍ଧ ରାୟପିତାମ

ନରସିଂହ ଦେବ ଅପୁତ୍ରକ ଥିବାରୁ ତାଙ୍କ ପରେ କିଏ ରାଜା ହେବ ସେଥିପାଇଁ ତାଙ୍କ ବଡ଼ଭାଇ ବଳଭଦ୍ର ରାଏ ଏବଂ ପୁତୁରା (ସାନଭାଇ ଗୋକୁଳ ରାଏଙ୍କ ପୁଅ) ଗଙ୍ଗାଧର ରାଏଙ୍କ ମଧ୍ୟରେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଓ ଅନ୍ତର୍ବିବାଦ ଲାଗିରହିଥିଲା । ଧରମୁ ରାୟ ପିତାମ ଅନ୍ଧାରୀଗଡ଼ରୁ ବିତାଡ଼ିତ ହେବା ପରେ କୋକଲଗଡ଼ରେ ରହି ଦୁଇ ବର୍ଷ ପରେ ପ୍ରାଣହରାଇଲେ । ଧରମୁ ରାୟପିତାମ୍‌ଙ୍କ ପିତା (ଦାନପାତ୍ର ପୁଅ) ଗୋପୀନାଥ ରାୟପିତାମ୍‌ଙ୍କଦ୍ୱାରା ସ୍ଥାପିତ ଅନ୍ଧାରୀ ଜମିଦାରୀ[୧୧୯] ରାୟ ପିତାମ୍ ବଂଶର ତିନି ପୁରୁଷ ଧରି ମୌରସୀ ସମ୍ପତ୍ତି ଥିଲା । ଏବେ ସେଇ ଅନ୍ଧାରୀ ଜମିଦାରୀ ରାଜାଙ୍କଯୋଗୁଁ ରାୟପିତାମ ବଂଶର ହାତଛଡ଼ା ହୋଇଥିବାରୁ କୋକଲ ଖଣ୍ଡାଏତ ରାୟପିତାମ୍ ବଂଶର ରାଜାଙ୍କ ସହିତ ଗୁପ୍ତ ଶତ୍ରୁତା ଲାଗିରହିଥିଲା । ଧରମୁ ରାୟପିତାମଙ୍କ ପୁତ୍ର କୃଷ୍ଣ ବାହୁବଳେନ୍ଦ୍ରଙ୍କର ଦଶ ପୁଅ ଥିଲେ[୧୨୦] । ବଡ଼ପୁଅ ଜଗନ୍ନାଥ ବ୍ୟତୀତ ଅନ୍ୟମାନଙ୍କ ନାମ ମିଳୁ ନ ଥିଲେ ହେଁ ସେମାନଙ୍କ ମଧ୍ୟରୁ ଜଣକର ନାମ 'ଅନିରୁଦ୍ଧ' ହୋଇଥିବା ସମ୍ଭାବନା । ସେହି ଅନିରୁଦ୍ଧ ରାୟ ପିତାମ୍ ହିଁ ନରସିଂହ ଦେବଙ୍କ ୩୨ ଅଙ୍କ ୧୬୪୭ ଖ୍ରୀଷ୍ଟାବ୍ଦରେ ଷଡ଼ଯନ୍ତ୍ରକରି ସୁବାଦାର ମୁତକ୍ୱାଦ୍‌ଖାଁର ଅମୀର ନବାବ ଫତେଖାଁକୁ ପୁରୀ ବାଲିସାହି ନଅରକୁ ଡାକିନେଇ ନରସିଂହ ଦେବଙ୍କ ସହିତ ବିଶ୍ୱାସଘାତକତା କରି ତାଙ୍କୁ ମରାଇଥିଲେ । ଲେଖାପ୍ରମାଦ ହେତୁ ପାଞ୍ଜିରେ 'ଅନିରୁଦ୍ଧ ରାୟପିତାମ୍' ସ୍ଥାନରେ 'ଅନିରୁଦ୍ଧ ରାୟ ପିତାମହ' ହୋଇଯାଇଛି[୧୨୧] । କାରଣ ନରସିଂହ ଦେବଙ୍କ ପିତାମହ ହେଉଛନ୍ତି

---

*୧୧୭- ୪୮/୫୧୧,୫୪୪ ୧୧୮- ୪୮/୬୨୬ ୧୧୯- ୧୬/୧୦*
*୧୨୦- ୧୬/୧୫ ୧୨୧- ୧୪/୨୬୬*

ପରଲୋକଗତ ଗଜପତି ରାମଚନ୍ଦ୍ରଦେବ, ଆଉ କେହି ପିତାମହ ନ ଥିଲେ। ଫତେଖାଁ ନରସିଂହଦେବଙ୍କୁ ହତ୍ୟାକଲାପରେ ଶ୍ରୀମନ୍ଦିର ଓ ରାଜାଙ୍କ ନଅର ଭିତରେ ପଶି ବହୁ ଧନରତ୍ନ ଲୁଟିନେଲା। ଏ ଷଡ଼ଯନ୍ତ୍ର ପଛରେ ସମ୍ଭବତଃ ନରସିଂହଦେବଙ୍କ ପୁତୁରା ଗଙ୍ଗାଧର ରାଏଙ୍କର ପ୍ରଚ୍ଛନ୍ନ ହାତ ଥିଲା।

ନରସିଂହଦେବଙ୍କ ପରେ ଗଙ୍ଗାଧର ଦେବ ୧୬୪୭ରେ ରାଜା ହେଲେ। ତା'ପୂର୍ବରୁ କହ୍ନାଇ ବିଦ୍ୟାଧରଙ୍କ ମୃତ୍ୟୁଘଟିଥିଲା ଏବଂ କହ୍ନାଇ ବିଦ୍ୟାଧରଙ୍କ ପରେ ବାସୁଦେବ ବିଦ୍ୟାଧର ଖୋର୍ଦ୍ଧାର ମନ୍ତ୍ରୀ ଓ ସେନାପତି ପଦରେ ଥାଇ ମୋଗଲ ସୁବାଦାରଙ୍କ ସହ ସୁସମ୍ପର୍କ ରଖିଥିଲେ। ଫତେଖାଁ ନରସିଂହ ଦେବଙ୍କୁ ହତ୍ୟାକଲାପରେ ନିଜ ଭ୍ରାଇଁ ମିର୍ଜା ଅଜିଜକୁ ଅନ୍ଧାରୀରେ ଏବଂ ବାସୁଦେବ ବିଦ୍ୟାଧରଙ୍କ ମାମୁଁ ଭିକାରି ପଟ୍ଟନାୟକଙ୍କୁ କୋକଲଗଡ଼ରେ ରଖାଯାଇଥିଲା[୧୨୨]। ଗଙ୍ଗାଧର ଦେବ ମାତ୍ର ୩ ମାସ ୨୧ ଦିନ ରାଜଗାଦିରେ ବସିଥିଲେ।

ଗଙ୍ଗାଧର ଦେବଙ୍କୁ ତାଙ୍କ ପିତୃବ୍ୟ ବଳଭଦ୍ର ରାଏ କୋକଲ ରାୟ ପିତାମ୍ ବଂଶର[୧୨୩] ସହାୟତାରେ ମରାଇ ସେହି ୧୬୪୭ ଖ୍ରୀଷ୍ଟାବ୍ଦରେ ରାଜା ହେଲେ। ତାଙ୍କ ସମୟରେ ମଧ୍ୟ ବାସୁଦେବ ବିଦ୍ୟାଧର ମନ୍ତ୍ରୀ ଓ ସେନାପତି ଥିଲେ। କିନ୍ତୁ ନରସିଂହ ଦେବଙ୍କଠାରୁ ବଳଭଦ୍ରଦେବଙ୍କ ପର୍ଯ୍ୟନ୍ତ ଖୋର୍ଦ୍ଧା ରାଜବଂଶରେ ତୀବ୍ର ଅନ୍ତର୍ଦ୍ୱନ୍ଦ୍ୱ ଲାଗିରହିଥିବାରୁ ଏବଂ ସେଥିପାଇଁ ନରସିଂହ ଦେବଙ୍କ ଭଳି ଉତ୍ତମ ରାଜାଙ୍କୁ ଏବଂ ତାଙ୍କ ପରେ ଗଙ୍ଗାଧର ଦେବଙ୍କୁ ହତ୍ୟାକରାଯାଇଥିବାରୁ ସମ୍ଭବତଃ ବାସୁଦେବ ବିଦ୍ୟାଧର ରାଜବଂଶର ଏହି ଅନ୍ତର୍ବିବାଦରୁ ନିଜକୁ ସମ୍ପୂର୍ଣ୍ଣଭାବେ ଦୂରେଇରଖିଥିଲେ। ଦ୍ୱିତୀୟତଃ କହ୍ନାଇ ବିଦ୍ୟାଧର ମୋଗଲଙ୍କଠାରୁ ପାଇଥିବା ଜାଗିରି ବୃତ୍ତିର ଉତ୍ତରାଧିକାରୀଭାବେ ସେ ନିଜକୁ କୌଣସି ପ୍ରକାର ରାଜାନୁଗ୍ରହ ପ୍ରାର୍ଥୀଭାବେ ପରିଚିତ କରାଇ ନ ଥିଲେ। ସେଥିପାଇଁ ଖୋର୍ଦ୍ଧା ଇତିହାସରେ ସେ ଅଜ୍ଞାତପ୍ରାୟ ରହିଯାଇଛନ୍ତି। କେବଳ ମାମୁଁ ଭିକାରି ପଟ୍ଟନାୟକଙ୍କୁ ଥଇଥାନ କରାଇବାଯୋଗୁଁ ଚକଡ଼ା ପୋଥିରେ ତାଙ୍କ ନାମ ସ୍ଥାନପାଇଯାଇଛି[୧୨୪]।

ବଳଭଦ୍ର ଦେବଙ୍କ ପରେ ୧୬୭୫ ଖ୍ରୀଷ୍ଟାବ୍ଦରେ ମୁକୁନ୍ଦଦେବ (୧ମ) ରାଜାହେଲେ। ମୁକୁନ୍ଦଦେବ ସିଂହାସନ ଆରୋହଣ କରିବା ସମୟରେ ନାବାଳକ ଥିଲେ। ଆଉଜଣେ ଛଦ୍ମବେଶୀ ଗଙ୍ଗାଧର ନିଜକୁ ଖୋର୍ଦ୍ଧାର ରାଜା ବୋଲି ଦାବି କରି ମୁକୁନ୍ଦଦେବଙ୍କୁ ଗାଦିଚ୍ୟୁତ କରିବାକୁ ବିଦ୍ରୋହ ଓ ଷଡ଼ଯନ୍ତ୍ର ଚଳାଇବାରୁ ବୃଦ୍ଧ ରାଜଗୁରୁ ଧର୍ମଦେବ ମହାପାତ୍ର ସେନାପତି ଭାନୁ ବିଦ୍ୟାଧର (ଭ୍ରମରବର ରାୟ) ବକ୍ସିଙ୍କ ସହାୟତାରେ ଉକ୍ତ

---

୧୨୨- ୧୬/୧୩ ୧୨୩- ୩/୮୬ ୧୨୪- ୧୬/୧୩

ବିଦ୍ରୋହକୁ ଦମନକରିଥିଲେ[୧୨୫]। ସୁତରାଂ ନରସିଂହ ଦେବଙ୍କଦ୍ୱାରା ସ୍ୱତନ୍ତ୍ରଭାବେ ନିଯୁକ୍ତ ବକ୍ସି ଭାନୁ ବିଦ୍ୟାଧର ମଧ ବଳଭଦ୍ରଦେବ ଓ ମୁକୁନ୍ଦଦେବଙ୍କ ରାଜତ୍ୱ ପର୍ଯ୍ୟନ୍ତ ଖୋର୍ଦ୍ଧାର ସ୍ୱତନ୍ତ୍ର ସେନାପତିଭାବେ ରହିଥିଲେ ।

ମୁକୁନ୍ଦଦେବଙ୍କର ପାତ୍ର (ମନ୍ତ୍ରୀ, ସେନାପତି) ଥିଲେ ପୀତାମ୍ବର ବିଦ୍ୟାଧର ମହାପାତ୍ର । ସେ ଶ୍ରୀଲକ୍ଷ୍ମୀଠାକୁରାଣୀଙ୍କ ଜଗମୋହନ ନିର୍ମାଣ କରାଇଥିଲେ[୧୨୬]। ମୋଗଲ ସୁବାଦାର ଖାନ୍-ଇ-ଦୁରାନ୍‌ର ଦୌରାତ୍ମ୍ୟ ହେତୁ ମୁକୁନ୍ଦଦେବଙ୍କ ରାଜତ୍ୱ ସଂଘର୍ଷମୟ ଥିଲା । ତାଙ୍କ ନିଜ ଭାଇ କପିଳ ଭ୍ରମରବର ରାଏ ମଧ ତାଙ୍କପାଇଁ ଶତ୍ରୁ ହୋଇଥିଲେ । କିନ୍ତୁ ତାଙ୍କୁ ଅଧିକାଂଶ ସାମନ୍ତରାଜା, ଜମିଦାର ଏବଂ ଖଣ୍ଡାଏତମାନେ ସହାୟତା କରିଥିଲେ ହେଁ, ପାତ୍ର ପୀତାମ୍ବର ମହାପାତ୍ରଙ୍କର ଭୂମିକା ସମ୍ପର୍କରେ କେବଳ ଲକ୍ଷ୍ମୀଙ୍କ ଜଗମୋହନ କରାଇବା ବ୍ୟତୀତ ଆଉ କିଛି ଉଲ୍ଲେଖ ନାହିଁ ।

ମୁକୁନ୍ଦଦେବ (୧ମ)ଙ୍କ ପରେ ତାଙ୍କ ପୁଅ ଦିବ୍ୟସିଂହଦେବ (୧ମ) ରାଜା ହେଲେ । ଦିଆନ ପରମାନନ୍ଦ ପଟ୍ଟନାୟକଙ୍କ ପୁଅ ରାମଚନ୍ଦ୍ର ପଟ୍ଟନାୟକ ଦିବ୍ୟସିଂହ ରାଏଙ୍କୁ ବରପଦାଗଡ଼ରୁ ନେଇ ରଥିପୁର ଗଡ଼ରେ ରାଜାଭିଷେକପାଇଁ ଉପସ୍ଥିତ କରାଇଥିଲେ । ଏଥିରୁ ଅନୁମିତ ହୁଏ ଯେ, ମୁକୁନ୍ଦଦେବ (୧ମ) ହିଁ ପରମାନନ୍ଦ ପଟ୍ଟନାୟକଙ୍କୁ ଦିଆନଭାବେ ନିଯୁକ୍ତ କରିଥିଲେ ଏବଂ ଦିବ୍ୟସିଂହଦେବ (୧ମ)ଙ୍କ ସିଂହାସନାରୋହଣ ପରେ ମଧ ସେ ଦିଆନ୍ ଥିଲେ । ତାଙ୍କ ପୁଅ ରାମଚନ୍ଦ୍ର ପଟ୍ଟନାୟକ ତାଙ୍କ ଅନ୍ତେ ସେଇ ଦିବ୍ୟସିଂହଦେବଙ୍କ ସମୟରେ ଦିଆନ ହୋଇଥିବେ । ପୁଣି ମାଦଳାପାଞ୍ଜି ମତେ ରାମଚନ୍ଦ୍ର ପଟ୍ଟନାୟକଙ୍କ ପୁଅ ଭଗବାନ୍ ଭ୍ରମରବର ରାୟ ସେଇ ଦିବ୍ୟସିଂହ ଦେବଙ୍କ ସମୟରେ ଦିଆନ୍ ହୋଇଥିଲେ । ଏ ସମ୍ପର୍କରେ ଦ୍ୱିଧାମତ ଥିବା ପରବର୍ତ୍ତୀ ଆଲୋଚନାରେ ଉଲ୍ଲେଖ କରାଯାଇଛି ।

## ଅଭି (ଅରି) ରାୟପିତାମ୍

ଦିବ୍ୟସିଂହ ଦେବଙ୍କ ୭ଅଙ୍କ ୧୬୯୨ ଖ୍ରୀଷ୍ଟାବ୍ଦରେ ଆଉରଙ୍ଗଜେବଙ୍କ ନିର୍ଦ୍ଦେଶରେ ନବାବ ଏକ୍‌ରାମ୍‌ଖାଁର ପୁରୀ ମନ୍ଦିର ଉପରେ ଆକ୍ରମଣ ହେତୁ ଜଗନ୍ନାଥଙ୍କୁ ମନ୍ଦିରରୁ ଲୁଚାଇନେଇ ବାଣପୁରରେ ରଖାଯାଇଥିଲା । ମନ୍ଦିରର ସମସ୍ତ ନୀତି ବନ୍ଦକରାଯାଇ ମନ୍ଦିର ମୁହଁ ମୁଦକରାଯାଇଥିଲା । ପନ୍ଦର ବର୍ଷ ପରେ ୧୭୦୭ରେ ଆଉରଙ୍ଗଜେବଙ୍କ ମୃତ୍ୟୁ ପରେ ପୁଣି ଜଗନ୍ନାଥଙ୍କୁ ମନ୍ଦିରରେ ପୁନଃପ୍ରତିଷ୍ଠା କରାଯାଇ ସମସ୍ତ ନୀତି ଓ ଯାତ୍ରା ପର୍ବର ପୁନଃ ପ୍ରଚଳନ କରାଗଲା । ପାଞ୍ଜିରେ "ଅରାରାମ ପିତାମହ ୧୮ଗଡ଼ ଖଣ୍ଡାଏତଙ୍କୁ ଘେନାଇ ବଡ଼ଦେଉଳ ସିଂହଦ୍ୱାର ଫିଟାଇ ଦେଲା... ଇତ୍ୟାଦିର ଉଲ୍ଲେଖ ଥିଲେ ହେଁ ଏହି 'ଅରାରାମ ପିତାମହ'ଙ୍କ ପରିଚୟ ପାଞ୍ଜି ବା ଇତିହାସରେ ନାହିଁ[୧୨୭] । ଲେଖକ ମତରେ

---
୧୨୫- ୪/୧୧୭   ୧୨୬- ୩/୧୧୧   ୧୨୭- ୧୬/୨୭୦

ନରସିଂହଦେବଙ୍କ ହତ୍ୟାଷଡ଼ଯନ୍ତ୍ରକାରୀଙ୍କ ନାମ 'ଅନିରୁଦ୍ଧରାୟ ପିତାମ' ସ୍ଥଳରେ ଯେପରି ଲିପିକାର ଦୋଷହେତୁ ଅନିରୁଦ୍ଧରାୟ ପିତାମହ ହୋଇଛି, ଏଠାରେ ମଧ୍ୟ ସେହିପରି 'ଅରୀ ବା ଅଭୀ ରାୟ ପିତାମ' ସ୍ଥାନରେ ଅରାରାମ ପିତାମହ ହୋଇଛି। ଅରୀରାୟ ପିତାମ ନିଶ୍ଚିତଭାବେ ଅନ୍ଧାରୀ ବା କୋକଲ ଗଡ଼ର ଖଣ୍ଡାଏତ ଏବଂ ସେ ଅନ୍ଧାରୀର ୮ଗଡ଼ ସହ ପାଖାପାଖି ଖୋର୍ଦ୍ଧା ଇଲାକାର ଆଉ ୧୦ ଗଡ଼ ଏପରି ୧୮ ଗଡ଼ର ଖଣ୍ଡାଏତଙ୍କୁ ନେଇ ବଡ଼ଦେଉଳ ସିଂହଦ୍ୱାର ଫିଟାଇଥିବା ସମ୍ଭବପର[୧୨୮]।

ପୀତାମ୍ବର ବିଦ୍ୟାଧର ମହାପାତ୍ରଙ୍କ ଉତ୍ତରାଧିକାରୀ ଜଗନ୍ନାଥ ବିଦ୍ୟାଧର ମହାପାତ୍ର ମୋଗଲ ସୁବାର ସେନାପତି ହୋଇଥିଲେ। ତେଣୁ ମୋଗଲ ପ୍ରଦତ୍ତ ବକ୍ସିବାଡ଼ ଜାଗିରି ବୃତ୍ତିଭୋଗୀଭାବେ ପୂର୍ବପୁରୁଷମାନଙ୍କଭଳି ଖୋର୍ଦ୍ଧାର ରାଜାଙ୍କ ଅପେକ୍ଷା କଟକର ମୋଗଲ ସୁବାଦାରଙ୍କପ୍ରତି ତାଙ୍କର ଆନୁଗତ୍ୟ ଅଧିକ ଥିଲା। ସେହି କାରଣରୁ ଦିବ୍ୟସିଂହ ଦେବଙ୍କ ୭ଅଙ୍କ, ୧୬୯୨ ଖ୍ରୀଷ୍ଟାବ୍ଦରେ ଏକ୍‌ରମ୍ ଖାଁର ପୁରୀମନ୍ଦିର ଆକ୍ରମଣକୁ ପ୍ରତିହତ ନ କରି ଆଉରଙ୍ଗଜେବ୍‌ଙ୍କୁ ସନ୍ତୁଷ୍ଟ କରିବା ଲକ୍ଷ୍ୟରେ ଏକରାମ୍‌ଖାଁ ସମ୍ମୁଖରେ ମନ୍ଦିର ଗୁମ୍ଫୁଟର କିଛି ଅଂଶ ଭଙ୍ଗାଇ ତା' ହାତରେ ଚନ୍ଦନକାଠ ନିର୍ମିତ ନକଲି ଜଗନ୍ନାଥ ମୂର୍ତ୍ତି ଧରାଇ ଦେଇଥିଲେ।* ସମ୍ଭବତଃ ତାଙ୍କ ଉଆସ ଉପରେ ଏକ୍‌ରମ୍ ଖାଁ କଦାପି ଆକ୍ରମଣ କରିବ ନାହିଁ ବୋଲି ଦିବ୍ୟସିଂହ ଦେବ ନିଶ୍ଚିତ ହୋଇ ତାଙ୍କରି ଉଆସରେ ଲୁଚିରହିଥିଲେ।[୧୨୯]

ଜଗନ୍ନାଥ ବିଦ୍ୟାଧର ମହାପାତ୍ରଙ୍କ ଜ୍ୟେଷ୍ଠପୁତ୍ର ଲୋକନାଥ ବିଦ୍ୟାଧର ମହାପାତ୍ର ନିଜ ପିତାଙ୍କର ଉତ୍ତରାଧିକାରୀଭାବେ ବକ୍ସିବାଡ଼ ଜାଗିରି ବୃତ୍ତି ଭୋଗ କଲେ। ଲୋକନାଥ ବିଦ୍ୟାଧର ମହାପାତ୍ର ଜଣେ କବି ଥିଲେ ଏବଂ ଦିବ୍ୟସିଂହ ଦେବ(୧)ଙ୍କ ରାଜତ୍ୱ କାଳରେ ସେ 'ସର୍ବାଙ୍ଗ ସୁନ୍ଦରୀ', 'ନୀଳାଦ୍ରି ମହୋତ୍ସବ', 'ପଦ୍ମାବତୀ ପରିଣୟ' ଓ 'ରସକଳା' ଇତ୍ୟାଦି କାବ୍ୟମାନ ରଚନାକରିଥିଲେ।

ଦିବ୍ୟସିଂହ ଦେବଙ୍କ ପରେ ତାଙ୍କ ସାନଭାଇ ହରେକୃଷ୍ଣ ଦେବ ଖୋର୍ଦ୍ଧାର ରାଜା ହେଲେ। ମାଦଳା ପାଞ୍ଜି ଭାଷାରେ "ଋଷଭ ୧୧ ଦିନେ ଦିଆନ ପରମାନନ୍ଦ ପଟ୍ଟନାୟକ ପଣନାତି, ଦିଆନ ରାମଚନ୍ଦ୍ର ପଟ୍ଟନାୟକ ନାତି, ଦିଆନ ଭଗବାନ ଭ୍ରମରବରଙ୍କ ପୁଅ, ଦିଆନ ଗୋପୀନାଥ ବିଦ୍ୟାଧର ମହାପାତ୍ର, ହରେକୃଷ୍ଣ ଭ୍ରମରବର ରାଏଙ୍କୁ ତାଙ୍କ ନଅରୁ ବିଜେ କରାଇନେଇ ରାଜନଅରରେ ବିଜେକରାଇଲେ।" ଉଲ୍ଲେଖଯୋଗ୍ୟ ଯେ ଯୁବରାଜ ଦିବ୍ୟସିଂହ ରାଏ ରାଜାଭିଷେକପାଇଁ ଯିବାବେଳେ ଯେଉଁପରି ଦେବାନ୍‌ଙ୍କ ପୁଅ ରାମଚନ୍ଦ୍ରଙ୍କୁ

---

*୧୨୮- ୩/୧୨୩ * ୧୦୮ ପୃଷ୍ଠା ଦ୍ରଷ୍ଟବ୍ୟ*

ସାଙ୍ଗରେ ନେଇଥିଲେ ସେହିପରି ହରେକୃଷ୍ଣ ରାଏ ରାଜାଭିଷେକପାଇଁ ଯିବାବେଳେ ଦେବାନଙ୍କ ପୁଅ ଗୋପୀନାଥଙ୍କୁ ସାଙ୍ଗରେ ନେଇଥିଲେ । ରଜାପୁଅ-ମନ୍ତ୍ରୀପୁଅ ସାଙ୍ଗହେବା, ସଙ୍ଗାତ ବସିବା ସାଧାରଣ ଘଟଣା । ଏ ଉଭୟ କ୍ଷେତ୍ରରେ ତାହା ହିଁ ଘଟିଛି । ସୁତରାଂ ଗୋପୀନାଥ କେବଳ ଦେଓ୍ୱାନଙ୍କ ପୁଅ ଥିଲେ, ନିଜେ ଦେବାନ୍ ନ ଥିଲେ । ଦିବ୍ୟସିଂହଦେବ ୧୬୮୯ରୁ ୧୭୧୬ ଯାଏଁ ୨୮ ବର୍ଷ ରାଜତ୍ୱ କରିଥିଲେ । ୨୮ ବର୍ଷ ମଧ୍ୟରେ ପରମାନନ୍ଦଙ୍କ ପରେ ରାମଚନ୍ଦ୍ର ଓ ତାଙ୍କ ପରେ ଭଗବାନ ଭ୍ରମରବର ରାଏ ଦିଆନ ହେବା ସମ୍ଭବପର ହୋଇପାରେ । କିନ୍ତୁ 'ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ' ୧୪୯ପୃଷ୍ଠାରେ କୁହାଯାଇଛି - ହରେକୃଷ୍ଣ ଦେବଙ୍କ ପୁଅ ଗୋପୀନାଥ ଦେବ ରାଜା ହେବା ପରେ ଆଉ କରଣଦିଆନ ନ ରଖି ଜଣେ ମୋଗଲ ମିର୍ଜା ସୟଦ୍‌ବେଗଙ୍କୁ ଦିଆନକଲେ । ''ତାଙ୍କର କାର୍ଯ୍ୟଦକ୍ଷତାରେ ସେ ଦେବାନ ହେଲେ ଏବଂ ସ୍ୱର୍ଗତ ମନ୍ତ୍ରୀ ପରମାନନ୍ଦଙ୍କ ଭାଇ ରାମଚନ୍ଦ୍ର ପଟ୍ଟନାୟକ ତଡ଼ାଖାଇଲେ । କିନ୍ତୁ ତାଙ୍କ ବଂଶର ଜଣେ ଗୋପୀନାଥ ପଟ୍ଟନାୟକେ ପାଞ୍ଜିଆ ରହିଲେ ।'' ପାଞ୍ଜିରେ ରାମଚନ୍ଦ୍ରଙ୍କୁ ପରମାନନ୍ଦଙ୍କ 'ପୁଅ' କୁହାଯାଇଥିବାବେଳେ ଏଠାରେ 'ଭାଇ' କୁହାଯାଇଛି ଏବଂ ପାଞ୍ଜିରେ ହରେକୃଷ୍ଣ ଦେବଙ୍କ ସିଂହାସନାରୋହଣ ବେଳକୁ ରାମଚନ୍ଦ୍ରଙ୍କ ପୁଅ ଭଗବାନ ଭ୍ରମରବର ରାଏ ଦେବାନ ଥିଲେ ବୋଲି କୁହାଯାଇଥିବାବେଳେ ଏଠାରେ ତାଙ୍କର ନାମ ନାହିଁ ଏବଂ ରାମଚନ୍ଦ୍ର ଦେବାନ ପଦରୁ ତଡ଼ାଖାଇଲେ ବୋଲି କୁହାଯାଇଛି । ପୁଣି ଖୁରୁଧା ଇତିହାସ ୧୭୫ପୃଷ୍ଠାରେ ହରେକୃଷ୍ଣ ଦେବଙ୍କ ପରବର୍ତ୍ତୀ ରାଜା ଗୋପୀନାଥ ଦେବଙ୍କ ୩ଅଙ୍କରେ ପାତ୍ର ଭଗବାନ ଭ୍ରମରବର ରାଏ ଗୁଣ୍ଡିଚାଘର ଜଗମୋହନ ନିର୍ମାଣ କରିଥିଲେ ବୋଲି ପ୍ରମାଣ କରାଯାଇଛି । କିନ୍ତୁ ପାଞ୍ଜିରେ ହରେକୃଷ୍ଣ ଦେବଙ୍କ ପାତ୍ର ଭଗବାନ ଭ୍ରମରବର ରାଏ ରୋଷଘର ଭିତର ବେଢ଼ା ଦୁଆର ପାହାଚ ଗଢ଼ାଇଥିଲେ ବୋଲି ଉଲ୍ଲେଖ ଅଛି ।

କବି ଲୋକନାଥ ବିଦ୍ୟାଧର ମହାପାତ୍ର ମଧ୍ୟ ହରେକୃଷ୍ଣ ଦେବଙ୍କ ସମୟରେ ବଳ୍ପିବାଡ଼ ଜାଗିରିବୃତ୍ତିଭୋଗୀ ଖୋର୍ଦ୍ଧାର ସେନାପତି ଥିଲେ ।

ହରେକୃଷ୍ଣ ଦେବଙ୍କ ପରେ ତାଙ୍କ ପୁଅ ଗୋପୀନାଥ ଦେବ ରାଜା ହେଲେ । ସେ କରଣ ଦେଓ୍ୱାନଙ୍କୁ ତଡ଼ି ମିର୍ଜା ସୟଦବେଗ ନାମକ ଜଣେ ମୋଗଲ ଦେବାନ୍ ରଖିଲେ ବୋଲି ଆଗରୁ କୁହାଯାଇଛି । ମିର୍ଜା ସୟଦବେଗ ବିଧର୍ମୀ ହେଲେ ହେଁ ଅତ୍ୟନ୍ତ ଭଦ୍ର ଓ ବିଶ୍ୱସ୍ତ ଥିଲେ ଏବଂ ବିଶେଷ କାର୍ଯ୍ୟଦକ୍ଷ ଥିବାରୁ ହରେକୃଷ୍ଣ ଦେବଙ୍କଦ୍ୱାରା ସହକାରୀ ଦେବାନ୍ ଓ ଗୋପୀନାଥ ଦେବଙ୍କଦ୍ୱାରା ଦେବାନ୍ ପଦକୁ ଉନ୍ନୀତ ହୋଇଥିଲେ । ସେ ପାର୍ଶୀଭାଷା ଭଲଭାବେ ଜାଣିଥିବାରୁ ସେତେବେଳେ ଓଡ଼ିଶାରେ ପ୍ରଶାସନିକ କ୍ଷେତ୍ରରେ ଓଡ଼ିଆଭାଷା ସହିତ ଚଳୁଥିବା ପାର୍ଶୀଭାଷାରେ ମୋଗଲ ସୁବା ପ୍ରଶାସନ ସହିତ ସମନ୍ୱୟ ରକ୍ଷାକରିବା ସୁଗମ ହୋଇଥିଲା ।

କିନ୍ତୁ ଗୋପୀନାଥ ଦେବଙ୍କ ସିଂହାସନ ପ୍ରାପ୍ତି ପର୍ଯ୍ୟନ୍ତ ଯଦି ରାମଚନ୍ଦ୍ର ପଟ୍ଟନାୟକ ଦେବାନ ଥିଲେ ଏବଂ ତାଙ୍କ ୩ଅଙ୍କ ଅର୍ଥାତ୍ ସିଂହାସନ ପ୍ରାପ୍ତିର ୨ୟ ବର୍ଷରେ ଭଗବାନ ଭ୍ରମରବରରାଏ ମଧ୍ୟ ଦେବାନ ଥିଲେ, ତା'ହେଲେ ରାମଚନ୍ଦ୍ର ପଟ୍ଟନାୟକ ଓ ଭଗବାନ ଭ୍ରମରବର ରାଏଙ୍କ ମଧ୍ୟରେ ପାରିବାରିକ ଅଥବା ରକ୍ତଗତ ସମ୍ପର୍କ ଥିଲା କି ନାହିଁ ତାହା ଗବେଷଣାସାପେକ୍ଷ। ତେବେ ହରେକୃଷ୍ଣ ଦେବଙ୍କୁ ରାଜନବରରେ ରାଜାଭିଷେକପାଇଁ ସହାୟତା କରିଥିବା ଗୋପୀନାଥ ବିଦ୍ୟାଧର ମହାପାତ୍ର ଯେ ପରମାନନ୍ଦ ଓ ରାମଚନ୍ଦ୍ର ପଟ୍ଟନାୟକଙ୍କ ବଂଶଧର ଏହା ନିଶ୍ଚିତ ଏବଂ ତାଙ୍କୁ ହିଁ ଗୋପୀନାଥ ଦେବ ନିଜର ପାଞ୍ଜିଆଭାବେ ନିଯୁକ୍ତ କରିଥିଲେ। ଗୋପୀନାଥ ଦେବ ଆଉ ଜଣେ କୃଷ୍ଣ ନରେନ୍ଦ୍ରଙ୍କୁ ବକ୍ସି କରିଥିଲେ, ସମ୍ଭବତଃ ସେ ବାହାରୁ ଖୋଜାହୋଇ ଆସି ବକ୍ସି ହୋଇଥିବାରୁ ତାଙ୍କୁ ଖୋଜାବକ୍ସି କୁହାଗଲା। ତାଙ୍କ ସମୟରେ ବେନୁ ଭ୍ରମରବର ରାଏ ନାମରେ ଆଉ ଜଣେ ବ୍ୟକ୍ତି ମଧ୍ୟ ଦେଓ୍ୱାନ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ। ସମ୍ଭବତଃ ମିର୍ଜା ସୟଦ ବେଗ୍ ତାଙ୍କୁ ନିଜର ସହଯୋଗୀଭାବେ ଗ୍ରହଣକରିଥିଲେ। କିନ୍ତୁ ଗୋପୀନାଥ ଦେବ କରଣ ଦେଓ୍ୱାନ ନ ରଖିବାକୁ ସିଦ୍ଧାନ୍ତ ନେଇଥିବାରୁ ବେନୁ ଭ୍ରମରବର ରାଏ ନିଶ୍ଚିତଭାବେ କ୍ଷତ୍ରିୟବଂଶଜ ବୋଲି କୁହାଯାଇପାରେ। ସୁତରାଂ ୧୮୧୭ ପାଇକବିଦ୍ରୋହର ଉପନେତା ଦେଓ୍ୱାନ କୃଷ୍ଣଚନ୍ଦ୍ର ଭ୍ରମରବରରାଏଙ୍କର ସେ ପୂର୍ବପୁରୁଷ ହୋଇଥାଇପାରନ୍ତି। ବିଡ଼ମ୍ବନା ଯେ ଗୋପୀନାଥ ଦେବଙ୍କ ଚରିତ୍ର ଦୋଷ ହେତୁ ତାଙ୍କରିଦ୍ୱାରା ନିଯୁକ୍ତ ଦେଓ୍ୱାନ ମିର୍ଜା ସୟଦ୍ ବେଗ୍, ବେନୁ ଭ୍ରମରବର ରାଏ ଓ ଖୋଜା ବକ୍ସି କୃଷ୍ଣନରେନ୍ଦ୍ର ତାଙ୍କୁ ହତ୍ୟାକଲେ।[୧୩୦] ଉଲ୍ଲେଖଯୋଗ୍ୟ ଯେ, ଗୋପୀନାଥ ଦେବଙ୍କ ବ୍ୟକ୍ତିଗତ ଚରିତ୍ରଦୋଷ ସତ୍ତ୍ୱେ ସେ ଜଣେ ସଂସ୍କାରବାଦୀ ଶାସକ ଥିଲେ ଏବଂ ସୁଦକ୍ଷ ରାଜକର୍ମଚାରୀ ନିଯୁକ୍ତିଦ୍ୱାରା କେବଳ ଶାସନକ୍ଷେତ୍ରରେ ନୁହେଁ, ନିଜର ସାନଭାଇ କେଶବ ରାଏଙ୍କୁ ରୋଡ଼ଙ୍ଗ ଗଡ଼କୁ ସାମରିକ ଶିକ୍ଷା ଗ୍ରହଣ ନିମନ୍ତେ ପଠାଇ ପୁରୁଷ ପୁରୁଷ ଧରି ବକ୍ସି ବଂଶ ସହିତ ଖୋର୍ଦ୍ଧା ରାଜବଂଶର ରହିଥିବା ଅନୁରମ ସମ୍ପର୍କ କ୍ଷେତ୍ରରେ ଉନ୍ନତି ଆଣିବାକୁ ଚେଷ୍ଟାକରିଥିଲେ। ଏଥିପାଇଁ କବି ଲୋକନାଥ ବିଦ୍ୟାଧରଙ୍କର ସୁନାମ ଓ ଉଦାରତା ମଧ୍ୟ ସମପରିମାଣରେ ପ୍ରଶଂସନୀୟ[୧୩୧]।

ଗୋପୀନାଥ ଦେବଙ୍କ ପରେ ତାଙ୍କ ସାନଭାଇ କେଶବରାଏ ରାମଚନ୍ଦ୍ର ଦେବ (୨ୟ) ନାମ ଧାରଣକରି ଖୋର୍ଦ୍ଧାର ରାଜାହେଲେ। ଗୋପୀନାଥ ଦେବଙ୍କ ସମୟର ଦେଓ୍ୱାନ ମିର୍ଜା ସୟଦ ବେଗ ଓ ବେନୁ ଭ୍ରମର ରାଏ ମଧ୍ୟ ତାଙ୍କର ଦେଓ୍ୱାନ୍ ରହିଲେ,[୧୩୨] କିନ୍ତୁ ପରେ ପୁଣି ରାମଚନ୍ଦ୍ରଦେବ ବେନୁଭ୍ରମରବର ରାଏଙ୍କୁ ଖୋଜା ବକ୍ସି ଓ ତାଙ୍କ ପୁଅ

---

୧୩୦- ୩/୧୧୬  ୧୩୧- ୪/୧୪୯  ୧୩୨- ୪/୧୭୫, ୨୦୩

ନୀଳାମ୍ବର ହରିଚନ୍ଦନଙ୍କୁ ଦେୱାନ୍ କରିଦେଲେ । ବାପ ସେନାପତି, ପୁଅ ମନ୍ତ୍ରୀ– ଏଥିପାଇଁ ବାପପୁଅ ଦୁହିଁଙ୍କ ବିରୋଧରେ ସିପାହି ଓ ପାଇକମାନେ ମେଳି ବାନ୍ଧିଲେ । ରଥିପୁର ଗଡ଼ରେ ଥିବା ବାପପୁଅ ଦୁହେଁ ଗଡ଼ ଛାଡ଼ି ଲୁଚି ପଳାଇଗଲେ । ତେଣୁ ରାମଚନ୍ଦ୍ର ଦେବ ଲୋଧୁମିଆଁଙ୍କୁ ଦିଆନ୍ ଏବଂ ଗଦାଧର ମଙ୍ଗରାଜଙ୍କୁ ବକ୍ସି କରିଦେଲେ । ମହମ୍ମଦ ତକୀ ଖାଁ ରଥିପୁରଗଡ଼ ଅଧିକାର କରି ବେନୁ ଭ୍ରମରବର ଓ ନୀଳାମ୍ବର ହରିଚନ୍ଦନଙ୍କ ମୁଣ୍ଡ ମାଗିବାରୁ ରାମଚନ୍ଦ୍ରଦେବ ସେ ଦୁହିଁଙ୍କ ମୁଣ୍ଡ କାଟି ଦେଲେ[୧୩୩] । ମୁରାଦ ଖାଁଙ୍କୁ ରାମଚନ୍ଦ୍ରଦେବ ଅନ୍ୟତମ ସେନାପତିଭାବେ ନିଯୁକ୍ତକଲେ । ସେ ଜଣେ ମୋଗଲ ଯୁବକ ଥିଲେ ଏବଂ ସଚ୍ଚରିତ୍ର, ସାହସୀ ଓ ସୁଦକ୍ଷ ସେନାପତିଭାବେ କଟକରେ ବିଚ୍ ରାଜଦାଣ୍ଡରେ ଦିନ ଦ୍ୱିପ୍ରହରରେ ଅତ୍ୟାଚାରୀ ଓ ଦୁଶ୍ଚରିତ୍ର କାମୁକ ଗୁଜରଜାନଙ୍କୁ ହତ୍ୟାକଲେ[୧୩୪] ।

ରାମଚନ୍ଦ୍ର ଦେବ (୨ୟ)ଙ୍କ ଶେଷଜୀବନ ଅତ୍ୟନ୍ତ ବିଷାଦଗ୍ରସ୍ତ ହୋଇପଡ଼ିଥିଲା । ତାଙ୍କର କଳାବତୀ ଓ ଲଳିତା ନାମରେ ଦୁଇ ରାଣୀ ଥାଇ ପୁଣି ଯବନୀ ସ୍ତ୍ରୀ ଗ୍ରହଣ କରିବାହେତୁ ସେ ସାମାଜିକ ଓ ପାରିବାରିକ ବିଦ୍ରୋହର ଶରବ୍ୟ ହୋଇ ରାଜ୍ୟଚ୍ୟୁତ ହେଲେ । ମୋଗଲ ସୁବାଦାରଙ୍କ ମନ୍ତ୍ରୀ ମୀର ହବିବ୍ ତାଙ୍କୁ ରାଜ୍ୟଚ୍ୟୁତ କରାଇବା ପରେ ପଟିଆର ପଦ୍ମନାଭ ଦେବଙ୍କୁ ଖୋର୍ଦ୍ଧା ରାଜଗାଦିରେ ବସାଇଲେ । ରାମଚନ୍ଦ୍ରଦେବଙ୍କ ପ୍ରଥମା ପତ୍ନୀ ତାଙ୍କୁ ତ୍ୟାଗକରି ଯାଇଥିଲେ । ଦ୍ୱିତୀୟା ପତ୍ନୀ ଲଳିତାଙ୍କ ନିଜର ପୁଅ ବୀରକେଶରୀ ଦେବ ଖୋର୍ଦ୍ଧା ଆକ୍ରମଣପାଇଁ ନୟାଗଡ଼ ଖଣ୍ଡପଡ଼ା ଦେଇ ବଡ଼ମ୍ବା ସୀମା ବୈଦ୍ୟେଶ୍ୱରଠାରେ ପହଞ୍ଚିବାରେ ସେଠାରେ ମୁର୍ଶିଦ କୁଲି ଖାଁ ତାଙ୍କୁ ଟୀକା ଶିରୋପା ଦେଇ ଖୋର୍ଦ୍ଧାର ରାଜା ରୂପେ ଅଭିଷେକ କରାଇ ଖୋର୍ଦ୍ଧା ରାଜନଅରକୁ ନେଇଆସିବାରୁ ପଦ୍ମନାଭ ଦେବ ଖୋର୍ଦ୍ଧା ଛାଡ଼ି ପଟିଆକୁ ପଳାଇଲେ । ସେତେବେଳକୁ ରାମଚନ୍ଦ୍ର ଦେବଙ୍କ ମୃତ୍ୟୁ ଦୁଇ ବର୍ଷ ଆଗରୁ ହୋଇଥିବାରୁ ବୀରକେଶରୀ ଦେବଙ୍କ ରାଜତ୍ୱ ୪ ଅଙ୍କରୁ ଗଣା ହେଲା[୧୩୫] । ଉପରୋକ୍ତ ଘଟଣା ସମ୍ପର୍କରେ ସ୍ୱର୍ଗତ ଦିଗମ୍ବର ଶ୍ରୀଚନ୍ଦନଙ୍କ କୃତ 'ଖୁରଧା ଦର୍ପଣ' ୧୯୮ପୃଷ୍ଠାରେ ପ୍ରକାଶିତ ବିବରଣୀରୁ ଜଣାଯାଏ ଯେ ରାଜ୍ୟଚ୍ୟୁତ ହୋଇ ରାମଚନ୍ଦ୍ର ଦେବ ନରସିଂହପୁରଠାରେ ଆଶ୍ରୟ ନେଇଥିବା ଅବସ୍ଥାରେ ମୃତ୍ୟୁବରଣ କରିଥିବା ଖବର ଖୋର୍ଦ୍ଧାରେ ପାଇବା ପରେ ଯୁବରାଜ ବୀରକେଶରୀ ଦେବଙ୍କ ସହିତ ସଂଯୋଗ ସ୍ଥାପନକରି ତାଙ୍କ ନିର୍ଦ୍ଦେଶରେ ମାଧ ଭ୍ରମରବର ଖୋର୍ଦ୍ଧା ରାଜଗାଦି ଅଧିକାର କରିଥିବା ପଦ୍ମନାଭ ଦେବଙ୍କ ବିରୋଧରେ ବିଦ୍ରୋହ କରିଥିଲେ । ପଦ୍ମନାଭ ଦେବ ମାଧ ଭ୍ରମରବରଙ୍କୁ ଧରି ତାଙ୍କୁ ଗାଦିରେ ବସାଇଥିବା ମୀରହବିବ୍‌ଙ୍କ ନିକଟକୁ କଟକ ପଠାଇଦେଲେ । କିନ୍ତୁ କଟକରେ ମୁର୍ସିଦ କୁଲିଖାଁ ମାଧ ଭ୍ରମରବର ରାମଚନ୍ଦ୍ର ଦେବଙ୍କର ରାଜକର୍ମଚାରୀ ବୋଲି

---

୧୩୩- ୩/୧୬୯ ୧୩୪- ୪/୨୧୩ ୧୩୫- ୩/୧୮୩

ଜାଣିବା ପରେ ଯୁବରାଜ ବୀରକେଶରୀଙ୍କୁ ବୈଦ୍ୟେଶ୍ୱରଠାରେ ଟୀକା ଶିରୋପା ଦେଇ ଖୋର୍ଦ୍ଧା ଅଣାଇଲେ । ''ବୈଦ୍ୟେଶ୍ୱରଠାରେ ବୀରକେଶରୀ ଦେବଙ୍କ ମା, ଦେଓ୍ୱାନ ପ୍ରଭୃତି ଏବଂ ଗଡ଼ଜାତର କେତେକ ରାଜା ଉପସ୍ଥିତ ଥିଲେ । ଇତିହାସ ବର୍ଣ୍ଣିତ ଘଟଣା ସହିତ ଏହା ସମ୍ପୂର୍ଣ୍ଣ ମେଳଖାଇଯାଉଥିବାରୁ ରାମଚନ୍ଦ୍ରଦେବଙ୍କର ମାଧ ଭ୍ରମରବର ନାମରେ ଜଣେ ଉଚ୍ଚପଦାଧିକାରୀ ରାଜକର୍ମଚାରୀ ଥିଲେ ଏହା ନିଶ୍ଚିତ କଥା ଏବଂ ବୀରକେଶରୀ ଦେବଙ୍କ ରାଜତ୍ୱରେ ସେ ମଧ ସେହି ପଦରେ ଥିବେ । ଖୋର୍ଦ୍ଧା ଅଞ୍ଚଳରେ ଭ୍ରମରବର ରାୟଙ୍କୁ ଭ୍ରମରବର ନାମରେ ଡାକନ୍ତି । ତେଣୁ ଉକ୍ତ ମାଧ ଭ୍ରମରବରରାୟ ମଧ ଖୋର୍ଦ୍ଧାର ଦେଓ୍ୱାନ ବଂଶଜ ହୋଇଥାଇପାରନ୍ତି, କିମ୍ବା ବୀରକେଶରୀ ଦେବଙ୍କର ପ୍ରମୁଖ ଦେବାନ୍ ପୁରୁଷୋତ୍ତମ ଭ୍ରମରବରରାଏଙ୍କର ଡାକନାମ ମାଧ ଭ୍ରମରବର ହୋଇପାରେ । ଖୋର୍ଦ୍ଧା ଭୋଇ ରାଜବଂଶର ରାମଚନ୍ଦ୍ରଦେବ (୧ମ)ଙ୍କଠାରୁ ଆରମ୍ଭକରି ମୁକୁନ୍ଦଦେବ (୨ୟ)ଙ୍କ ପର୍ଯ୍ୟନ୍ତ ୧୩ ଜଣ ରାଜାଙ୍କର ରାଜତ୍ୱକାଳ ୨୪୦ବର୍ଷ ମଧ୍ୟରୁ ବୀରକେଶରୀ ଦେବଙ୍କ ରାଜତ୍ୱକାଳ ୧୭୩୭ରୁ ୧୭୯୩ ପର୍ଯ୍ୟନ୍ତ ସର୍ବାଧିକ ୫୬ ବର୍ଷ ଥିଲା, ଏବଂ ଏହି ସମୟ ମଧ୍ୟରେ ୧୭୪୧ରୁ ୧୭୫୧ ଯାଏଁ କ୍ରମାଗତ ୧୦ ବର୍ଷ କାଳ ମୋଗଲ ଓ ମରହଟ୍ଟା ମାନଙ୍କ ମଧ୍ୟରେ ସଂଘର୍ଷ ଲାଗିରହିବାପରେ ୧୭୫୧ରେ ଆଲିବର୍ଦ୍ଦି ଖାଁ ଓ ରଘୁଜୀ ଭୋଁସଲେଙ୍କ ମଧ୍ୟରେ ସନ୍ଧିଚୁକ୍ତି ହୋଇ ଓଡ଼ିଶା ମରହଟ୍ଟା ଶାସନାଧୀନ ହେଲା । ତେଣୁ ଏହି ଗୁରୁତ୍ୱପୂର୍ଣ୍ଣ ପରିବର୍ତ୍ତନକୁ ଆଖି ଆଗରେ ରଖି ବୀରକେଶରୀ ଦେବ ପ୍ରଥମରୁ ହିଁ ସତର୍କ ହୋଇ ନିଜ ରାଜ୍ୟର ମୋଗଲ ସମୟର ଜମିଜମା ବନ୍ଦୋବସ୍ତ ଭିତ୍ତିରେ ସନନ୍ଦ, ଦାନପତ୍ର ଇତ୍ୟାଦି ଆକାରରେ ଲିଖିତ ଆଦେଶନାମା ଜାରିକରି ଜମିଜମା ବନ୍ଦୋବସ୍ତ କ୍ଷେତ୍ରରେ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ଗ୍ରହଣକରିଥିଲେ ଏବଂ ତାଙ୍କର ଏହିସବୁ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିକୁ ସେ ନିଜର ବିଶ୍ୱସ୍ତ ଓ ସୁଦକ୍ଷ ଦେଓ୍ୱାନ ପୁରୁଷୋତ୍ତମ ଭ୍ରମରବର ରାଏଙ୍କ ମାଧମରେ କାର୍ଯ୍ୟକାରୀ କରାଇଥିଲେ[୧୩୬] । ପ୍ରାୟ ୧୦୦ ବର୍ଷ ପୂର୍ବେ ନରସିଂହଦେବଙ୍କ ସମୟରେ ମୋଗଲ ସୁବାଦାରଙ୍କଠାରୁ କହ୍ନାଇ ବିଦ୍ୟାଧର ମହାପାତ୍ର ପାଇଥିବା ୨୦୦ବାଟି ସେନାପତି ଜାଗିରିବୃତ୍ତିକୁ ସେ ବକ୍ସି ବାସୁଦେବ ଭ୍ରମରବର ରାୟଙ୍କ ନାମରେ ୧୦ଅଙ୍କ (୧୭୪୩)ରେ ଓ ବକ୍ସି ଗୋପୀନାଥ ଭ୍ରମରବର ରାଏଙ୍କ ନାମରେ ୩୮ ଅଙ୍କ (୧୭୬୬)ରେ ସନନ୍ଦ ଆକାରରେ ଲିଖିତ ଆଦେଶନାମା ଦେବାଦ୍ୱାରା ଖୋର୍ଦ୍ଧାରାଜବଂଶ ସହିତ ବକ୍ସି ବଂଶର ସମ୍ପର୍କ ସୁଦୃଢ଼ ହୋଇଥିଲା[୧୩୭] ଏବଂ ତାହାପରଠାରୁ ମୋଗଲ ସବୁାର ଜାଗିରି ବୃତ୍ତିଭୋଗୀ ବକ୍ସିମାନେ ଖୋର୍ଦ୍ଧାରାଜାଙ୍କ ବକ୍ସିଭାବେ କାର୍ଯ୍ୟ ତୁଲାଇଥିଲେ । ଗୋପୀନାଥ ଭ୍ରମରବରରାଏଙ୍କ ପରେ ବକ୍ସି ଜଗନ୍ନାଥ ବିଦ୍ୟାଧର ଭ୍ରମରବର ରାଏ ମଧ ବୀରକେଶରୀ

୧୩୬- ୪/୨୫୯, ୨୭୪, ୨୭୮ ୧୩୭- ୨୮/୧୦

ଦେବଙ୍କ ସେନାପତି ଥିଲେ[୧୩୮] ଏବଂ ଏହି ବକ୍ସି ଜଗନ୍ନାଥ ବିଦ୍ୟାଧର ହିଁ ନିଃସନ୍ଦେହଭାବେ ୧୮୧୭ ପାଇକ ବିଦ୍ରୋହର ନେତା ବକ୍ସି ଜଗବନ୍ଧୁ ବିଦ୍ୟାଧର । ରାମଚନ୍ଦ୍ର ଦେବଙ୍କଦ୍ୱାରା ନିଯୁକ୍ତ ସେନାପତି ମୁରାଦ୍ ଖାଁ ମଧ ବୀରକେଶରୀଦେବଙ୍କ ସେନାପତି ଥିଲେ । ୧୭୪୧ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ନାଏବ ମୁର୍ଶିଦ୍ କୁଲିଖାଁ ଓ ବଙ୍ଗର ନାଜିମ୍ ଆଲିବର୍ଦ୍ଦିଖାଁଙ୍କ ମଧରେ ସଂଘଟିତ ଯୁଦ୍ଧରେ ମୁର୍ଶିଦ୍ କୁଲିଖାଁ ପରାସ୍ତହୋଇ ବାଲେଶ୍ୱର ବନ୍ଦରରୁ ଜାହାଜ ଚଢ଼ି ମସଲିପଟମ୍ ପଳାଇଲେ । କିନ୍ତୁ ତାଙ୍କର ରାଣୀ ଦୁର୍ଜନ୍ ବେଗମ୍ ଓ ଝିଅ ଯାହା ଖାଁ ପ୍ରଭୃତି ପରିବାରବର୍ଗ କଟକ ବାରବାଟୀ ଦୁର୍ଗରେ ରହିଯାଇଥିବାରୁ ଆଲିବର୍ଦ୍ଦିଖାଁ ସେମାନଙ୍କୁ ବାରବାଟୀ ଦୁର୍ଗରୁ ନେଇ ନିରାପଦରେ ଗଞ୍ଜାମର ଇଚ୍ଛାପୁରରେ ପହଞ୍ଚାଇଦେଇଥିଲେ[୧୩୯] ମରହଟ୍ଟାମାନଙ୍କ ଓଡ଼ିଶା ଆକ୍ରମଣ ସମୟରେ ବୀରକେଶରୀ ଦେବ ବାହାଦୂର ଖାଁଙ୍କୁ ସମ୍ଭବତଃ ସୀମା ସୁରକ୍ଷା ଦାୟିତ୍ୱରେ ଜଣେ ସ୍ୱତନ୍ତ୍ର ଦେଓ୍ୱାନ ରୂପେ ରଖିଥିଲେ । ସେ ନରସିଂହପୁର ରାଜ୍ୟ ସୀମା ପଦମାଳଠାରୁ ପୁରୀର ଶ୍ରୀଜଗନ୍ନାଥଙ୍କ ସେବକମାନଙ୍କ ଉଦ୍ଦେଶ୍ୟରେ ଏକ ଚିଟାଉ ଲେଖିଥିଲେ[୧୪୦] । ପାରମ୍ପରିକ ଦେଓ୍ୱାନ୍ ପୁରୁଷୋତ୍ତମ ଭ୍ରମରବରରାୟଙ୍କ ପରେ ବୀରକେଶରୀ ଦେବଙ୍କର ପାରମ୍ପରିକ ଦେଓ୍ୱାନ୍‌ଭାବେ ହରିହର ଭ୍ରମରବର ରାଏ ବିଶେଷ ଖ୍ୟାତି ଲାଭକରିଥିବା 'ଫିରିଙ୍ଗି କଳିଭାରତ'ରୁ ଜଣାଯାଏ ।

ବୀରକେଶରୀ ଦେବଙ୍କ ପରେ ଦିବ୍ୟସିଂହଦେବ (୨ୟ) ୧୭୯୩ରୁ ୧୭୯୮ ଏବଂ ତାଙ୍କ ପରେ ମୁକୁନ୍ଦଦେବ (୨ୟ) ୧୭୯୮ରୁ ୧୮୦୪ ପର୍ଯ୍ୟନ୍ତ ଖୋର୍ଦ୍ଧାର ରାଜା ଥିଲେ । ଏ ଉଭୟେ ରାଜାଙ୍କର ଦେଓ୍ୱାନ ହରିହର ଭ୍ରମରବର ରାୟ ଓ ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ରଙ୍କ ସମ୍ପର୍କରେ କବି ମଧୁସୂଦନ ବିପ୍ରଙ୍କ ଦ୍ୱାରା ରଚିତ ଓ ଡ. ଅର୍ଜୁନ ଯୋଶୀଙ୍କଦ୍ୱାରା ପ୍ରକାଶିତ 'ଫିରିଙ୍ଗି କଳିଭାରତ'ରେ ବିସ୍ତୃତ ବିବରଣୀ ସ୍ଥାନପାଇଛି[୧୪୧] ।

## ବକ୍ସି ଓ ଦେଓ୍ୱାନଙ୍କ ବଂଶ ଏବଂ ଉପାଧି ସମ୍ପର୍କରେ

ସନ୍ନିବେଶିତ ତାଲିକାରେ ବିଦ୍ୟାଧର ବଂଶୀୟ ଯେଉଁମାନଙ୍କ ନାମ ବକ୍ସିଭାବେ ଚିହ୍ନଟ କରାଯାଇଛି ସେମାନଙ୍କ ମଧରୁ କେବଳ ଲୋକନାଥ ବିଦ୍ୟାଧର ମହାପାତ୍ର ନିଜକୁ ଜଗନ୍ନାଥ ବିଦ୍ୟାଧର ମହାପାତ୍ରଙ୍କ ଜ୍ୟେଷ୍ଠପୁତ୍ର ବୋଲି ତାଙ୍କ କାବ୍ୟରେ ଉଲ୍ଲେଖ କରିଛନ୍ତି[୧୪୨] । ତାଙ୍କ ଭିନ୍ନ ଅନ୍ୟ କିଏ କେଉଁ ସମ୍ପର୍କ ବଳରେ ପୂର୍ବବର୍ତ୍ତୀ ବକ୍ସିଙ୍କର ଉତ୍ତରାଧିକାରୀ ହୋଇଛନ୍ତି ସେ ସମ୍ପର୍କରେ କୌଣସି ସୂତ୍ରରୁ କୌଣସି ତଥ୍ୟ ପ୍ରମାଣ ଆବିଷ୍କୃତ ହୋଇ ନାହିଁ । ଏପରିକି ବୀରକେଶରୀଦେବ ଯେଉଁ ବାସୁଦେବ ଭ୍ରମରବର ରାୟ ଓ ଗୋପୀନାଥ ଭ୍ରମରବରରାୟଙ୍କ ନାମରେ ୨୩ ବର୍ଷ ବ୍ୟବଧାନରେ ଦୁଇଟି ବକ୍ସି ଜାଗିରି ସନନ୍ଦ ପ୍ରଦାନ କରିଛନ୍ତି, ସେ ଦୁଇ ଜଣ ବକ୍ସିଙ୍କ ମଧରେ ପାରିବାରିକ ସମ୍ପର୍କ କଣ ଥିଲା

ତାହା ମଧ ଜାଣିବା ସମ୍ଭବ ହୋଇ ନାହିଁ । ସେହିପରି ଗୋପୀନାଥ ଭ୍ରମରବର ରାୟଙ୍କ ଉତ୍ତରାଧିକାରୀ ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ନିଜ ପୁଅର ନାମ ଗୋପୀନାଥ ରଖିଥିବାରୁ ଜଗବନ୍ଧୁ କେଉଁ ସୂତ୍ରରେ ଗୋପୀନାଥଙ୍କର ଉତ୍ତରାଧିକାରୀ ହେଲେ ତାହା ମଧ ବୁଝି ହେଉ ନାହିଁ; କାରଣ ନିଜର ବାପ ଅବା ଭାଇଙ୍କ ନାମ ଯାହା ପୁଣି ପୁଅକୁ ସେହି ନାମ ଦେବାର ପରମ୍ପରା ଆମ ସମାଜରେ ନାହିଁ । ଅବଶ୍ୟ ଖୋର୍ଦ୍ଧା ରାଜ୍ୟ ହରାଇ ଜଗନ୍ନାଥ ମନ୍ଦିରର ସୁପରିଣ୍ଟେଣ୍ଡେଣ୍ଟ ହେବା ପରେ ପୁରୀ ଠାକୁରରାଜାମାନେ ଚାରି ପୁରୁଷ ପୂର୍ବ ନାମକୁ ଦୋହରାଇବାର ଏକ ପରମ୍ପରା ସୃଷ୍ଟିକରିଛନ୍ତି । କିନ୍ତୁ ବକ୍ସି ବଂଶରେ ସେପରି କୌଣସି ପରମ୍ପରା କେବେ ନ ଥିଲା କି ଏବେ ବି ନାହିଁ । ତେଣୁ ଲୋକନାଥ ବିଦ୍ୟାଧର ମହାପାତ୍ରଙ୍କ ବ୍ୟତୀତ ବକ୍ସିବଂଶର ଅନ୍ୟ ନାମଗୁଡ଼ିକ କେବଳ ଐତିହାସିକ ଘଟଣାକ୍ରମରେ ସଜାଇ ଲେଖାଯାଇଛି । ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ବକ୍ସିଙ୍କ ମଧରେ ପାରିବାରିକ ସମ୍ପର୍କ କଣ ଥିଲା ତାହା ଜାଣିବାପାଇଁ ଅଧିକ ଅନୁଧ୍ୟାନ ଆବଶ୍ୟକ ।

ସେହିପରି ଦେବାନ୍ ପ୍ରସଙ୍ଗରେ ପଟ୍ଟନାୟକ ଦେବାନ ବଂଶ ବ୍ୟତୀତ ଅନ୍ୟ ଦେଓ୍ୱାନମାନଙ୍କ ନାମ ମଧ କେବଳ ଐତିହାସିକ କ୍ରମରେ ଲେଖାଯାଇଛି । ପଟ୍ଟନାୟକ ବଂଶର ଚାରି ପୁରୁଷର ପାରିବାରିକ ସମ୍ପର୍କ 'ମାଦଳା ପାଞ୍ଜି'ରେ ସୂଚିତ ହୋଇଥିଲେ ହେଁ, 'ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧାୟ'ରେ ଭିନ୍ନ ମତ ପ୍ରକାଶପାଇଛି । ତେଣୁ ଗୋପୀନାଥ ଦେବ କରଣ ଦେଓ୍ୱାନଙ୍କୁ ବିଦାୟ କଲାପରେ ବେନୁଭ୍ରମରବର ରାୟ ଓ ତାଙ୍କ ପରବର୍ତ୍ତୀ ଭ୍ରମରବରମାନେ କ୍ଷତ୍ରୀୟ ବଂଶୀୟ ଦେଓ୍ୱାନ ହୋଇଥିବେ ବୋଲି ଅନୁମାନ କରାଯାଉଛି ।

ଭୋଇବଂଶର ବିଦ୍ୟାଧର ଉପାଧି ମିଳିଥିଲା ଗୋବିନ୍ଦ ବିଦ୍ୟାଧରଙ୍କୁ ପ୍ରତାପରୁଦ୍ରଦେବଙ୍କଠାରୁ । କିନ୍ତୁ ଭ୍ରମରବରରାୟ ଉପାଧି ଖୋର୍ଦ୍ଧା ଭୋଇ ବଂଶୀୟ ରାଜାମାନଙ୍କଦ୍ୱାରା ଦେଓ୍ୱାନଙ୍କୁ ଏବଂ ନିଜର ଭାଇ ବା ପୁଅମାନଙ୍କୁ ମିଳୁଥିଲା । ପୁଣି ବେଳେ ବେଳେ ଏହି ଦୁଇ ଉପାଧିକୁ ଅଦଳ ବଦଳ କରାଯାଉଥିଲା, ଯେପରି ବୀରକେଶରୀ ଦେବଙ୍କ ଦାନପତ୍ରରେ ବକ୍ସି ବିଦ୍ୟାଧର ମହାପାତ୍ରଙ୍କୁ ବକ୍ସି ଭ୍ରମରବର ରାଏ ବୋଲି ଲେଖାଯାଇଛି ଏବଂ ପାଞ୍ଜିରେ 'ଦିଆନ ରାମଚନ୍ଦ୍ର ପଟ୍ଟନାୟକଙ୍କ ନାତି ଦିଆନ ଭଗବାନ ଭ୍ରମରବର ରାୟଙ୍କ ପୁଅ ଦିଆନ ଗୋପୀନାଥ ବିଦ୍ୟାଧର ମହାପାତ୍ର ବୋଲି ଦର୍ଶାଯାଇଛି । ବିଜ୍ଞପାଠକମାନଙ୍କଦ୍ୱାରା ଏସବୁ କଥା ବିଚାରକୁ ନେଇ ଏ ଦିଗରେ ଆମର ଐତିହାସିକମାନେ ଯେପରି ସଠିକ ତଥ୍ୟ ଆହରଣ କରିପାରିବେ ସେଥିପାଇଁ ସହାୟକ ପରିବେଶ ଓ ସୁଯୋଗ ସୃଷ୍ଟିକରାଯାଉ ।

---

୧୩୮- ୪/୨୭୫ ୧୩୯- ୩/୧୮୫ ୧୪୦- ୩/୧୮୬

୧୪୧- ୧୭/୩.୪,୧୦ ୧୪୨- ୩/୧୨୮

ଶ୍ରୀ ନୃସିଂହ ପ୍ରସାଦ ଜଗଦ୍ଦେବ ୧୫-୯-୯୬ ତାରିଖ 'ସମ୍ବାଦ'ରେ ଏକ ନିବନ୍ଧ ପ୍ରକାଶକରି ଲେଖିଛନ୍ତି ଯେ ଖୋର୍ଦ୍ଧାର ଦେବାନ ବଂଶ କନୌଜରୁ ଆସି ପୁରୀରେ ଅବସ୍ଥାନ କରିଥିବା ମୁଦ୍‌ଗଲ ଗୋତ୍ରୀୟ ଏକ କ୍ଷତ୍ରିୟ ପରିବାରର ବଂଶଧର। ତାଙ୍କ ତୃତୀୟ ପୁରୁଷ ଜଗନ୍ନାଥ ଚୌହାନଙ୍କୁ ପୁରୀରାଜା ଦେଓ୍ୱାନ କରିଥିଲେ। କିନ୍ତୁ ଶ୍ରୀ ଜଗଦ୍ଦେବ କେଉଁ ସୂତ୍ରରୁ ଏ ତଥ୍ୟ ସଂଗ୍ରହ କରିଛନ୍ତି ତାହା ଦର୍ଶାଇ ନାହାନ୍ତି, କି ଜଗନ୍ନାଥ ଚୌହାନ ନାମଧାରୀ କେହି କେବେ ଖୋର୍ଦ୍ଧାରାଜାଙ୍କର ଦେଓ୍ୱାନ ଥିବାର ତଥ୍ୟ ଏଯାବତ୍ କୌଣସି ସୂତ୍ରରୁ ମିଳି ନାହିଁ। ଶ୍ରୀ ଜଗଦ୍ଦେବଙ୍କ ପାଖରେ ଯଦି ଏଭଳି ତଥ୍ୟର କିଛି ପ୍ରମାଣ ଥାଏ ସେ ତାହା ପ୍ରକାଶକରି ପାଠକମାନଙ୍କ ସନ୍ଦେହ ମୋଚନ କରିବା ଉଚିତ।

''ଖୋର୍ଦ୍ଧା କୁରାଡ଼ମଲ୍ଲ ଦେବାନଙ୍କ ଘରେ ମାଦଳାପାଞ୍ଜି ସମାନ'' ଥିବା ଏକ ବିରାଟ ପାଣ୍ଡୁଲିପିର ଅଳ୍ପାଂଶ ମାତ୍ର 'ଚକଡ଼ାପୋଥିର' ଲେଖକ ଶ୍ରୀ ଗୋବିନ୍ଦ ଚନ୍ଦ୍ର ମହାପାତ୍ର ୧୮୯୩ରେ 'ଉତ୍କଳ ପ୍ରଭା' ମାସିକ ପତ୍ରିକାର ଚାରିଟି ସଂଖ୍ୟାରେ ପ୍ରକାଶ କରିଥିଲେ - ଯାହାକୁ ଶ୍ରୀ ସୁଧାକର ପଟ୍ଟନାୟକ ୧୯୫୯ରେ ଏକ ଚଟିବହି ଆକାରରେ ପ୍ରକାଶକରିଥିଲେ। ଏବେ ଆଉ ସେ ପାଣ୍ଡୁଲିପିଟିର ସନ୍ଧାନ ମିଳୁ ନାହିଁ; ମିଳିଲେ ଓଡ଼ିଶା - ବିଶେଷତଃ ଖୋର୍ଦ୍ଧା ଇତିହାସର ଅନେକ ଅଜ୍ଞାତ ତଥ୍ୟ ଉଦ୍‌ଘାଟିତ ହୋଇପାରନ୍ତା।



# ନବମ ଅଧ୍ୟାୟ

## ବକ୍ସି ବଂଶର ସନନ୍ଦ

ଖେଲଉର ଗ୍ରାମର ଶ୍ରୀ ଉଲ୍ଲାସକୁମାର ରାୟବିଧାରଙ୍କ ପାଖରେ ଥିବା ବକ୍ସି ଜଗବନ୍ଧୁଙ୍କର ପୂର୍ବପୁରୁଷ ବାସୁଦେବ ଭ୍ରମରବରରାୟ ଓ ଗୋପୀନାଥ ଭ୍ରମରବର ରାୟଙ୍କ ନାମରେ ଖୋର୍ଦ୍ଧା ରାଜା ବୀରକେଶରୀ ଦେବଙ୍କଦ୍ୱାରା ପ୍ରଦତ୍ତ ୨୦୦ ବାଟି ଜାଗିରିର ଦୁଇ ଗୋଟି ସନନ୍ଦ ଏବଂ ବକ୍ସି ଗୋପୀନାଥ ଭ୍ରମରବରରାୟଙ୍କ ମାର୍ଫତରେ ଟାପଙ୍ଗଗଡ଼ ଓ ରେଙ୍ଗଳଗଡ଼ ଭୂସମ୍ପତ୍ତିର ଆୟ ଅମଳ କରାଇବା ନିମନ୍ତେ ସମ୍ପୃକ୍ତ ଗଡ଼ାଧୀଶ ଓଗେରଙ୍କ ନାମରେ ଦୁଇ ଗୋଟି ଛାମୁ ଚିଟାଉର ଫଟୋଚିତ୍ର ଶ୍ରୀ ଦିବ୍ୟସିଂହ ଚମୂପତି ତାଙ୍କର ''ବକ୍ସି ଜଗବନ୍ଧୁ ବଂଶର ନୂତନ ଇତିହାସ'' ପୁସ୍ତକରେ ପ୍ରକାଶକରିଥିବା କଥା ଆଗରୁ କୁହାଯାଇଛି । କିନ୍ତୁ ଏହି ସନନ୍ଦ ଓ ଛାମୁ ଚିଟାଉଗୁଡ଼ିକର ପାଠ ଓ ବ୍ୟାଖ୍ୟାରେ ଦୈବାତ୍ କେତେକ ଭ୍ରମ ପ୍ରମାଦ ରହିଯାଇଥିବାରୁ ଗତ ୨୧.୨.୯୮ ତାରିଖରେ ମୁଁ ଜଟଣୀ ବିକାଶ ନଗରକୁ ଯାଇ ଶ୍ରୀ ରାୟବିଧାରଙ୍କଠାରୁ ମୂଳ ସନନ୍ଦ ଓ ଛାମୁ ଚିଟାଉ ଦେଖି ତହିଁର ଶୁଦ୍ଧପାଠ ଟିପିଆଣିଥିଲି । ଅତ୍ୟନ୍ତ ଦୁଃଖର କଥା ଯେ, ତା' ପରଦିନ ଶ୍ରୀ ଉଲ୍ଲାସକୁମାରରାୟ ବିଧାର ଆକସ୍ମିକ ମୃତ୍ୟୁବରଣକଲେ । ତାଙ୍କର ଏକମାତ୍ର କୁମାରୀ କନ୍ୟା ଓ ବିଧବା ପତ୍ନୀ ଅଛନ୍ତି । ପରେ ପୁଣି ଶ୍ରୀମତୀ ରାୟବିଧାରଙ୍କଠାରୁ କଥିତ ମୂଳ ସନନ୍ଦ ଓ ଛାମୁ ଚିଟାଉଗୁଡ଼ିକ ଆଣି ସେ ସବୁର ଫଟୋ ନକଲ ସଂଗ୍ରହ କରିଥିଲି ।

ପାଠକମାନଙ୍କ ଅବଗତି ନିମନ୍ତେ ଉକ୍ତ ସନନ୍ଦ ଓ ଛାମୁ ଚିଟାଉ ଗୁଡ଼ିକର ଫଟୋନକଲ ଏବଂ ଶୁଦ୍ଧପାଠ ସହିତ ଐତିହାସିକ ମୂଲ୍ୟ ନିର୍ଦ୍ଧାରଣ ନିମନ୍ତେ କେତେକ ଟିପ୍ପଣୀ ଓ ସ୍ପଷ୍ଟୀକରଣ ଉପସ୍ଥାପିତ କରାଗଲା ।

---

୧୪୩- ୨୮/୧୧

## ୧ମ ସନନ୍ଦ (୧)

(ସନନ୍ଦରେ ବକ୍ସିଙ୍କ ଉପାଧି 'ବିଦ୍ୟାଧରମହାପାତ୍ର' ପରିବର୍ତ୍ତେ 'ଭ୍ରମରବରରାୟ' ଲେଖାଯାଇଛି)
ଶ୍ରୀ ଚମ୍ପୂପତିଙ୍କ ପାଠ - "ଦିଆନ୍ ଭ୍ରମରବରରାଙ୍କୁ ଏ ହସ୍ତପତ୍ର। ସୁବାର ବକ୍ସୀ ବାସୁଦେବ ଭ୍ରମରବର ରାଙ୍କୁ ଜେ ଜାଗେରୀ ଦୁଇଶ ବା ୨୦୦ଟି ଆଜ୍ଞା ଦେଲୁ। ଏ ସମଧରୁ ଏ ଚବିଶକୁଦ ପରଗଣା କାଙ୍କୋଡ଼ ଗ୍ରାମରେ ନାଗପୁରବାଦିଙ୍କ ସୁଧ ବା ୨୨।୧୫। ଗୁଡ଼ାଦାର ପାଇକଙ୍କ ବା।୧୦ଟୀ ସୁଧର ବା୫ଟୀନରନ୍ଦ୍ରର ସୁଧର ବା୨।୧୦। ସାହାଲା ଘର ନଅର ସୁଧର ବା୨ଟୀ। କଳ୍ପତରୁ ପଟ୍ଟନାୟକ ସମଧର ବା୯।୧୭। ଗାଏ ବା ୪୨।୨ ଗୋଲରା ଗ୍ରାମ ସବାକ୍ରାନ୍ତ ଚକଡ଼ା ବା ୬୭।୭।୨୨ ସମଧର ଅସାଧ୍ୟଂ ଅଭେଟନ ଏ ପୀଠ ଯଖରୀଗ୍ରା ସମଧ ବା ୨୫।୦।୨୨କୁ ଏ ସମଧର ଚକଡ଼ା ଶାରଦ ବୟାଳସୀ ବାଟୀ ମଧ୍ୟ ବା ୪୨।୭ାଟୀ କୁଆପଦା ବା୨୫ଟୀ। ଗାଏ ଏ ଏସନଉନ ବା୧୦୯।୯ଟୀ ନମାଣ, ରାହାଙ୍ଗ ପରଗଣା କୋଇଲିପୁର ବା୧୬ଟୀ। ବୁଧଡ଼ଙ୍କା ବା୧।୧୫। ଉଗ୍ରମାଳ ବା୫। କମାଶାସନ ବା୪। ମହାପଦା ବା୧। ଗାଏ ବା୨୭।୧୫। ସିରାଇ ପରଗଣାରେ ଶିବସୀରାଇ ଗ୍ରାମରେ ବା୨୦ଟୀ ଚାନ୍ଦପଡ଼ାସାହାସପୁର ମଧ୍ୟ ବା୧୦ଟୀ। ଏ ଗାଏ ଦଖିଣ ଏ ରପେ ସଏ ସତସଠୀ ବା ୧୬୭ଟୀ ଚାରିମାଣ ଖଞ୍ଜୀଦେକିଂଅମଳ କରାଇବ। ଏ ସମଧର ବାକି ତ ଭଲ କରି (କୋଠୁ) ଖଞ୍ଜି ଦେବ। ଏ ବା୧ଟୀକୀ ମାଗୁଣୀ ଓଗେର ଟ୨ଙ୍କା ଲେଖା। ଏ ୧୦ଅଙ୍କ ମୀନ ୨୦ ଦିନ ଆଜ୍ଞା।"[୧୪୪]

ଶୁଦ୍ଧପାଠ- ଦିଆନ୍ ଭ୍ରମରବରରାଙ୍କୁ ଶ୍ରୀହସ୍ତପତ୍ର। ସୁବାର ବକ୍ସି ବାସୁଦେବ ଭ୍ରମରବର ରାଙ୍କୁ ଜେଜାଗେରୀ ଦୁଇଶ ବା ୨୦୦ଟୀ ଆଗ୍ୟାଂ ଦେଲୁଂ। ଏ ସମଧରୁ ଏ ସାବୀକ ଚବୀଶକୁଦ ପରଗଣାରେ କାକୋଂଡ଼ା ଗ୍ରାମରେ ନାଗପୁର ବାବୀଙ୍କ ସମଧ ବା ୨୨।୧୫ ଗୁଡ଼ାଦାର ପାଇକଙ୍କ ବା ୧୦ସୁଧ ବା୫ଟୀ ନରେନ୍ଦ୍ରା ସମଧର ବା ୨।୧୦ ସାହାଲାଘର ନଅର ସମଧର ବା୨ କଳ୍ପତରୁ ପଟ୍ଟନାୟକ ସମଧର ବା୯।୧୭ ଗାଏ ବା ୪୨।୨ ଗୋଲରା ଗ୍ରାମ ସବାକ୍ରାନ୍ତ ଚକଡ଼ା ବା୬୭।୭।୨୨ ସମଧର ଅସାଧ୍ୟ ଅଭେଟ ନଈ ପୋଖରୀ ଚିଲିକାଗ୍ରାସ ମଧ ବା ୨୫।୦।୨୨ଙ୍କୀ ଏ ସମଧର ତୀହ କଳା ଶାରଦ ଲୁଣମାଟୀ ମଧ ବା ୪୨।୭ କୁଅପଦା ବା ୨୫ ଗାଏ ସଏନଉତର ବା ୧୦୯।୯ଟୀ ନମାଣ ରାହାଙ୍ଗ ପରଗଣାରେ ଭାଇଲିପୁର ବା୧୬ ବୁଧଙ୍ଗ ବା୧।୧୫ ପଛୀପାଳ ବା୫ କମାସାସନ ବା ୪ ଡାହାଣ ବା୧ ଗାଏ ବା ୨୭।୧୫ ସୀରାଇ ପରଗଣାରେ ନୀଙ୍କ ସୀରାଇ ଗ୍ରାମରେ ବା୨୦ଟୀ ଚାନ୍ଦପଦା ବଳାଜୀତୀପୁର ମଧ ବା ୧୦ ଗାଏ ବା ୩୦ଟୀ ଏ ରୂପେ ସାବୀକ ସଏ ସତସଠି ବା ୧୬୭।୪ଟୀ ଚାରିମାଣ ଖଞ୍ଜୀ ଦେଇଂ ଅମଳ

୧୪୪- ୨୮/୧୪

କରାଇବ । ଏ ସମଧ ବାକୀ ତଉଲକରୀ ଖଞ୍ଜୀ ଦେବ । ଏ ବା ୧ଟିକୀ ମାପୁଣୀ ଓଗେର ଟ୨ଙ୍କା ଲେଖାଏଁ ନବ । ୧୦ଅଙ୍କ ମିନ ଦି୨୦ନର ଆଗ୍ୟାଂ ।

କେତେକ ଶବ୍ଦର ଅର୍ଥ: ଦିଆନ୍ = ଦେଓ୍ୱାନ୍ (ମନ୍ତ୍ରୀ), ସୁବା = ପ୍ରଦେଶ (ମୋଗଲ ଶାସିତ ଓଡ଼ିଶା), ବକସୀ - ସେନାପତି, ସାବୀକ = ପୂର୍ବପ୍ରଚଳିତ (ପୁରାତନ), ନାଗପୁର ବାବୀ = ନାଗପୁରର ବାବୀ ନାମକ ବ୍ୟକ୍ତି ବିଶେଷ, ନରେନ୍ଦ୍ରା = ନରେନ୍ଦ୍ର ରାଏ, ସବାକ୍ରାନ୍ତ ଚକଡ଼ା = ନିର୍ଦ୍ଦିଷ୍ଟ ସୀମା ଚୌହଦୀ ମଧ୍ୟରେ ଥିବା ସମସ୍ତ ଜମିର ଚକ ଅସାଧ ଅଭେଟ ନଇପୋଖରୀ ଚିଲିକାଗ୍ରାସ ମଧ = ନଈ, ପୋଖରୀ (ଖାଲ) ଚିଲିକା ଗ୍ରାସ କରିଥିବା ଅସାଧ (ଚାଷପାଇଁ ଅନୁପଯୋଗୀ) ଅଭେଟ (ଅପହଞ୍ଚ ବା ପାଣି ତଳେ ଥିବା ହେତୁ ଅଦୃଶ୍ୟ), ତଉଲ କରି = ଠିକ କରି - (ହିସାବରେ ଯେତିକି ହେବ ସେତିକି) ।

## ୨ୟ ସନନ୍ଦ (୧)

ଶ୍ରୀ ଚମ୍ପୂପତିଙ୍କ ପାଠ : "ଦିଆନ୍ ଭ୍ରମରବର ରାଙ୍କୁ ଏ ହସ୍ତପତ୍ର । ସୁବାର ବକସି ଗୋପୀନାଥ ଭମରବର ରାଙ୍କୁ ଏ ଜାଗିର ଦୁଇସ ବା ୨୦୦ଟୀ ଆଜ୍ଞା ଦେଲୁ । ଏ ସୁଧକୁ ଚବିଶକୁଦ ପରଗଣା କାକୋଡ଼ା ଗ୍ରାମର ନାଗପୁର ବାଦିଙ୍କ ସୁଧର ବା ୨୨।୧୫। ଗୁଡ଼ାଦାର ପାଇକ ବା୧୦ଟୀ ସୁଧର ବା୫ଟୀ । ନରେନ୍ଦ୍ର ସୁଧ ବା୨।୧୦ । ସାହାଲ ଘର ନଅର ସୁଧ ବା୨ଟୀ । କଲପତର ପଟନାଏକ ସୁଧର ବା୯।୧୭। ଗାଏ ବା୪୨।୨। ଗୋଲରା ଗ୍ରାମ ବା ୬୭।୭।୭୨୨କୁ ଅସାଧ ଅଭେଟନ ପୋଖରୀ ଚକଡ଼ା ଗ୍ରାସ ମଧ ବା ୨୫।୦।୨୨ଟି । ଏ ସୁଧର ସାଧ ବା୪୨।୭କୁ ଲୁଣମାଟି ବା୨।୬ ଶାରଦଉଚ୍ଚ ମଧ ବା୪୦।୧। ଗାଏ ବା୪୨।୭। ଏ ରୂପେ ଦୁଇ ଗ୍ରାମରୁ ଚଉରାସୀ ବା୮୪।୯ଟୀ ନମାଣ ଅମଲ କରାଇବ । ବାକି ଏ ସମଧର ସଏ ପନ୍ଦର ବା୧୧୫।୧୧ଟୀ ଏଗାର ମାଣ କୋଠୁଂ ଖଞ୍ଜାଦେବ । ୩୮ ଅଙ୍କ ମକର ଦି୧୭ନର ଆଜ୍ଞା ।[୧୪୫]

ଏ ପାଠ ପ୍ରାୟ ଠିକ୍ ଅଛି । କେବଳ 'ଏ ହସ୍ତ' ସ୍ଥାନରେ ଶ୍ରୀ ହସ୍ତ, ନାଗପୁର ବାଦି ସ୍ଥାନରେ ନାଗପୁର ବାବି, ଅଭେଟନ ପୋଖରୀ ଚକଡ଼ା ସ୍ଥାନରେ ଅଭେଟ ନଇପୋଖରୀ, ଚିଲିକା, ଏବଂ ଶାରଦ ଉଚ୍ଚ ସ୍ଥାନରେ ଶାରଦ ଡୀହ ହେବ ।

## ୧ମ ଚିଟାଉ : (୧)

ଶ୍ରୀ ଚମ୍ପୂପତିଙ୍କ ପାଠ : ରେଙ୍ଗଲଗଡ଼ ସିଦ୍ଧେଶ୍ୱର ଦଳବେହେରାକୁ ଦଳଜନ ଲୋକକୁ ଦେଣ ମାନପଧାନ ଡରାବୋଇ ପାଟଣା, ମାନପୁର ଧେଠୋକା ହାଟ ବିସୋଇ ଦଣ୍ଡିଆକୁ ମଧ ଚିଟାଉ । ଏ ଗଡ଼ ସଭାକ୍ରାନ୍ତ ଚକଡ଼ା ଜେ ବକସି ଗୋପୀନାଥ ଭ୍ରମରବର

୧୪୫- ୨୮/୧୫

ରାଙ୍କୁ ଉତନ କରି ଆଜ୍ଞା ଦେଲୁ । ଏ ଗଡ଼ ଏହାଙ୍କୁ ଉତନ ସମାସ୍ୱା ଆଜ୍ଞା କରାଇବ । ୩୮ ଅଙ୍କ କନ୍ୟ ୧୦ ଦିନର ଆଜ୍ଞା ।[୧୪୬]

ଖେଲଙ୍ଗଗଡ଼ ଛାମୁଚିଟାଉ

---

୧୪୬- ୨୮/୧୮

ଶୁଦ୍ଧପାଠ :- ରେଙ୍ଗଲଗଡ଼ ସିଠୀକରଣ ଦଳବେହେରାକୁ ଦଳଇ ଦଳଲୋକକୁ ଦେଶମାନ ପଧାନ ଭୋଇକୀ ପାଟଣା ମାନପୁର ସେଠୀକୀ ହାଟବୋଟ ବିସୋଇ ଦଣ୍ଡିଆକୁ ମଧ ଚିଟାଉ। ଏ ଗଡ଼ ସଭାକ୍ରାନ୍ତ ଚକଡ଼ା ଜେ ବକସି ଗୋପୀନାଥ ଭମରବର ରାଙ୍କୁ ଉତନକରୀ ଆଗ୍ୟାଂ ଦେଲୁ। ଏ ଗଡ଼ ଏହାଙ୍କୁ ଉତନ ସମାସ୍ୟା। ଏ ଆଏ କରାଇବ। ୩୮ଅଙ୍କ କନ୍ୟ ଦି ୧୦ନର ଆଗ୍ୟାଂ।

ସୀଠୀକରଣ = ଶ୍ରେଷ୍ଠୀକରଣ (ମୁଖ୍ୟପାଞ୍ଜିଆ), ପଧାନ ଭୋଇ = ପ୍ରଧାନ ରାଜକର୍ମଚାରୀ, ସେଠୀ = ଶ୍ରେଷ୍ଠୀ (ମୁଖିଆ), ବିସୋଇ = ବିଷୟୀ (ଭାରପ୍ରାପ୍ତ ଅଧିକାରୀ), ଦଣ୍ଡିଆ = ମାପୁଣୀ, ସଭାକ୍ରାନ୍ତ ଚକଡ଼ା = ନିର୍ଦ୍ଦିଷ୍ଟ ସୀମା ଚୌହଦୀ ମଧ୍ୟରେ ଥିବା ସମସ୍ତ ଜମିର ଚକ ଉତନକରୀ = ଉତ୍ପନ୍ନ (ଅମଳ) କରିବାକୁ ଏ ଗଡ଼ ଏହାଙ୍କୁ ଉତନ ସମାସ୍ୟା = ଏ ଗଡ଼ ସରବରାକାରୀ ମାହାଲର ଆୟ ଅମଳ କରାଇବା ଦାୟିତ୍ୱ ଏହାଙ୍କୁ ଦିଆଗଲା।

**୨ୟ ଚିଟାଉ : (୨)**[୧୪୭]

ଶ୍ରୀଚମ୍ପୂପତିଙ୍କ ପାଠ :- ତାପଙ୍ଗଗଡ଼ ସିଠୀକରଣ ଦଳବେହେରା ଦଳଇ ଦଳଲୋକକୁ ଦେସ ପଧାନ ଭୋଇ ପାଟଣାମାନପୁର ସେଠୀକି ଦକ୍ଷିଣମୂଳ ଜାଗିରିଦାରମାନଙ୍କୁ, ଦେଉଳ ସେବକକୁ ମଧ ଚିଟାଉ। ଏ ଗଡ଼ ସଂକ୍ରାନ୍ତ ଚକଡ଼ା ଜେ ବାରୁଦଖୀଣ ତଳେ ଉତନ କରି ଆଜ୍ଞା ଦେଲୁ। ବକସି ଗୋପୀନାଥ ଭ୍ରମରବର ରାଙ୍କୁ ସ୍ଥ୍ୟଠୀ ଭୋଇକୁ ଦେଉଳ ସେବକମାନଙ୍କୁ ଉତନ ସମସ୍ୟା। ୪୨ଅଙ୍କ ତୁଳ ଦି୧୮ନର ଆଜ୍ଞା।

ବି.ଦ୍ର : ଏହି ଚିଟାଉର ଶେଷ (୭ମ) ଧାଡ଼ିର କେତେକ ଅକ୍ଷର ପୋକକାଟି ନଷ୍ଟ କରିଦେଇଥିବାରୁ ସେ ଧାଡ଼ିଟି ଆମୂଳାନ୍ତ ପଢ଼ି ହେଉ ନାହିଁ। ଯେତିକି ପଢ଼ିହେଉଛି ତାହା ଏହିପରି -

ତାପଙ୍ଗଗଡ଼ ସିଠୀକରଣ ଦଳବେହେରା ଦଳଇ ଦଳଲୋକକୁ ଦେସପଧାନ ଭୋଇ ପାଟଣାମାନପୁର ସେଠୀକି ଦକ୍ଷିଣମୂଳ ଜାଗିରିଦାରମାନଙ୍କୁ ଦେଉଳ ସେବକକୁ ମଧ ଚିଟାଉ। ଏ ଗଡ଼ ସର୍ବାକ୍ରାନ୍ତ ଚକଡ଼ା ଜେ ବାରୁଦଖାଲତଳେ (ବାରୁଦଖାନା) ଉତନ କରି ଆଜ୍ଞା ଦେଲୁ। ବକ୍ସି ଗୋପୀନାଥ ଭ୍ରମରବର ରାଙ୍କ ଗୁମାସ୍ତାଠାରେ ଉ... ଇ ଉତନ... ୪୨ ଅଙ୍କ ତୁଳ ଦି୧୮ନର ଆଜ୍ଞା।

ବାରୁଦଖାଲ - ତାପଙ୍ଗଗଡ଼ରେ ଖୋର୍ଦ୍ଧାରାଜାଙ୍କର ଏକ ବିରାଟ ଗୁପ୍ତ ଅସ୍ତ୍ରାଗାର ଓ ବୃହତ ଗୁପ୍ତ ବାରୁଦ ଭଣ୍ଡାର ଥିବାରୁ ସେହି ସ୍ଥାନକୁ ବାରୁଦଖାନା କୁହାଯାଉଥିଲା। ସନନ୍ଦରେ 'ଖା' ପରବର୍ତ୍ତୀ ଅକ୍ଷରଟି ପୋକ କାଟିଦେଇଛି- ଏହା ଖାନା କିମ୍ବା ଖାଲ ହୋଇପାରେ।

---

*୧୪୭- ୨୮/୧୯*

ଟିପ୍ପଣୀ :

## (ସନନ୍ଦ ଦୁଇଟିରୁ ପ୍ରତିପାଦିତ ଐତିହାସିକ ତଥ୍ୟ)

୧. ସନନ୍ଦରେ ବାସୁଦେବ ଭ୍ରମରବର ରାୟଙ୍କୁ ସ୍ପଷ୍ଟଭାବେ 'ସୁବା'ର ବକ୍ସିଭାବେ ଅଭିହିତ କରାଯାଇଛି, ଅର୍ଥାତ୍ ବାସୁଦେବ ଭ୍ରମରବର ସୁବା (କଟକ ସୁବା) ଅର୍ଥାତ୍ ମୋଗଲ ଶାସିତ ଓଡ଼ିଶାର ବକ୍ସିଥିଲେ ବୋଲି ଖୋର୍ଦ୍ଧାର ରାଜା ବୀରକେଶରୀ ଦେବ ଶ୍ରୀହସ୍ତ ପତ୍ରରେ ଦେବାନ୍ ଭ୍ରମରବର ରାୟଙ୍କୁ ଲେଖିଛନ୍ତି । ପାଠକମାନଙ୍କର ସ୍ମରଣ ଥିବ ଯେ, ଖୋର୍ଦ୍ଧାର ରାଜା ନରସିଂହ ଦେବଙ୍କ ରାଜତ୍ୱରେ ତାଙ୍କର ପାତ୍ର କହ୍ନାଇ ବିଦ୍ୟାଧର ମହାପାତ୍ର କଟକ ସୁବାର ମୋଗଲ ସୁବାଦାରଙ୍କ ସେନାପତିଭାବେ ମିର୍ଜା ବାଖରଖାଁଙ୍କୁ ନେଇ ଅନ୍ଧାରୀଗଡ଼ ଅଧିକାର କରିଥିଲେ ଏବଂ ସେ ଗଡ଼ର ଦାୟିତ୍ୱରେ ଚାରି ବର୍ଷ ରହିବାପରେ ସେ ଗଡ଼କୁ ମୋଗଲଙ୍କ ପ୍ରତ୍ୟକ୍ଷ ଦାୟିତ୍ୱରେ ଛାଡ଼ିଦେଇ ମୋଗଲଙ୍କଠାରୁ ସେନାପତି ଜାଗିରି ପାଇଥିଲେ । ତେଣୁ ସେହି ସମୟରୁ କହ୍ନାଇ ବିଦ୍ୟାଧର ମହାପାତ୍ର ଓ ତାଙ୍କର ପରବର୍ତ୍ତୀ ଉତ୍ତରାଧିକାରୀମାନେ ଓଡ଼ିଶାରେ ମୋଗଲ ରାଜତ୍ୱ ଶେଷ ଅର୍ଥାତ୍ ୧୭୫୧ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ମୋଗଲ ଅଧୀନରେ କଟକ ସୁବାର ବକ୍ସି ବା ସେନାପତି ଥିଲେ । (ସୁତରାଂ ସେହି ବକ୍ସିମାନଙ୍କୁ ଆଉ ସାମୂହିକଭାବେ ଖୋର୍ଦ୍ଧା ରାଜାଙ୍କ ପାତ୍ର ବୋଲି କୁହାଯାଇ ନ ପାରେ) ।

୨. ବୀରକେଶରୀ ଦେବଙ୍କ ରାଜତ୍ୱରେ ଯେତେବେଳେ ବଙ୍ଗନବାବ ଆଲିବର୍ଦ୍ଦିଖାଁଙ୍କ ସହିତ ଓଡ଼ିଶା ସୁବାଦାର ମୁର୍ସିଦ କୁଲିଖାଁଙ୍କର ରାମଚନ୍ଦ୍ରଦେବ (୨ୟ)ଙ୍କ ବେଲୁଁ ଲାଗିରହିଥିବା ସଂଘର୍ଷର ତୀବ୍ରତାହେତୁ ଓଡ଼ିଶାରେ ମୋଗଲ ଶାସନର ଭବିଷ୍ୟତ ଅନିଶ୍ଚିତ ହୋଇପଡ଼ିଲା, ସେତିକିବେଳେ ବୀରକେଶରୀଦେବ ନିଜ ରାଜ୍ୟର ଜମିଜମା ସଂକ୍ରାନ୍ତ ସଂସ୍କାର କାର୍ଯ୍ୟକୁ ଅଗ୍ରାଧିକାର ଦେଲେ । ସେତେବେଳେ ବିଦ୍ୟାଧର ବଂଶୀୟ ସୁବାର ବକ୍ସି-ଜାଗିରି ବୃତ୍ତିଭୋଗୀ ବାସୁଦେବ ବିଦ୍ୟାଧର ମହାପାତ୍ର ନିଜର ଜାଗିରିଜମିର ଭବିଷ୍ୟତ ନେଇ ଆଉ ମୋଗଲ ସୁବାଦାରଙ୍କ ଉପରେ ନିର୍ଭର କରି ନ ପାରି ଖୋର୍ଦ୍ଧାର ରାଜାଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନକଲେ ଏବଂ ବୀରକେଶରୀ ଦେବଙ୍କଠାରୁ ବକ୍ସିବାଡ଼ ଜାଗିରି ସନନ୍ଦ ଲେଖାଇନେବାକୁ ସକ୍ଷମ ହେଲେ ।

୩. କହ୍ନାଇ ବିଦ୍ୟାଧର ମହାପାତ୍ର ମୋଗଲଙ୍କଠାରୁ ପାଇଥିବା ବକ୍ସିବାଡ଼ ଜାଗିରିବୃତ୍ତିର ପରିମାଣ ୨୦୦ ବାଟି ଥିବାର ସନନ୍ଦରୁ ପ୍ରମାଣିତ ହୋଇଛି । କିନ୍ତୁ ସିରାଇ, ରାହାଙ୍ଗ, ଚବିଶକୁଦ ଓ ଲେମ୍ବାଇ ପ୍ରଗଣାର ବିସ୍ତୃତ ଅଞ୍ଚଳରେ ଏଠି ସେଠି ବିକ୍ଷିପ୍ତ ଅବସ୍ଥାରେ ପଡ଼ିରହିଥିବା ସେହି ୨୦୦ ବାଟି ଜମି ନରସିଂହ ଦେବଙ୍କଠାରୁ ବୀରକେଶରୀ ଦେବଙ୍କ ପର୍ଯ୍ୟନ୍ତ ଦୀର୍ଘ ପ୍ରାୟ ଶତାଧିକ ବର୍ଷ ମଧ୍ୟରେ ବିଭିନ୍ନ କାରଣରୁ ଅସୁରକ୍ଷିତ ଓ ଅବନ୍ଦୋବସ୍ତ

ହୋଇ ବୀରକେଶରୀ ଦେବଙ୍କ ବେଳକୁ ତହିଁରୁ ୩୨ବାଟି ୧୬ ମାଣର ପତ୍ତା ମିଳି ନ ଥିଲା । ତେଣୁ ୨୦୦ ବାଟିରୁ ଉପଲବ୍ଧ ଥିବା ୧୬୭ ବାଟି ୪ ମାଣକୁ 'ସାବୀକ' ବା ପୂର୍ବପ୍ରଚଳିତ (ପୁରୁଣା)ଭାବେ ଦର୍ଶାଇ ତା ସହିତ ରାଜାଙ୍କ କୋଠବାଡ଼ରୁ ଆଉ ୩୨ ବାଟି ୧୬ ମାଣ ଖଞ୍ଜି ୨୦୦ ବାଟି ବକ୍ସିବାଡ଼ ଜାଗିରିପୂରଣ କରିବାକୁ ସନନ୍ଦରେ ନିର୍ଦ୍ଦେଶ ଦିଆଯାଇଛି । (ଉଲ୍ଲେଖଯୋଗ୍ୟ ଯେ ବୀରକେଶରୀ ଦେବଙ୍କ ସମୟରେ ବକ୍ସିଙ୍କ ଜାଗିରିକୁ ବକ୍ସିବାଡ଼, ଦେବାନଙ୍କ ଜାଗିରିକୁ ଦେବାନବାଡ଼, ପାଞ୍ଜିଆ ଜାଗିରିକୁ ପାଞ୍ଜିଆବାଡ଼ ଏବଂ ରଜାଙ୍କ ସମ୍ପତ୍ତିକୁ କୋଠବାଡ଼ ରୂପେ ବନ୍ଦୋବସ୍ତ କରାଯାଇଥିଲା ଏବଂ ଓଡ଼ିଶା ଭୂସଂସ୍କାର ଆଇନ ବଳରେ ୧୯୫୪ ଖ୍ରୀଷ୍ଟାବ୍ଦରେ ଜମିଦାରୀ ଓ ମଧ୍ୟସ୍ୱତ୍ୱାଧିକାରୀ ମାଲିକାନା ଉଚ୍ଛେଦ ପର୍ଯ୍ୟନ୍ତ ସିରାଇ, ରାହାଙ୍ଗ ଓ ଚବିଶକୁଦ ପ୍ରଗଣା ଜମିଜମା ବନ୍ଦୋବସ୍ତ ମାନଙ୍କରେ ଏହି ସବୁ ଶବ୍ଦ 'ବକ୍ସିବାଡ଼', 'କୋଠବାଡ଼, 'ପାଞ୍ଜିଆବାଡ଼', 'ଦେବାନବାଡ଼'ର ପ୍ରଚଳନ ଥିଲା) ।

୪. ବକ୍ସିଙ୍କ ଜାଗିରି ସନନ୍ଦରେ ଲେମ୍ବାଇ ପ୍ରଗଣାର ନାମ ନାହିଁ । କିନ୍ତୁ ସ୍ୱୟଂ ବକ୍ସି ଜଗବନ୍ଧୁ ୧୮୧୯ ଖ୍ରୀଷ୍ଟାବ୍ଦରେ ଇଂରେଜ ସରକାରଙ୍କ ଉଦ୍ଦେଶ୍ୟରେ ଲେଖିଥିବା ଚିଟାଉରେ ତାଙ୍କ ବକ୍ସିବାଡ଼ ଜାଗିରି ସିରାଇ, ଲେମ୍ବାଇ, ରାହାଙ୍ଗ ଓ ଚବିଶକୁଦ - ୪ଟି ଯାକ ପ୍ରଗଣାରେ ଥିଲା ବୋଲି ଉଲ୍ଲେଖ କରିଥିଲେ । ତେଣୁ ପ୍ରଥମ ସନନ୍ଦରେ ଯେଉଁ ୩୨ ବାଟି ୧୬ ମାଣ ଜମି ସାବୀକ୍ ଜାଗିରିରୁ ନିଅଣ୍ଟ ଦର୍ଶାଯାଇଛି ତାହା ସମ୍ଭବତଃ ଖୋର୍ଦ୍ଧାକୁ ଲାଗିଥିବା ଲେମ୍ବାଇ ପ୍ରଗଣାଭୁକ୍ତ ଥାଇ କାଳକ୍ରମେ ବକ୍ସିବଂଶ ଓ ଖୋର୍ଦ୍ଧାରାଜବଂଶ ମଧ୍ୟରେ ତିକ୍ତତାହେତୁ ଖୋର୍ଦ୍ଧାରାଜାଙ୍କ କୋଠବାଡ଼ ସମ୍ପତ୍ତିଭୁକ୍ତ ହୋଇଯାଇଥିବା ସମ୍ଭାବନାକୁ ମଧ୍ୟ ଏଡ଼ାଇ ଦିଆଯାଇ ନ ପାରେ, ଯେହେତୁ କୋଠବାଡ଼ରୁ ସେହି ନିଅଣ୍ଟ ଭରଣାପାଇଁ ରାଜାଦେଶ ହେଲା ।

୫. ସନନ୍ଦରେ ଉଲ୍ଲେଖ ଥିବା ଜାଗିରି ଗ୍ରାମଗୁଡ଼ିକ ମଧ୍ୟରେ ରୋଡ଼ଙ୍ଗ କିମ୍ବା ତାହାର ଆଖାପାଖ ଅନ୍ୟ କୌଣସି ଗ୍ରାମର ନାମ ନାହିଁ । ଚବିଶକୁଦ ପ୍ରଗଣାର କାଙ୍କୋଡ଼ା ଗ୍ରାମ (ସଂପ୍ରତି ପୁରୀ ସଦର ବ୍ଲକର କପିଳେଶ୍ୱରପୁର ନିକଟ) ଓ ଗୋଲରା, କୁଅପଦା ଦୁଇଟି ଗ୍ରାମ (ସଂପ୍ରତି ବ୍ରହ୍ମଗିରି ବ୍ଲକର କୁସୁବେଣ୍ଟି ନିକଟ ଚିଲିକା କୂଳରେ) ରୋଡ଼ଙ୍ଗଠାରୁ ବହୁଦୂରରେ । ସୁତରାଂ ବକ୍ସିଙ୍କ ବକ୍ସିବାଡ଼ ଜାଗିରି ମାହାଲ ୨୦୦ ବାଟି ମଧ୍ୟରେ ରୋଡ଼ଙ୍ଗ ମାହାଲ ବା ରୋଡ଼ଙ୍ଗ କିଲ୍ଲା ଅନ୍ତର୍ଭୁକ୍ତ ନ ଥିଲା - ଏହା ବକ୍ସିଙ୍କ ସନନ୍ଦରୁ ପ୍ରମାଣିତ ହୋଇଛି ।

୬. ବୀରକେଶରୀଦେବ ବାସୁଦେବ ଭ୍ରମରବର ରାଏଙ୍କ ନାମରେ ଲେଖିଥିବା ପ୍ରଥମ ସନନ୍ଦର ମାତ୍ର ସାତ ବର୍ଷ ପରେ ୧୭୫୧ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ମୋଗଲ ଶାସନ ବଦଳରେ ମରହଟ୍ଟା ଶାସନ ପ୍ରବର୍ତ୍ତିତ ହେଲା । ଏହି ଗୁରୁତ୍ୱପୂର୍ଣ୍ଣ ବହିଃଶାସନୀୟ ପରିବର୍ତ୍ତନ ହେତୁ ରାଜ୍ୟବ୍ୟାପୀ ଜମିଜମା ସଂକ୍ରାନ୍ତୀୟ ଗୋଳମାଳିଆ ପରିସ୍ଥିତି ଉପୁଜିବା ସ୍ୱାଭାବିକ ଥିଲା । କିନ୍ତୁ ଏଥିପାଇଁ ଉଭୟ ବୀରକେଶରୀଦେବ ଓ ବକ୍ସି ବାସୁଦେବ ବିଦ୍ୟାଧର

ମହାପାତ୍ର ଆଗରୁ ସତର୍କ ହୋଇସାରିଥିଲେ । ୧୭୬୦ ଖ୍ରୀଷ୍ଟାବ୍ଦରେ ଏହି ଗୋଳମାଳିଆ ପରିସ୍ଥିତିରୁ ଫାଇଦା ଉଠାଇବା ଉଦ୍ଦେଶ୍ୟରେ ପାରଳାର ରାଜା ଗଜପତି ଜଗନ୍ନାଥ ନାରାୟଣ ଦେବ ତାଙ୍କର ପୂର୍ବପୁରୁଷ କପିଳେନ୍ଦ୍ର ଦେବଙ୍କ ପୁତ୍ର ହମ୍ୱୀରଙ୍କ ସୂତ୍ରରୁ ସେ ଓଡ଼ିଶାର ରାଜା ବୋଲି ଦାବି କରି ଖୋର୍ଦ୍ଧା ଆକ୍ରମଣକଲେ । ତାଙ୍କ ଆକ୍ରମଣକୁ ପ୍ରତିହତ କରିବାରେ ମରହଟ୍ଟା ସୁବାଦାର ଶିବରାମ ଭଟ୍ଟଶାଠେ ଖୋର୍ଦ୍ଧା ରାଜାଙ୍କୁ ସାମରିକ ସାହାଯ୍ୟ ପ୍ରଦାନ କରି ତା ପ୍ରତିବଦଳରେ ଖୋର୍ଦ୍ଧା ରାଜାଙ୍କର ୪ ପ୍ରଗଣା - ସିରାଇ, ଲେମ୍ବାଇ, ରାହାଙ୍ଗ ଓ ଚବିଶକୁଦକୁ ଅକ୍ତିଆର କରିନେଲେ । ତେଣୁ ସେହି ୪ ପ୍ରଗଣା ସହିତ ବକ୍ସିଙ୍କର ବକ୍ସିବାଡ଼ ଜାଗିରି ମାହାଲ ମଧ୍ୟ ମରହଟ୍ଟା ହାତକୁ ଚାଲିଗଲା । ସେଥିପାଇଁ ବାସୁଦେବ ବିଦ୍ୟାଧର ମହାପାତ୍ରଙ୍କ ଉତ୍ତରାଧିକାରୀ ଗୋପୀନାଥ ବିଦ୍ୟାଧର ମହାପାତ୍ର ବୀରକେଶରୀ ଦେବଙ୍କଠାରୁ ବକ୍ସିବାଡ଼ ଜାଗିରିପାଇଁ ୨୦୦ ବାଟିର ଆଉ ଏକ ସନନ୍ଦ ଲେଖାଇନେଲେ । ଏହି ୨ୟ ସନନ୍ଦରେ ୧ମ ସନନ୍ଦରେ ଥିବା ଚବିଶକୁଦ ପ୍ରଗଣାର କାଙ୍କୋଡ଼ା ଓ ଗୋଲରା ଗ୍ରାମ ଦୁଇଟିର ୮୪ ବାଟି ୯ ମାଣ ଜମି ଅପରିବର୍ତ୍ତିତ ଥିବାବେଳେ ଏହି ପ୍ରଗଣାଧୀନ କୂଅପଦା ଗ୍ରାମ ସହିତ ସିରାଇ ଓ ରାହାଙ୍ଗ ପ୍ରଗଣାଧୀନ ଗ୍ରାମଗୁଡ଼ିକୁ ବାଦଦିଆଯାଇ ୧୧୫ ବାଟି ୧୧ ମାଣ ଜମି କୋଠବାଡ଼ରୁ ଦେବାକୁ ଆଦେଶ ହୋଇଛି ।

ସୁତରାଂ ଚବିଶକୁଦ ପ୍ରଗଣାର କାଙ୍କୋଡ଼ା ଓ ଗୋଲରାଗ୍ରାମ କେଉଁ ପରିସ୍ଥିତିରେ ବା କେଉଁ କାରଣରୁ ମରହଟ୍ଟାଙ୍କ ହାତକୁ ନ ଯାଇ ବକ୍ସିବାଡ଼ ଜାଗିରି ମାହାଲର ସାବକ ବା ପୁରୁଣା ମାହାଲ ହୋଇ ରହିଲା ତାହା ଅଧିକ ଅନୁସନ୍ଧାନସାପେକ୍ଷ । କିନ୍ତୁ କାଙ୍କୋଡ଼ ଓ ଗୋଲରା ଗ୍ରାମର ୮୪ ବାଟି ୯ ମାଣ ଜମି ଯେ ମରହଟ୍ଟାଙ୍କ ହାତକୁ ଚାଲିଯିବା ପରେ ବକ୍ସି ପୁଣି ମରହଟ୍ଟାଶାସକଙ୍କଠାରୁ କିଣିଥିଲେ ଏହା କଦାପି କୁହାଯାଇ ନ ପାରେ; କାରଣ କିଣାହୋଇଥିଲେ ସେ ଜମି ପୁଣି ସାବକ ଜାଗିରି ମାହାଲଭୁକ୍ତ ହୋଇ ବୀରକେଶରୀ ଦେବଙ୍କ ପ୍ରଦତ୍ତ ସନନ୍ଦରେ ଦର୍ଶାଯାଇ ନ ଥାନ୍ତା ।

ସ୍ୱର୍ଗତ ଦିଗମ୍ବର ଶ୍ରୀଚନ୍ଦନ ତାଙ୍କ ଖୁରୁଧା ଦର୍ପଣ ୯୫ ପୃଷ୍ଠାରେ ପୁରୀ ନିକଟବର୍ତ୍ତୀ ଚବିଶକୁଦ ପ୍ରଗଣାର ବେଣ୍ଟପୁର, ଗୋପୀନାଥପୁର, ରାହାଡ଼ମଲ ଓ ରାହାଙ୍ଗପ୍ରଗଣାର ସିଂହକୁଦା - ଏ ଚାରି ଗୋଟି ମୌଜାର ୧୧୭୩ ଏକର ଜମିକୁ ନେଇ ଖୋର୍ଦ୍ଧାରାଜାଙ୍କର ଏକ 'ଛପାମାହାଲ' ଖୋର୍ଦ୍ଧାକିଲ୍ଲାର ୧୨ ନମ୍ବର ମୋଗଲବନ୍ଦି ମାହାଲ ଥିଲା ବୋଲି ଲେଖିଛନ୍ତି । ସେ ଲେଖିଛନ୍ତି ''ଏହାକୁ ମରହଟ୍ଟାମାନଙ୍କୁ ଛପାଇ ରାଜାଙ୍କ ତରଫରୁ ଲୋକେ ରଖିଥିବାରୁ ଛପା ଜମିତୁଲ୍ୟ । ଏହା କିଲ୍ଲା ସାମିଲ ଅଛି । ଏହା ଭାର୍ଗବୀ ନଦୀ ଜଳଦ୍ୱାରା କେବଳ ଧୋୟା ।'' (ସ୍ୱର୍ଗତ ଶ୍ରୀଚନ୍ଦନ ବହୁ ବର୍ଷଧରି ଖୋର୍ଦ୍ଧା ଖାସମାହାଲର ଜମିଜମା ବନ୍ଦୋବସ୍ତ ସହିତ ପ୍ରତ୍ୟକ୍ଷଭାବେ ସମ୍ପୃକ୍ତଥିଲେ) ।

ସୁତରାଂ ପୁରୀ ନିକଟବର୍ତ୍ତୀ କାଙ୍କୋଡ଼ା ଏବଂ ଚିଲିକା କୂଳବର୍ତ୍ତୀ ଗୋଲରା ଗ୍ରାମକୁ ମଧ୍ୟ ବକ୍ସିଙ୍କ ଲୋକେ ବା ରାଜାଙ୍କ ଲୋକେ ମରହଟ୍ଟାମାନଙ୍କଠାରୁ ଛପାଇ ରଖିଥିବା ଅସମ୍ଭବ ନୁହେଁ । କାରଣ ମରହଟ୍ଟାମାନଙ୍କପାଇଁ ଏ ଅଞ୍ଚଳ ସମ୍ପୂର୍ଣ୍ଣ ନୂଆ ଓ ଅଜଣା ଥିଲା ।

## ବକ୍ସିଙ୍କ ରୋଡ଼ଙ୍ଗ ଗଡ଼ (କିଲ୍ଲା)

ଚକଡ଼ାପୋଥିରେ ରୋଡ଼ଙ୍ଗଗଡ଼ର ପ୍ରତିଷ୍ଠା ଓ ପରବର୍ତ୍ତୀ ପରିସ୍ଥିତି ସମ୍ପର୍କରେ ବିସ୍ତୃତ ବିବରଣୀ ସ୍ଥାନପାଇଛି - ଯାହାକୁ ଶ୍ରୀ ଦିବ୍ୟସିଂହ ଚମୂପତି ତାଙ୍କ 'ବକ୍ସିଜଗବନ୍ଧୁ ବଂଶର ନୂତନ ଇତିହାସ'ରେ ଉଦ୍ଧାରକରିଛନ୍ତି । ଚବିଶକୁଦ ପ୍ରଗଣାରେ ଅବସ୍ଥିତ କୋକଲଗଡ଼ ଖୋର୍ଦ୍ଧାଗଡ଼ଠାରୁ ମଧ୍ୟ ପ୍ରାଚୀନତର ଥିଲା । ଖୋର୍ଦ୍ଧାରାଜା ପୁରୁଷୋତ୍ତମ ଦେବଙ୍କ ୨୭ଅଙ୍କ ଖ୍ରୀ.୧୬୨୦ରେ କୋକଲଗଡ଼ର ନାୟକ ଦାନ ପାହାନ୍ତାସିଂହଙ୍କ ପୁଅ ଗୋପୀନାଥ ରାୟ ପିତାମ ଚବିଶକୁଦ ପ୍ରଗଣାର ମାଣିକପାଟଣା ନିକଟବର୍ତ୍ତୀ ଗୁଣ୍ଡୁରିପଦାଠାରେ ଅନ୍ଧାରୀଗଡ଼ ସ୍ଥାପନ କରିଥିଲେ ।[୧୪୮] ଗୋପୀନାଥ ରାୟପିତାମଙ୍କ ନାତି ଜୟଦେବ ଚମ୍ପତି ନରସିଂହଦେବଙ୍କ ୧୭ଅଙ୍କ (ଖ୍ରୀ. ୧୬୩୪)ରେ ଅନ୍ଧାରୀଗଡ଼ର ଅଳ୍ପଦୂର ଉତ୍ତରପୂର୍ବ ଦିଗରେ ରୋଡ଼ଙ୍ଗଗଡ଼ ପ୍ରତିଷ୍ଠା କରିଥିଲେ[୧୪୯] । କିନ୍ତୁ ଚବିଶକୁଦ ପ୍ରଗଣାରେ ଚିଲିକା ଓ ସମୁଦ୍ର ମଧ୍ୟରେ ପାଖାପାଖି ଥିବା ଏହି ଦୁଇ ଗଡ଼କୁ ନେଇ ଗଡ଼ାଧୀଶ ରାୟପିତାମ୍ ଓ ମୋଗଲ ସୁବାଦାରମାନଙ୍କ ମଧ୍ୟରେ କ୍ରମାଗତ ବିବାଦ ଲାଗିରହିଥିଲା । ମୋଗଲ ସୁବାର ବକ୍ସିବାଡ଼ ଜାଗିରି ବୃତ୍ତିଭୋଗୀ ବିଦ୍ୟାଧର ବଂଶଧରମାନେ ମୋଗଲଙ୍କ ସହିତ ମିଶି ରାୟ ପିତାମଙ୍କୁ ବିରୋଧ କରୁଥିଲେ । ମୁକୁନ୍ଦଦେବ(୧ମ)ଙ୍କ ୧୩ଅଙ୍କ (ଖ୍ରୀ. ୧୬୬୭)ରେ ଖୋର୍ଦ୍ଧା ରାଜାଙ୍କର ସାମୟିକ ପାତ୍ରଭାବେ ଜଗନ୍ନାଥ ମନ୍ଦିର ସମ୍ପର୍କରେ ବୁଝାସୁଝା କରୁଥିବା କଟକ ମୋଗଲ ସୁବାର ବକ୍ସି ପୀତାମ୍ବର ବିଦ୍ୟାଧର ମହାପାତ୍ର ଖାଁଉଦୌଲା ନବାବଙ୍କ ପୁତ୍ର ମୀରସାହେବଙ୍କୁ ଧରି ରାୟପିତାମଙ୍କୁ ତଡ଼ି ଅନ୍ଧାରୀଗଡ଼ ଅଧିକାର କରିବାପରେ ଅନ୍ଧାରୀଗଡ଼ ଦାୟିତ୍ୱରେ ଫୌଜଦାର ସୟଦରାଜଙ୍କୁ ଏବଂ ରୋଡ଼ଙ୍ଗଗଡ଼ ଦାୟିତ୍ୱରେ ନିଜର ପ୍ରତିନିଧିଭାବେ ଜଗନ୍ନାଥ ରାଉତରାୟଙ୍କୁ ରଖିଥିଲେ । ସେହିଦିନଠାରୁ ରୋଡ଼ଙ୍ଗଗଡ଼ ବକ୍ସିବଂଶର ଅଧିକାରକୁ ଆସିଲା ଏବଂ କାଳକ୍ରମେ ତାହା ବକ୍ସିବଂଶର ସ୍ୱପାର୍ଜିତ ସମ୍ପତ୍ତିଭାବେ ଗଣ୍ୟହେଲା । ସୂଚନାଯୋଗ୍ୟ ଯେ ଚାରି ପ୍ରଗଣାର ବିସ୍ତୃତ ଅଞ୍ଚଳରେ ଏଠି ସେଠି ପଡ଼ିରହିଥିବା ବକ୍ସିବାଡ଼ ଜାଗିରିର ବେଶୀଭାଗ ପୁରୀର ନିକଟବର୍ତ୍ତୀ ଥିଲା । ତେଣୁ କହ୍ଲାଇ ବିଦ୍ୟାଧରଙ୍କଠାରୁ ପୀତାମ୍ବର ବିଦ୍ୟାଧରଙ୍କ ପର୍ଯ୍ୟନ୍ତ ବକ୍ସିବାଡ଼ ଜାଗିରିବୃତ୍ତିଭୋଗୀମାନେ ମୋଗଲସୁବାଦାରଙ୍କ ସେନାପତିଭାବେ କେତେବେଳେ କଟକରେ

---

*୧୪୮- ୧୬/୧୦   ୧୪୯- ୧୬/୧୨*

ଓ କେତେବେଳେ ପୁରୀରେ ଅବସ୍ଥାନ କରୁଥିଲେ ଏବଂ କେହି କେହି ପୁରୀରେ ଅବସ୍ଥାନ କାଳରେ ଶ୍ରୀଜଗନ୍ନାଥ ମନ୍ଦିରର କିଛି କାର୍ଯ୍ୟ କରି ଖୋର୍ଦ୍ଧା ରାଜାଙ୍କର ସାମୟିକ ପାତ୍ରଭାବେ ପରିଚିତ ହେଉଥିଲେ। ପୀତାମ୍ବର ବିଦ୍ୟାଧର ମହାପାତ୍ର ପୁରୀରେ ରହି ରୋଡ଼ଙ୍ଗଗଡ଼ରେ ଜଗନ୍ନାଥ ରାଉତରାଙ୍କୁ ନିଜର ପ୍ରତିନିଧି ବା ଗୁମାସ୍ତାଭାବେ ରଖିଥିଲେ। ପୀତାମ୍ବର ବିଦ୍ୟାଧର ମହାପାତ୍ରଙ୍କ ଉତ୍ତରାଧିକାରୀ ବକ୍ସି ଜଗନ୍ନାଥ ବିଦ୍ୟାଧର ମହାପାତ୍ର ମଧ ପୁରୀରେ ଅବସ୍ଥାନ କରି ଜଗନ୍ନାଥ ମନ୍ଦିର ଉପରେ ମୋଗଲ ଆକ୍ରମଣ ସମୟରେ ରାଜା ଦିବ୍ୟସିଂହଦେବ(୧ମ)ଙ୍କୁ ନିଜ ଉଆସରେ ଆଶ୍ରୟ ଦେଇଥିଲେ। ସେ ପର୍ଯ୍ୟନ୍ତ ରୋଡ଼ଙ୍ଗଗଡ଼ରେ ବକ୍ସିଙ୍କ ପ୍ରତିନିଧି ବା ଗୁମାସ୍ତା ରହି ସମ୍ପତ୍ତିବାଡ଼ିର ଆୟଅମଳ ବୁଝାସୁଝା କରୁଥିଲେ। ପ୍ରକାଶଯୋଗ୍ୟ ଯେ ଜଗନ୍ନାଥ ବିଦ୍ୟାଧରଙ୍କ ନାମରେ ସ୍ଥାପିତ 'ଜଗନ୍ନାଥ ବିଦ୍ୟାଧରପୁର' ଗ୍ରାମ ପୁରୀ ନିକଟରେ ଅଛି।

୧୭୬୦ ଖ୍ରୀଷ୍ଟାବ୍ଦ ପରେ ଚବିଶକୁଦ ପ୍ରଗଣା ମରହଟ୍ଟା ସୁବାଦାର ଶିବରାମଭଟ୍ଟ ଶାଠେଙ୍କ ହାତକୁ ଚାଲିଯିବାପରେ ମଧ ବକ୍ସିବଂଶର ସ୍ୱପାର୍ଜିତ ରୋଡ଼ଙ୍ଗ କିଲ୍ଲା ଶାଠେଙ୍କ ହାତକୁ ନ ଯାଇ ବକ୍ସିଙ୍କ ମୌରସୀ ସମ୍ପତ୍ତିଭାବେ ପୃଥକ୍ ହୋଇ ବକ୍ସିଙ୍କ ଅଧିକାରରେ ରହିଥିବା ସମୀଚୀନ ମନେହୁଏ। କିନ୍ତୁ ଇଂରେଜ ପ୍ରଶାସକ (କଲେକ୍ଟର) ଟ୍ରାଓ୍ୱେର "ରୋଡ଼ଙ୍ଗ କିଲ୍ଲାକୁ ବକ୍ସି ଜଗବନ୍ଧୁଙ୍କ ପୂର୍ବପୁରୁଷଙ୍କ କିଣା ସମ୍ପତ୍ତି" ବୋଲି ଲେଖିଥିଲେ ହେଁ, ତହିଁର କୌଣସି ପ୍ରମାଣ ନାହିଁ। ବକ୍ସି ଜଗବନ୍ଧୁ ଇଂରେଜ ସରକାରଙ୍କ ଉଦ୍ଦେଶ୍ୟରେ ୧୮୧୯ରେ ଲେଖିଥିବା ଚିଟାଉରେ ରୋଡ଼ଙ୍ଗ କିଲ୍ଲା ତାଙ୍କ ପୂର୍ବପୁରୁଷଙ୍କ ଜମିଦାରୀ ଦିଲ୍ଲୀସମ୍ରାଟଙ୍କଦ୍ୱାରା ପ୍ରଦତ୍ତ ଜାଗିରି ବୋଲି ଲେଖିଥିଲେ, କିନ୍ତୁ ଏହା ତାଙ୍କ ବଂଶର ବକ୍ସିବାଡ଼ ଜାଗିରି ସନନ୍ଦର ଅନ୍ତର୍ଭୁକ୍ତ ନ ଥିଲା।

## ରୋଡ଼ଙ୍ଗ କିଲ୍ଲା ଅଧୀନରେ ଥିବା ଗ୍ରାମପୁଞ୍ଜ

୧.ଗଡ଼ରୋଡ଼ଙ୍ଗ, ୨. ଦୋଣୀ, ୩. ହାଣ୍ଡିଆଳି, ୪. କାଳିକାବାଡ଼ି, ୫. ନରଣପୁର, ୬. ବ୍ରହ୍ମଗିରି, ୭. ବାଇସିବାଟି, ୮. ନହରପଦା, ୯. ଅଲାରପୁର, ୧୦. ଗୋପ, ୧୧. ଦନ୍ଦରାକୁଣ୍ଡ, ୧୨. ଚଢ଼େଇକୁଦି, ୧୩. ସାନବେଣାକୁଦି, ୧୪.ଡିହକୁଦି, ୧୫. ନନ୍ଦପୁର, ୧୬. ବଡ଼ଦିହାଣ୍ଡି, ୧୭. ବରପଦା, ୧୮. ବଡ଼ବେଣାକୁଦି, ୧୯. ବରକୁଦି, ୨୦. ବାଘଲାଞ୍ଜି, ୨୧. ଦେନଇ, ୨୨. ଖଣ୍ଡୁଆଳପୁର, ୨୩. ନଟିଆ ୨୪. ହରିଚନ୍ଦନପୁର, ୨୫. ବାଲିସାହି, ୨୬. ଚାପମାଣିକ, ୨୭.ବେଡ଼ାସୁନ୍ଦର, ୨୮. କାସିଝରିଆ, ୨୯. ବୁଦ୍ଧିସାହି, ୩୦. କହଲପଦା, ୩୧. ବଡ଼ବନ୍ଧକେରା, ୩୨. ନଳକୁଦି, ୩୩. ବ୍ରାହ୍ମଣିଆ।

## ରେଙ୍ଗଳ ଓ ତାପଙ୍ଗଗଡ଼ ସମ୍ପର୍କରେ ଛାମୁଚିଟାଉ

ରେଙ୍ଗଳ ଲେମ୍ବାଇ ପ୍ରଗଣାର ଏକ ପ୍ରମୁଖଗଡ଼ । କିନ୍ତୁ ଏହିଗଡ଼ ଲେମ୍ବାଇ ପ୍ରଗଣାର ପଶ୍ଚିମ ସୀମାରେ ପ୍ରବାହିତ ଦୟାନଦୀର ପଶ୍ଚିମକୂଳରେ ଖୋର୍ଦ୍ଧା ଇଲାକାକୁ ଲାଗି ରହିଥିବାରୁ ଏହା ଦୟାନଦୀଦ୍ୱାରା ଲେମ୍ବାଇ ପ୍ରଗଣାରୁ ପୃଥକ୍ ଓ ଖୋର୍ଦ୍ଧାଇଲାକା ସହିତ ସାମିଲଥିବାପରି ଜଣାପଡ଼େ ।

ଖୋର୍ଦ୍ଧାରାଜା ବୀରକେଶରୀ ଦେବଙ୍କ ୩୧ ଅଙ୍କ, ୧୭୬୦ ଖ୍ରୀଷ୍ଟାବ୍ଦରେ ଲେମ୍ବାଇ ପ୍ରଗଣାର ମାଲିକାନା ଖୋର୍ଦ୍ଧା ରାଜାଙ୍କ ହାତରୁ କାଢ଼ିନେଇ ମରହଟ୍ଟାମାନେ ଲେମ୍ବାଇକୁ ଖାସ୍ ଦଖଲରେ ରଖିଥିଲେ । ତେଣୁ ତାର ସାତ ବର୍ଷ ପରେ ବୀରକେଶରୀ ଦେବ ତାଙ୍କ ରାଜତ୍ୱର ୩୮ଅଙ୍କରେ ଅର୍ଥାତ୍ ୧୭୬୭ ଖ୍ରୀଷ୍ଟାବ୍ଦରେ ବକ୍ସି ଗୋପୀନାଥ ଭ୍ରମରବର ରାୟଙ୍କ ରେଙ୍ଗଳଗଡ଼ର ଆୟ ଅମଳ ଦାୟିତ୍ୱ ଦେଇଥିବା ଦୃଷ୍ଟିରୁ, ଏହା ଅନୁମିତ ହୁଏ ଯେ ଉପରୋକ୍ତ ପ୍ରାକୃତିକ ଅବସ୍ଥିତି କାରଣରୁ ସମ୍ଭବତଃ ରେଙ୍ଗଳଗଡ଼କୁ ଖୋର୍ଦ୍ଧା ମାହାଲର ଅନ୍ତର୍ଭୁକ୍ତ ଭାବି ମରହଟ୍ଟାମାନେ ଖାସ୍ ଦଖଲକୁ ନେଇପାରି ନ ଥିଲେ ଓ ତାହା ବୀରକେଶରୀ ଦେବଙ୍କ ଦଖଲରେ ଥିଲା ।

ସାଧାରଣତଃ ଗଡ଼ର ଦଳବେହେରାଙ୍କୁ ସେହି ଗଡ଼ ଅଧୀନ ରାଜାଙ୍କ ମାହାଲର ଆୟଅମଳ ଦାୟିତ୍ୱ ଦିଆଯାଇଥାଏ । କିନ୍ତୁ ଏ କ୍ଷେତ୍ରରେ ବକ୍ସିଙ୍କ ସହିତ ସୁସମ୍ପର୍କ ସ୍ଥାପିତ ହେବାପରେ ସେ ଲେମ୍ବାଇ ପ୍ରଗଣାଧୀନ ରେଙ୍ଗଳ ଆୟଅମଳ ଦାୟିତ୍ୱ ଗଡ଼ର ଦଳବେହେରାଙ୍କୁ ନ ଦେଇ ବକ୍ସି ଗୋପୀନାଥ ଭ୍ରମରବର ରାୟଙ୍କ ମାର୍ଫତ ଆୟ ଅମଳ କରାଇବାପାଇଁ ସମ୍ପୃକ୍ତ ସମସ୍ତ ରାଜକର୍ମଚାରୀମାନଙ୍କ ସହିତ ଦଳବେହେରାଙ୍କୁ ଛାମୁ ଚିଟାଉରେ ଆଦେଶ ଦେଇଛନ୍ତି ।

ସେହିପରି ତାପଙ୍ଗଗଡ଼ ଅଧୀନରେ ଥିବା ମାହାଲ ଗୁଡ଼ିକର ଆୟ ଉକ୍ତ ଗଡ଼ର ଦଳବେହେରାଙ୍କ ମାର୍ଫତରେ ନ କରାଇ ବକ୍ସି ଗୋପୀନାଥ ଭ୍ରମରବର ରାୟଙ୍କ ମାର୍ଫତରେ (ତାଙ୍କ ଗୁମାସ୍ତାଦ୍ୱାରା) କରାଇବାପାଇଁ ମଧ୍ୟ ଛାମୁ ଚିଟାଉରେ ଶ୍ରୀବୀରକେଶରୀଦେବ ଆଦେଶ ଦେଇଛନ୍ତି । କିନ୍ତୁ ତାପଙ୍ଗ ଜିଲ୍ଲାର ସମସ୍ତ ମାହାଲ ଶ୍ରୀଜଗନ୍ନାଥଙ୍କ ଅମୃତମଣୋହିପାଇଁ ଉଦ୍ଦିଷ୍ଟ ଥିବାରୁ ସମ୍ପୃକ୍ତ ସମସ୍ତ ରାଜକର୍ମଚାରୀମାନଙ୍କ ସହିତ ଶ୍ରୀଜଗନ୍ନାଥଙ୍କ ଦେଉଳ ସେବକମାନଙ୍କୁ ମଧ୍ୟ ଚିଟାଉ ଆଦେଶ ଜଣାଇ ଦିଆଯାଇଛି । 'ଫିରିଙ୍ଗି କଳିଭାରତ'ରେ ଉଲ୍ଲେଖ ଅଛି ଯେ ଖୋର୍ଦ୍ଧାଗଡ଼ର ଦକ୍ଷିଣଦ୍ୱାର ରୂପେ ବିବେଚିତ ତାପଙ୍ଗଗଡ଼ରେ ଖୋର୍ଦ୍ଧାରାଜାଙ୍କର ଏକ ବୃହତ୍ ଗୁପ୍ତ ଅସ୍ତ୍ରାଗାର ଓ ବାରୁଦ ଭଣ୍ଡାର ଥିଲା । ତେଣୁ ଚିଟାଉ ଲେଖିଥିବା ପାଞ୍ଜିଆ ''ବାରୁଦଖାଲ ତଳେ ଉତନକାରୀ ଆଗ୍ୟାଂ ଦେଲୁ'' ବୋଲି ଲେଖିଦେଇଥିବା ବିଶ୍ୱାସ ।

**ବି.ଦ୍ର :** ସ୍ୱର୍ଗତ ଦିଗମ୍ବର ଶ୍ରୀଚନ୍ଦନ 'ଖୁରୁଧା ଦର୍ପଣ'ରେ ଲେଖିଛନ୍ତି ଯେ ତାପଙ୍ଗ ଜିଲ୍ଲାର ୯୩ଟି ମୌଜାର ୩୨୭୦୪ ଏକର ଜମି ସହିତ ରାମେଶ୍ୱର ଜିଲ୍ଲାର ମୋଟ ୧୧୫୭୬୩ ଏକର ମଧ୍ୟରୁ ଆଂଶିକ ୭୪ଟି ମୌଜାର ଜମି (ପରିମାଣ ଦିଆଯାଇ ନାହିଁ)କୁ ମିଶାଇ ଶ୍ରୀ ଜଗନ୍ନାଥଙ୍କ ଅମୃତମଣୋହି ବା ଇଖରାଜାତ (ଖରଚ ଚଳାଇବା ଅର୍ଥରେ - ଆରବୀ) ମାହାଲଭାବେ ଇଂରେଜ ଅମଳ ବନ୍ଦୋବସ୍ତମାନଙ୍କରେ ଚିହ୍ନଟ କରାଯାଇଥିଲା । ବୀରକେଶରୀଦେବଙ୍କ ଚିଟାଉରୁ ପ୍ରମାଣିତ ହୁଏ ଯେ, ବହୁ ପୂର୍ବରୁ ଖୋର୍ଦ୍ଧାରାଜାମାନେ ତାପଙ୍ଗ ଜିଲ୍ଲାକୁ ଜଗନ୍ନାଥଙ୍କ ଅମୃତମଣୋହି 'ଇଖରଜୋତ' ମାହାଲଭାବେ ଚିହ୍ନିତ କରିଥିଲେ ।

## ଖୋର୍ଦ୍ଧାରାଜ୍ୟର ରାଜା, ମନ୍ତ୍ରୀ (ଦେୱାନ) ଓ ସେନାପତି (ବକ୍ସି)
## (୧୫୬୮ - ୧୮୦୪)

| କ୍ର. ସଂ. | ରାଜା ଓ ରାଜତ୍ୱ କାଳ | ମନ୍ତ୍ରୀ (ଦେବାନ)ଙ୍କ ନାମ | ସେନାପତି(ବକ୍ସି)ଙ୍କନାମ |
|---|---|---|---|
| ୧ | ରାମଚନ୍ଦ୍ର ଦେବ (୧ମ) ୧୫୬୮-୧୬୦୦ | ଦାସ ବିଦ୍ୟାଧର(୧) | ଇନ୍ଦ୍ର ବିଦ୍ୟାଧର (୫) |
| ୨ | ପୁରୁଷୋତ୍ତମ ଦେବ ୧୬୦୦-୧୬୨୧ | ଦାସ ବିଦ୍ୟାଧର(୧) | ଦାସ ବିଦ୍ୟାଧର(୫) |
| ୩ | ନରସିଂହଦେବ ୧୬୨୧-୧୬୪୭ | ଜହ୍ନାଇ ବିଦ୍ୟାଧର(୧) | ଜହ୍ନାଇ ବିଦ୍ୟାଧର(୫)<br>ବାସୁଦେବ ବିଦ୍ୟାଧର(୫)<br>ଭାନୁବକ୍ସି ଭ୍ରମରବରରାୟ(୬) |
| ୪ | ଗଙ୍ଗାଧର ଦେବ ମାତ୍ର ୧ ମାସ | -- | -- |
| ୫ | ବଳଭଦ୍ର ଦେବ ୧୬୪୭-୧୬୫୭ | ବାସୁଦେବ ବିଦ୍ୟାଧର (୧) | ବାସୁଦେବ ବିଦ୍ୟାଧର (୫) |
| ୬ | ମୁକୁନ୍ଦଦେବ (୧) ୧୬୫୭-୧୬୮୯ | ପୀତାମ୍ବର ବିଦ୍ୟାଧର ମହାପାତ୍ର (୧)<br>ପରମାନନ୍ଦପଟ୍ଟନାୟକ(୨) | ପୀତାମ୍ବର ବିଦ୍ୟାଧରମହାପାତ୍ର(୫)<br>ଜଗନ୍ନାଥ ବିଦ୍ୟାଧର ମହାପାତ୍ର (୫) |
| ୭ | ଦିବ୍ୟସିଂହ ଦେବ(୧ମ) ୧୬୮୯-୧୭୧୬ | ପରମାନନ୍ଦ ପଟ୍ଟନାୟକ(୨)<br>ରାମଚନ୍ଦ୍ର ପଟ୍ଟନାୟକ(୨) | ଜଗନ୍ନାଥ ବିଦ୍ୟାଧର ମହାପାତ୍ର (୫)<br>ଜବିଲୋକନାଥବିଦ୍ୟାଧର ମହପାତ୍ର (୫) |
| ୮ | ହରେକୃଷ୍ଣ ଦେବ ୧୭୧୬-୧୭୨୦ | ରାମଚନ୍ଦ୍ର ପଟ୍ଟନାୟକ(୨)<br>ଭଗବାନ ଭ୍ରମରବର ରାୟ (୨) | ଜବିଲୋକନାଥବିଦ୍ୟାଧରମହାପାତ୍ର (୫) |

| | | |
|---|---|---|
| ୯ ଗୋପୀନାଥ ଦେବ<br>୧୭୨୦-୧୭୨୭ | ଭାଗବତ ଭ୍ରମରବର ରାୟ (୨)<br>ମିର୍ଜାସୟଦ୍ ବେଗ (୪)<br>ବେରୁ ଭ୍ରମରବର ରାୟ (୩) | କବି ଲୋକନାଥ ବିଦ୍ୟାଧର ମହାପାତ୍ର (୫)<br>ଖୋଜାବକ୍ସି କୃଷ୍ଣ ନରେନ୍ଦ୍ର (୬) |
| ୧୦ ରାମଚନ୍ଦ୍ରଦେବ(୨ୟ)<br>୧୭୨୭-୧୭୩୭ | ବେନୁ ଭ୍ରମରବର ରାୟ (୩)<br>ନୀଳାମ୍ବର ହରିଚନ୍ଦନ(୪)<br>ଲୋଧୁମିଆଁ (୪) | କବି ଲୋକନାଥ ବିଦ୍ୟାଧର ମହାପାତ୍ର (୫)<br>ଖୋଜାବକ୍ସି ବେନୁଭ୍ରମରବର ରାୟ (୬)<br>ଗଦାଧର ମଙ୍ଗରାଜ (୬) |
| ୧୦ | ପୁରୁଷୋତ୍ତମ ଭ୍ରମର୍ବର ରାୟ (୩) | ମୁରାଦ୍ ଖାଁ (୬) |
| ୧୧ ଗଜପତି ବୀରକେଶରୀଦେବ<br>୧୭୩୭-୧୭୯୩ | ମାଧଭ୍ରମରବର ରାୟ (୩)<br>ପୁରୁଷୋତ୍ତମ ଭ୍ରମରବର ରାୟ(୩)<br>ବାହାଦୁର ଖାଁ (୪)<br>ବୃନ୍ଦାବନ କୁଅଁରଗୁରୁ (୪)<br>ହରିହର ଭ୍ରମରବର ରାୟ (୩) | ବାସୁଦେବ ଭ୍ରମରବର ରାୟ (୫)<br>ଗୋପୀନାଥ ଭ୍ରମରବର ରାୟ (୫)<br>ଜଗନ୍ନାଥ ବିଦ୍ୟାଧର ଭ୍ରମରବର ରାୟ (୫)<br>ମୁରାଦ୍ ଖାଁ (୬) |
| ୧୨ ଗଜପତି ଦିବ୍ୟସିଂହଦେବ(୨ୟ)<br>୧୭୯୩-୧୭୯୮ | ହରିହର ଭ୍ରମରବର ରାୟ (୩) | ଜଗବନ୍ଧୁ ବିଦ୍ୟାଧର ମହାପାତ୍ର (୫) |
| ୧୩ ଗଜପତି ମୁକୁନ୍ଦଦେବ(୨ୟ)<br>୧୭୯୮-୧୮୦୪ | ହରିହର ଭ୍ରମରବର ରାୟ (୩)<br>ରାଜଗୁରୁ ଜୟଗୁରୁ ମହାପାତ୍ର (୪)<br>କୃଷ୍ଣଚନ୍ଦ୍ର ଭ୍ରମରବର ରାୟ (୩)<br>(୧୮୧୭ ପାଇକବିଦ୍ରୋହର ଉପନେତା) | ଜଗବନ୍ଧୁ ବିଦ୍ୟାଧର ମହାପାତ୍ର (୫)<br>ରାଜଗୁରୁ ଜୟକୃଷ୍ଣ ମହାପାତ୍ର (୬) |

## -ସୂଚନା-

(୧) ଦେବାନ, ବିଦ୍ୟାଧର ବଂଶ
(୨) ଦେବାନ୍, ପଟ୍ଟନାୟକ ବଂଶ
(୩) ଦେବାନ୍, ଭ୍ରମରବର ରାୟବଂଶ
(୪) ଦେବାନ୍, ସ୍ୱତନ୍ତ୍ର (ଅସ୍ଥାୟୀ)
(୫) ସେନାପତି, ବିଦ୍ୟାଧର ବଂଶ
(୬) ସେନାପତି, ସ୍ୱତନ୍ତ୍ର (ଅସ୍ଥାୟୀ)



# ଦଶମ ଅଧ୍ୟାୟ

# କୋକଲଗଡ଼ର ଇତିହାସ

ଓଡ଼ିଶାର ଇତିହାସପ୍ରସିଦ୍ଧ ପ୍ରାଚୀନ ଗଡ଼ମାନଙ୍କ ମଧ୍ୟରେ କୋକଲଗଡ଼ ଅନ୍ୟତମ । ଚିଲିକା ହ୍ରଦର ଉତ୍ତର ଉପକୂଳରେ ଅବସ୍ଥିତ ଏହି ଗଡ଼ର ଉତ୍ତର ଦିଗରେ ଲୁଣା ଏବଂ ପୂର୍ବ-ଦକ୍ଷିଣରେ ଭାର୍ଗବୀ ନଦୀ ପ୍ରବାହିତ ହୋଇ ପଶ୍ଚିମ ଦିଗରେ ପ୍ରବାହିତ ହେଉଥିବା ଦୟାନଦୀ ସହିତ ଉଭୟ ଲୁଣା ଓ ଭାର୍ଗବୀ ମିଳିତ ହୋଇଛନ୍ତି । ତେଣୁ ଚତୁର୍ଦ୍ଦିଗରେ ନଦୀ ଓ ଚିଲିକା ହ୍ରଦଦ୍ୱାରା ସୁରକ୍ଷିତ ଏହା ଏକ ପ୍ରାକୃତିକ ଗଡ଼ ଥିଲା । 'ଖୁରୁଧାଦର୍ପଣ' ପ୍ରଣେତା ସ୍ୱର୍ଗତ ଦିଗମ୍ବର ଶ୍ରୀଚନ୍ଦନଙ୍କ ମତରେ, ଖୁରୁଧା କିଲ୍ଲା ଅନ୍ତର୍ଗତ ବଳଭଦ୍ରପୁର କିଲ୍ଲାରେ ଅବସ୍ଥିତ ବଳଭଦ୍ରପୁରଦୁର୍ଗ ଅଧୀନରେ ସାତଗୋଟି ସାମନ୍ତଗଡ଼ ଥିଲା । ଏଗୁଡ଼ିକ ହେଲା- ଗଡ଼ମାଟିଆପଡ଼ା, ଗଡ଼ସାନପୁଟ, ଗଡ଼ବଡ଼ପୁଟ, ଗଡ଼ବରପଦା, ଗଡ଼ସାହି, ଗଡ଼କୋକଲ ଓ ଗଡ଼ବେଗୁନିଆପଡ଼ା । ଏହା ମଧ୍ୟରୁ ପ୍ରଥମ ପାଞ୍ଚଗୋଟି ଗଡ଼ ଆଧୁନିକ କଣାସ ବ୍ଲକ୍‌ରେ ଥିବାବେଳେ ଷଷ୍ଠ ଗଡ଼ଟି ବ୍ରହ୍ମଗିରି ବ୍ଲକ୍‌ରେ ଓ ସପ୍ତମଗଡ଼ଟି ଡେଲାଙ୍ଗ ବ୍ଲକ୍‌ରେ ରହିଛି । ଗଡ଼ର ମାନ୍ୟତା ପାଇବାର ବହୁ ଶତାବ୍ଦୀ ପୂର୍ବରୁ ଯେତେବେଳେ ପ୍ରାଚୀନ କଳିଙ୍ଗ ରାଜ୍ୟ ଦରିଆପାରି ନୌବାଣିଜ୍ୟ ବିଭବରେ ଅତ୍ୟନ୍ତ ସମୃଦ୍ଧିଶାଳୀ ଥିଲା, ସେହି ସମୟରୁ 'କୋକଲ' ଏକ ପ୍ରଧାନ ନୌବନ୍ଦରଭାବେ ପ୍ରସିଦ୍ଧି ଲାଭ କରିଥିଲା । କ୍ରମେ ନଦୀ ଓ ହ୍ରଦଦ୍ୱାରା ସୁରକ୍ଷିତ ହୋଇ ଏହା ଏକ ପ୍ରାକୃତିକ ଗଡ଼ଭାବେ ରୂପାନ୍ତରିତହେଲା । ସୂର୍ଯ୍ୟବଂଶର ରାଜା ଗଜପତି ପ୍ରତାପରୁଦ୍ରଦେବଙ୍କ ରାଜତ୍ୱକାଳରୁ କୋକଲଗଡ଼ର ଗଡ଼ନାୟକମାନଙ୍କ ସମ୍ବନ୍ଧରେ ଚକଡ଼ାପୋଥି ଓ ପାଇକଖେଦାରେ ବହୁ ଗୁରୁତ୍ୱପୂର୍ଣ୍ଣ ତଥ୍ୟ ସ୍ଥାନପାଇଛି ।

ଓଡ଼ିଶାର ପ୍ରାଚୀନ ରାଜବଂଶ ସମ୍ପର୍କରେ ମାଦଳାପାଞ୍ଜିରୁ ଯେପରି ଧାରାବାହିକ ବିବରଣୀମାନ ମିଳେ, ସେହିପରି କୋକଲର ଗଡ଼ନାୟକମାନଙ୍କ ସମ୍ପର୍କରେ ଚକଡ଼ାପୋଥି ଓ ପାଇକଖେଦାରୁ ବିସ୍ତୃତ ବିବରଣୀ ମିଳେ । ଚକଡ଼ାପୋଥି ୧୮୯୩ ମସିହାରେ

ମୟୂରଭଞ୍ଜରୁ ପ୍ରକାଶପାଉଥିବା 'ଉତ୍କଳପ୍ରଭା' ନାମକ ମାସିକ ପତ୍ରିକାର ଚାରି ଗୋଟି ସଂଖ୍ୟାରେ ପ୍ରକାଶିତ ମୂଳପାଣ୍ଡୁଲିପିର କିୟଦଂଶ ମାତ୍ର । 'ଉତ୍କଳ ପ୍ରଭା'ରେ ଏହାର ଲେଖକ ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ ସୂଚନାମତେ ଏହା "ଖୋରଧା କୁରାଡ଼ମଲ୍ଲନିବାସୀ ଓଡ଼ିଶା ମହାରାଜାଙ୍କ ଦେବାନ୍ କୃଷ୍ଣଚନ୍ଦ୍ର ଭ୍ରମରବରରାୟଙ୍କ ଗୃହରେ ଥିବା ମାଦଳାପାଞ୍ଜି ସମାନ ଗ୍ରନ୍ଥରୁ ଉଦ୍ଧୃତ" ହୋଇଥିଲା ଏବଂ ଶେଷରେ 'କ୍ରମଶଃ' ଲେଖାରହିଥିଲା । ତା'ପରେ ସେ ବିଶାଳ ପାଣ୍ଡୁଲିପିର ଆଉ ସନ୍ଧାନ ମିଳି ନାହିଁ ।

## ଶିବପାତ୍ରଙ୍କଦ୍ୱାରା କୋକଲଗଡ଼ ଅଧିକାର

ଗଜପତି ପ୍ରତାପରୁଦ୍ରଦେବଙ୍କ ୧୫ଅଙ୍କରେ କଟକ ନଗର ଡଗରପଡ଼ାରେ ରାମପାତ୍ର ନାମକ ଜଣେ କ୍ଷମତାଶାଳୀ ଖଣ୍ଡାୟତ ସପରିବାର ବାସକରୁଥିଲେ । ସେ ଜଣେ ନିରୀହ ବ୍ରାହ୍ମଣର ସ୍ତ୍ରୀ ପ୍ରତି ବଳାତ୍କାର କରିବା ଅପରାଧରେ ମହାରାଜା ପ୍ରତାପରୁଦ୍ରଦେବ ତାଙ୍କୁ ତତ୍‌କ୍ଷଣାତ୍ ଫାଶିଦଣ୍ଡଦେଲେ । ରାମ ପାତ୍ରଙ୍କର ଦୁଇ ପୁଅ ଶିବ ପାତ୍ର ଓ ସମାଇ ପାତ୍ର ରାଜାଙ୍କ କୋପଦୃଷ୍ଟି ଭୟରେ କଟକରୁ ଲୁଚି ପଳାଇଯାଇ ପୁରୀରେ ଚବିଶକୁଦର ପରିଚ୍ଛା ସାଗରେଶ୍ୱର ପାତ୍ରଙ୍କ ଆଶ୍ରୟ ନେଲେ । କିଛିଦିନପରେ ସାଗରେଶ୍ୱର ପାତ୍ର କୋକଲ ନିକଟ ବ୍ରହ୍ମପୁରର ଖଣ୍ଡାଏତ ଗୋବିନ୍ଦ ମାଝିଙ୍କ ଝିଅ ସହିତ ଶିବ ପାତ୍ରଙ୍କ ବିବାହ କରାଇଦେଲେ । କିନ୍ତୁ ଶିବପାତ୍ର କିଛିଦିନପରେ ଶ୍ୱଶୁର ଗୋବିନ୍ଦ ମାଝିଙ୍କୁ ହତ୍ୟାକରି ନିଜେ ବ୍ରହ୍ମପୁରର ନାୟକ ହୋଇଗଲେ । ଗୋବିନ୍ଦ ମାଝିଙ୍କର ପୁଅ ନ ଥିବାରୁ ପୁତୁରାମାନେ ଶିବ ପାତ୍ର ବିରୋଧରେ କୋକଲଗଡ଼ ନାୟକ ଶାମ ମାଝିଙ୍କ ପାଖେ ଗୁହାରିକଲେ । ଶାମ ମାଝି କୋକଲ ନଈଘାଟର ମାଲିକଥିଲେ ଏବଂ ନିଜ ତରଫରୁ ଜଣେ କଣ୍ଡରାକୁ ନଈଘାଟରେ ଘାଟିଆ କରି ରଖିଥିଲେ । କୌଣସି ସମୟରେ ଘାଟିଆ କଣ୍ଡରା ଶିବ ପାତ୍ରକୁ ଘାଟ ପାରିକରାଉଥିବାବେଳେ ମଉକା ଉଣ୍ଡି ମାରିଦେଲେ ଘାଟ ମାସୁଲରୁ ଅଧେ ଦେବେ ବୋଲି ଶାମ ମାଝି କହିବାରୁ କଣ୍ଡରା ଓ ତା ପୁଅ ଦୁହେଁ ପିପେଇ ଅମାସିଆ ରାତିରେ ଶିବ ପାତ୍ରକୁ ଘାଟରେ ମାରିଦେବାପାଇଁ ଉଦ୍ୟତ ହେବା ଜାଣି ଶିବ ପାତ୍ର କଣ୍ଡରା ବାପପୁଅ ଦୁହିଁଙ୍କୁ ସେଇ ଘାଟରେ ହତ୍ୟାକଲେ ଏବଂ ଶାମ ମାଝିଙ୍କୁ କୋକଲଗଡ଼ରୁ ତଡ଼ିଦେଇ ନିଜେ ଦଶ ବର୍ଷ ପର୍ଯ୍ୟନ୍ତ କୋକଲ ଓ ବ୍ରହ୍ମପୁରର ନାୟକ ହୋଇ ରହିଲେ ।[୧୫୦]

ଶିବ ପାତ୍ରଙ୍କ ମୃତ୍ୟୁ ପରେ ତାଙ୍କ ପୁଅ ଲକ୍ଷ୍ମୀଧର ପାତ୍ର ବ୍ରହ୍ମପୁର ଓ କୋକଲର ଗଡ଼ନାୟକ ହୋଇ ରହିଲେ । ସେ ନୀଳକଣ୍ଠେଶ୍ୱରଙ୍କ ସ୍ୱପ୍ନାଦେଶମତେ ଶିବଲିଙ୍ଗ ପ୍ରତିଷ୍ଠା କରାଇଲେ ଓ ଗୋଟିଏ ପୋଖରୀ ଖୋଳାଇଲେ । ଭୋଇବଂଶର ୧ମ ରାଜା ଗୋବିନ୍ଦ

---

୧୫୦- ୧୬/୩



କୋକଲଗଡ଼ର ନୀଳକଣ୍ଠେଶ୍ୱର ମନ୍ଦିର

ଦେବଙ୍କ ୧୩ଅଙ୍କରେ ଚବିଶକୁଦ ପରିଛା ଅଲାରଠାରେ ଲକ୍ଷ୍ମୀଧର ପାତ୍ରଙ୍କୁ ହତ୍ୟାକଲେ । ଲକ୍ଷ୍ମୀଧର ପାତ୍ରଙ୍କର ଦାନ ପାତ୍ର ଓ ବାଘୁ ପାତ୍ର ନାମରେ ଦୁଇ ପୁଅ ଥିଲେ । ଦାନପାତ୍ର କୋକଲର ଗଡ଼ନାୟକ ହେଲେ[୧୫୧] । ତେଲଙ୍ଗା ମୁକୁନ୍ଦଦେବଙ୍କ ୧୧ଅଙ୍କ ୧୫୬୮ ଖ୍ରୀଷ୍ଟାବ୍ଦରେ ବଙ୍ଗର ନବାବ ସୁଲେମାନ କରରାନୀ ଓ ତାଙ୍କ ସେନାପତି କଳାପାହାଡ଼ ଓଡ଼ିଶା ଆକ୍ରମଣ କଲେ । ଶିଖି ମହାପାତ୍ର ଓ ମନାଇ ମହାପାତ୍ର ନାମରେ ଦୁଇ ଜଣ ଭେଦୁଆଙ୍କୁ ପଠାଇ ମୁକୁନ୍ଦଦେବଙ୍କ କରଦରାଜ୍ୟ ସାରଙ୍ଗଗଡ଼ର ରାଜା ରାମଚନ୍ଦ୍ର ଭଞ୍ଜ କଳାପାହାଡ଼ ସହ ସହଯୋଗପୂର୍ବକ ଗୋହିରାଟିକିରିଠାରେ ବିଶ୍ୱାସଘାତକତା କରି ମୁକୁନ୍ଦଦେବଙ୍କୁ ହତ୍ୟା କରିବା ପରେ ନିଜେ କଳାପାହାଡ଼ର ସୈନ୍ୟ ଦ୍ୱାରା ନିହତହେଲେ । ତା'ପରେ କଳାପାହାଡ଼ କଟକଠାରୁ ପୁରୀ ପର୍ଯ୍ୟନ୍ତ ହିନ୍ଦୁ ମନ୍ଦିରଗୁଡ଼ିକ ଉପରେ ଆକ୍ରମଣ କରି ବହୁ ଧନରତ୍ନ ଲୁଟିନେବା ସହିତ ହିନ୍ଦୁ ପ୍ରତିମାଗୁଡ଼ିକ ଭାଙ୍ଗି ନଷ୍ଟକରିବାରେ ଲାଗିଲା । ଏ ଖବର ପାଇ ଶ୍ରୀ ଜଗନ୍ନାଥଙ୍କ ସେବକମାନେ ମନ୍ଦିରରୁ ଜଗନ୍ନାଥଙ୍କୁ ସ୍ଥାନାନ୍ତରିତ କରିନେଇ ଚିଲିକାମୁହାଣ ପାର କରାଇ ଛପଲି (ଖେପଲି) ହାତୀପଡ଼ାରେ ଲୁଚାଇ ରଖିଥିଲେ ।

୧୫୧- ୧୬/୫

## ଧର୍ମଦ୍ରୋହୀ ଦେଶଦ୍ରୋହୀ ଦାନ ପାତ୍ର

କିନ୍ତୁ କୋକଲଗଡ଼ ନାୟକ ଦାନ ପାତ୍ର କଳାପାହାଡ଼କୁ ଏ ଖବର ଦେବା ସଙ୍ଗେ ସଙ୍ଗେ ପାହାନ୍ତାସମୟରେ ଚିଲିକା ମୁହାଣ ପାରକରାଇ ଜଗନ୍ନାଥଙ୍କୁ ଲୁଚାଇ ରଖାଯାଇଥିବା ସ୍ଥାନର ସନ୍ଧାନ ଦେଇଦେବାରୁ କଳାପାହାଡ଼ ଦାନ ପାତ୍ରକୁ 'ପାହାନ୍ତାସିଂହ' ଉପାଧି ସହ ଚବିଶକୁଦ ଓ ରାହାଙ୍ଗ ଅଞ୍ଚଳର ଜାଗିରିଦାର କରିଦେଲା ଏବଂ ଜଗନ୍ନାଥଙ୍କୁ ନେଇ ଗଙ୍ଗାକୂଳରେ ପୋଡ଼ି ଦରପୋଡ଼ା ଦାରୁଙ୍କୁ ଗଙ୍ଗାରେ ଫିଙ୍ଗିଦେଲା । ବଡ଼ ପଦ୍ମନାଭ ପଟ୍ଟନାୟକ ବୈରାଗୀ ବେଶରେ (ମାଦଳା ପାଞ୍ଜିମତେ ବିଶର ମହାନ୍ତି ବୈଷ୍ଣବ) ସେଠାରୁ ଶ୍ରୀ ଜଗନ୍ନାଥଙ୍କ ବ୍ରହ୍ମଙ୍କୁ ମୃଦଙ୍ଗ ଭିତରେ ପୂରାଇ ଲୁଚାଇ ଆଣି କୁଜଙ୍ଗଗଡ଼ରେ ରଖିଥିଲେ । ଖୋର୍ଦ୍ଧା ଭୋଇବଂଶର ୧ମ ରାଜା ରାମଚନ୍ଦ୍ରଦେବ ବଡ଼ ପଦ୍ମନାଭ ପଟ୍ଟନାୟକଙ୍କଦ୍ୱାରା କୁଜଙ୍ଗରୁ ବ୍ରହ୍ମ ଅଣାଇ ଜଗନ୍ନାଥଙ୍କ ନବକଳେବର କରାଇ ଶ୍ରୀମନ୍ଦିର ରତ୍ନସିଂହାସନ ଉପରେ ତିନିଠାକୁରଙ୍କୁ ପୁନଃପ୍ରତିଷ୍ଠିତ କରାଇବା ପରେ କୋକଲଗଡ଼ ନାୟକ ଦାନ ପାତ୍ର (ପାହାନ୍ତାସିଂହ)କୁ ଜଗନ୍ନାଥଙ୍କପ୍ରତି ତାର ଅପକର୍ମ ଓ ବିଶ୍ୱାସଘାତକତାପାଇଁ ମୃତ୍ୟୁଦଣ୍ଡଦେଲେ ।[୧୫୨]

## ଜାତୀୟବୀର ବାଘୁ ପାତ୍ର

ଖୋର୍ଦ୍ଧାରାଜ୍ୟ ପ୍ରତିଷ୍ଠାରେ ରାମଚନ୍ଦ୍ରଦେବଙ୍କୁ ଦାନ ପାତ୍ରର ସାନ ଭାଇ ବାଘୁ ପାତ୍ର, ଘୋରଡ଼ିଆର ଝାଡୁ ପରିଡ଼ା ଏବଂ ମଳିପଡ଼ାଗଡ଼ର ସରଣି ପାତ୍ର ବିଶେଷ ସହାୟତା କରିଥିବାରୁ ଗଜପତି ରାମଚନ୍ଦ୍ରଦେବ ବାଘୁ ପାତ୍ରକୁ ବାହୁବଳେନ୍ଦ୍ର, ଝାଡୁ ପରିଡ଼ାକୁ ମଙ୍ଗରାଜ ଓ ସରଣି ପାତ୍ରକୁ ହରିଚନ୍ଦନ ଉପାଧି ଦେଲେ । କୋକଲଗଡ଼ର ନିହତ ଦାନ ପାତ୍ରଙ୍କ ବିଧବା ପତ୍ନୀଙ୍କର ଗୋପୀନାଥ ନାମରେ ପୁଅଟିଏ ଥିଲା । ମଳିପଡ଼ା ଗଡ଼ନାୟକ ସରଣି ହରିଚନ୍ଦନ ଦାନ ପାତ୍ରଙ୍କ ବିଧବା ପତ୍ନୀ ସାକରା ସାନ୍ତାଣୀଙ୍କୁ ନେଇ ରଖିବା ପରେ ତାଙ୍କର ଜୟସିଂହ (ଶ୍ରୀଚନ୍ଦନ) ଓ ତଲାଇ (ମହାରଥୀ) ନାମରେ ଆଉ ଦୁଇଟି ପୁଅ ହେଲେ । ବାଘୁ ବାହୁବଳେନ୍ଦ୍ର କୋକଲଗଡ଼ର ନାୟକ ହୋଇ ରାଜାନୁଗ୍ରହହେତୁ ବହୁ ସମ୍ପତ୍ତିର ଅଧିକାରୀ ହେଲେ[୧୫୩] ।

## ଗୋପୀନାଥ ରାୟପିତାମଙ୍କଦ୍ୱାରା ଅନ୍ଧାରୀଗଡ଼ ପ୍ରତିଷ୍ଠା

କିଛି ଦିନ ପରେ ଗଜପତି ରାମଚନ୍ଦ୍ରଦେବଙ୍କ ସହ ସରଣି ହରିଚନ୍ଦନଙ୍କର ମନାନ୍ତରରୁ ସଂଘର୍ଷର ସୂତ୍ରପାତ ହେଲା । ଦିନେ ଏକ ସଂଘର୍ଷ କ୍ଷେତ୍ରରେ ଗୋପୀନାଥକୁ ଦେଖି ରାମଚନ୍ଦ୍ରଦେବ ସେ ସରଣି ହରିଚନ୍ଦନଙ୍କ ପୁଅ ହୋଇ ନ ଥିବାରୁ ତାକୁ କିଛି ଅପମାନସୂଚକ କଥା କହିବା ହେତୁ ସେ ସଂଘର୍ଷ ସ୍ଥାନ ଛାଡ଼ି ଚାଲିଆସିଥିଲା । ତେଣୁ ସରଣି ହରିଚନ୍ଦନ କ୍ରୋଧାନ୍ୱିତ ହୋଇ ଗୋପୀନାଥକୁ ଘରୁ ତଡ଼ିଦେଲେ । ଗୋପୀନାଥ ଯାଇ

---

୧୫୨- ୧୬/୮ ୧୫୩- ୧୬/୯

ଚିଲିକା କୂଳରେ ଦେପୁର - କାଙ୍କପୁରରେ ରହି ମାଗିଯାଚି ଚଳୁଥାଏ । କୋକଳଗଡ଼ ନାୟକ ବାଘୁ ବାହୁବଳେନ୍ଦ୍ର ଚଉଦ ବର୍ଷ ନାୟକପଣ କରି ମରିଯିବାରୁ ତାଙ୍କ ପୁଅ ଅଚ୍ୟୁତ ବାହୁବଳେନ୍ଦ୍ର କୋକଳ ଓ ବ୍ରହ୍ମପୁର ଗଡ଼ର ନାୟକ ହେଲେ । ସରଣି ହରିଚନ୍ଦନଙ୍କ ମୃତ୍ୟୁ ପରେ ମୋଗଲ ସୁବାଦାର ମକରମଖାଁ ପୁରୁଷୋତ୍ତମ ଦେବଙ୍କ ୨୨ଅଙ୍କ ୧୬୧୬ରେ ଖୋର୍ଦ୍ଧା ଆକ୍ରମଣକଲେ । ଏତିକିବେଳେ ଉତ୍ତରେଶ୍ୱର ଜମିଦାର ଗୋପିନାଥ ପାହାନ୍ତାସିଂହଙ୍କୁ କାଙ୍କପୁରରୁ ଡାକିଆଣି ସେ ଜଣେ ଜମିଦାରଙ୍କ ପୁଅ କହି ମୋଗଲ ସୁବାଦାରଙ୍କ ସହ ଭେଟ କରାଇଦେବାରୁ ସୁବାଦାର ମକରମ୍‌ଖାଁ ଗୋପୀନାଥଙ୍କୁ 'ରାୟପିତାମ୍' ଉପାଧି ଦେଇ ଚବିଶକୁଦ ଦଣ୍ଡପାଟର ଜମିଦାର କରିଦେଲେ । ଗୋପୀନାଥ ରାୟପିତାମ୍ କୋକଳଗଡ଼ ସମେତ ଚବିଶକୁଦର ଜମିଦାରଭାବେ ଅତ୍ୟନ୍ତ କ୍ଷମତାଶାଳୀ ହୋଇ ଚିଲିକା ଓ ସମୁଦ୍ର ମଧ୍ୟବର୍ତ୍ତୀ ଗୁଣ୍ଡୁରି ପଦାଠାରେ ଅନ୍ଧାରୀଗଡ଼ ପ୍ରତିଷ୍ଠାକଲେ ।[୧୫୪]

ଗୋପୀନାଥ ରାୟପିତାମ୍‌ଙ୍କର ଈଶ୍ୱର ସାମନ୍ତସିଂହାର ଏବଂ ଧରମୁ ପାହାନ୍ତାସିଂହ ନାମରେ ଦୁଇ ପୁଅ ଥିଲେ । ଗୋପୀନାଥ ବଞ୍ଚି ଥାଉ ଥାଉ ଈଶ୍ୱରଙ୍କୁ ଅନ୍ଧାରୀଗଡ଼ରେ ଏବଂ ଧରମୁଙ୍କୁ କୋକଳଗଡ଼ରେ ରଖାଇଥିଲେ । ଧରମୁଙ୍କର ଏକମାତ୍ର ପୁଅ କୃଷ୍ଣ ବାହୁବଳେନ୍ଦ୍ରକୁ ଗୋପୀନାଥ ରାୟପିତାମ୍ କୋକଳଗଡ଼ର ନାୟକ ଶାଢ଼ି ଦେବାରୁ ଦଳଲୋକେ ବିରୋଧକରି ଧରମୁ ପାହାନ୍ତାସିଂହଙ୍କୁ କୋକଳଗଡ଼ର ନାୟକ କଲେ । ଈଶ୍ୱର ସାମନ୍ତସିଂହାରଙ୍କର କାର୍ତ୍ତିକେଶ୍ୱର, ଗୌରବିଭାଡ଼, ଚନ୍ଦ୍ରଶେଖର, ଜୟଦେବ ଚମ୍ପତି ଓ ଜଗନ୍ନାଥ ନାମରେ ପାଞ୍ଚ ପୁଅ ଥିଲେ । ସେମାନଙ୍କ ମଧ୍ୟରେ ଗୌରବିଭାଡ଼ ଅତ୍ୟନ୍ତ ଉଗ୍ର ପ୍ରକୃତିର ଥିଲା ଏବଂ ଖୁଡ଼ୁତା ଧରମୁଙ୍କ ସହ ସର୍ବଦା ସଂଘର୍ଷ କରୁଥିଲା । ଦିନେ ସଂଘର୍ଷରେ ଧରମୁ ପାହାନ୍ତାସିଂହ ନିଜର ଦୁଇ ପୁତୁରା କାର୍ତ୍ତିକେଶ୍ୱର ଓ ଗୌରବିଭାଡ଼ଙ୍କୁ ହତ୍ୟା କରିବାରୁ ଈଶ୍ୱର ସାମନ୍ତସିଂହାର ଅନ୍ଧାରୀଗଡ଼ରୁ ପଳାଇଯାଇ ଭୁବନେଶ୍ୱରରେ ଘରକରି ରହିଲେ ।[୧୫୫]

ନରସିଂହ ଦେବଙ୍କ ରାଜତ୍ୱରେ ୧୬୨୨ ଖ୍ରୀଷ୍ଟାବ୍ଦରେ ସୁବାଦାର ଅହମ୍ମଦ ବେଗ୍ ଖୋର୍ଦ୍ଧା ଆକ୍ରମଣ କରିବା ଆଗରୁ ସେବକମାନେ ଜଗନ୍ନାଥଙ୍କୁ ମନ୍ଦିରରୁ ସ୍ଥାନାନ୍ତରିତ କରିନେଇଥିଲେ । ୧୬୨୩ରେ ଜାହାଙ୍ଗିରଙ୍କ ବିଦ୍ରୋହୀ ପୁଅ ଯୁବରାଜ ସାହାଜାହାନ ବାଣପୁର ସୀମା ଛତ୍ରଗଡ଼ ଘାଟି ଡେଇଁ ଓଡ଼ିଶାରେ ସୈନ୍ୟଚାଳନା କରିବାରୁ ଅହମ୍ମଦବେଗ୍ ଓଡ଼ିଶା ଛାଡ଼ି ବର୍ଦ୍ଧମାନ ପଳାଇଲା । ନରସିଂହ ଦେବଙ୍କର ସାହାଜାହାନଙ୍କ ସହିତ ସୁସମ୍ପର୍କ ସ୍ଥାପିତ ହେବାରୁ ଜଗନ୍ନାଥଙ୍କୁ ପୁଣି ଆଣି ମନ୍ଦିରରେ ପ୍ରତିଷ୍ଠା କରାଇବା ସମ୍ଭବପର ହୋଇଥିଲା । ଅନ୍ଧାରୀ ଓ କୋକଳଗଡ଼ର କ୍ଷମତାଶାଳୀ ଗଡ଼ନାୟକ ଧରମୁରାୟ-ପିତାମ୍ ବଡ଼ଦେଉଳରୁ ଅହମ୍ମଦ ବେଗ୍‌ଙ୍କ ମୋଗଲ ଅକ୍ରମଣକାରୀମାନଙ୍କୁ ତଡ଼ି ଜଗନ୍ନାଥଙ୍କୁ ମନ୍ଦିରରେ ପୁନଃପ୍ରତିଷ୍ଠା କରିବାରେ ବିଶେଷ ସହାୟତା କରିଥିବା ଚକଡ଼ାପୋଥିରୁ ଜଣାଯାଏ ।[୧୫୬]

---

୧୫୪- ୧୬/୧୨ ୧୫୫- ୧୬/୧୦ ୧୫୬- ୧୬/୧୧

ଅହମ୍ମଦ ବେଗ୍‌ଙ୍କ ପରେ ବକର ଖାଁ ୧୬୨୮ରୁ ୧୬୩୨ ପର୍ଯ୍ୟନ୍ତ ଓଡ଼ିଶାର ସୁବାଦାରହେଲେ । ତାଙ୍କରି ସମୟରେ କୋକଲ ଓ ଅନ୍ଧାରୀର ଗଡ଼ନାୟକ ଧରମୁ ରାୟପିତାମ୍ ଅତ୍ୟନ୍ତ ଧନଶାଳୀ ଓ ଗର୍ବଶୀଳ ହୋଇ ନିଜକୁ ନିଜେ ସମସ୍ତ ଚବିଶକୁଦ 'ବିଶି'ର ଜମିଦାର ବୋଲାଇ ଖୋର୍ଦ୍ଧାର ରାଜା କିମ୍ବା କଟକ ସୁବାଦାରଙ୍କୁ ଖାତିର ନ କରି କର ଆଦାୟକରି ବିଶିର ପେସ୍‌କିସ୍ ଦେଲେ । ବଡ଼ଦେଉଳରୁ ମୋଗଲଙ୍କୁ ତଡ଼ିଦେଇ ଶ୍ରୀଜଗନ୍ନାଥଙ୍କ ଦର୍ଶନ ବ୍ୟବସ୍ଥା କଲେ । ସେତେବେଳେ ରାଜାଙ୍କର ପାତ୍ର ଥିବା କହ୍ନାଇ ବିଦ୍ୟାଧର ମୋଗଲ ସୁବାଦାର ବକରଖାଁଙ୍କ ସହିତ ମଧ ସୁସମ୍ପର୍କ ରଖିଥିଲେ । ସେ ବକର ଖାଁଙ୍କ ତରଫରୁ ଧରମୁ ରାୟପିତାମ୍‌ଙ୍କ ପାଖକୁ ଲେଖା ପଠାଇ କୈଫିୟତ୍ ମଗାଇଲେ- ''ବିଶିରେ ତୁ କାହିଁକି ଅନ୍ୟାୟକଲୁ ?'' କିନ୍ତୁ ଧରମୁ ସେ ଲେଖାକୁ ନ ମାନି ଫେରାଇଦେଲେ । ତେଣୁ କହ୍ନାଇ ବିଦ୍ୟାଧର ବକର ଖାଁଙ୍କ ପୁଅ ସହିତ ସୈନ୍ୟ ଧରି ଅନ୍ଧାରୀ ଅଭିମୁଖେ ଅଭିଯାନ କରି ଯାଇ ଅଲାରଠାରେ ଛାଉଣି ପକାଇଲେ । ଏ ଖବର ପାଇ ଧରମୁ ରାୟପିତାମ୍ ନିଜକୁ ଅନ୍ଧାରୀର ଜମିଦାର ବୋଲି ପରିଚୟ ଦେଇ ଯାଇ ଅଲାରଠାରେ ସୁବାଦାର ବକରଖାଁଙ୍କ ପୁଅ ଓ କହ୍ନାଇ ବିଦ୍ୟାଧରଙ୍କୁ ଭେଟିବାମାତ୍ରେ ବନ୍ଦିହେଲେ । ସେ ଖବର ପାଇ ତାଙ୍କ ପରିବାର ଅନ୍ଧାରୀରୁ କୋକଲଗଡ଼କୁ ପଳାଇଲେ । କହ୍ନାଇ ବିଦ୍ୟାଧର ମୋଗଲ ସହାୟତାରେ ଅନ୍ଧାରୀ ଅଧିକାରକଲେ । କହ୍ନାଇ ବିଦ୍ୟାଧର ଚାରି ବର୍ଷ ଅନ୍ଧାରୀଗଡ଼ର ଦାୟିତ୍ୱରେ ରହିବା ପରେ ଗଡ଼କୁ ମୋଗଲଙ୍କ ଦାୟିତ୍ୱରେ ଛାଡ଼ିଦେଇ ମୋଗଲଙ୍କଠାରୁ 'ପୂର୍ବଦୁଆଇ' ନାମକ ମାହାଲକୁ ସେନାପତି ଜାଗିରଭାବେ ପାଇଥିବା ବିଷୟ ପୂର୍ବରୁ କୁହାଯାଇଛି ।

## ଜୟଦେବ ଚମ୍ପତିଦ୍ୱାରା ରୋଡ଼ଙ୍ଗଗଡ଼ ପ୍ରତିଷ୍ଠା

ଧରମୁ ରାୟପିତାମ୍ ଅନ୍ଧାରୀରୁ ଯାଇ କୋକଲଗଡ଼ରେ ରହିଲେ । ନରସିଂହଦେବଙ୍କ ୧୪ଅଙ୍କ ୧୬୩୨ଖ୍ରୀଷ୍ଟାବ୍ଦରେ ଧରମୁ ରାୟପିତାମ୍‌ଙ୍କ ମୃତ୍ୟୁ ପରେ ତାଙ୍କ ପୁଅ କୃଷ୍ଣ ବାହୁବଳେନ୍ଦ୍ର କୋକଲଗଡ଼ର ନାୟକ ହେଲେ । କିନ୍ତୁ ଖୋର୍ଦ୍ଧାର ରାଜା ନରସିଂହଦେବଙ୍କ ସହିତ କୋକଲଗଡ଼ର ନାୟକଙ୍କର ଉତ୍ତମ ସମ୍ପର୍କ ନ ଥିଲା । ଏ ପରିସ୍ଥିତିର ସୁଯୋଗ ନେଇ କୃଷ୍ଣ (ବାହୁବଳେନ୍ଦ୍ର) ରାୟପିତାମ୍‌ଙ୍କ ବଡ଼ବାପ-ପୁଅ-ଭାଇ (ଈଶ୍ୱର ସାମନ୍ତସିଂହାରଙ୍କ ଚତୁର୍ଥ ପୁତ୍ର) ଜୟଦେବ ଚମ୍ପତି ରାଜାଙ୍କ ଅନୁଗ୍ରହକ୍ରମେ ଅନ୍ଧାରୀଗଡ଼ ସୀମାର ଉତ୍ତରପୂର୍ବ ଦିଗକୁ ଅଳ୍ପ ଦୂରରେ ଭୋଣିପଡ଼ା ରୋଡ଼ଙ୍ଗୀ ନାମକ ସ୍ଥାନରେ ନରସିଂହଦେବଙ୍କ ୧୭ଅଙ୍କ ୧୬୩୪ ଖ୍ରୀଷ୍ଟାବ୍ଦରେ ଏକ ସ୍ୱତନ୍ତ୍ର ଗଡ଼ ନିର୍ମାଣକରି ରହିଲେ[୧୫୭] । କୋକଲଗଡ଼ ନାୟକଙ୍କ ଅଧୀନରେ 'ଆଳି' ନାମକ 'ଅକରାବିଶି' (ବିଶି

---

୧୫୭- ୧୬/୧୨

ମଧରେ କରମୁକ୍ତ) ମାହାଲଟିଏ ଥିଲା । ନରସିଂହ ଦେବ ତାଙ୍କ ୨୦ଅଙ୍କ (ଏହା ୧୯ କିମ୍ବା ୨୦ଅଙ୍କ, ୧୬୩୬ କିମ୍ବା ୧୬୩୭ଖ୍ରୀଷ୍ଟାବ୍ଦ ହେବ)ରେ ମୋଗଲ ସୁବାଦାର ମୁତାକ୍ବାଦ୍ ଖାଁ (ମିର୍ଜା ମାକି)ଙ୍କ ସହିତ ଆଲୋଚନା କରି କୋକଲଗଡ଼ ନାୟକ କୃଷ୍ଣ ରାୟପିତାମ୍ଙ୍କ ଠାରୁ ଅକରାବିଶି ମାହାଲ 'ଆଳି'କୁ ଛଡ଼ାଇନେଇ କୋଠବାଡ଼ଭୁକ୍ତ କରିଥିଲେ ଏବଂ ରାୟ ପିତାମ୍ଙ୍କ ଭାଇଭାଗ ଦିଆଇଲେ । ଉଲ୍ଲେଖଯୋଗ୍ୟ ଯେ ପୁରୁଷୋତ୍ତମ ଦେବ ଓ ନରସିଂହଦେବଙ୍କ ସମୟରେ ୧୬୦୯ରୁ ୧୬୩୦ ମାତ୍ର ୨୧ବର୍ଷ ମଧରେ ମୋଗଲ ସୁବାଦାର କେଶୋଦାସ ମାରୁ, କଲ୍ୟାଣ ମଲ୍ଲ, ମକରମ୍ ଖାଁ, ଅହମ୍ମଦ ବେଗ୍, ବକର ଖାଁ ଏବଂ ଯୁବରାଜ ସାହାଜାହାନଙ୍କଦ୍ୱାରା କ୍ରମାଗତଭାବେ ଆକ୍ରାନ୍ତହୋଇ ଶ୍ରୀଜଗନ୍ନାଥଙ୍କ ମନ୍ଦିର ସମେତ ଖୋର୍ଦ୍ଧା ରାଜ୍ୟ ନାହିଁ ନ ଥିବା ଅଶାନ୍ତି ଓ ଦୁର୍ଦ୍ଦଶା ଭୋଗିଥିଲା । କିନ୍ତୁ ୧୬୩୨ରୁ ୧୬୪୧ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାର ସୁବାଦାର ଥିବା ମୁତାକ୍ବାଦ୍ ଖାଁ ଖୋର୍ଦ୍ଧାରାଜ୍ୟ ଅଥବା ଶ୍ରୀ ଜଗନ୍ନାଥଙ୍କ ମନ୍ଦିରପ୍ରତି କୌଣସି ପ୍ରକାର ଅଶାନ୍ତିକୁ ପ୍ରଶ୍ରୟ ଦେଇ ନ ଥିଲେ । ତେଣୁ ପୂର୍ବରୁ ମୋଗଲ ଆକ୍ରମଣଜନିତ ଅଶାନ୍ତ ପରିସ୍ଥିତିରୁ ଫାଇଦା ଉଠାଇ ଅତ୍ୟନ୍ତ ଉଗ୍ର ଓ କ୍ଷମତାଶାଳୀ ହୋଇଉଠିଥିବା କୋକଲଗଡ଼ ନାୟକ ରାୟପିତାମ୍ଙ୍କୁ କିଛି ପରିମାଣରେ ନିୟନ୍ତ୍ରଣ କରିବାରେ ଚମ୍ପତିଙ୍କୁ ଏବଂ ନରସିଂହଦେବଙ୍କୁ ମୁତାକ୍ବାଦ୍ ଖାଁ ସମର୍ଥନକରିଥିଲେ ।

କିନ୍ତୁ ରାୟପିତାମ୍ ସେଥିରେ ଦବିଯିବା ପରିବର୍ତ୍ତେ ଅଧିକ ପ୍ରତିହିଂସାପରାୟଣ ହୋଇ ଭ୍ରାତୃବିବାଦର ଚରମ ପଦକ୍ଷେପପାଇଁ ସୁଯୋଗ ଅପେକ୍ଷାରେ ଥିଲେ ଏବଂ ନରସିଂହ ଦେବଙ୍କ ୨୫ ଅଙ୍କ ୧୬୪୧ ଖ୍ରୀଷ୍ଟାବ୍ଦରେ ମୁତାକ୍ବାଦ ଖାଁ ଓଡ଼ିଶା ସୁବାରୁ ବିଦାୟ ନେବା ମାତ୍ରେ ଚବିଶକୁଦ ପରିଛା ରାୟଗୁରୁଙ୍କ ଭାଇ ଅନନ୍ତ ମହାପାତ୍ରଙ୍କ ସହାୟତାରେ ଜୟଦେବ ଚମ୍ପତିଙ୍କ ମୁଣ୍ଡ କାଟିଦେଇ ତାଙ୍କ ପିଲା କୁଟୁମ୍ବଙ୍କୁ ଧରି କୋକଲଗଡ଼କୁ ନେଇଗଲେ ।[୧୫୮]

ରାୟପିତାମ୍ ଓ ଚମ୍ପତିଙ୍କ ପରିବାର ମଧରେ କୋକଲ ଏବଂ ଅନ୍ଧାରୀଗଡ଼ର ଭାଇଭାଗ ସ୍ୱତ୍ୱକୁ ନେଇ ସଂଘର୍ଷ ଲାଗିରହିଥିଲା । କିନ୍ତୁ ରୋଡ଼ଙ୍ଗ ଗଡ଼କୁ ସ୍ୱୟଂ ଜୟଦେବ ଚମ୍ପତି ପ୍ରତିଷ୍ଠା କରିଥିବା ହେତୁ ତହିଁରେ ରାୟପିତାମ୍ଙ୍କର କୌଣସି ସ୍ୱତ୍ୱ ନ ଥିଲା । ତେଣୁ ଚମ୍ପତିଙ୍କ ହତ୍ୟା ପରେ ତାଙ୍କ ସାନ ଭାଇ ଜଗନ୍ନାଥ ଶ୍ରୀଚନ୍ଦନ ଯାଇ ନରସିଂହଦେବ ମହାରାଜାଙ୍କ ପାଖେ ରୋଡ଼ଙ୍ଗଗଡ଼ ସମ୍ପର୍କରେ ନିଜର ସ୍ୱତ୍ୱ ଦାବିକଲେ । ନରସିଂହଦେବ ତାଙ୍କୁ ରୋଡ଼ଙ୍ଗଗଡ଼ର ନାୟକଭାବେ ଶାଢ଼ି ଦେଲେ । ଜଗନ୍ନାଥ ଶ୍ରୀଚନ୍ଦନ ସ୍ଥାନରେ ପୋଥିରେ ଲେଖାପ୍ରମାଦ ହେତୁ ଜୟଦେବ ଶ୍ରୀଚନ୍ଦନ ହୋଇଯାଇଛି[୧୫୯] । ଜଗନ୍ନାଥ ଶ୍ରୀଚନ୍ଦନ ପାଞ୍ଚ ବର୍ଷଯାଏଁ ରୋଡ଼ଙ୍ଗଗଡ଼ର ନାୟକ ହୋଇ ରହିଲେ ଏବଂ ରାଜାଙ୍କ ସହାୟତାରେ ବଡ଼ଭାଇଙ୍କ ପରିବାରଙ୍କୁ କୋକଲଗଡ଼ରୁ ମୁକୁଳାଇଆଣିଲେ ।

---

୧୫୮- ୧୬/୧୩  ୧୫୯- ୧୬/୧୪

କୃଷ୍ଣ ରାୟପିତାମ୍ଙ୍କର ଦଶ ପୁଅ ଥିଲେ । ସେମାନଙ୍କ ମଧ୍ୟରୁ କେବଳ ବଡ଼ ପୁଅର ନାମ ଜଗନ୍ନାଥ ବୋଲି ପୋଥିରୁ ପ୍ରମାଣ ମିଳୁଛି । ଅନ୍ୟ ପୁଅମାନଙ୍କର ନାମ ମିଳୁ ନାହିଁ, କିନ୍ତୁ କୋକଲଗଡ଼ ନାୟକ ରାୟପିତାମ୍ଙ୍କର ସେହି ପୁଅମାନଙ୍କୁ ଏବଂ ସେମାନଙ୍କ ପୁଅମାନଙ୍କୁ ନେଇ କ୍ରମେ ଏକ ବୃହତ୍ ପରିବାର ହୋଇ ଯାଇଥିବାର ଅନୁମାନ କରାଯାଏ । ସେମାନଙ୍କ ପାରିବାରିକ ଭ୍ରାତୃବିବାଦରେ ନରସିଂହଦେବ ସେମାନଙ୍କ ବିପକ୍ଷରେ ଥିବାରୁ ସେହିମାନଙ୍କ ମଧ୍ୟରୁ ଅନିରୁଦ୍ଧ ରାୟପିତାମ୍ ନାମକ କେହି ଜଣେ ମୋଗଲ ଫଉଜଦାର୍ ଫତେଖାଁ ସହିତ ଷଡ଼ଯନ୍ତ୍ର କରି ପୁରୀ ବାଲିସାହି ପୁରୁଣା ନଅର ମଧ୍ୟରେ ନରସିଂହଦେବଙ୍କୁ ତାଙ୍କ ୩୨ ଅଙ୍କ ୧୬୪୬ ଖ୍ରୀଷ୍ଟାବ୍ଦରେ ମରାଇଦେଲେ । କୋକଲଗଡ଼ ରାୟ ପିତାମ୍ ବଂଶର ଏହି ଅନିରୁଦ୍ଧ ରାୟପିତାମ୍ଙ୍କୁ ଲିପିକାର ପ୍ରମାଦ ହେତୁ ଅନିରୁଦ୍ଧ ରାୟ ପିତାମହ ବୋଲି ପାଞ୍ଜିରେ ଉଲ୍ଲେଖ କରାଯାଇଛି । ନରସିଂହ ଦେବଙ୍କ ହତ୍ୟା ପରେ ରାୟପିତାମ ପୁଣି ରୋଡ଼ଙ୍ଗ ନେଲେ ।

ନରସିଂହଦେବଙ୍କ ପରେ ତାଙ୍କର ସାନ ଭାଇ ଗୋକୁଳରାୟଙ୍କ ପୁଅ ଗଙ୍ଗାଧର ରାୟ ମାତ୍ର ଏକ ବର୍ଷପାଇଁ ରାଜାହୋଇଥିଲେ । ସେ ରାଜା ହେବା ମାତ୍ରେ ରାୟପିତାମ୍ଙ୍କୁ ରୋଡ଼ଙ୍ଗଗଡ଼ ଛାଡ଼ିଯିବାକୁ ନିର୍ଦ୍ଦେଶଦେଲେ । ରାୟପିତାମ୍ ରୋଡ଼ଙ୍ଗ ଛାଡ଼ି ଯାଇ ଅନ୍ଧାରୀରେ ରହିଲେ । ଗଙ୍ଗାଧରଦେବଙ୍କୁ ମରାଇ ନରସିଂହଦେବଙ୍କ ବଡ଼ଭାଇ ବଳଭଦ୍ରଦେବ ରାଜାହେବା ପରେ ନିଆମତ୍ ଖାଁଙ୍କ ପୁଅ ମିର୍ଜା ବୁଲାକିକି ଘେନି ଅନ୍ଧାରୀଗଡ଼ ଅଧିକାର କଲେ ବୋଲି ପୋଥିରେ ଲେଖାଅଛି ଏବଂ ତା'ପରେ ପରେ ବଳଭଦ୍ର ଦେବଙ୍କ ୩ଅଙ୍କ ଅର୍ଥାତ୍ ତାଙ୍କ ରାଜତ୍ୱର ପ୍ରଥମବର୍ଷ ୧୬୪୮ ଖ୍ରୀଷ୍ଟାବ୍ଦରେ ଅନ୍ଧାରୀଗଡ଼କୁ ମୋଗଲ ଅଧିକାର କଲେ ବୋଲି ମଧ୍ୟ ଲେଖାଅଛି[୧୬୦] । ତେଣୁ ଗୋଟିଏ ଘଟଣାକୁ ଦୁଇ ଥର ଲେଖାଯାଇ ପାରିଥାଏ, କିମ୍ବା ପ୍ରଥମ ଥର ଅନ୍ଧାରୀକୁ ମିର୍ଜାବୁଲାକିଙ୍କ ସହାୟତାରେ ରାଜା ବଳଭଦ୍ରଦେବ ଅଧିକାର କରିନେବା ପରେ ପରେ ମୋଗଲମାନେ ରାଜାଙ୍କ ଅଧିକାରରୁ ଅନ୍ଧାରୀକୁ ସମ୍ପୂର୍ଣ୍ଣଭାବେ ମୁକ୍ତ କରି ନିଜ ଅଧିକାରକୁ ନେଇଥିଲେ । ଏହା ଫଳରେ ଅନ୍ଧାରୀରୁ ରାୟପିତାମ ପଳାଇଗଲେ ଏବଂ ମୋଗଲମାନେ ତାଙ୍କର କେତେକ ପରିବାର ଲୋକଙ୍କୁ ବନ୍ଦିକଲେ ।

ସମଗ୍ର ଚବିଶକୁଦ ଦଣ୍ଡପାଟରେ ମୋଗଲ ଆଧିପତ୍ୟ ପ୍ରତିଷ୍ଠିତ ହେବା ଫଳରେ ଏତେଦିନ ପରେ ରାୟପିତାମ୍ ଉଭୟ ଅନ୍ଧାରୀ ଓ କୋକଲଗଡ଼ରୁ ତଡ଼ାଖାଇ ପଳାଇଯାଇ ମୂଳଝର ସୀମା ଉରୁମୁଖି (ଭୂଷଣପୁର ସନ୍ନିକଟ)ରେ ରହିଲେ । ମୋଗଲମାନେ ତାଙ୍କର ଯେଉଁ କୁଟୁମ୍ବକୁ ବନ୍ଦିକରିଥିଲେ ରାଜା ସେମାନଙ୍କୁ ମୁକୁଳାଇ ଆଣିଲେ । ମୋଗଲ ସେନାପତି ଫତେଖାଁଙ୍କ ଜ୍ୱାଇଁ ମିର୍ଜାଅଜିଜ୍ ଅନ୍ଧାରୀରେ ଏବଂ ସୁବା ବକ୍ସି ବାସୁଦେବ ବିଦ୍ୟାଧରଙ୍କ ମାମୁଁ ଭିକାରି ପଟ୍ଟନାୟକ କୋକଲଗଡ଼ରେ ରହିଲେ । କିନ୍ତୁ ଅଳ୍ପଦିନ ପରେ ରାୟପିତାମ୍ ପୁଣି ଉରୁମୁଖିରୁ ଆସି କୋକଲ ଅଧିକାରକଲେ । ଭିକାରି ପଟ୍ଟନାୟକ କୋକଲଗଡ଼ରୁ ପଳାଇଲେ ।

---

୧୬୦- ୧୬/୧୦

ଦଣ୍ଡପାଟ ପରିଛା ଅଲାର୍‌ରେ, ମୋଗଲ ଅନ୍ଧାରୀରେ ଜଗନ୍ନାଥ, ଶ୍ରୀଚନ୍ଦନ ରୋଡ଼ଙ୍ଗରେ ଏବଂ କୃଷ୍ଣ ରାୟପିତାମ୍ କୋକଲରେ ରହିଲେ । ଏହିପରିଭାବେ ଦଶ ବର୍ଷ କଟିଲା[୧୬୧] ।

ବଳଭଦ୍ରଦେବଙ୍କ ପରେ ତାଙ୍କ ନାବାଳକ ପୁଅ ମୁକୁନ୍ଦଦେବ(୧) ଖୋର୍ଦ୍ଧାର ରାଜା ହେଲେ । ତାଙ୍କ ରାଜତ୍ୱ ଆରମ୍ଭରୁ ଦଶ ମାସ ଯାଏଁ ଓଡ଼ିଶାରେ ମୋଗଲ ସୁବାଦାର ଥିଲେ ଇସ୍ତସାମ୍ ଖାଁ । ତାଙ୍କ ପରେ ସୁବାଦାର ହୋଇ ଆସିଲେ ଖାନ୍-ଇ-ଦୁରାନ୍ । କୋକଲର କୃଷ୍ଣ ରାୟପିତାମ୍ ମୁକୁନ୍ଦଦେବଙ୍କ ୩ଅଙ୍କ ୧୬୫୮ ଖ୍ରୀଷ୍ଟାବ୍ଦରେ ପୁଣି ଅନ୍ଧାରୀରୁ ମୋଗଲଙ୍କୁ ତଡ଼ି ଅନ୍ଧାରୀଗଡ଼ ଅଧିକାର କଲେ ଏବଂ ଅନ୍ଧାରୀ ଓ ମାଣିକପାଟଣାଠାରୁ ଆରମ୍ଭକରି ପୁରୁଷୋତ୍ତମକ୍ଷେତ୍ର ପର୍ଯ୍ୟନ୍ତ ସମସ୍ତ ଅଞ୍ଚଳରୁ କର ଆଦାୟ କଲେ । ସମଗ୍ର ରାଜ୍ୟରୁ ମୋଗଲଙ୍କୁ ତଡ଼ିବାପାଇଁ ଖଣ୍ଡାୟତ ସର୍ଦ୍ଦାରମାନେ ମେଳିବାନ୍ଧି ମୋଗଲଙ୍କ ବିରୋଧରେ ବିଦ୍ରୋହ କଲେ । ମୁକୁନ୍ଦଦେବଙ୍କ ପାତ୍ର ଭରତ ପଟ୍ଟନାୟକ ଓ ତାଙ୍କ ଭାଇ ଘନି ପଟ୍ଟନାୟକ ବିଦ୍ରୋହର ନେତୃତ୍ୱ ନେଲେ । ରାୟପିତାମ୍ ଅନ୍ଧାରୀର ଜମିଦାରଭାବେ ସେ ମେଳିରେ ପ୍ରମୁଖ ଅଂଶ ଗ୍ରହଣକଲେ, କିନ୍ତୁ ସୁବାଦାର ଖାନ୍-ଇ-ଦୁରାନ୍, ଖୋର୍ଦ୍ଧାର ରାଜା ଏହି ବିଦ୍ରୋହକୁ ସମର୍ଥନ କରୁଥିବା ଜାଣି, ଖୋର୍ଦ୍ଧାଗଡ଼ ଓ ଏହା ଆଖପାଖ ଗଡ଼ ଗୁଡ଼ିକୁ ସସୈନ୍ୟ ଅବରୋଧକରି ବିଦ୍ରୋହ ଦମନ କଲେ । ''ଓଡ଼ିଶାର ଦକ୍ଷିଣସୀମା ମାଲୁଦରେ ଥିବା ଫୌଜଦାର ଅନ୍ଧାରୀ ଜମିଦାର (ରାୟ) ପିତାମ୍ ଓ ମାଲୁଦର ଜମିଦାର କୁମାର ଗୁରୁଙ୍କ ବିଦ୍ରୋହ ଦମନ କରିଥିଲେ[୧୬୨] ।''

ଏହି ସମୟରେ ଚବିଶକୁଦର ତଳମାଳ ଅଞ୍ଚଳରେ ଜଣେ ବ୍ୟକ୍ତି ନିଜକୁ ଗଙ୍ଗାଧର ଦେବ ବୋଲି ଦାବିକରି ଖୋର୍ଦ୍ଧାର ରାଜା ହେବାପାଇଁ ବିଶେଷ ଉଦ୍ୟମ ଚଳାଇଥିଲେ ଏବଂ ପୁରୁଷୋତ୍ତମକ୍ଷେତ୍ରରେ ଖୋର୍ଦ୍ଧାର ରାଜାଭାବେ ୨୨ଦିନ ଅବସ୍ଥାନ କରିଥିଲେ । ଚକଡ଼ାପୋଥି ଅନୁଯାୟୀ ୮ ଅଙ୍କ ୧୬୬୨ ଖ୍ରୀଷ୍ଟାବ୍ଦରେ କୃଷ୍ଣ ରାୟପିତାମ୍, ମୁଡ଼ସରଗଡ଼ର ଛୋଟରାୟ, ଭରତ ପଟ୍ଟନାୟକଙ୍କ ଭାଇ ଘନି ପଟ୍ଟନାୟକ ବଳଭଦ୍ରପୁରର ଲୋକଙ୍କୁ ମେଳାଇ ସେହି ଛଦ୍ମବେଶୀ ମାହାଳିଆ ଗଙ୍ଗାଧରଦେବଙ୍କୁ ପୁରୀରୁ ତଡ଼ିତଡ଼ି ନେଇ ବାଟଗାଁଠାରେ ମାରିଦେଲେ । ଏହା ଫଳରେ ରାଜା ମୁକୁନ୍ଦଦେବଙ୍କ ଅନୁଗ୍ରହ ଲାଭକରି ରାୟପିତାମ୍ ବିଶେଷ ଲାଭବାନ୍ ହେଲେ[୧୬୩] ।

ଏହି ସମୟରେ ଦିଲ୍ଲୀର ମୋଗଲ ବାଦଶାହା ସାହାଜାହାନଙ୍କ ତିନି ପୁଅଙ୍କ ମଧ୍ୟରେ ଭୀଷଣ ଅନ୍ତର୍ଦ୍ୱନ୍ଦ୍ୱ ଓ ସଂଘର୍ଷ ଲାଗିବା ଫଳରେ ଓଡ଼ିଶାରେ ମଧ ଅଶାନ୍ତ ଓ ଅନିଶ୍ଚିତ ଅବସ୍ଥା ଦେଖାଦେଇଥିଲା । ସେହି କାରଣରୁ ଅଳ୍ପ ବୟସ୍କ ରାଜା ମୁକୁନ୍ଦଦେବ(୧) କ୍ଷମତାଶାଳୀ ଅନ୍ଧାରୀ ଜମିଦାର ରାୟପିତାମ୍‌ଙ୍କ ଦକ୍ଷତା ଉପରେ ବିଶେଷ ନିର୍ଭରଶୀଳ ହୋଇପଡ଼ିଥିଲେ । ସେହି ଗୋଳମାଳିଆ ସମୟରେ ଦୀର୍ଘ ସାତ ବର୍ଷ ଧରି ରାୟପିତାମ୍ ସମଗ୍ର ରାଜ୍ୟରେ ନିଜର କ୍ଷମତା ଜାହିର କରିଥିଲେ । ମୁକୁନ୍ଦଦେବଙ୍କ ୧୦ଅଙ୍କ ୧୬୬୪ ଖ୍ରୀଷ୍ଟାବ୍ଦରେ ଅନ୍ଧାରୀଗଡ଼ରେ

---

୧୬୧- ୧୬/୧୪ ୧୬୨- ୧୬/୯୪ ୧୬୩- ୧୬/୧୪

କୃଷ୍ଣ ରାୟପିତାମ୍ଙ୍କର ମୃତ୍ୟୁ ଘଟିଲା । ତାଙ୍କର ଜାତିଆ ଦଶ ପୁଅ ଥିଲେ ବୋଲି ଆଗରୁ କୁହାଯାଇଛି । ସେହି ଦଶ ପୁଅଙ୍କ ମଧ୍ୟରେ ମୂଳଝର ମଙ୍ଗରାଜଙ୍କ ୩ ନାତି, ମୋଟରୀଗଡ଼ ଶଙ୍କର ବସନ୍ତରାୟଙ୍କ ତିନି ନାତି ଏବଂ ପୁରୀ ନିକଟ ଜମାରସୁଆଁ ଶ୍ରୀଚନ୍ଦନଙ୍କର ଦୁଇ ନାତି ଅନ୍ତର୍ଭୁକ୍ତ । ଏଥିରୁ ଜଣାଯାଏ ଯେ କୃଷ୍ଣ ବାହୁବଳେନ୍ଦ୍ର ସେହି ତିନି ଜଣ ବିଶିଷ୍ଟ ଖଣ୍ଡାୟତଙ୍କ ଝିଅମାନଙ୍କୁ ବିବାହକରିଥିଲେ ଏବଂ ସେହି ତିନି ଜଣ 'ଜାତିଆ' ସ୍ତ୍ରୀଙ୍କ ବ୍ୟତୀତ ସମ୍ଭବତଃ ତାଙ୍କର ଆଉ କେତେଜଣ ବିଜାତିଆ ସ୍ତ୍ରୀ ଓ ପୁଅଝିଅ ମଧ୍ୟ ଥିଲେ । କୃଷ୍ଣ ରାୟପିତାମ୍ଙ୍କ ମୃତ୍ୟୁ ପରେ ବଡ଼ ପୁଅ ଜଗନ୍ନାଥଙ୍କୁ ଲୋକେ ନାୟକପଣରେ ଶାଢ଼ି ଦେବାରୁ ଅନ୍ୟ ପୁଅମାନେ ଗୋଳକଲେ । ସେମାନଙ୍କ ପାରିବାରିକ ସଂଘର୍ଷର ସାମୟିକ ସମାଧାନ କରି ଖୋର୍ଦ୍ଧାରାଜାଙ୍କ ପାତ୍ର ବକ୍ସି ପୀତାମ୍ବର ବିଦ୍ୟାଧର ମହାପାତ୍ର କୃଷ୍ଣ ରାୟପିତାମ୍ଙ୍କ ବଡ଼ପୁଅ ଜଗନ୍ନାଥ ରାୟପିତାମ୍ଙ୍କୁ କୋକଲଗଡ଼ ଦେଇ ମୋଟରୀଆଡ଼ ପୁଅ ରଘୁ ବାହୁବଳେନ୍ଦ୍ରଙ୍କୁ 'ରାୟପିତାମ୍' ଉପାଧି ସହ ଅନ୍ଧାରୀଗଡ଼ ଦେଲେ । କୋକଲଠାରୁ ଅନ୍ଧାରୀ ଜମିଦାରୀ ବଡ଼ ଥିବାରୁ ଗଡ଼ର ବେବର୍ତ୍ତା, ଶିଠୀକରଣ ଓଗେରଙ୍କ ସହ ଅଧେ ଭାଇ ପୁଅଙ୍କ କୁଟୁମ୍ବ ଅନ୍ଧାରୀଗଡ଼ରେ ରୁନ୍ଧିହୋଇ ରହିଲେ । ତେଣୁ ଭାଇମାନଙ୍କ ମଧ୍ୟରେ ସବୁବେଳେ ଝଗଡ଼ା ଓ ସଂଘର୍ଷ ଲାଗିରହିଲା । ମୁଡ଼ସିରା ଖଣ୍ଡାଏତ କୋକଲ ଓ ଅନ୍ଧାରୀଗଡ଼ ମଧ୍ୟରେ ମଧ୍ୟସ୍ଥତା କରିବା ବାହାନାରେ ଉଭୟପକ୍ଷ ମଧ୍ୟରେ ନାରଦଗିରି କରି ଯୁଦ୍ଧ ଘନଘଟାକୁ ଅଧିକ ବଢ଼ାଇବାରେ ଲାଗିଲେ । ଦୀର୍ଘ ତିନି ବର୍ଷକାଳ ଜଗନ୍ନାଥ ରାୟପିତାମ୍ ଓ ରଘୁନାଥ ରାୟପିତାମ୍ ନିଜ ନିଜର ଦଳବଳ ସହ ସଂଘର୍ଷରତ ରହିବା ଫଳରେ ଚବିଶକୁଦ ଓ ଅନ୍ଧାରୀ ଅଞ୍ଚଳରେ ଆତଙ୍କରାଜ ଦେଖାଦେଲା । ଦୁଇ ରାୟପିତାମ୍ ପ୍ରଜାମାନଙ୍କୁ ଯୁଦ୍ଧରେ ଲଗାଇଲେ, ସେମାନଙ୍କ ଘରୁ ଗାଈ, ବଳଦ, ଧାନ, ଚାଉଳ ଆଦି ନେଇ ଯୁଦ୍ଧ ଖର୍ଚ୍ଚରେ ଲଗାଇଲେ । ରଜାଙ୍କ କୋଠବାଡ଼ ପୁରୁଷୋତ୍ତମ କ୍ଷେତ୍ରରୁ ମଧ୍ୟ କର ଆଦାୟକଲେ । ଚବିଶକୁଦ ଦଣ୍ଡପାଟକୁ ଦୁଇ ରାୟପିତାମ୍ ଭାଗ ଭାଗ କରି ଆଠ ଗୋଟି ଗଡ଼ (କୋକଲ, ବିଜିପୁର, ଅନ୍ଧାରୀ, ବେଣ୍ଟପୁର, କଅଁଳପଦା, ରୋଡ଼ଙ୍ଗ, ଅମାରୀ ଓ କଣ୍ଟକିରି) ବାନ୍ଧିଲେ ଓ ସେହି ସବୁ ଗଡ଼ନାୟକଙ୍କଦ୍ୱାରା ପ୍ରଜାମାନଙ୍କୁ ଯୁଦ୍ଧରେ ଲଗାଇଲେ । ରାଜ୍ୟ ଶ୍ରୀହୀନ ଓ ଜନଶୂନ୍ୟ ହେଲା ।[୧୬୪]

ମୁକୁନ୍ଦଦେବଙ୍କ ୧୩ଅଙ୍କ ୧୬୬୭ ଖ୍ରୀଷ୍ଟାବ୍ଦରେ ବକ୍ସି ପୀତାମ୍ବର ବିଦ୍ୟାଧର ମହାପାତ୍ର ନବାବ ଖାଁ ଉଦ୍ଦୌଲାଙ୍କ ପୁଅ ଅମୀର ସାହେବଙ୍କୁ ଘେନି ଅନ୍ଧାରୀଗଡ଼ ବିରୋଧରେ ଅଭିଯାନ ଚଳାଇ ଶ୍ରୀଲୋକନାଥଙ୍କ ନିକଟ ବାଲି ଉପରେ ସେନାଛାଉଣି ପକାଇଥିବା ସମୟରେ ପୀତାମ୍ବର ବିଦ୍ୟାଧରଙ୍କ ଇଙ୍ଗିତରେ ଅନ୍ଧାରୀଗଡ଼ ନାୟକ ରଘୁନାଥ ରାୟପିତାମ ଯାଇ ଅମୀର ସାହେବଙ୍କୁ ଛାଉଣିରେ ଭେଟିଲେ । କିନ୍ତୁ ଅମୀର ସାହେବ ରଘୁନାଥ ରାୟପିତାମ୍ଙ୍କଠାରୁ ଅନ୍ଧାରୀ ଜମିଦାରୀ ଛଡ଼ାଇ ବକ୍ସି ପୀତାମ୍ବର ବିଦ୍ୟାଧର ମହାପାତ୍ରଙ୍କ

---

୧୬୪- ୧୬/୧୬

ମୂଳେ ରଖିଲେ । ବକ୍ସି ପୀତାମ୍ବର ବିଦ୍ୟାଧର ଅମୀରସାହେବଙ୍କ ଛାଉଣିରୁ ମୋଗଲ ଫୌଜ ଧରି ଯାଇ ଅନ୍ଧାରୀ ଅଧିକାର କଲେ ଏବଂ ସୟଦ୍ ସେରଖାଁଙ୍କୁ ଅନ୍ଧାରୀଗଡ଼ରେ ରଖିଲେ । କୋକଲ ଲୋକେ ରୋଡ଼ଙ୍ଗରୁ ପଳାଇଗଲେ । ବକ୍ସି ପୀତାମ୍ବର ବିଦ୍ୟାଧର ମହାପାତ୍ର ରୋଡ଼ଙ୍ଗରେ ଜଗନ୍ନାଥ ରାଉତରାୟଙ୍କୁ ନିଜର ପ୍ରତିନିଧିରୂପେ ରଖାଇଲେ । ଜଗନ୍ନାଥ ରାୟପିତାମ୍ କୋକଲରେ ଥିଲେ ଓ ରହିଲେ । କିନ୍ତୁ ଚବିଶକୁଦ ଦଣ୍ଡପାଟର ଜଣେ ପ୍ରଜା ଦାସବଳୀଆରସିଂହଙ୍କୁ ବକ୍ସି ପୀତାମ୍ବର ବିଦ୍ୟାଧର ମହାପାତ୍ର ବକ୍ସିବାଡ଼ ଜାଗିର ମାହାଲର ଦାୟିତ୍ୱ ବୁଝାସୁଝା କରିବାକୁ ନିଜର ପ୍ରତିନିଧି (ଗୁମାସ୍ତା)ଭାବେ ମୁତୟନକଲେ । ଦାସବଳୀୟାର ସିଂ ବକ୍ସିଙ୍କ ଜାଗିର ମାହାଲର ଉନ୍ନତି କଲେ ଛୋଟ ଛୋଟ ଗଡ଼ଗୁଡ଼ିକ ଖୋଲାଇଦେଇ ପରସ୍ପର ମଧ୍ୟରେ ଥିବା ପ୍ରଜାମାନଙ୍କର ବିଭାଜିତ ଗୋଷ୍ଠୀ ଭାଙ୍ଗିଦେଲେ, ସମସ୍ତଙ୍କ ମଧ୍ୟରେ ଏକତା ପ୍ରତିଷ୍ଠାକଲେ ଏବଂ ପତିତ ଅବସ୍ଥାରେ ପଡ଼ିରହିଥିବା ଜମିସବୁକୁ ଆବାଦ କରାଇ ଉଠିଆକଲେ । ଫଳରେ ମାତ୍ର ଛଅ ବର୍ଷ ମଧ୍ୟରେ ବକ୍ସିଙ୍କ ଜାଗିର ମାହାଲର ବହୁ ଉନ୍ନତି ସାଧିତ ହେଲା ।[୧୬୪]

ମୁକୁନ୍ଦଦେବଙ୍କ ୨୧ଅଙ୍କ ୧୬୭୩ ଖ୍ରୀଷ୍ଟାବ୍ଦରେ ରୋଡ଼ଙ୍ଗଗଡ଼ ଦାୟିତ୍ୱରେ ଥିବା ବକ୍ସିଙ୍କ ପ୍ରତିନିଧି ଜଗନ୍ନାଥ ରାଉତରାୟ ଅଚାନକ ଅନ୍ଧାରୀଗଡ଼ ଉପରେ ଚଢ଼ାଉକରି ଅନ୍ଧାରୀରେ ଥିବା ଫୌଜଦାର ସୟଦ୍ ସେରଖାଁଙ୍କୁ ତଡ଼ିଦେଲେ । ଏ ଖବର ପାଇ ନବାବ ସୁଫିଖାଁ ମୁକୁନ୍ଦଦେବଙ୍କ ସୈନ୍ୟ ସହିତ ନିଜ ସୈନ୍ୟଙ୍କୁ ଧରି ଅନ୍ଧାରୀ ଅଭିମୁଖେ ଅଭିଯାନ ଚଳାଇଲେ । ଜଗନ୍ନାଥ ରାଉତରା ଅନ୍ଧାରୀ ଛାଡ଼ି ପଳାଇଲେ । ନବାବ ସୁଫିଖାଁ ଅନ୍ଧାରୀରେ ଦିନେ ରହି ସେଠାରୁ ମାଣିକପାଟଣା ଗଲେ । ସେଠାରେ ଅନ୍ଧାରୀର ଦକ୍ଷିଣାଞ୍ଚଳ ଲୋକେ ନବାବଙ୍କୁ ସମସ୍ତ ବକେୟା ରାଜସ୍ୱ ଦେଇଦେଲେ । ତା'ପରେ ନବାବ ମାଣିକପାଟଣାଠାରୁ ଗଡ଼କୋକଲ ଅଭିମୁଖେ ଅଭିଯାନ ଚଳାଇଲେ । କୋକଲଗଡ଼ ନାୟକ ଜଗନ୍ନାଥ ରାୟ ପିତାମ୍ ଉଭୟ ନବାବଙ୍କୁ ଓ ରାଜାଙ୍କୁ ଭେଟି ନିଜ ମାହାଲର ବକେୟା ରାଜସ୍ୱ ଦେୟ ୧୩ ହଜାର ଟଙ୍କା ଦେବାପାଇଁ ଧାନ, ଚାଉଳ, ଘୋଡ଼ା, ଖଣ୍ଡା ଇତ୍ୟାଦି ବିକି ମଧ୍ୟ ସବୁ ବକେୟା ରାଜସ୍ୱ ଦେଇ ନ ପାରିବାରୁ ତାଙ୍କ ସାନଭାଇ ଭାଗୀରଥି ସାମନ୍ତସିଂହାର କହିଲେ ମୁଁ ଅଧେ ଟଙ୍କା ଦେବି, ମୋତେ ଅଧେ ମାହାଲର ମାଲିକାନା ଦିଅ । ଏଥିରେ ଜଗନ୍ନାଥ ରାୟପିତାମ୍ ରାଜିହୋଇଗଲେ । ରାଜା ତାଙ୍କୁ ଖଜୁରିଆଠାରେ ଗଡ଼ କରି ରହିବାକୁ ଅନୁମତି ଦେଲେ । ରାଜାଙ୍କ ଉପସ୍ଥିତିରେ କୋକଲଗଡ଼ ଲୋକେ ଗଡ଼ ଛାଡ଼ି ଖଜୁରିଆ ଗଲେ । ଭାଗୀରଥି ପାଞ୍ଚହଜାର ଟଙ୍କା ଦେବାପାଇଁ ଚୁକ୍ତିକରି କୋକଲଗଡ଼ର ନାୟକ ହେଲେ । କିନ୍ତୁ ଜଗନ୍ନାଥ ରାୟପିତାମ୍ ଖଜୁରିଆକୁ ନ ଯାଇ ପୁରୀରେ ରାଜାଙ୍କ ଆଶ୍ରୟରେ ରହିଲେ ।[୧୬୫]

---

୧୬୪- ୧୬/୧୮ ୧୬୫- ୧୬/୧୭

ଭାଗୀରଥି ପାଞ୍ଚହଜାର ଟଙ୍କା ଯୋଗାଡ଼ କରିବାପାଇଁ ବାଟ ଘାଟ ଚାରିଆଡ଼େ ଲୋକମାନଙ୍କ ଉପରେ ବଳାତ୍କାର ଚଳାଇଲେ, ଧାନ ଚାଉଳ ଲୁଟିନେଲେ, ଗୋରୁ, ମଇଁଷି ଛଡ଼ାଇନେଲେ । ଜରିପଡ଼ାର ଜଣେ ବଣିକ ପୁରୀକୁ ବିକିବାପାଇଁ ନେଉଥିବା ଧାନ ଚାଉଳ ବୋଝେଇ ଡଙ୍ଗା ସବୁକୁ ଚିଲିକାରେ ଲୁଟିକଲେ । ପାଞ୍ଚ ମାସ ମଧ୍ୟରେ ପରିସ୍ଥିତି ଏପରି ହେଲା ଯେ ପୁରୀରେ ଧାନ ଚାଉଳ ଦୁଷ୍ପ୍ରାପ୍ୟ ହେଲା । ଭାଗୀରଥି ସାମନ୍ତସିଂହାରଙ୍କ ଉତ୍ପାତଯୋଗୁଁ ଏପରି ପରିସ୍ଥିତି ସୃଷ୍ଟିହୋଇଥିବା ଜାଣି ମୁକୁନ୍ଦଦେବ(୧ମ) ହଳଧର ସାମନ୍ତସିଂହାର ହାତରେ ଛାମୁଚିଟାଉ ଦେଇ ୨୩ଅଙ୍କ ୧୬୭୫ଖ୍ରୀଷ୍ଟାବ୍ଦରେ ଭାଗୀରଥି ସାମନ୍ତସିଂହାରଙ୍କୁ ଡକାଇନେଲେ ଓ ତା'ପ୍ରତି ଉଚିତ ଦଣ୍ଡ ବିଧାନ କରି ପୁନଶ୍ଚ ଜଗନ୍ନାଥ ରାୟପିତାମଙ୍କୁ କୋକଲଗଡ଼କୁ ପଠାଇଦେଲେ । କିନ୍ତୁ ତାଙ୍କୁ ଆଉ ଅକରାବିଶି ''ଆଳି'' ମାହାଲ ଦେଲେ ନାହିଁ, କିମ୍ବା ଗଡ଼ର ନାୟକପଣ ମଧ୍ୟ ଦେଲେ ନାହିଁ । ମୁକୁନ୍ଦଦେବ କୋକଲ କିଲ୍ଲା ଜମିଦାରୀ ମାହାଲକୁ ନିଜର କୋଠବାଡ଼ ମାହାଲରେ ସାମିଲ କରିଦେଲେ ଏବଂ ରାୟପିତାମ୍‌ଙ୍କୁ କେବଳ ନିଜର ପ୍ରତିନିଧିଭାବେ ତହିଁର ବୁଝାସୁଝାକରିବାକୁ ନିଯୁକ୍ତକଲେ । ପାଠକମାନଙ୍କର ସ୍ମରଣଥିବ ଖୋର୍ଦ୍ଧାରେ ଭୋଇବଂଶ ପ୍ରତିଷ୍ଠାର ବହୁ ପୂର୍ବରୁ ସୂର୍ଯ୍ୟବଂଶର ଓଡ଼ିଶା ମହାରାଜା ଗଜପତି ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱକାଳରେ ମଧ୍ୟ କୋକଲ କିଲ୍ଲାର ମାଲିକାନା ଏହାର ଗଡ଼ାଧୀଶ ବା ନାୟକଙ୍କ ଉପରେ ନ୍ୟସ୍ତ ଥିଲା ଏବଂ ଏହି କିଲ୍ଲା ଅଧୀନରେ ବ୍ରହ୍ମପୁର ଆଦି ଆଉ କେତେକ ଗଡ଼ ମଧ୍ୟ ଥିଲା । ଶହ ଶହ ବର୍ଷର ବ୍ୟବଧାନ ପରେ ମୁକୁନ୍ଦଦେବ ଏହି ଗଡ଼ନାୟକଙ୍କ ମାଲିକାନା ସ୍ୱତ୍ୱ ଉଚ୍ଛେଦକରିଦେବା ଫଳରେ ଜଗନ୍ନାଥ ରାୟପିତାମ ଅସନ୍ତୁଷ୍ଟ ଓ ଅପମାନିତ ହୋଇ ମାମୁଁଘର ମୂଳଝର (ଉରୁମୁଖି ସଂଲଗ୍ନ)କୁ ପଳାଇ ଯିବା ବାଟରେ ଆଳିଗଡ଼ ନିକଟ (ଜମିରିବୋଦା)ଯାମଳଗୋଦାଠାରେ ପ୍ରାଣହରାଇଲେ । ତାଙ୍କର (ସାଆନ୍ତାଣୀ) ଦଳବେହେରାଣୀମାନେ ସ୍ୱାମୀଙ୍କ ଚିତାରେ ଝାସଦେଲେ । ମାତ୍ର ଚାରି ବର୍ଷର ଶିଶୁପୁତ୍ର ବାଉରି ମଙ୍ଗରାଜ ଯାଇ ମୂଳଝର ଅଜାଙ୍କ ଘରେ ଆଶ୍ରୟନେଲେ[୧୬୬] ।

କୋକଲଗଡ଼ ରାଜାଙ୍କର କୋଠ ହେବା ପରେ ରାଜାଙ୍କ ତରଫରୁ ଦାସ ବଳୀଆରସିଂହ ତାର ବୁଝାସୁଝା ଦାୟିତ୍ୱରେ ରହିଲେ । ଅନ୍ଧାରୀ ଜମିଦାରୀ ମୋଗଲ ସୁବାଦାରଙ୍କ ସିରସ୍ତାରେ ଏବଂ ରୋଡ଼ଙ୍ଗ ମାହାଲ ବକ୍ସିଙ୍କ ପ୍ରତିନିଧି ଜଗନ୍ନାଥ ରାଉତରାୟଙ୍କ କର୍ତ୍ତୃତ୍ୱରେ ରହିଲା ।

ସେହିଠାରୁ ରାୟପିତାମ ବଂଶର ଉଭୟ କୋକଲ ଓ ଅନ୍ଧାରୀ ଜମିଦାରୀ ଉପରେ କର୍ତ୍ତୃତ୍ୱ ଲୋପପାଇଲା କିନ୍ତୁ ବଂଶ ଲୋପପାଇଲା ନାହିଁ । କୃଷ୍ଣ ରାୟ ପିତାମ୍‌ଙ୍କର ଦଶ ପୁଅଙ୍କୁ ନେଇ ବିରାଟ ପରିବାର ଥିଲା ଏବଂ ସେମାନଙ୍କ ମଧ୍ୟରୁ ଅନେକେ ମୂଳଝର, ମୋଟରୀ ଓ ପୁରୀ ନିକଟ ଜମାରସୁଆଁରେ ଥିବା ନିଜ ନିଜର ମାମୁଁଘର ଅଥବା ଅଜାଘରମାନଙ୍କରେ

୧୬୬- ୧୬/୧୭ ୧୬୭- ୧୬/୧୮

ରହୁଥିଲେ । ଆଉ କେହି କେହି ମଧ ଅନ୍ୟ କୌଣସି କୌଣସି ସ୍ଥାନରେ ରହି ଖୁବ୍ କ୍ଷମତାଶାଳୀ ହୋଇଥିବେ, ଯାହାର ଇତିହାସ କେହି ଲେଖି ନାହାନ୍ତି, ତଥାପି ତିନୋଟି ଦୃଷ୍ଟାନ୍ତର ସୂଚନା ଇତିହାସରୁ ମିଳେ । ଜଗନ୍ନାଥ ରାୟ ପିତାମଙ୍କ ଚାରି ବର୍ଷର ପୁଅ ବାଉରି ମଙ୍ଗରାଜ - ଯିଏ ମୁକୁନ୍ଦଦେବଙ୍କ ୨୩ଅଙ୍କ (୧୬୭୫)ରେ ଆସି ମୂଳଝର ଅଜାଙ୍କ ଘରେ ଆଶ୍ରୟନେଇଥିଲା, ସେଇ ବାଉରି ମଙ୍ଗରାଜ ବାଇଶି ବର୍ଷ ବୟସରେ ଦିବ୍ୟସିଂହ ଦେବଙ୍କ ୮ଅଙ୍କ (୧୬୯୩)ରେ ବାଣପୁର ହରିଚନ୍ଦନଙ୍କର ଅନ୍ଧାରୀମାହାଲ ଉପରେ ଆକ୍ରମଣକୁ ପ୍ରତିହତକରିବାରେ କୋକଳ ବଳଭଦ୍ରପୁର ଓ ରୋଡ଼ଙ୍ଗର ଲୋକମାନଙ୍କୁ ମେଳାଇ ଜଣେ ଦୁର୍ଦ୍ଧର୍ଷ ଯୋଦ୍ଧାର ଭୂମିକା ଗ୍ରହଣ କରିଥିବାର ସୂଚନା ଚକଡ଼ାପୋଥିରୁ ମିଳେ[୧୬୮] । ଖୋର୍ଦ୍ଧା ଭୋଇବଂଶର ୩ୟ ରାଜା ନରସିଂହ ଦେବଙ୍କୁ ୧୬୪୭ଖ୍ରୀଷ୍ଟାବ୍ଦରେ ମୋଗଲ ସୁବାଦାରଙ୍କଦ୍ୱାରା ବାଲିସାହି ନଅର ମଧରେ ହତ୍ୟାକରାଇଥିବା ରାୟପିତାମ୍ ବଂଶର ଅନିରୁଦ୍ଧ ରାୟପିତାମ୍ଙ୍କ ନାମକୁ ବିକୃତକରି ମାଦଳାପାଞ୍ଜିର ଲେଖକ ''ଅନିରୁଦ୍ଧ ରାୟପିତାମହ'' ବୋଲି ଲେଖିଥିବା ସମ୍ପର୍କରେ ପାଠକମାନେ ପୂର୍ବରୁ ଅବହିତ ଅଛନ୍ତି । ସେହିପରି ଦିବ୍ୟସିଂହଦେବଙ୍କ ୭ଅଙ୍କ (୧୬୯୨)ରେ ଆଉରଙ୍ଗଜେବଙ୍କ ନିର୍ଦ୍ଦେଶରେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ଉପରେ ଏକରାମ ଖାଁ ଆକ୍ରମଣ କରିବା ଆଶଙ୍କାରେ ଜଗନ୍ନାଥଙ୍କୁ ବିମଳାଙ୍କ ପଛପାଖ ବେଢ଼ାରେ ଲୁଚାଇ ଜଗନ୍ନାଥଙ୍କ ଚଳନ୍ତି ପ୍ରତିମାକୁ କୋକଳଗଡ଼କୁ ପଠାଇବା ପରେ ଜଗନ୍ନାଥଙ୍କ ଦାରୁମୂର୍ତ୍ତି ଅନୁରୂପ ଚନ୍ଦନକାଠରେ ଅନ୍ୟ ଦାରୁମୂର୍ତ୍ତି ଗଢ଼ାଇ ନବାବ ଏକରାମ ଖାଁକୁ ଦିଆଯାଇଥିଲା ଏବଂ ଏକରାମ ସେହି ମୂର୍ତ୍ତିକୁ ଚମଦଉଡ଼ିରେ ବାନ୍ଧି କଟକଯାଏଁ ଘୋଷାରି ଘୋଷାରି ନେଇ ଆଉରଙ୍ଗଜେବଙ୍କ ପାଖକୁ ପଠାଇଦେଇଥିଲା । ନବାବଙ୍କ ଉପସ୍ଥିତିରେ ବଡ଼ଦେଉଳର ସିଂହଦ୍ୱାର ଗୁମୁଟ ଭଙ୍ଗାଯାଇ ଦେଉଳକୁ ମୁଦିଦିଆଯାଇଥିଲା । ଆଉରଙ୍ଗଜେବ ଜୀବିତଥିବାଯାଏଁ ଜଗନ୍ନାଥଙ୍କ ଛତିଶାନିଯୋଗ ନୀତି ବନ୍ଦ କରାଯାଇ ଦକ୍ଷିଣଦ୍ୱାର ଚୋରୀକବାଟ ବାଟେ ମାତ୍ର ୧୭ଜଣ ନିଯୋଗ ବ୍ରାହ୍ମଣ ପାଳିକରି ଯାଇ ପୂଜାବଢ଼ାଉଥିଲେ । କିନ୍ତୁ ଆଉରଙ୍ଗଜେବଙ୍କର ୧୭୦୭ ଖ୍ରୀଷ୍ଟାବ୍ଦରେ ମୃତ୍ୟୁ ହେବା ପରେ ରାୟପିତାମ୍ବଂଶର ଜଣେ କୀର୍ତ୍ତିବନ୍ତ ପୁରୁଷ ୧୮ଗଡ଼ର ଖଣ୍ଡାଏତମାନଙ୍କୁ ମେଳାଇ ନେଇ ଯାଇ ବଡ଼ଦେଉଳ ସିଂହଦ୍ୱାର ଫିଟାଇଦେଲେ ଏବଂ ଜଗନ୍ନାଥଙ୍କର ସମସ୍ତ ସେବାନୀତିର ପୁନଃପ୍ରଚଳନ କରାଇଥିଲେ । ମାଦଳାପାଞ୍ଜିରେ ଏହି କୀର୍ତ୍ତିମନ୍ତ ପୁରୁଷଙ୍କୁ 'ଅରାରାମ ପିତାମହ' ବୋଲି ଲେଖାଯାଇଛି । ତାଙ୍କ ନାମ ଅରା, ଅରୀ, ଅଭି କିମ୍ବା ଅଭିରାମ, ଅଥବା ଆଉ ଯାହା ହୋଇଥାଉ ପଛକେ, ତାଙ୍କ ଉପାଧି 'ରାୟପିତାମ'କୁ ପାଞ୍ଜିରେ ଭୁଲକ୍ରମେ 'ରାମପିତାମହ' କରାଯାଇଛି ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ଏବଂ ସେ ଯେଉଁ ୧୮ଗଡ଼ର ଖଣ୍ଡାଏତଙ୍କୁ ମେଳିକରାଇଥିଲେ ସେ ୧୮ଗଡ଼ ପୁରୀ ନିକଟ ଅନ୍ଧାରୀ, କୋକଳ, ରୋଡ଼ଙ୍ଗ, ବଳଭଦ୍ରପୁର ଆଦି ଚିଲିକା ଉପକୂଳବର୍ତ୍ତୀ ଗଡ଼ ବୋଲି ବୁଝିବାକୁ ହେବ- ୧୮ ଗଡ଼ଜାତ ନୁହେଁ ।

---

୧୬୮- ୧୬/୨୦

ଏଥିରୁ ଅନୁମିତ ହୁଏ ଯେ, ରାୟପିତାମ ବଂଶଧରମାନଙ୍କ ମଧ୍ୟରେ କେତେକ ଦୁଃସାହସିକ ଓ ଦୁର୍ଦ୍ଧର୍ଷ ଯୋଦ୍ଧା ଥିଲେ ଏବଂ ସେମାନେ ନିଜ ପୂର୍ବ ପୁରୁଷଙ୍କଦ୍ୱାରା ଅଧିକୃତ କୋକଲ ଓ ସ୍ଥାପିତ ଅନ୍ଧାରୀଗଡ଼ ସମେତ ଚବିଶକୁଦ ଓ ପୁରୀ ଇଲାକାରେ ନିଜର ଆଧିପତ୍ୟ ବିସ୍ତାରପାଇଁ କେତେବେଳେ ରାଜାଙ୍କ ବିପକ୍ଷରେ, କେତେବେଳେ ମୋଗଲଙ୍କ ବିପକ୍ଷରେ ଏବଂ କେତେବେଳେ ଜଗନ୍ନାଥଙ୍କ ବିପକ୍ଷରେ ମଧ୍ୟ ଦୁଃସାହସିକ ପଦକ୍ଷେପ ନେବାକୁ ପଛାଉ ନ ଥିଲେ। ସମ୍ପ୍ରତି ଖୋର୍ଦ୍ଧା ନିକଟବର୍ତ୍ତୀ ଦୟାନଦୀର ପଶ୍ଚିମ ପାଖରେ ଅବସ୍ଥିତ ଯମୁନା ଝାରପଡ଼ା ଗଡ଼ରେ ରାୟପିତାମ୍ ଉପାଧିଧାରୀ ପରିବାର ଅଛନ୍ତି। ଭାଗୀରଥି ସାମନ୍ତସିଂହର ଓ ବାଉରି ମଙ୍ଗରାଜଙ୍କ ଭଳି ଏହି ବଂଶର ଭିନ୍ନ ଉପାଧିଧାରୀ ବଂଶଧରମାନେ ମଧ୍ୟ କେଉଁଠି କେଉଁଠି ଥିବେ।

କିନ୍ତୁ କେବଳ କିମ୍ବଦନ୍ତୀପୁରୁଷବହୁଳ ରାୟପିତାମ୍ ବଂଶକୁ ନେଇ କୋକଲଗଡ଼ ଇତିହାସର ଇତି ହୋଇ ନାହିଁ। ସେହି ଗଡ଼ର ଚମ୍ପତିରାୟ ଉପାଧିଧାରୀ ଆଉ ଏକ ବିଖ୍ୟାତ ଖଣ୍ଡାୟତ ବଂଶର ଇତିହାସ ମଧ୍ୟ ଅତ୍ୟନ୍ତ ଗୌରବମୟ।

## କହ୍ନାଇ ଚମ୍ପତିରାୟ ଓ ପାଇକଖେଦା

ପୂର୍ବରୁ କୁହାଯାଇଛି - ଓଡ଼ିଶାର ଗଣଦେବତା ଓଡ଼ିଆଜାତିର ପ୍ରାଣ ପ୍ରତିଷ୍ଠାତା ଶ୍ରୀ ଜଗନ୍ନାଥଙ୍କ ଉପରେ କେବଳ ବିଧର୍ମୀ ମୁସଲମାନମାନେ ଆକ୍ରମଣ କରି ନାହାନ୍ତି, କେଶୋଦାସ ଓ କଲ୍ୟାଣମଲ ଭଳି ସ୍ୱଧର୍ମୀମାନେ ମଧ୍ୟ ଜଗନ୍ନାଥ ମନ୍ଦିର ଉପରେ ଆକ୍ରମଣ କରି ଓ ଲୁଣ୍ଠନ ଚଳାଇ ଧର୍ମପ୍ରବାହରେ କଳଙ୍କିତ ଇତିହାସ ସୃଷ୍ଟିକରିଯାଇଛନ୍ତି। ସେସବୁ ଆକ୍ରମଣ ବିରୋଧରେ ଶ୍ରୀଜଗନ୍ନାଥଙ୍କ ସୁରକ୍ଷା ଦିଗରେ କେବଳ ଦାନପାତ୍ରଙ୍କ ବର୍ବରତା ବ୍ୟତୀତ କୋକଲଗଡ଼ର ଅବଦାନ ଅତୁଳନୀୟ। ସୁତରାଂ ଜଗନ୍ନାଥ ମନ୍ଦିର ଉପରେ ଆକ୍ରମଣ ସମୟରେ କୋକଲଗଡ଼ କେବଳ ଜଗନ୍ନାଥଙ୍କ ଆଶ୍ରୟସ୍ଥଳ ହୋଇ ନାହିଁ, ଅଧିକନ୍ତୁ ସେପରି ଆକ୍ରମଣକୁ ପ୍ରତିହତ କରି ଆକ୍ରମଣକାରୀକୁ ଘଉଡ଼ାଇଦେବାରେ କୋକଲଗଡ଼ର ପାଇକବୀର ଅସାଧାରଣ ସାହସ ଓ ବୀରତ୍ୱ ପ୍ରଦର୍ଶନ କରିଛନ୍ତି। ଭୋଇବଂଶର ୨ୟ ରାଜା ପୁରୁଷୋତ୍ତମ ଦେବଙ୍କ ରାଜତ୍ୱକାଳରେ ୧୬୧୧ ଖ୍ରୀ: ଜୁଲାଇ ୬ ତାରିଖରେ ରାଜା କଲ୍ୟାଣ ମଲ ଦ୍ୱିତୀୟବାର ଜଗନ୍ନାଥ ମନ୍ଦିର ଆକ୍ରମଣ କଲେ। ବହୁ ଧନରତ୍ନ ଲୁଟିନେଲେ। କିନ୍ତୁ ମନ୍ଦିର ସେବକମାନେ ଆଗରୁ ସତର୍କ ହୋଇ ଦେବବିଗ୍ରହମାନଙ୍କୁ ସ୍ଥାନାନ୍ତର କରିନେଇ ଚିଲିକାର ମହିଷାନାସିରେ ଲୁଚାଇ ରଖିଲେ ଓ ପରେ ନେଇ ବାଣପୁରରେ ରଖିଲେ। କଲ୍ୟାଣ ମଲର ସେହି ଆକ୍ରମଣକୁ ପ୍ରତିହତ କରିବାପାଇଁ ଗଡ଼ କୋକଲର ପାଇକବୀର ଶ୍ରୀପତି ଚମ୍ପତିରାୟ ଏବଂ ତାଙ୍କର ପୁଅ ଗୋପାଳ ଚମ୍ପତିରାୟ କଲ୍ୟାଣ ମଲର ସୈନ୍ୟମାନଙ୍କ ସହ ଲଢ଼ି ଅସୀମ ବୀରତ୍ୱ ପ୍ରଦର୍ଶନ

କରିଥିଲେ । ଓଡ଼ିଆ ପାଇକମାନେ ଶେଷରେ ବିଜୟ ଲାଭ କରି କଲ୍ୟାଣ ମଲକୁ ତଡ଼ି ତଡ଼ି ନେଇ କଟକ ପାର କରାଇ ଦେଇଥିଲେ । କିନ୍ତୁ ସେହି ଯୁଦ୍ଧରେ ଶ୍ରୀପତି ଚମ୍ପତିରାୟ ବିଜୟ ଲାଭ କରିଥିଲେ ହେଁ ତାଙ୍କ ପୁଅ ଗୋପାଳ ଚମ୍ପତିରାୟ ନିହତ ହୋଇଥିଲେ ଏବଂ କଲ୍ୟାଣମଲ ପୁରୁଷୋତ୍ତମ ଦେବଙ୍କ ସୁଶ୍ରୀ କନ୍ୟା ସହିତ ଶେଷନାଗ ନାମକ ଏକ ଦୁର୍ଲଭ ଯୁଦ୍ଧହସ୍ତୀକୁ ମୋଗଲ ବାଦଶାହାଙ୍କୁ ଉପହାର ଦେବାପାଇଁ ନେଇଯାଇଥିଲେ । ଏହି ଯୁଦ୍ଧ ପରେ ଶ୍ରୀପତି ଚମ୍ପତିରାୟଙ୍କର ଅନ୍ୟତମ ଗୁଣବାନ୍ ପୁତ୍ର କହ୍ନେଇ ଚମ୍ପତିରାୟ ଅତ୍ୟନ୍ତ ବ୍ୟଥିତ ହୋଇପଡ଼ିଥିଲେ । ଓଡ଼ିଆ ପାଇକମାନଙ୍କ ଯୁଦ୍ଧବିଦ୍ୟା ସମ୍ପର୍କରେ ''ପାଇକ ଖେଦା'' ନାମକ ଏକ ସମରଶାସ୍ତ୍ରରେ ସେ ଲେଖିଅଛନ୍ତି- ''ନ ଆସିଲା ନୃମଣିର କନକ ସୁନ୍ଦରୀ, ଅଣଲେଉଟା ହୋଇଲା ଶେଷନାଗ କରୀ । ଏମାନ ହୃଦୟ ମୋର ଗହନେ ଫାଡ଼ିଲା, ପୁଣ କଟା ଖାବରାରେ ଚୂନ ଯେ ଲିପିଲା । ନ ଆସିଲେ ଗୋପାଳ ଚମ୍ପତି ଜ୍ୟେଷ୍ଠ ମୋର, ତପତ ନିଆଁରେ ପଡ଼େ ଯେହ୍ନେ ଘୃତଧାର[୧୬୯] ।''

ପୁରୁଷୋତ୍ତମଦେବଙ୍କ ରାଜତ୍ୱକାଳରେ ମୋଗଲ ସୁବାଦାରମାନେ ଜଣକ ପରେ ଜଣେ ଘନ ଘନ ପୁରୀ ମନ୍ଦିର ଆକ୍ରମଣ କରିଥିଲେ । ମୋଗଲ ସୁବାଦାର ହାସିମ୍ ଖାଁଙ୍କ ଅମଳରେ କଟକର ଜାୟଗିର୍‌ଦାର ରାଜପୁତ କେଶୋଦାସ ପ୍ରଥମେ ୧୬୦୯ରେ, ସୁବାଦାର କଲ୍ୟାଣମଲ ୧୬୧୧ରେ, ମକରମ୍ ଖାଁ ୧୬୧୭ରେ ଏବଂ ସୁବାଦାର ଅହମଦ୍ ବେଗ୍ ୧୬୨୨ରେ ଖୋର୍ଦ୍ଧା ସହିତ ଜଗନ୍ନାଥ ମନ୍ଦିର ଆକ୍ରମଣ ଓ ଲୁଣ୍ଠନ କରିଥିଲେ । ମାଦଳାପଞ୍ଜି କହେ - ''ଅ୨୫ଙ୍କେ ସୁବା ଅହମଦ୍ ବେଗ୍ ଅଇଲେ । ଦକ୍ଷିଣକୁ ମହିମ ବାଣପୁର ଯାଏ ଗଲେ ।'' ଏଥିରେ ବ୍ୟଥିତହୋଇ କହ୍ନାଇ ଚମ୍ପତିରାୟ 'ପାଇକଖେଦା'ରେ ବର୍ଣ୍ଣନାକରିଛନ୍ତି-

''ଏତ ଗହନ କାଳ ପଡ଼ିଲା, ସୁଜା (ସୁବା) ବଢ଼ କକରଥ କଲା ।
ଆମ କୁଳକୁ ବିପତ୍ତି ହେଲା, ସେତ ମକରମ୍ ହୁଁ ବଳିଲା ।
ଚଉଖାନି କରିଣ ଆସିଣ, ସବୁ ଗ୍ରାସିଲାଣି ତ ପଠାଣ
ଆଉ ଟାଣ ତ ରହିବ ନାହିଁ, ଏହି ଖେଦାରେ କହିବି ମୁହିଁ[୧୭୦] ।''

ଉତ୍କଳୀୟ ସୈନ୍ୟଙ୍କ ସମରନୀତି ସମ୍ପର୍କରେ ଏଯାବତ୍ ଉପଲବ୍ଧ ତିନିଗୋଟି ଗ୍ରନ୍ଥ, ଯଥା- ପ୍ରତାପରୁଦ୍ରଙ୍କ ରାଜସଭା ପଣ୍ଡିତ ଗୋଦାବର ମିଶ୍ରଙ୍କ ପ୍ରଣୀତ 'ହରିହର ଚତୁରଙ୍ଗ' (ସଂସ୍କୃତ), ଢେଙ୍କାନାଳର ପ୍ରସିଦ୍ଧ କବି ବ୍ରଜନାଥ ବଡ଼ଜେନାଙ୍କ ରଚିତ 'ସମରତରଙ୍ଗ' ଓ ପାଇକବୀର କହ୍ନାଇ ଚମ୍ପତିରାୟଙ୍କ ପ୍ରଣୀତ 'ପାଇକଖେଦା' ମଧ୍ୟରେ 'ପାଇକଖେଦା' ହିଁ ଉତ୍କଳୀୟ ସମରନୀତି ସମ୍ପର୍କୀୟ ସର୍ବଶ୍ରେଷ୍ଠ ଗ୍ରନ୍ଥ ବୋଲି ଉକ୍ତ ଗ୍ରନ୍ଥର ମୁଖବନ୍ଧରେ ସ୍ୱର୍ଗତ ଗବେଷକ ପଣ୍ଡିତ ସଦାଶିବ ରଥ ଶର୍ମା ଲେଖିଛନ୍ତି । ତାଙ୍କ ମତରେ, ପାଇକଖେଦାରେ

---

୧୬୯- ୧୯/୨     ୧୭୦- ୧୯/୮୧

ଥିବା 'ପୋତବର୍ଣ୍ଣନା', 'ଧ୍ୱଜବର୍ଣ୍ଣନା', 'ଗାରୁଡ଼ୀଭିଆଣ', 'ଶରଫଳା' ତଥା 'ନାଳୀକାସ୍ତ୍ର ପ୍ରୟୋଗ, ଇତ୍ୟାଦି ବିଷୟ ପୂର୍ବୋକ୍ତ ଦୁଇଟି ଗ୍ରନ୍ଥରେ ନାହିଁ । ତେଣୁ ସେ ଗ୍ରନ୍ଥ ଦୁଇଟିରେ ସାମରିକ ବିଷୟବସ୍ତୁ ସମ୍ପୂର୍ଣ୍ଣ କିମ୍ବା ବହୁମୁଖୀ ନୁହେଁ ।

କିନ୍ତୁ କହ୍ନାଇ ଚମ୍ପତିରାୟ 'ପାଇକଖେଦା' ଲେଖିବା ବେଳକୁ ଆଉ ଗଡ଼କୋକଲରେ 'ନ ଥିଲେ । ସେ ସମ୍ଭବତଃ ଛଟଣି ନିକଟ ଦୟାନଦୀ କୂଳରେ ଅବସ୍ଥିତ ରେଙ୍ଗାଳଗଡ଼କୁ ପୋଷ୍ୟପୁତ୍ର ହୋଇ ଚାଲିଯାଇଥିଲେ ।

'ବଡ଼ ପୁତ ବାଲୁଙ୍କି ଯେ କୋଂକଲେ ରହିଲେ, ସନ୍ତୋଷ କରାଇ ମୋତେ ରେଙ୍ଗଲେ ପେଶିଲେ ।'

ସେହି କାରଣରୁ 'ପାଇକଖେଦା'ର ପ୍ରତ୍ୟେକ ଅଧ୍ୟାୟ ଶେଷରେ ସେ ନିଜକୁ ରେଙ୍ଗାଳଗଡ଼ ପାଇକବୀର କହ୍ନାଇ ଚମ୍ପତିରାୟ ଚୂଡ଼ାମଣି ବୋଲି ଲେଖିଛନ୍ତି ।

ସେହିପରି କୋକଲଗଡ଼ର 'ପାଇକରାୟ' ଉପାଧିଧାରୀ ଅନ୍ୟ ଏକ ଖଣ୍ଡାୟତ ବଂଶ ଦାବିକରନ୍ତି ଯେ, ଖୋର୍ଦ୍ଧା ଜିଲ୍ଲାର କୁହୁଡ଼ି ଅଧୀନ ଗଡ଼ବଡ଼ପାରିର ପ୍ରସିଦ୍ଧ ଭ୍ରମରବରରାୟଙ୍କର ସେମାନେ ବଂଶଧର । ତାଙ୍କ କହିବାମତେ, ଭ୍ରମରବରରାୟଙ୍କର କେହି ବଂଶଧର ଆସି ସିରାଇ ଗ୍ରଗନ୍ନାରେ ଦୟାନଦୀ କୂଳରେ ଅବସ୍ଥିତ ଥିବା ପାଣ୍ଡିଆକେରାରେ ରହିଥିଲେ ଏବଂ ପରେ ପୁଣି ବଂଶବୃଦ୍ଧି ହେବାରୁ ପାଣ୍ଡିଆକେରାରୁ ଗୋଟିଏ ପରିବାର ଉଠିଯାଇ ଗଡ଼କୋକଲରେ ଏବଂ ଆଉ ଗୋଟିଏ ପରିବାର ଲୁଣାନଦୀ କୂଳସ୍ଥ ଝାରଡ଼ାରେ ରହିଲେ । 'ଖୁରୁଧାଦର୍ପଣ'ରେ ସ୍ୱର୍ଗତ ଶ୍ରୀଚନ୍ଦନ ଗଡ଼ବଡ଼ପାରି ଭ୍ରମରବରରାୟଙ୍କ ପ୍ରସିଦ୍ଧି ଏହିପରି ବର୍ଣ୍ଣନା କରିଛନ୍ତି- ''ଖୁରୁଧା ଜିଲ୍ଲାର ଗଡ଼ଦଳବେହେରାମାନଙ୍କ ମଧ୍ୟରେ ଏହି ବଡ଼ପାରି ଭ୍ରମରବର ରାୟ ଯେଣୁ ରାଜସିଦ୍ଧିରେ ଅଗ୍ରଗଣ୍ୟ, ତେଣୁ ସେ ଏକ ସାମନ୍ତ ରାଜା ତୁଲ୍ୟ ରାଜଦରବାରରେ ସମ୍ମାନର ସହିତ ପ୍ରଥମ ଆସନର ଅଧିକାରୀଥିଲେ ।'' କୋକଲଗଡ଼ର ପାଇକରାୟ ବଂଶ ଏହି ଭ୍ରମରବର ରାୟଙ୍କ ବଂଶଧର ଥାଇ ଏକଦା ଆଞ୍ଚଳିକ ପାଇକବାହିନୀର ନେତୃତ୍ୱ ନେଉଥିଲେ ।

ଦିନେ ଯେଉଁ କୋକଲଗଡ଼କୁ ଲକ୍ଷ୍ମୀଧରପାତ୍ର, ବାଘୁପାତ୍ର, ଗୋପୀନାଥ ରାୟ ପିତାମ, ଅଭିରାମ ରାୟପିତାମ, ଶ୍ରୀପତି ଚମ୍ପତିରାୟ ଏବଂ ଗୋପାଳ ଚମ୍ପତିରାୟଙ୍କ ଭଳି ବୀରପାଇକମାନଙ୍କ ରଣହୁଙ୍କାର ପ୍ରକମ୍ପିତ କରି ଚିଲିକାର ଘନନୀଳ ବୀଚିବକ୍ଷରୁ ଶ୍ରୀକ୍ଷେତ୍ର ତଟ ମହୋଦଧିର ଉତ୍ତାଳ ତରଙ୍ଗ ପର୍ଯ୍ୟନ୍ତ ଏବଂ ବୀରମାଟି ବରୁଣାଇର ସବୁଜ ବନାନୀଘେରା ଗିରିଦୁର୍ଗରୁ ସୁଗଭୀର ମହାନଦୀ ପରିବେଷ୍ଟିତ ବୀରଭୋଗ୍ୟା ବାରବାଟୀ ଦୁର୍ଗ ପର୍ଯ୍ୟନ୍ତ ସର୍ବତ୍ର ପ୍ରତିଧ୍ୱନିତ ହେଉଥିଲା, ଆଜି ସେହି କୋକଲଗଡ଼ ଏକ ପରିତ୍ୟକ୍ତ ନିଭୃତ ନିକାଞ୍ଚନ ପଲ୍ଲୀଗ୍ରାମ

ରୂପେ ପଡ଼ିରହିଛି । ସେହି ଐତିହାସିକ ଗଡ଼ମାଟି ଉପରେ ଆଜି କୋକଲ ଗ୍ରାମବାସୀମାନଙ୍କ ଉଦ୍ୟମକ୍ରମେ ଗଢ଼ିଉଠିଥିବା ଗୋଟିଏ ମାଧମିକ ଓ ଗୋଟିଏ ଉଚ୍ଚ ବିଦ୍ୟାଳୟ ଛିଡ଼ାହୋଇଛି । ସେ ମାଟିକୁ ଆଡ଼େଇଦେଲେ ଦିଶିଯାଉଛି ସେହି ଐତିହାସିକ ଦୁର୍ଗମଗଡ଼ର ସ୍ମାରକୀ - ମାଟିତଳେ ପୋତିହୋଇ ପଡ଼ିଥିବା ଗଡ଼ ପଥରକାନ୍ଥର ଭଗ୍ନାବଶେଷ; ଆଉ ପୋତି ହୋଇ ପଡ଼ିଥିବା ଗଡ଼ଖାଇ ପାଖକୁ ଲାଗି ପଡ଼ିରହିଛି ''ଖଣ୍ଡାଧୁଆ ପୋଖରୀ'', ଯେଉଁଠି ଶ୍ରୀପତି ଚମ୍ପତିରାୟଙ୍କ ପରି ଯୋଦ୍ଧାମାନେ ଯୁଦ୍ଧରୁ ଫେରି ଶତ୍ରୁରକ୍ତ ରଞ୍ଜିତ ତରବାରିକୁ ଧୋଇ ପରବର୍ତ୍ତୀ ଯୁଦ୍ଧପାଇଁ ପ୍ରସ୍ତୁତ କରି ରଖୁଥିଲେ ।

## କୋକଲଗଡ଼ାଧୀଶଙ୍କ ବଂଶାବଳୀ




(ଅନିରୁଦ୍ଧ ରାୟପିତାମ୍ ଓ ଅଭି ରାୟପିତାମ୍ଙ୍କ ସ୍ଥାନ ନିରୂପଣ କରାଯାଇପାରି ନାହିଁ)

## ଏକାଦଶ ଅଧ୍ୟାୟ

# ଖୋର୍ଦ୍ଧାରାଜାଙ୍କର ପାଞ୍ଚଟି ପ୍ରଧାନଗଡ଼

### ଗଡ଼ମାଣତ୍ରୀ

ଖୋର୍ଦ୍ଧା ସହରଠାରୁ ପ୍ରାୟ ୧୬ ମାଇଲ୍ ଦକ୍ଷିଣ-ପଶ୍ଚିମ ଦିଗରେ ମାଣତୀର ବା ମାଣତ୍ରୀଗଡ଼ ଅବସ୍ଥିତ । ଖୋର୍ଦ୍ଧା ଇତିହାସରେ ମାଣତ୍ରୀଗଡ଼ର ଏକ ସ୍ୱତନ୍ତ୍ର ସ୍ଥାନ ରହିଛି, ଯେହେତୁ କେବଳ ଖୋର୍ଦ୍ଧା ରାଜବଂଶର ନୁହେଁ, ହିନ୍ଦୁ ଜଗତର ପରମ ଆରାଧ ଓଡ଼ିଶାର ଗଣଦେବତା ସ୍ୱୟଂ ପ୍ରଭୁ ଜଗନ୍ନାଥଙ୍କର ନିରାପତ୍ତା ଦୃଷ୍ଟିରୁ ମଧ ଏକ ଆପତ୍‌କାଳୀନ ନିରାପଦ ଆଶ୍ରୟସ୍ଥଳର ଭୂମିକା ଗ୍ରହଣକରିବାରେ ଏହି ଗଡ଼ ସହାୟକ ହୋଇଛି । ଖୋର୍ଦ୍ଧା ଭୋଇରାଜବଂଶର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ର ଦେବଙ୍କଦ୍ୱାରା ସ୍ଥାପିତ ଖୋର୍ଦ୍ଧା ରାଜ୍ୟର ମୂଳ ୭୧ଟି ଗଡ଼ ମଧ୍ୟରେ ମାଣତ୍ରୀଗଡ଼ର ସ୍ଥାନ ନ ଥିଲେହେଁ, ରାମଚନ୍ଦ୍ର ଦେବଙ୍କ ପୁତ୍ର ଗଜପତି ପୁରୁଷୋତ୍ତମଦେବ (୧୬୦୦-୧୬୨୧)ଙ୍କ ସମୟରେ କଟକରେ ଅବସ୍ଥାପିତ ମୋଗଲ୍ ସୁବାଦାର ମକ୍‌ରମ୍ ଖାଁ ୧୬୧୭ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧାଗଡ଼ ଆକ୍ରମଣ କରିବାରୁ ରାଜା ପୁରୁଷୋତ୍ତମ ଦେବ ସପରିବାର ଯାଇ ଦୁର୍ଭେଦ୍ୟ ଅରଣ୍ୟବେଷ୍ଟିତ ମାଣତ୍ରୀଗ୍ରାମଠାରେ ଗଡ଼ ନିର୍ମାଣ କରି ରହିଲେ । ''୨୧ ଅଙ୍କେ ମକ୍‌ରମ୍ ଖାଁ ଅଇଲେ । ଧନୁ ୨୨ ଦିନେ ଖୁରୁଧା ଘେନିଲେ । ସାକ୍ଷିଗୋପାଳଙ୍କୁ ଖୁଣ କଲେ । ପରମେଶ୍ୱର ଗୁରୁବାଇଠାରୁ ଯାଇ ବାଣପୁର ସୀମା ଗବପଦରଠାରେ ନଈ ଭିତରେ ଚାପରେ ବିଜେକରିଥିଲେ । ଶୀତଳ ମୁଣୋହି କରୁଥିଲେ । ରାଜା ଯାଇ କୁଟୁମ୍ବ ଘେନି ରଣପୁର ସୀମାରେ ମାଣିତ୍ରୀ ଗ୍ରାମରେ କଟକ କରିଥିଲେ[୧୭୧] ।'' ଏଥିରୁ ପ୍ରମାଣିତ ହୁଏ ଯେ, ଭୋଇ ବଂଶର ୨ୟ ରାଜା ଗଜପତି ପୁରୁଷୋତ୍ତମ ଦେବଙ୍କଦ୍ୱାରା ୧୬୧୭ ଖ୍ରୀଷ୍ଟାବ୍ଦରେ ମାଣତ୍ରୀଗଡ଼ ତାଙ୍କ ପରିବାରପାଇଁ ଏକ ଆପତ୍‌କାଳୀନ ରହଣିସ୍ଥାନରୂପେ ନିର୍ମିତ ହୋଇଥିଲା ଏବଂ ମକରମ୍ ଖାଁ ପରାଭୂତ ହେବାଯାଏ ସେ ଏହିଠାରେ ଏକ ବର୍ଷକାଳ ସପରିବାର ଅବସ୍ଥାନ କରିଥିଲେ ।

---

୧୭୧- ୧୪/୨୬୫

ପୁନଶ୍ଚ ୧୬୨୨ ଖ୍ରୀ.ରେ ମିର୍ଜା ଅହମ୍ମଦ ବେଗ୍ କଟକର ସୁବାଦାର ହୋଇ ଆସିବା ପରେପରେ ଖୋର୍ଦ୍ଧା ଆକ୍ରମଣ କରିବାରୁ ପୁରୁଷୋତ୍ତମ ଦେବ ପୂର୍ବପରି ସପରିବାର ଯାଇ ମାଣତ୍ରୀଗଡ଼ରେ ଆଶ୍ରୟନେଇଥିଲେ ଏବଂ ସେ ସେହିଠାରେ ହିଁ ଶେଷନିଃଶ୍ୱାସ ତ୍ୟାଗକରିଥିଲେ । ପୁରୁଷୋତ୍ତମ ଦେବଙ୍କ ରାଜଗୁରୁ ବଳଭଦ୍ର ମହାପାତ୍ର ରାଜାଙ୍କ ସାକ୍ଷାତ୍ପାଇଁ ଘୋଡ଼ାରେ ଚଢ଼ି ମାଣତ୍ରୀ ଗଡ଼କୁ ଯାଉଥିବା ବାଟରେ ମୋଗଲ ଆତତାୟୀଙ୍କଦ୍ୱାରା ନିହତ ହୋଇଥିଲେ[୧୬୨] ।

ପୁରୁଷୋତ୍ତମ ଦେବଙ୍କ ଅନ୍ତେ ତାଙ୍କ ପୁଅ ଗଜପତି ନରସିଂହ ଦେବ (୧୬୨୨-୧୬୪୭) ଖୋର୍ଦ୍ଧାର ରାଜା ହେଲେ । ଅହମ୍ମଦ ବେଗ୍ ନରସିଂହ ଦେବଙ୍କ ନିକଟକୁ ଏକ ଆଦେଶନାମା ଲେଖି ଜଣାଇଲେ ଯେ ଯେହେତୁ ଖୋର୍ଦ୍ଧା ମୋଗଲ ସାମ୍ରାଜ୍ୟ ଅଧୀନସ୍ଥ ଏକ କରଦ ରାଜ୍ୟ, ତେଣୁ ସେ (ନରସିଂହ ଦେବ) ମୋଗଲ୍ ସୁବାଦାରଙ୍କ ବଶ୍ୟତା ସ୍ୱୀକାରପୂର୍ବକ ନିଜ ପରିବାରବର୍ଗଙ୍କୁ ଖୋର୍ଦ୍ଧା ପରିବର୍ତ୍ତେ କଟକରେ ଆଣି ରଖନ୍ତୁ । ନରସିଂହ ଦେବ ଅତ୍ୟନ୍ତ ସାହସୀ ବୀର ଥିଲେ । ଅହମ୍ମଦ ବେଗ୍ଙ୍କର ଏପରି ହୀନ ପ୍ରସ୍ତାବକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ସେ ନିଜ ପରିବାରବର୍ଗଙ୍କ ସହ ଶ୍ରୀଜଗନ୍ନାଥଙ୍କ ବ୍ରହ୍ମତ୍ରୟଙ୍କୁ ଅଗମ୍ୟ ଅରଣ୍ୟବେଷ୍ଟିତ ମାଣତ୍ରୀ ଦୁର୍ଗକୁ ପଠାଇଦେଇ ବୀରଦର୍ପରେ ଅହମ୍ମଦବେଗ୍ ଆକ୍ରମଣର ସମ୍ମୁଖୀନ ହେଲେ । ଅହମ୍ମଦ ବେଗ୍ ପରାଜିତ ହୋଇ ପ୍ରାଣ ଧରି ପଳାଇଥିଲେ ।[୧୬୩]

ଭୋଇ ରାଜବଂଶର ୯ମ ରାଜା ୨ୟ ରାମଚନ୍ଦ୍ରଦେବ (୧୭୨୭-୩୬)ଙ୍କର କଳାବତୀ ଓ ଲଳିତା ନାମରେ ଦୁଇ ରାଣୀ ଥିଲେ । ପରେ ପୁଣି ରାମଚନ୍ଦ୍ରଦେବ ଅବସ୍ଥାଚକ୍ରରେ ପଡ଼ି ମୁର୍ଷିଦ୍ କୁଲିଖାଁଙ୍କ କନ୍ୟା ସୌରିୟାଙ୍କ ପାଣି ଗ୍ରହଣ କରିଥିଲେ ଏବଂ ସେହି କାରଣରୁ ସେ ମୌଳିକ ଧର୍ମବାଦୀମାନଙ୍କଦ୍ୱାରା ସମାଲୋଚିତ ଓ ପରିତ୍ୟକ୍ତ ହେବା ଫଳରେ ନିଜର ଆରାଧ ଦେବତା ଜଗନ୍ନାଥଙ୍କୁ ଦର୍ଶନ କରି ନ ପାରି ଶ୍ରୀମନ୍ଦିର ସିଂହଦ୍ୱାର ପ୍ରବେଶ ପଥର ଉତ୍ତର ପାର୍ଶ୍ୱରେ ପତିତପାବନ ମୂର୍ତ୍ତି ଅଙ୍କିତ କରାଇ ନିଜର ଜଗନ୍ନାଥଦର୍ଶନ ତୃଷା ମେଣ୍ଟାଇଥିଲେ । ତାଙ୍କର ପାଟରାଣୀ କଳାବତୀ (ଅନ୍ୟ ନାମ ଚିତ୍ରକଳା) ସେହି ସମୟରେ ନିଜର ସ୍ୱାମୀ ଏବଂ ଯବନୀ ସପତ୍ନୀଙ୍କଠାରୁ ବିଚ୍ଛିନ୍ନ ହୋଇ ତିନି ପୁଅଙ୍କ ସହ ଖୋର୍ଦ୍ଧାଗଡ଼ ଛାଡ଼ି ଯାଇ ମାଣତ୍ରୀଗଡ଼ରେ ଶେଷଜୀବନ ବିତାଇଥିଲେ ।[୧୬୪]

ସୁତରାଂ ମାଣତ୍ରୀଗଡ଼ ପ୍ରାୟ ଦେଢ଼ଶହ ବର୍ଷ ଧରି ଖୋର୍ଦ୍ଧା ରାଜବଂଶ- ଦ୍ୱାରା ବିଭିନ୍ନ ସମୟରେ ଖୋର୍ଦ୍ଧାଗଡ଼ ରାଜବାଟୀର ଏକ ବିକଳ୍ପ ରାଜବାଟୀଭାବେ ପ୍ରତିଷ୍ଠିତ ଥିଲା । ସେ ପ୍ରାଚୀନ ଗଡ଼ର ଭଗ୍ନାବଶେଷ ରୂପେ ଏକ ପଥର କାନ୍ଥି ମୂଳଦୁଆର କିଛି ଅଂଶ ମାତ୍ର ଦେଖିବାକୁ ମିଳେ । ଗଡ଼ର ପଶ୍ଚିମକୁ ଅଳ୍ପ ଦୂରରେ ଏକ ଛୋଟ ପାହାଡ଼, ସେଇ ପାହାଡ଼ ଉପରେ ଏକ ପ୍ରକାଣ୍ଡ ଶିଳାଖଣ୍ଡ ମାଣତ୍ରୀଗଡ଼ର ଅବଲୁପ୍ତ ପ୍ରାଚୀନ ଐତିହାସିକ ବିଭବର ପ୍ରାକୃତିକ ପ୍ରତିମୂର୍ତ୍ତିଟିଏ

---

୧୬୨- ୪/୮୫    ୧୬୩- ୩/୬୫    ୧୬୪- ୪/୨୧୧

ପରି ବିକ୍ଷତ ବିବର୍ଣ୍ଣ ବେଶରେ ଅତୀତର ସାକ୍ଷୀ ରୂପେ ଛିଡ଼ା ହୋଇ ରହିଛି । ସେହି ଶିଳାଖଣ୍ଡଙ୍କୁ ହିଁ ସେହି କାଳରୁ କିମ୍ବଦନ୍ତୀଆଧାରିତ ମାଣତ୍ରୀଗଡ଼ର ଅଧିଷ୍ଠାତ୍ରୀ ଦେବୀ ରାମଚଣ୍ଡୀ ଠାକୁରାଣୀ ନାମରେ ପୂଜା କରାହୋଇ ଆସୁଛି । ପ୍ରତିବର୍ଷ ରାମଚଣ୍ଡୀଙ୍କ ପାଖରେ ମହାଡ଼ମ୍ବରରେ ରଜଯାତ୍ରା ଉତ୍ସବ ଓ ଦଶହରା ପର୍ବ ପାଳିତ ହେଉଛି । ଏବେ ମଧ ମାଣତ୍ରୀଗଡ଼ର ପାଇକ ବଂଶଧରମାନେ ପୂର୍ବ ପୁରୁଷଙ୍କ ଯୁଦ୍ଧବିଦ୍ୟା କୌଶଳକୁ ଖୁବ୍ ଦକ୍ଷତାର ସହିତ 'ପାଇକଖେଳ'ଭାବେ ପ୍ରଦର୍ଶନକରି ସୁନାମ ଅର୍ଜନ କରିଛନ୍ତି ।

ମାଣତ୍ରୀଗଡ଼ର ଦଳବେହେରା ବଂଶର ଇତିହାସ ମଧ ଯେଉଁପରି କୌତୂହଳପ୍ରଦ, ସେହିପରି ତାତ୍ପର୍ଯ୍ୟପୂର୍ଣ୍ଣ । କଥିତ ଅଛି, ପ୍ରଥମରୁ ଏହି ଗଡ଼ର ଦଳବେହେରା ପଠାଣ ଥିଲେ । ଅଦ୍ୟାବଧି ଗହିରରେ ଥିବା ଏକ ବନ୍ଧକୁ 'ପଠାଣବନ୍ଧ' ଏବଂ ଦଳବେହେରା ବଂଶ ବ୍ୟବହାର କରୁଥିବା କୂଅକୁ 'ପଠାଣ କୂଅ' କୁହାଯାଉଛି । ଆଜିକୁ ୧୨ବର୍ଷ ତଳେ ୯-୩-୧୯୮୭ ତାରିଖରେ ମାଣତ୍ରୀଗଡ଼ର ଦଳବେହେରା ବଂଶର ୬୭ ବର୍ଷ ବୟସ୍କ ସର୍ବେଶ୍ୱର ରାଉତରାୟଙ୍କଠାରୁ ପ୍ରାପ୍ତ ବିବରଣୀ ଅନୁଯାୟୀ, ରଣପୁର ରାଜା ରାମଚନ୍ଦ୍ର ବୈରୀଗଞ୍ଜନ ସିଂହ ନରେନ୍ଦ୍ର (ରାମଚନ୍ଦ୍ର ନରେନ୍ଦ୍ର ମହାପାତ୍ର)ଙ୍କ ସମୟରେ ଖୋର୍ଦ୍ଧା ରାଜାଙ୍କସହ ତାଙ୍କ ସୀମାବିବାଦ ଲାଗିଥିଲା ଏବଂ ସେତିକିବେଳେ ମାଣତ୍ରୀଗଡ଼ର ପଠାଣ ଦଳବେହରା ଖୋର୍ଦ୍ଧାରାଜାଙ୍କୁ ଅବଜ୍ଞା କରିଥିବାରୁ ସେହି ଦଳବେହେରାଙ୍କ ଉପରେ ଖୋର୍ଦ୍ଧା ରାଜାଙ୍କର ଆକ୍ରୋଶ ରହିଥିଲା । ସେହି ସମୟରେ ଚନ୍ଦ୍ର ମହାରଥୀ ନାମକ ଜଣେ ବ୍ୟକ୍ତି ଆଠଗଡ଼ ରାଜାଙ୍କର ଦେଓ୍ୱାନ୍ ଥିଲେ ଏବଂ ତାଙ୍କ ଭାଇ ଧନୁର୍ଜୟ ମହାରଥୀ ମଧ ଆଠଗଡ଼ ରାଜାଙ୍କ ଦରବାରରେ ଚାକିରିକରୁଥିଲେ । ସେ ଦୁଇ ଭାଇ ଅତ୍ୟନ୍ତ ବଳବାନ୍ ଓ ବୁଦ୍ଧିମାନ୍ ଥିଲେ । ଥରେ ଚନ୍ଦ୍ର ମହାରଥୀଙ୍କର ଏକ ଶିଶୁପୁତ୍ରକୁ ସାଂଘାତିକ ପିହୁଳା ମାରିବାରୁ ତାଙ୍କ ସ୍ତ୍ରୀ ଅତି ବିକଳରେ ବସାଘରକୁ ଲାଗିଥିବା ଦେଓ୍ୱାନଙ୍କ କଚେରି ବାରଣ୍ଡା ଉପରକୁ ଉଠିଯାଉଯାଉ ତାଙ୍କ ଗୋଡ଼ର ଝୁମ୍ପା ଝୁଣ୍ଟିଆର ଝମ୍ ଝମ୍ ଶବ୍ଦ ଶୁଣିପାରି ଦେଓ୍ୱାନ୍ ଚନ୍ଦ୍ର ମହାରଥୀ ରାଗିଯାଇ ଦୌଡ଼ିଆସି ତାଙ୍କ ସ୍ତ୍ରୀଙ୍କ ଝୁଣ୍ଟିଆ ଲାଗିଥିବା ପାଦ ଆଙ୍ଗୁଠି ଦୁଇଟିକୁ କାଟିଦେଇଥିଲେ । ଏହି ଘଟଣା ଶୁଣିପାରି ରାଜା ଚନ୍ଦ୍ର ମହାରଥୀଙ୍କୁ ଜଣେ ଦୁର୍ଦ୍ଧାନ୍ତ ଓ ନିଷ୍ଠୁର ଲୋକ ଆଖ୍ୟା ଦେଇ ଦୁଇ ଭାଇଙ୍କୁ ପଦଚ୍ୟୁତ କରିବା ସଙ୍ଗେସଙ୍ଗେ ନିଜ ରାଜ୍ୟରୁ ବାହାରକରିଦେଲେ ।

ଆଠଗଡ଼ ରାଜ୍ୟରୁ ଆସି ଧନୁର୍ଜୟ ମହାରଥୀ ଓ ଚନ୍ଦ୍ରମହାରଥୀ ବାଙ୍କିଗଡ଼ ସନ୍ନିକଟ ତୁଳସୀପୁରରେ ପରିବାରବର୍ଗ ଧରି ରହିଥିଲେ । ସେ ବର୍ଷ ପ୍ରବଳ ଗ୍ରୀଷ୍ମହେତୁ କୂଅ ପୋଖରୀ ଶୁଖିଯାଇଥିଲା । ଥରେ ଦ୍ୱିପ୍ରହର ସମୟରେ ଧନୁର୍ଜୟ ମାର୍ଥୀ କୌଣସି ଏକ ଜରୁରୀ କାମରେ ଯାଉଥିବାବେଳେ ନିଦାଘ ଖରାରେ ମୁଣ୍ଡ ତାତିଯିବାହେତୁ ଗୋଟିଏ ଗଛମୂଳେ ଠିଆହୋଇ ଅଳ୍ପଦୂରରେ ଜଣେ ସ୍ତ୍ରୀଲୋକ ଢାଳରେ କୂଅରୁ ପାଣି କାଢୁଥିବା ଦେଖି ତା'ଠୁ ପାଣି ଢାଳେ ମାଗି ନିଜର ପାଣିଗାମୁଛାଟିକୁ ଓଦାକରି ମୁଣ୍ଡରେ ପକାଇବାଲାଗି ସାଙ୍ଗରେ ଯାଉଥିବା ଚାକରଟିକୁ ସ୍ତ୍ରୀଲୋକ ପାଖକୁ ପଠାଇଲେ । ଚାକରଟି ସାଆନ୍ତଙ୍କ ପାଣିଗାମୁଛା ଖଣ୍ଡିକ ଧରି

ଯାଇ ସ୍ତ୍ରୀଲୋକଟିକୁ ପାଣିଟାଳେ ମାଗିବାରୁ ସ୍ତ୍ରୀଲୋକଟି କହିଲା - ଲୋକଙ୍କୁ ପିଇବାକୁ ପାଣିମୁନ୍ଦାଏ ମିଳୁନି । କୂଅ ଶୁଖି କୋଉ ରାସାତଳେ ପଡ଼ିଛି । ମୁଁ କେତେ କଷ୍ଟରେ ତିରିଶ ହାତ ଦଉଡ଼ି ପକେଇ ଟାଳେ ଟାଳେ ପାଣି କାଢ଼ି ମାଠିଆ ପୂରଉଚି । ସାଆନ୍ତ ଯେବେ ଏତେ ସଉକିଆ କୂଅଟିଏ ଖୋଳେଇଦଉନି । ଚାକରଟି ଫେରିଆସି ଧନୁର୍ଜ୍ଜୟ ମାର୍ଥାଙ୍କୁ ଏ କଥା କହିବାରୁ ଧନୁର୍ଜ୍ଜୟ ଗୋଟିଏ ସୁନାମୋହର ବିକି ତୁଳସୀପୁରରେ କୂଅଟିଏ ଖୋଳେଇ ଦେଇଥିଲେ । ସେତିକିବେଳେ ମାଣତ୍ରୀଗଡ଼ର ପଠାଣ ଦଳବେହେରାଙ୍କ ସହିତ ଉପୁଜିଥିବା ଖୋର୍ଦ୍ଧା ରାଜାଙ୍କର ଗୋଳମାଳିଆ ପରିସ୍ଥିତି ସମ୍ପର୍କରେ ସୁରାକ ପାଇ ଚନ୍ଦ୍ର ମହାରଥୀ ଓ ଧନୁର୍ଜ୍ଜୟ ମହାରଥୀ ସପରିବାର ତୁଳସୀପୁରରୁ ଯାଇ ପାରିଖେତା ଗ୍ରାମରେ ରହି ମାଣତ୍ରୀଗଡ଼ ଅଧିଷ୍ଠାତ୍ରୀ ରାମଚଣ୍ଡୀ ଠାକୁରାଣୀଙ୍କ ଶରଣାପନ୍ନ ହେଲେ । ସେତେବେଳେ ରଣପୁର ରାଜା ଖଣ୍ଡିସି ଗ୍ରାମର ଜଣେ ତାନ୍ତ୍ରିକ କନ୍ଧକୁ ରାମଚଣ୍ଡୀଙ୍କ ସେବାପୂଜାରେ ନିଯୁକ୍ତ କରିଥିଲେ । ଧନୁର୍ଜ୍ଜୟ ଓ ଚନ୍ଦ୍ର ଦୁଇଭାଇ ସେହି ତାନ୍ତ୍ରିକ ମାଧ୍ୟମରେ ରାମଚଣ୍ଡୀଙ୍କୁ ପୂଜାକଲେ ।



ମାଣତ୍ରୀଗଡ଼ ଅଧିଷ୍ଠାତ୍ରୀ ରାମଚଣ୍ଡୀ ଠାକୁରାଣୀ

କିଛିଦିନ ପରେ ଠାକୁରାଣୀଙ୍କ ସ୍ୱପ୍ନାଦେଶ ପାଇ ଦୁଇ ଭାଇ ଖୋର୍ଦ୍ଧା ଯାଇ ପାଇକବୀର ବେଶରେ କିଛି ଦୂରରୁ ସଲାମୀ - ଶୂନ୍‌ଚିତ୍ ମାରି ମାରି ଯାଇ ଖୋର୍ଦ୍ଧାରାଜାଙ୍କ ଗୋଡ଼ତଳେ ପଡ଼ି ଖୋର୍ଦ୍ଧା ରାଜ୍ୟରେ ରହିବାପାଇଁ ଅନୁମତି ପ୍ରାର୍ଥନା କରିବାରୁ ରାଜା ସେମାନଙ୍କ ପରିଚୟ ଇତ୍ୟାଦି ବୁଝି କହିଲେ - ମାଣତ୍ରୀଗଡ଼ର ପଠାଣ ଦଳବେହେରାଙ୍କୁ ମାରି ସେହିଠାରେ ରହ । ତା'ପରେ ଦୁଇଭାଇ ଗଉଡ଼ ବେଶ ହୋଇ ବିଶାଖା ନାମ୍ନୀ ସୁଚତୁରା ବିଧବା ଭଉଣୀକୁ ଗଉଡୁଣୀ ସଜାଇ ଦହି ଦୁଇ ଭାର ନେଇ ମାଣତ୍ରୀଗଡ଼ ଦଳବେହେରାଙ୍କ ଘରେ ଭେଟିଦେଲେ । ସେଇ ମଉକାରେ ଗଡ଼ ଭିତରେ ବୁଲି ଦେଖିଆସିଲେ ଏବଂ ରାତିରେ ଲୁଚି ଗଡ଼ଭିତରେ ପଶି କୌଶଳରେ ପଠାଣ ଦଳବେହେରାଙ୍କୁ ହତ୍ୟାକଲେ । ଏ ଖବର ଶୁଣି ଖୋର୍ଦ୍ଧାରାଜା ପ୍ରସନ୍ନ ହୋଇ ଧନୁର୍ଜୟ ମହାରଥୀ ଓ ଚନ୍ଦ୍ର ମହାରଥୀଙ୍କୁ ମାଣତ୍ରୀଗଡ଼ରେ ରହିବାକୁ ଅନୁମତି ଦେବା ସଙ୍ଗେସଙ୍ଗେ ସେମାନଙ୍କ ବିଧବା ଭଉଣୀ ବିଶାଖାର ସାହସ ଓ ଉପସ୍ଥିତ- ବୁଦ୍ଧିକୁ ପ୍ରଶଂସାକରି ତା'ର ଚାରି ପୁଅଙ୍କୁ ଯଥାକ୍ରମେ ମାଣତ୍ରୀ, ଅତ୍ରି, କଦଳୀବାଡ଼ି ଓ ବାଇପୁର ଗଡ଼ର ଦଳବେହେରା ଶାଢ଼ି ପ୍ରଦାନ କଲେ । ସେହି କାଳରୁ ଅଦ୍ୟାବଧି ଏହି ଚାରିଗଡ଼ର ଦଳବେହେରା ପରିବାରବର୍ଗ ଗୋଟିଏ କୁଟୁମ୍ବଭୁକ୍ତ ହୋଇ ରହିଛନ୍ତି ବୋଲି ଶ୍ରୀ ରାଉତରାୟ କହିଥିଲେ ।

## ଫିରିଙ୍ଗି ସରକାର ବିରୋଧରେ ବିଦ୍ରୋହ

ଶ୍ରୀ ରାଉତରାୟଙ୍କ ଉକ୍ତିମତେ ତାଙ୍କର ପ୍ରପିତାମହ ଚନ୍ଦ୍ର ମହାରଥୀଙ୍କ ପୌତ୍ର ଭାଗୀରଥି ରାଉତରାୟ ଏବଂ ମାଣତ୍ରୀ ଦନବେହେରା (ବିଶାଖାଙ୍କ ୧ମ ପୁତ୍ର) ବାଳକୃଷ୍ଣ ସାମନ୍ତରାୟଙ୍କ ପୌତ୍ର ମୋହନ ସାମନ୍ତରାୟ ଫିରିଙ୍ଗି ସରକାର ବିରୋଧରେ ବିଦ୍ରୋହକରି ଜେଲ୍‌ଯାଇଥିଲେ । ତାହାର ପ୍ରମାଣପାଇଁ ସେ ଦୁଇ ଖଣ୍ଡି ପୁରୁଣା ତାଳପତ୍ର ପୋଥି ଦେଖାଇଥିଲେ ।

'ଦାର୍ଢ୍ୟତାଭକ୍ତି' ଓ 'ଗୁଣସାଗର' ପୋଥି ଦୁଇଟିର ଶେଷରେ ଲେଖାଅଛି ଯେ ଏହି ପୋଥି ଗଜପତି ରାମଚନ୍ଦ୍ର ଦେବଙ୍କ ୨୭ଅଙ୍କରେ ଖୋର୍ଦ୍ଧା ଜେଲଖାନା ଭିତରେ ମୋହନ ସାମନ୍ତରାୟଙ୍କଦ୍ୱାରା ଲେଖାହୋଇଥିଲା ଏବଂ ପୋଥିର ମାଲିକ ଭାଗୀରଥି ରାଉତରା ।

ଗଜପତି ରାମଚନ୍ଦ୍ରଦେବ ଯେ ମୁକୁନ୍ଦଦେବ (୨ୟ)ଙ୍କ ପୁତ୍ର ରାମଚନ୍ଦ୍ରଦେବ (୩ୟ) ଏହା ନିଃସନ୍ଦେହରେ କୁହାଯାଇପାରେ ଏବଂ ତାଙ୍କର ୨୭ ଅଙ୍କ ଅର୍ଥାତ୍ ୧୮୩୮-୩୯ ଖ୍ରୀଷ୍ଟାବ୍ଦରେ ମୋହନ ସାନ୍ତରା ଓ ଭାଗୀରଥି ରାଉତରାୟ ଖୋର୍ଦ୍ଧା ଜେଲଖାନାରେ ଥିବାରୁ ସେମାନଙ୍କ ବିଦ୍ରୋହ ନିଶ୍ଚିତଭାବେ ତାପଙ୍ଗ-ବିଦ୍ରୋହର ସମସାମୟିକ ଘଟଣା । ଫିରିଙ୍ଗି ସରକାରଙ୍କୁ କର ନ ଦେଇ ଅବଜ୍ଞା କରିବା ଫଳରେ ତାପଙ୍ଗ ଦଳବେହେରାଙ୍କ ସହ ଫିରିଙ୍ଗି ଫୌଜର ସଂଘର୍ଷର ସୂତ୍ରପାତ ହୋଇ ଶେଷରେ ତାହା ପାଞ୍ଚ ଦିନ ବ୍ୟାପୀ ଭୟଙ୍କର ଯୁଦ୍ଧର ରୂପ ନେଇଥିଲା । କିନ୍ତୁ ତାପଙ୍ଗ ଦଳବେହେରାଙ୍କ ପରି ମାଣତ୍ରୀ ଦଳବେହେରାଙ୍କର ବିରାଟ

ଅସ୍ତ୍ରାଗାର ନ ଥିଲା କି ବିଶାଳ ସୈନ୍ୟବାହିନୀ ନ ଥିଲା । ପୁଣି ତାପଙ୍ଗ ବିଦ୍ରୋହରେ ଯେପରି ଆଖପାଖ ଗ୍ରାମ ଓ ଗଡ଼ମାନଙ୍କର ପାଇକ ସର୍ଦ୍ଦାରମାନେ ଦଳବେହେରାଙ୍କ ସହ ଯୋଗଦେଇଥିଲେ, ମାଣତ୍ରୀ ଦଳବେହେରାଙ୍କ କ୍ଷେତ୍ରରେ ତାହାର ବିପରୀତ ପରିସ୍ଥିତି ସୃଷ୍ଟିହୋଇଥିଲା । ପାଇକ ବିଦ୍ରୋହ ଓ ତାପଙ୍ଗ ବିଦ୍ରୋହ ପରି ଗୋଳମାଳିଆ ସମୟରେ ରଣପୁର ରାଜାଙ୍କର ମାଣତ୍ରୀଗଡ଼ ଉପରେ ଜବରଦସ୍ତ ଅଧିକାର ଜାହିର୍ ଉଦ୍ୟମକୁ ଦଳବେହେରା ମଦନମୋହନ ସାମନ୍ତରାୟ ଓ ତାଙ୍କର ଭାଇଆଳୀ ଭାଗୀରଥି ରାଉତରାୟ ପଣ୍ଡକରିଦେଇଥିବାରୁ ରଣପୁର ରାଜା ଇଂରେଜ ସରକାରଙ୍କ ପକ୍ଷ ସମର୍ଥନ କରି ସେ ଦୁହିଁଙ୍କୁ ଧରାଇଦେବା ଉଦ୍ଦେଶ୍ୟରେ ତିନି ଥର ମାଣତ୍ରୀଗଡ଼ ଆକ୍ରମଣ କରିଥିଲେ । ସେ ଦୁହେଁ ଗିରଫଦାରି ଏଡ଼ାଇବା ଉଦ୍ଦେଶ୍ୟରେ ପ୍ରଥମଥର କାସେଦାରେ, ଦ୍ୱିତୀୟଥର ଗଡ଼ବଳଭଦ୍ରପୁରରେ ଏବଂ ତୃତୀୟଥର ପାରିଖେତାରେ ଆତ୍ମଗୋପନ କରିଥିଲେ । ଶେଷରେ ଜଣେ ସାହେବ ସହ ସଂଘର୍ଷକରି ସାହେବର ଘୋଡ଼ାକୁ ହାଣିଦେବା ପରେ ଉଭୟ ମୋହନ ସାମନ୍ତରା ଓ ଭାଗୀରଥି ରାଉତରା ଆପେ ଆପେ ଯାଇ ଖୋର୍ଦ୍ଧା କଚେରିରେ ଆତ୍ମସମର୍ପଣ କରି ନଅ ବର୍ଷ କାଳ ଜେଲଦଣ୍ଡ ଭୋଗିଥିଲେ ବୋଲି ଶ୍ରୀ ରାଉତରାୟ ପ୍ରକାଶକରିଥିଲେ ।

**ମୋହନ ସାମନ୍ତରା ଓ ଭାଗୀରଥି ରାଉତରାଙ୍କ ବଂଶଲତା:**

(୧) ବିଶାଖା (ଚନ୍ଦ୍ର ଓ ଧନୁର୍ଜ୍ଜୟଙ୍କ ବିଧବା ଭଉଣୀ)

ବାଳକୃଷ୍ଣ ସାମନ୍ତରାୟ (ମାଣିତ୍ରୀ ଦଳବେହେରା) | ଅତ୍ରି ଦଳବେହେରା | ବୀଜପୁର ଦଳବେହେରା | କଦଳୀବାଡ଼ି ଦଳବେହେରା

ଅନନ୍ତଚରଣ ସାମନ୍ତରାୟ

ମୋହନ ସାମନ୍ତରାୟ | ସନାତନ

ଦୁର୍ଯ୍ୟୋଧନ

ଭରତ ସାମନ୍ତରାୟ (ପୋଷ୍ୟପୁତ୍ର)



ସେ କାଳର ମାଣତ୍ରୀଗଡ଼ ଆଜି ଆଉ ନାହିଁ । ସେକାଳର ଅରଣ୍ୟ ମଧ୍ୟ ଆଉ ନାହିଁ; ସେକାଳର ଅରଣ୍ୟକୁ ଏ କାଳର ଲୋକାରଣ୍ୟ ନିଃଶେଷ ଓ ନିଶ୍ଚିହ୍ନ କରିଦେଇଛି । ସେ ଅଞ୍ଚଳ ଆଉ ଦୁର୍ଗମ ହୋଇ ନାହିଁ । ଖୋର୍ଦ୍ଧାଠାରୁ ୫ ନମ୍ବର ଜାତୀୟ ରାଜପଥରୁ ମାଣତ୍ରୀଯାଏ ଲମ୍ବିଯାଇଛି ସୁଗମ ପିଚୁସଡ଼କ । ଗଡ଼ମାଣତ୍ରୀକୁ ଦୈନିକ ଯାତ୍ରୀବାହୀ ବସ୍ ଯାତାୟାତ କରୁଛି । ଇତିହାସବର୍ଣ୍ଣିତ ସେହି ଅରଣ୍ୟ-ଆଚ୍ଛନ୍ନ ଦୁର୍ଗମ ଅଞ୍ଚଳ ଏବେ ଗଡ଼ମାଣତ୍ରୀ ମହାବିଦ୍ୟାଳୟର ନୂତନ ଶିକ୍ଷାଲୋକରେ ଆଲୋକିତ ହୋଇଉଠିଛି । ଏ ଶିକ୍ଷାଲୋକ ଇତିହାସର ଅନ୍ଧକାର ବକ୍ଷ ଭେଦକରି ଫିରିଙ୍ଗି ସରକାର ବିରୋଧରେ ମାଣତ୍ରୀଗଡ଼ ଦଳବେହେରାଙ୍କ ବିଦ୍ରୋହର ଏକ ସ୍ପଷ୍ଟ ଚିତ୍ର ଲୋକଲୋଚନକୁ ଆଣିପାରିବ ବୋଲି ଆଶାକରାଯାଏ ।

## ଗଡ଼ ରାମେଶ୍ୱର-

୧୮୦୪ ଡ଼ିସେମ୍ବର ମାସ ଶେଷ ସପ୍ତାହର ଏକ ଶୀତସନ୍ତାପିତ ସନ୍ଧ୍ୟା । ବ୍ରିଟିଶ ବାହିନୀ ପକ୍ଷରୁ ଘନ ଘନ ତୋପ କମାଣର ପ୍ରଚଣ୍ଡ ଆକ୍ରମଣକୁ ଦୀର୍ଘ ତିନି ସପ୍ତାହ ଧରି ପ୍ରତିହତକରିଆସିଥିବା ଦୁର୍ଦ୍ଧର୍ଷ ବୀର ଓଡ଼ିଆ ପାଇକବାହିନୀର ପ୍ରାଣମୂର୍ଚ୍ଛା ଶେଷସଂଗ୍ରାମ ଉପରେ କ୍ରୁର ଯମଯାତନାର ଯବନିକାପାତ କରି ଦୁର୍ଗମ ଦୁର୍ଭେଦ୍ୟ ଖୋର୍ଦ୍ଧା ଦୁର୍ଗର ସ୍ୱାଧୀନତା-ସୂର୍ଯ୍ୟକୁ ଚିରଦିନପାଇଁ ଗ୍ରାସକରିଦେଇଥିଲା ସେହି ଏକ କାଳସନ୍ଧ୍ୟା । କ୍ରମାଗତ ତିନି ସପ୍ତାହ ଧରି ଓଡ଼ିଶାର ଶେଷ ସ୍ୱାଧୀନ ଦୁର୍ଗ 'ଖୋର୍ଦ୍ଧା ଘାଟୀଗଡ଼'କୁ ଉତ୍ତର, ପୂର୍ବ, ପଶ୍ଚିମ ତିନି ଦିଗରୁ ଅବରୋଧ କରି ତୋପ, କମାଣ, ବନ୍ଧୁକ ମୁହଁରୁ ଅବିରତ ଗୁଳିଗୋଳା ବର୍ଷଣ ସତ୍ତ୍ୱେ ଶକ୍ତିଶାଳୀ ଫିରିଙ୍ଗି ଫଉଜ ସେହି ଦୁର୍ଭେଦ୍ୟ ଦୁର୍ଗକୁ ଭେଦକରିପାରି ନ ଥିଲା, କିମ୍ବା ଦୁର୍ଗମ ବରୁଣେଇ ପାହାଡ଼ର ସୁରକ୍ଷା ବଳୟ ଭେଦକରି ଦୁର୍ଗର ଦକ୍ଷିଣପାର୍ଶ୍ୱକୁ ଅବରୋଧ କରିବାପାଇଁ ସକ୍ଷମ ହୋଇପାରି ନ ଥିଲା । ଖୋର୍ଦ୍ଧାର ଦୁର୍ବାର ପାଇକ ବାହିନୀର ନେତୃତ୍ୱ ନେଇ ଦୁର୍ଗ ପୂର୍ବଦ୍ୱାରର ରକ୍ଷା ଦାୟିତ୍ୱରେ ଅବସ୍ଥାପିତ ଥିଲେ ଅସାଧାରଣ ସାହସୀ ବୀର, ଖୋର୍ଦ୍ଧା ରାଜବଂଶର ରାଜଗୁରୁ ଜୟକୃଷ୍ଣ ମହାପାତ୍ର - ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କର ପିତୃପ୍ରତିମ ବିଶ୍ୱସ୍ତ ଅଭିଭାବକ ଜୟୀ ରାଜଗୁରୁ । ଉତ୍ତର ଦ୍ୱାରର ରକ୍ଷା ଦାୟିତ୍ୱରେ ଥିଲେ ଖୋର୍ଦ୍ଧା ରାଜ୍ୟର ସ୍ୱନାମଧନ୍ୟ ଦୁର୍ଦ୍ଧର୍ଷ ସେନାପତି ବୀରଶ୍ରେଷ୍ଠ ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଏବଂ ପଶ୍ଚିମ ଦ୍ୱାରର ରକ୍ଷକ ଥିଲେ ଅନ୍ୟତମ ପ୍ରଖ୍ୟାତ ଯୋଦ୍ଧା ତଥା ଖୋର୍ଦ୍ଧା ରାଜାଙ୍କର ସୁଯୋଗ୍ୟ ଦେଓ୍ୱାନ୍ ହରିହର ଭ୍ରମରବର ରାୟ । ମହାରାଜା ମୁକୁନ୍ଦଦେବ ମଝିରେ ମଝିରେ ଦକ୍ଷିଣ ପାର୍ଶ୍ୱ ଗୁପ୍ତଦ୍ୱାର ଦେଇ ଦୁର୍ଗ ମଧ୍ୟରୁ ବାହାରିଆସି ବରୁଣେଇ ପାହାଡ଼ କାଛିରୁ ଯୁଦ୍ଧର ଗତିବିଧି ଲକ୍ଷ୍ୟକରୁଥିଲେ । ସେହି ପାର୍ଶ୍ୱରେ ହିଁ ବରୁଣେଇ ପାହାଡ଼ର ଦୁର୍ଗମ ଅରଣ୍ୟ ବେଷ୍ଟିତ ପାଦଦେଶରେ ଗଜପତିଙ୍କ ପାଇକବାହିନୀର ବିଶାଳ ଛାଉଣି ବିଛେଇପଡ଼ିଥିଲା । ଇଂରେଜମାନେ ଦୁର୍ଗ ଅବରୋଧ କରିବାପରେ ସେହି ଦକ୍ଷିଣପାଖ ଘାଟି ବାଟଦେଇ ମୁକୁନ୍ଦଦେବ ତାଙ୍କର ୪ ମାସର ଶିଶୁପୁତ୍ର

ରାମଚନ୍ଦ୍ର ସହିତ ରାଣୀଙ୍କୁ ସବାରିରେ ବସାଇ ମାଟିଆପଡ଼ାଗଡ଼ର ବିଶ୍ୱସ୍ତ ପାଇକମାନଙ୍କଦ୍ୱାରା ରାମେଶ୍ୱରଗଡ଼କୁ ପଠାଇ ଦେଇଥିଲେ ।*

କ୍ରମେ ଦୁର୍ଗର ପୂର୍ବପାଖ ପ୍ରାଚୀର ଉପରେ ହିଁ ଇଂରେଜ ଫଉଜର ବହୁମୁଖୀ ଆକ୍ରମଣ କେନ୍ଦ୍ରୀଭୂତ ହେବାକୁ ଲାଗିଲା । ବହୁସଂଖ୍ୟକ ତୋପ କମାଣରୁ କ୍ରମାଗତ ଗୁଳିବର୍ଷଣ ଚାଲିଥିଲା । ଅବିରାମ 'ଗୁଡ଼ମ୍ ଗୁଡ଼ମ୍' ତୋପ ନାଦରେ ଥରିଉଠୁଥିଲା ଗଡ଼ ପ୍ରାଚୀର । ଚହଲିଉଠୁଥିଲା ବରୁଣେଇ ଗିରି ଗହ୍ୱର । ହଠାତ୍ ଏକ ଭୟଙ୍କର ଶବ୍ଦ ସହ ପୂର୍ବପାଖ ପ୍ରାଚୀର କାନ୍ଥରେ ପ୍ରକାଣ୍ଡ ଫାଟ ସୃଷ୍ଟି ହେବା ସଙ୍ଗେ ସଙ୍ଗେ ପ୍ରାଚୀରର ଏକ ଅଂଶ ଭାଙ୍ଗିପଡ଼ିଲା । ଭାଙ୍ଗିପଡ଼ିଲା ଜୟୀ ରାଜଗୁରୁଙ୍କ ଦୃପ୍ତ ହୃଦୟ । ରାଜଗୁରୁ ତତ୍କ୍ଷଣାତ୍ ଦୌଡ଼ିଯାଇ ମହାରାଜାଙ୍କୁ ଜଣାଇଲେ - 'ମଣିମା ! ଅବଶେଷରେ ସେମାନେ ଦୁର୍ଭେଦ୍ୟ ଦୁର୍ଗପ୍ରାଚୀରରେ ଭେଦ ସୃଷ୍ଟିକରିପାରିଛନ୍ତି । ଦୁର୍ଗର ନିରାପତ୍ତା ବିପନ୍ନହୋଇଛି । ଏବେ ଦୁର୍ଗ ଛାଡ଼ି ପଳାଇଯାଇ ଅରଣ୍ୟରେ ଆତ୍ମଗୋପନ କରିବା ଛଡ଼ା ଗତ୍ୟନ୍ତର ନାହିଁ । ସେହି ମୁହୂର୍ତ୍ତରେ ହିଁ ମହାରାଜା ମୁକୁନ୍ଦଦେବ ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ ଓ ଦେଓ୍ୱାନ୍ ହରିହର ପ୍ରମୁଖ ବିଶ୍ୱସ୍ତ ରକ୍ଷୀମାନଙ୍କ ଗହଣରେ ଦୁର୍ଗର ଦକ୍ଷିଣ ପାର୍ଶ୍ୱ ଗୁପ୍ତଦ୍ୱାର ଦେଇ ଅରଣ୍ୟ ମଧ୍ୟକୁ ପଳାଇଯାଇ ରାମେଶ୍ୱର ଗଡ଼ରେ ନିଜର ରାଣୀ ଓ ଶିଶୁପୁତ୍ରଙ୍କ ସହ ଆଶ୍ରୟ ନେଲେ ।**

## (ରାମେଶ୍ୱର ଗଡ଼ରେ ମୁକୁନ୍ଦଦେବଙ୍କର ସପରିବାର ଆତ୍ମଗୋପନ)

ଫିରିଙ୍ଗି କଳି ଭାରତ - ୮ମ ଅଧ୍ୟାୟ, ପୃ ୨୦୩

* ''ପାର୍ବତୀ ପୁଛିଲେ ଯେ ଶୁଣ ଶୂଳପାଣି / ଶ୍ରୀପାଟ ଉଦରେ କେବେ ଜନ୍ମିଲେ ଚେନାମଣି'' ୪୦୭
''ତ୍ରିୟମ୍ବକ କହିଲେ ଶୁଣ ପ୍ରାଣସହି / ଆଠଅଙ୍କ ଶେଷ ଚାରିଦିନେ ଜନ୍ମିଲେ ତନୟୀ ।'' ୪୦୮

x x x ୯ମ ଅଧ୍ୟାୟ, ପୃଷ୍ଠା, ୨୨୩

''ଦିନବନ୍ଧୁ କମର ଗୁରୁଙ୍କୁ ଅନାଇ / ବୋଇଲେ ରାଣୀସହ ଚେନାମଣି ନେଇ ।'' ୨୪୬
''ଦର୍ପିଷ୍ଠ ଦାନବ କରିଅଛନ୍ତି ଜଞ୍ଜାଳ / ଏତେବେଳେ ମୋର ଅର୍ଦ୍ଧଙ୍ଗି ସମ୍ଭାଳ ।'' ୨୪୭
''ଯାନ-ସୁଖାସନ ପାଲିକି ବିଦ୍ୟମାନ / ପାଞ୍ଜିଆ ଲୋକନାଥ ଯାଅହେ ବହନ ।'' ୨୪୮
''ଆଜ୍ଞା ପ୍ରମାଣେ ମସ୍ତକେ କରଦେଲେ / ଶ୍ରୀପାଟ ଚେନାମଣି ଅନ୍ତର ହୋଇଲେ ।'' ୨୪୯
''ରାତ୍ର ଅର୍ଦ୍ଧମାନେ ବହନ ଚଳିଗଲେ / ମଦାଅଗ୍ନିତଟେ ଦଣ୍ଡକ ଅରଣ୍ୟେ ରହିଲେ ।'' ୨୫୦
''ସୀତା ଲକ୍ଷ୍ମଣ ଘେନି ରାମଥିଲେ ଯହିଁ / ଓଡ଼ିଶା ରାଜଲକ୍ଷ୍ମୀ ରହିଲେ ତହିଁଯାଇ ।'' ୨୫୧

x x x ୯ମ ଅଧ୍ୟାୟ, ପୃଷ୍ଠା, ୨୨୩

** ''ଯାଇଣ ନୃପତି ବିଜେକଲେ ରାମେଶ୍ୱର / ଗହଣେ ଅଛନ୍ତି ସହସ୍ରେ ପଦାତିକାର ।'' ୩୯୯
ଦିଙ୍କମଧ୍ୟୁ ବୋଇଲେ ଶୁଣିମା ସୁଜ୍ଞଜନ / ପାଞ୍ଚରାତ୍ର ତହିଁ ରହିଲେ ରାଜନ ।'' ୪୦୦

ସେତେବେଳେ ରାମେଶ୍ୱରଗଡ଼ ହିଁ ମହାରାଜା ମୁକୁନ୍ଦଦେବଙ୍କ ପରିବାରବର୍ଗଙ୍କପାଇଁ ଏକ ଅତି ଆପଣାର ଆଶ୍ରୟସ୍ଥଳ ଥିଲା । କାରଣ ରାମେଶ୍ୱର ଗଡ଼ାଧୀଶ ଲାଲାବଳୀଆରସିଂହ ସମ୍ପର୍କରେ ମୁକୁନ୍ଦଦେଙ୍କ ଶ୍ୱଶୁର ଥିଲେ । ତେଣୁ ରାଜଗୁରୁ, ବକ୍ସି ଏବଂ ଦେଓ୍ୱାନ୍ ପ୍ରଭୃତିଙ୍କୁ ରାତାରାତି ଅରଣ୍ୟ ମଧ୍ୟରେ ବିଦାୟଦେଇ ମୁକୁନ୍ଦ ଦେବ ସପରିବାର ଆତ୍ମଗୋପନ କରିଥିଲେ ରାମେଶ୍ୱରଗଡ଼ରେ[୧୭୫] । ଅବଶ୍ୟ ସେଠାରେ ମୁକୁନ୍ଦଦେବ ବେଶୀ ସମୟ ରହିପାରି ନ ଥିଲେ, କାରଣ ଲାଲା ବଳୀଆରସିଂହଙ୍କ ସହିତ ନିଜର ମଧୁର ସମ୍ପର୍କ ବିଷୟ ସ୍ୱୟଂ ମୁକୁନ୍ଦଦେବ ହିଁ ବହୁ ଆଗରୁ ଇଂରେଜ ପ୍ରଶାସକଙ୍କୁ ଜଣାଇସାରିଥିଲେ । ତେଣୁ ମୁକୁନ୍ଦଦେବଙ୍କ ଆତ୍ମଗୋପନ କାଳରେ ତାଙ୍କୁ କୌଣସି ପ୍ରକାର ସହାୟତା ପ୍ରଦାନ ନ କରିବାପାଇଁ ମୁକୁନ୍ଦଦେବଙ୍କ ଶ୍ୱଶୁର ରାମେଶ୍ୱର ଗଡ଼ଦଳବେହେରା ଲାଲା ବଳୀଆରସିଂହ ଏବଂ ତାଙ୍କ ଭାଇ ଭିକାରି ବଳୀଆର ସିଂହଙ୍କ ଉପରେ ଇଂରେଜ କମିଶନର କଡ଼ା ନିର୍ଦ୍ଦେଶନାମା ଜାରିକରିଦେଲେ ।

ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରେ ନିଜର ନିରଙ୍କୁଶ ଶାସନ ପ୍ରବର୍ତ୍ତନ କରିବା ଲକ୍ଷ୍ୟରେ ପୂର୍ବରୁ ମୁକୁନ୍ଦଦେବଙ୍କୁ ଚାରି ପ୍ରଗଣା ଫେରାଇଦେବାର ପ୍ରତିଶ୍ରୁତି ଭଙ୍ଗକରିଥିଲେ ହେଁ, ତାଙ୍କୁ ବ୍ୟକ୍ତିଗତଭାବେ ଭୁଲାଇ ଖୁସି କରି ରଖିବେ ବୋଲି ବିଚାରିଥିଲେ । ସେଥିପାଇଁ ଗଜପତି ମହାରାଜାଙ୍କ ନୂଆ ଅଙ୍କକଟା ଓ ସୁନିଆଁ ଭେଟି ପରମ୍ପରାକୁ ଅକ୍ଷୁଣ୍ଣ ରଖି ସୁନିଆଁ ଦିନ ମୁକୁନ୍ଦଦେବଙ୍କୁ ୯ଗୋଟି ସୁନାମୋହର ଭେଟିଦେବାପାଇଁ ବ୍ୟବସ୍ଥା ଖଞ୍ଜିଥିଲେ । ଏପରିକି ମୁକୁନ୍ଦଦେବଙ୍କ ଇଚ୍ଛାକ୍ରମେ ୧୮୦୪ ମେ ମାସରେ ତାଙ୍କ ଶ୍ୱଶୁର ଲାଲା ବଳୀଆରସିଂହ ଜଗନ୍ନାଥ ଦର୍ଶନପାଇଁ ଶ୍ରୀକ୍ଷେତ୍ରକୁ ଯାତ୍ରା କରିବା ପୂର୍ବରୁ ରାମେଶ୍ୱରରୁ ଖୋର୍ଦ୍ଧା ଦେଇ ପୁରୀ ଯିବା ବାଟରେ ତାଙ୍କପାଇଁ ଯଥୋଚିତ ସୁବିଧା ସୁଯୋଗ ଯୋଗାଇଦେବାକୁ ଇଂରେଜ କମିଶନରଙ୍କ ପକ୍ଷରୁ ସମସ୍ତ ରାସ୍ତା ପଟ୍ଟାଦାର, ମହଡ଼ାଦାର, ସର୍ବରାକାର ଏବଂ ଚୌକିଦାରମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା[୧୭୬] । ତାଙ୍କୁ ଭେଟିଦେବାପାଇଁ କଲିକତାରୁ ମୂଲ୍ୟବାନ୍ ସ୍ୱତନ୍ତ୍ର ଉପଢ଼ୌକନ ମଗାଯାଇଥିଲା । ସେଥିପାଇଁ ବାଟରେ ଠା'କୁ ଠା' ଅସ୍ଥାୟୀ ଛାୟାପ୍ରଦ ବିଶ୍ରାମ ମଞ୍ଚ ନିର୍ମାଣକରାଯାଇ ପାଲିଙ୍କି ଆପଟ, ପାଣିଆପଟ ଓ ଖାଦ୍ୟପେୟ ଇତ୍ୟାଦିର ସୁବନ୍ଦୋବସ୍ତ କରାଯାଇଥିଲା । ସୁତରାଂ ରାମେଶ୍ୱରଗଡ଼ କିପରି ମୁକୁନ୍ଦଦେବଙ୍କର ଅତି ଆପଣାର ଥିଲା ଏବଂ ସେ ଗଡ଼ର ଦଳବେହେରା ସେହି କାରଣରୁ କିପରି ଖୋର୍ଦ୍ଧା ରାଜ୍ୟରେ ଅତି ପ୍ରଭାବଶାଳୀ ଥିଲେ ତାହା ଉପରୋକ୍ତ ଦୁଇଟି ଘଟଣାରୁ ଜଣାପଡ଼େ ।

ଭୋଇ ବଂଶର ୧ମ ରାଜା ରାମଚନ୍ଦ୍ରଦେବଙ୍କଦ୍ୱାରା ପ୍ରତିଷ୍ଠିତ ଯେଉଁ ଖୋର୍ଦ୍ଧା ରାଜ୍ୟକୁ ୧୫୯୨ରେ ସମ୍ରାଟ ଆକବରଙ୍କ ନିର୍ଦ୍ଦେଶକ୍ରମେ ତାଙ୍କର ସେନାପତି ରାଜା ମାନସିଂହ ସ୍ୱୀକୃତି ପ୍ରଦାନ କରିଥିଲେ, ତହିଁରେ ୭୧ ଗୋଟି ଗଡ଼ ଥିଲା ଏବଂ ତନ୍ମଧ୍ୟରୁ ପ୍ରଧାନ

---

*୧୭୫- ୧୭/୩୧୫ ୧୭୬- ୭/୩୩,୩୭*

ପ୍ରଧାନ ୮ଗୋଟି ଗଡ଼ ନାମରେ ସମସ୍ତ ଖୋର୍ଦ୍ଧା କିଲ୍ଲାକୁ ୮ଗୋଟି ଛିଲ୍ଲାରେ ବିଭକ୍ତ କରାଯାଇଥିଲା । ସେହି ୮ଗୋଟି ଛିଲ୍ଲା ମଧ୍ୟରେ ରାମେଶ୍ୱର ଛିଲ୍ଲା ଥିଲା ଅନ୍ୟତମ । ରାମେଶ୍ୱରଗଡ଼ ରାମେଶ୍ୱର ଛିଲ୍ଲାର ସଦର ମହକୁମା ଥିଲା । ରାମେଶ୍ୱର ଛିଲ୍ଲା ଅଧୀନରେ ସର୍ବମୋଟ ୯ଗୋଟି ଗଡ଼ ଥିଲା, ଯଥା - ରାମେଶ୍ୱର, ଲାଲସିଂ, ଛଣଗିରି, ଟିକାତଳ, ମୂଳଝର, ବଡ଼ପୋଖରିଆ, ସିକୋ, ପରିଛଳ ଓ କୋତଳାଙ୍ଗ[୧୭୭] । ଓଡ଼ିଶାରେ ମୋଗଲ, ମରହଟ୍ଟା ଓ ବ୍ରିଟିଶ ରାଜତ୍ୱ କାଳରେ ଖୋର୍ଦ୍ଧାର ଜମିଜମା ସ୍ୱତ୍ୱଲିପି ବନ୍ଦୋବସ୍ତମାନଙ୍କରେ 'କିଲ୍ଲେ ଖୋର୍ଦ୍ଧା ଛିଲ୍ଲେ ରାମେଶ୍ୱର' ବୋଲି ଉଲ୍ଲେଖ ରହୁଥିଲା । ଦେଶ ସ୍ୱାଧୀନ ହେବାପରେ ୧୯୫୪ରେ ଓଡ଼ିଶାରେ ଜମିଦାରୀ ଓ ମଧ୍ୟ ସ୍ୱତ୍ୱାଧିକାରୀ ଉଚ୍ଛେଦ ହେବା ପର୍ଯ୍ୟନ୍ତ ଖୋର୍ଦ୍ଧା ଖାସ୍‌ମାହାଲ୍ ଅଧୀନରେ ରାମେଶ୍ୱର ଛିଲ୍ଲାର ନାମ ଉଲ୍ଲେଖଥିଲା, ଯଦିଓ ପ୍ରଶାସନିକ ସ୍ତରରେ ଏହା ଥିଲା ଖୋର୍ଦ୍ଧା ସବ୍‌ଡିଭିଜନ୍ ଓ ପୁରୀ ଜିଲ୍ଲାର ଅନ୍ତଃବର୍ତ୍ତୀ ।

ପୂର୍ବତନ ଗଡ଼ଜାତ ରାଜ୍ୟ ରଣପୁରର ମାଳ ଅଞ୍ଚଳରୁ ବାହାରି ଗଡ଼ବଳଭଦ୍ରପୁରଠାରେ ଦୟାନଦୀ ସହିତ ମିଶିଥିବା 'ଅମନ୍ଦଗାମିନୀ ନଦୀ ମନ୍ଦାକିନୀ'ର ଦକ୍ଷିଣତଟରେ ସୁରମ୍ୟ ରାମେଶ୍ୱର ପାହାଡ଼ର ଉତ୍ତରପାର୍ଶ୍ୱ ପାଦଦେଶରେ ରାମେଶ୍ୱରଗଡ଼ ଅବସ୍ଥିତ । ରାମେଶ୍ୱର ପାହାଡ଼ର ପଶ୍ଚିମ ପାର୍ଶ୍ୱକୁ ଲାଗି ୫ ନମ୍ବର ଜାତୀୟ ରାଜପଥ ମନ୍ଦାକିନୀ ନଦୀକୁ ଏକ ସୁଦୃଢ଼ ସେତୁ ସହିତ ଅତିକ୍ରମ କରି ଲମ୍ବିଯାଇଛି ସୁଦୂର ଦକ୍ଷିଣକୁ । ପାହାଡ଼ର ଦକ୍ଷିଣ-ପଶ୍ଚିମ କୋଣକୁ ଲାଗି ୫ନମ୍ବର ଜାତୀୟ ରାଜପଥରୁ ନୂଆ ଜଗନ୍ନାଥ ସଡ଼କ ବାହାରି ପାହାଡ଼ର ଦକ୍ଷିଣ ସୀମା କଡ଼େ କଡ଼େ ରାମେଶ୍ୱର ଗ୍ରାମକୁ ଅତିକ୍ରମ କରି ନିରାକାରପୁର ଦେଇ ଯାଇ ବୀରନରସିଂହପୁରଠାରେ ପୁରୁଣା ଜଗନ୍ନାଥ ସଡ଼କରେ ମିଶିଛି । ଆଉ ସେଇ ପାହାଡ଼ର ପୂର୍ବସୀମାକୁ ଆବୋରି ରହିଛି ରାମେଶ୍ୱର ଗାଁ, ୧୦୪ ବର୍ଷର ପ୍ରାଚୀନ ରାମେଶ୍ୱର ମଧ୍ୟଇଂରାଜୀ ବିଦ୍ୟାଳୟ । ସର୍ବପ୍ରାଚୀନ ନିମ୍ନପ୍ରାଥମିକ ବିଦ୍ୟାଳୟ, ନବନିର୍ମିତ ସ୍ୱାସ୍ଥ୍ୟସେବା କେନ୍ଦ୍ର ଏବଂ ବହୁ ପ୍ରାଚୀନ ରାମନିଧିଦେବଙ୍କ ମନ୍ଦିର ।,

ପ୍ରଚଳିତ କିମ୍ବଦନ୍ତୀ ଅନୁଯାୟୀ, ତ୍ରେତୟା ଯୁଗରେ ଶ୍ରୀରାମ, ଲକ୍ଷ୍ମଣ ଓ ସୀତାଙ୍କ ବନବାସ କାଳରେ ପ୍ରଭୁ ଶ୍ରୀରାମଚନ୍ଦ୍ର ଅପୂର୍ବ ପ୍ରାକୃତିକ ଶୋଭାସମ୍ଭାର ପରିପୂର୍ଣ୍ଣ ମନ୍ଦାକିନୀ ତଟବର୍ତ୍ତୀ ଏଇ ସୁରମ୍ୟ ପାହାଡ଼ର ପାଦଦେଶରେ ଭ୍ରମଣ କରୁ କରୁ ଦୈବାତ୍ ଏକ ଦୁର୍ଲଭ ଶିବଲିଙ୍ଗ ଦେଖିବାକୁ ପାଇ ଅମୂଲ୍ୟନିଧି ପାଇବା ପରି ଉଲ୍ଲସିତ ହୋଇଉଠିଲେ । ପୁଣ୍ୟତୋୟା ମନ୍ଦାକିନୀରେ ସ୍ନାନସାରି ଅରଣ୍ୟଲବ୍ଧ ବହୁବିଧ ସୁଗନ୍ଧ ପୁଷ୍ପ ଓ ସୁସ୍ୱାଦୁ ଫଳାଦି ଭକ୍ତି ନୈବେଦ୍ୟ ସହ ସେହି ପବିତ୍ର ନିଧି-ଲିଙ୍ଗକୁ ପୂଜାକରି ଦେବଦେବ ମହାଦେବଙ୍କର ସାକ୍ଷାତ୍ ଦର୍ଶନ ତୁଲ୍ୟ ତୃପ୍ତି ଲାଭକରିଥିଲେ । ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କଦ୍ୱାରା ପ୍ରତିଷ୍ଠିତ ସେଇ ନିଧି-

୧୭୭- ୧୮/୨୦୦



ରାମେଶ୍ୱର ଗଡ଼ର ରାମନିଧିଦେବଙ୍କ ମନ୍ଦିର

ଲିଙ୍ଗହିଁ ରାମନିଧିଦେବ ନାମରେ ଖ୍ୟାତ । ଏହିଠାରେ ରାମ ଈଶ୍ୱରଙ୍କ ପୂଜାକରିଥିବାରୁ ପରବର୍ତ୍ତୀ କାଳରେ ଏଠାରେ ପ୍ରତିଷ୍ଠିତ ଗ୍ରାମଟିର ନାମ 'ରାମେଶ୍ୱର' ହେଲା । ରାମେଶ୍ୱର ପାହାଡ଼ର ଦକ୍ଷିଣକୁ ପ୍ରାୟ ଏକକ୍ରୋଶ ଦୂରରେ ଥିବା ଆଉ ଏକ ସୁଦୃଶ୍ୟ ପାହାଡ଼ ଚିତ୍ରକୂଟ ନାମରେ ଖ୍ୟାତ । 'ରାମାୟଣ' ବର୍ଣ୍ଣିତ ଚିତ୍ରକୂଟ ପର୍ବତ ହିଁ ଏହି ପାହାଡ଼ ବୋଲି କୁହାଯାଏ । ପ୍ରାୟ ପଚାଶ ବର୍ଷ ପୂର୍ବେ ସେ ପାହାଡ଼ରେ ଜଣେ ସାଧୁ ଏକାକୀ ରହୁଥିଲେ ଏବଂ

ରାମଚନ୍ଦ୍ରଙ୍କ ପାଦଚିହ୍ନ ବୋଲି କୁହାଯାଉଥିବା ଏକ ଶିଳା ଚିହ୍ନକୁ ପୂଜାକରୁଥିଲେ । ସେହି ପାହାଡ଼ ନିକଟସ୍ଥ 'କୁଆମରାଟାଙ୍ଗି' ନାମରେ ପରିଚିତ ଏକ ସ୍ଥାନରେ କୁଆଢ଼େ ସୀତାଙ୍କ ହାତରୁ ଖାଦ୍ୟ ଝାମ୍ପିନେଉଥିବା ଏକ ଦୁଷ୍ଟ କୁଆକୁ ରାମଚନ୍ଦ୍ର ଶରାଘାତ କରି ମାରି ଦେଇଥିଲେ ବୋଲି ଜନଶ୍ରୁତି ରହିଛି । ଅଳ୍ପ ଦୂରରେ ଥିବା ଭୁଷଣ୍ଡପୁର ଗ୍ରାମର ନାମକରଣ ମଧ୍ୟ ରାମାୟଣ ବର୍ଣ୍ଣିତ ଭୁଷଣ୍ଡକାକର ସ୍ମାରକୀ ବୋଲି କଥିତଅଛି ।

ରାମନିଧିଦେବଙ୍କ ପ୍ରତିଷ୍ଠା ସୁପ୍ରାଚୀନ ତ୍ରେତୟା ଯୁଗର ବୋଲି କୁହାଯାଉଥିବା ବେଳେ, ରାମେଶ୍ୱରଗଡ଼ ଓ ରାମେଶ୍ୱର ଗ୍ରାମ ମଧ୍ୟ ଖୋର୍ଦ୍ଧାର ଭୋଇ ରାଜବଂଶ ପ୍ରତିଷ୍ଠାର ବହୁପୂର୍ବରୁ ପ୍ରତିଷ୍ଠିତଥିଲା । ଏହା ପ୍ରାଚୀନ ଓଡ଼ିଆ ସାମରିକ ସଂପ୍ରଦାୟର ଆବାସସ୍ଥଳୀ ଥିଲା ବୋଲି କୁହାଯାଏ । ସ୍ୱନାମଧନ୍ୟ ଭକ୍ତକବି ମଧୁସୂଦନ ରାଓ ତାଙ୍କର 'ହେମମାଳା' ଶୀର୍ଷକ କ୍ଷୁଦ୍ରଗଳ୍ପର ନାୟକ 'ବିକ୍ରମ' ଉତ୍କଳରେ ସୂର୍ଯ୍ୟବଂଶ ରାଜତ୍ୱକାଳରେ ଏହି ରାମେଶ୍ୱର ଗଡ଼ବାସୀ ଜଣେ ବୀର ସୈନିକ ଏବଂ ନାୟିକା ହେମମାଳା ରାମେଶ୍ୱର ଗ୍ରାମର ଜଣେ ସୁଶ୍ରୀ ତରୁଣୀ ଥିଲା ବୋଲି ଲେଖିଛନ୍ତି । ଉତ୍କଳର ରାଜା ପୁରୁଷୋତ୍ତମ ଦେବଙ୍କ କାଞ୍ଚି ଅଭିଯାନରେ ବିକ୍ରମ ଯୁଦ୍ଧ କରିବାକୁ ଯାଇଥିଲା ବୋଲି ସେ ବର୍ଣ୍ଣନା କରିଛନ୍ତି ଏବଂ ମନ୍ଦାକିନୀ ତଟବର୍ତ୍ତୀ ରାମେଶ୍ୱର ପାହାଡ଼କୁ ହିଁ ସେ ଚିତ୍ରକୂଟ ବୋଲି କହିଛନ୍ତି ।

ପ୍ରାଚୀନ କାଳର ସେହିସବୁ ପୌରାଣିକ ତଥା ଐତିହାସିକ ଗୌରବ- ଗାଥାବିମଣ୍ଡିତ ରାମେଶ୍ୱରଗଡ଼ ଏବଂ ରାମେଶ୍ୱର ଗ୍ରାମ ଏ କାଳରେ ମଧ୍ୟ ତା'ର ଗୌରବମୟ ପରମ୍ପରାକୁ କିଛି ମାତ୍ରାରେ ଉଜ୍ଜୀବିତ କରି ରଖିପାରିଛି । ରାମେଶ୍ୱରଗଡ଼ ଦଳବେହେରା ବଂଶର ବର୍ତ୍ତମାନ ଉତ୍ତରାଧିକାରୀ ବୃଦ୍ଧ ନୃସିଂହଚରଣ ଜୟସିଂହ ମହାରଥୀ ଦେଖିବାକୁ ବାଙ୍ଗରା ମଣିଷଟିଏ ହେଲେ ହେଁ ଯୁବାବସ୍ଥାରେ ଅସୀମ ସାହସୀ ଓ ଜଣେ ଉଚ୍ଚକୋଟୀର ଖେଳାଳୀ ଥିଲେ । ତାଙ୍କର ପିତା ସ୍ୱର୍ଗତ ରାମଚନ୍ଦ୍ର ଜୟସିଂହ ମହାରଥୀ ଯେଉଁପରି ବଳିଷ୍ଠ ଓ ବପୁଷ୍ମାନ୍ ଥିଲେ ସେହିପରି ଅସାଧାରଣ ସାହସୀ ବୀରପୁରୁଷ ଥିଲେ । କୁହାଯାଏ, ଥରେ ସନ୍ଧ୍ୟାରେ ସେ ଏକାକୀ ରାମେଶ୍ୱର ଗାଁରୁ ପାହାଡ଼ର ପାଦଦେଶରେ ଏକ ସଂକୀର୍ଣ୍ଣ ଜଙ୍ଗଲ ରାସ୍ତା ଦେଇ ଗଡ଼କୁ ଫେରୁଥିବା ସମୟରେ ଗୋଟିଏ ଦନ୍ତା ବାରହାକୁ ସମ୍ମୁଖରେ ଦେଖି ତାକୁ ଘଉଡ଼ାଇଦେବା ଉଦ୍ଦେଶ୍ୟରେ ହେ' ହେ' ପାଟିକରି ହାତରେ ଧରିଥିବା ସୌଖୀନ ହାତବାଡ଼ିଟାକୁ ତଳେ ଠକ୍ ଠକ୍ କରିଦେବାରୁ ବାରହାଟି ସମ୍ଭବତଃ ତାଙ୍କ ଆଡୁ ହଠାତ୍ ଆକ୍ରମଣର ଆଶଙ୍କାକରି ପ୍ରତିଆକ୍ରମଣ କରିବାପାଇଁ ଦ୍ରୁତବେଗରେ ଛୁଟିଆସିଲା । ସୌଖିନ୍ ହାତବାଡ଼ି ସାହାଯ୍ୟରେ ଦନ୍ତା ବାରହାର ଆକ୍ରମଣକୁ ପ୍ରତିହତ କରିବା ଅସମ୍ଭବ ଜାଣି ପ୍ରତ୍ୟୁତ୍ପନ୍ନମତି ଦଳବେହେରା ଦୃଢ଼ଭାବେ ଦୁଇଗୋଡ଼କୁ ଫାଡ଼ି ଛିଡ଼ାହୋଇଗଲେ । ବାରହାଟି କ୍ଷିପ୍ରଗତିରେ ଦୌଡ଼ିଆସି ତାଙ୍କ ଦୁଇ ଆଣ୍ଠୁ

ଭିତରେ ମୁହଁ ଗଳାଇ ଦନ୍ତାଘାତ କରିବା ପୂର୍ବରୁ ବାରହାର ବେକକୁ ଦୁଇ ଆଣ୍ଠୁ ଭିତରେ ଏପରି ଜୋର୍‌ଦେଇ ଚାପିଦେଲେ ଯେ, ବାରହା ଆଉ ହଲ୍‌ଚଲ୍ ହୋଇପାରିଲା ନାହିଁ ଏବଂ ସେଇ ଅବସ୍ଥାରେ ସେ ନିଜର ଲୁହାଗୋବିଦିଆ ହାତବାଡ଼ିରେ ବାରହାର ପେଟକୁ ଖୋବି ଖୋବି କଣାକରିଦେବାରୁ ବାରହାଟି ମରିଯାଇଥିଲା ।

ଓଡ଼ିଶାର ଜଣେ ଲବ୍ଧପ୍ରତିଷ୍ଠ ଗୀତିକାର କବି ଗୋକୁଳାନନ୍ଦ ପଟ୍ଟନାୟକ ଏହି ରାମେଶ୍ୱର ଗ୍ରାମର ବାସିନ୍ଦା ଥିଲେ । ଭଞ୍ଜୀୟ ଭଙ୍ଗୀରେ ଲେଖା ତାଙ୍କର ବହୁ ରଚନାବଳୀ ପାଲାକାରମାନଙ୍କଦ୍ୱାରା ବିଶେଷଭାବେ ଆଦୃତ ଓ ପରିବେଷିତ ହେଉଥିଲା । ଭଞ୍ଜଙ୍କ 'ବୈଦେହୀଶବିଳାସ' ପରି ସେ ମଧ୍ୟ 'ଜାନକୀବଲ୍ଲଭ ବିଳାସ' ଶୀର୍ଷକ ଏକ ଉତ୍କୃଷ୍ଟ କାବ୍ୟ ରଚନାକରିଥିଲେ । ଉଲ୍ଲେଖଯୋଗ୍ୟ ଯେ, କବି ଗୋକୁଳାନନ୍ଦ ନିଜର ଏକମାତ୍ର ପୁତ୍ରର ନାମ ଜାନକୀବଲ୍ଲଭ ରଖିଥିଲେ । ଜଣେ ପ୍ରବୀଣ ସାମ୍ବାଦିକ, ପ୍ରସିଦ୍ଧ ସାହିତ୍ୟିକ ଓ ପ୍ରଖ୍ୟାତ ରାଜନୀତିଜ୍ଞ ସେହି ଜାନକୀବଲ୍ଲଭ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନରେ ସର୍ବାଧିକକାଳ ରହି ଏକ ବିରଳ ଦୃଷ୍ଟାନ୍ତ ସୃଷ୍ଟିକରିଛନ୍ତି ଏବଂ ଜଣେ ପ୍ରଖ୍ୟାତ ଜନନାୟକଭାବେ ସାରା ଭାରତରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ତାଙ୍କରି ଅବଦାନ ରାମେଶ୍ୱରଗଡ଼ ସମ୍ମୁଖରେ ମନ୍ଦାକିନୀ ନଦୀ ଉପରେ ନିର୍ମିତ ଜଳସେଚନ ପ୍ରକଳ୍ପ ଏବଂ ରାମେଶ୍ୱର ପାହାଡ଼ର ଦକ୍ଷିଣ-ପଶ୍ଚିମ କୋଣରୁ ୫ ନମ୍ବର ଜାତୀୟ ରାଜପଥରୁ ଶ୍ରୀକ୍ଷେତ୍ରକୁ ସଂଯୋଗ କରୁଥିବା ନୂଆ ଜଗନ୍ନାଥସଡ଼କ କେବଳ ରାମେଶ୍ୱରଗଡ଼ ଓ ରାମେଶ୍ୱର ଗ୍ରାମର ଶ୍ରୀବୃଦ୍ଧି ସାଧନ କରୁ ନାହିଁ, ଶହ ଶହ କୃଷକ ଓ ଅସଂଖ୍ୟ ଶ୍ରୀକ୍ଷେତ୍ରଯାତ୍ରୀଙ୍କପାଇଁ ସେହି ମହାର୍ଘ ପ୍ରକଳ୍ପ ଦୁଇଟି ଦୈବୀ ଆଶୀର୍ବାଦସ୍ୱରୂପ ଶୁଭପ୍ରଦ ହୋଇଛି ।

## ଗଡ଼ ବରପଦା

''ଏଥି ଉତ୍ତାରେ ଏହାଙ୍କ ପୁଅ ଦିବ୍ୟସିଘଂ ରାଏ ଗୋସାଇଁ ରାଜା ହୋଇଲେ । ବିଛା ଦି୨୩ନେ ଦିଆନ ପରମାନନ୍ଦ ପଟ୍ଟନାୟକଙ୍କ ପୁଅ ରାମଚନ୍ଦ୍ର ପଟ୍ଟନାୟକେ ଯାଇ ଦିବ୍ୟସିଘଂରାଏ ଗୋସାଇଁଙ୍କି ବରପଦାଗଡ଼ରୁ ଆଣି ରଥିପୁର କଟକେ ବିଜେକରାଇ ରାତ୍ର ଖୁଣ୍ଟିରିଠାରେ ଅଭିଷେକ ହୋଇ ଦେବାର୍ଚ୍ଚନା କଲେ । (ମାଦଳାପାଞ୍ଜି)

ଖୋର୍ଦ୍ଧାଠାରୁ ଅନୁମାନ ସାତକୋଶଦୂର ଦକ୍ଷିଣ ଦିଗରେ ବରପଦାଗଡ଼ । ଗଡ଼ବଳଭଦ୍ରପୁରଠାରୁ ପଶ୍ଚିମକୁ ମାତ୍ର ଦୁଇକୋଶ ଦୂରରେ ଏହି ଗଡ଼ ଅବସ୍ଥିତ । କିନ୍ତୁ ଏହା ବଳଭଦ୍ରପୁର ଜିଲ୍ଲାର ଅନ୍ତର୍ଭୁକ୍ତ ନ ଥିଲା, ଏହା ଥିଲା ସିରାଇ ପ୍ରଗଣା ଭିତରେ । ସଂପ୍ରତି ଏହି ଗଡ଼ର କୌଣସି ପ୍ରାକୃତିକ ପରିବେଷ୍ଟନୀ ପରିଦୃଷ୍ଟ ହେଉ ନ ଥିଲେ ହେଁ ଖୋର୍ଦ୍ଧା ଭୋଇବଂଶର ରାଜତ୍ୱ କାଳରେ ଏହି ଗଡ଼ ମନ୍ଦାକିନୀନଦୀ ତୀରବର୍ତ୍ତୀ ଘଞ୍ଚ ଅରଣ୍ୟ ବେଷ୍ଟିତ

ହୋଇ ରହିଥିଲା । ଏହି ଗଡ଼ ସଂଲଗ୍ନ ଶ୍ରୀମୁକୁନ୍ଦପୁର ଶାସନର ପ୍ରାଚୀନ ନାମ ଥିଲା ଉକ୍ଷୁନା ବା ଓକ୍ଷଣା । ତେଣୁ ଭୋଇବଂଶ ପ୍ରତିଷ୍ଠା ପୂର୍ବରୁ ଏହି ଗଡ଼କୁ 'ଉକ୍ଷୁନା ବରପଦା' କୁହାଯାଉଥିଲା ଏବଂ ଏହା ଖୋର୍ଦ୍ଧାର ୭୧ଗଡ଼ ମଧ୍ୟରୁ ଅନ୍ୟତମ ଥିଲା; କିନ୍ତୁ ଭୋଇବଂଶର ପ୍ରତିଷ୍ଠା ପରେ ଏହି ଗଡ଼ର ପ୍ରାଧାନ୍ୟ ଯଥେଷ୍ଟ ବୃଦ୍ଧିପାଇଥିଲା । କାରଣ ଭୋଇବଂଶର ପ୍ରତିଷ୍ଠାତା ଗଜପତି ରାମଚନ୍ଦ୍ରଦେବ ଖୋର୍ଦ୍ଧାରେ ନିଜର ରାଜଧାନୀ ପ୍ରତିଷ୍ଠା କରିବା ପରେ ଏହି ଗଡ଼ ସଂଲଗ୍ନ ଉକ୍ଷୁନା ଗ୍ରାମରେ ରାଜଗୁରୁ ବଳଦେବ ମହାପାତ୍ରଙ୍କୁ ରଖାଇଥିଲେ । ରାଜଗୁରୁ ବଳଦେବ ମହାପାତ୍ରଙ୍କର ଅଗାଧ ପାଣ୍ଡିତ୍ୟ, ଅସାଧାରଣ ସାଧନା ଏବଂ ଅଲୌକିକ ପ୍ରତିଭା ବଳରେ ସେ ଯେ କେବଳ ରାମଚନ୍ଦ୍ରଦେବଙ୍କୁ ଆକୃଷ୍ଟ କରିପାରିଥିଲେ ସେତିକି ନୁହେଁ; ତାଙ୍କର ଓ ତାଙ୍କ ପରବର୍ତ୍ତୀ ବଂଶଧରମାନଙ୍କ ସହିତ ଗଜପତି ରାମଚନ୍ଦ୍ରଦେବ ଏବଂ ତାଙ୍କ ପରବର୍ତ୍ତୀ ବଂଶଧରମାନଙ୍କର ଘନିଷ୍ଠ ସମ୍ପର୍କ ଓ ସୌହାର୍ଦ୍ଧ୍ୟ ହେତୁ ଖୋର୍ଦ୍ଧାର ରାଜା ଓ ଯୁବରାଜମାନେ ଅନେକ ସମୟରେ ବରପଦାଗଡ଼କୁ ଆସୁଥିଲେ, ସେଠାରେ ସାମୟିକ ଅବସ୍ଥାନ କରୁଥିଲେ, ଯାହା ଫଳରେ ଏହି ବରପଦାଗଡ଼ର ଚାରିପାଖରେ ଇଚ୍ଛାପୁର, ଶ୍ରୀମୁକୁନ୍ଦପୁର, ରାୟଗୁରୁପୁର, ଦିବ୍ୟସିଂହପୁର, ପଟ୍ଟଯୋଶୀପୁର, ମୈତ୍ରତିଲୋଚନପୁର ଏବଂ ବୀରକେଶରୀପୁରକୁ ନେଇ ସିରାଇ ସାତଶାସନ ପ୍ରତିଷ୍ଠା କରାଯାଇଥିଲା*। ଉଲ୍ଲେଖଯୋଗ୍ୟ ଯେ, ପୁରୀ ନିକଟବର୍ତ୍ତୀ ଷୋଳଶାସନ ଭିତରେ ସିରାଇ ସାତଶାସନ ବା ତହିଁରୁ କୌଣସି ଗୋଟିଏ ଶାସନ ଅନ୍ତର୍ଭୁକ୍ତ ନୁହେଁ । ସୁତରାଂ ଉକ୍ଷୁନାଠାରେ ଶ୍ରୀମୁକୁନ୍ଦପୁର ଶାସନ ପ୍ରତିଷ୍ଠା ପରେ 'ପୁଣି ଏକ ପୁରାତନ ଶାସନ କଟିଗଲା ଷୋଳ ଶାସନ ତାଲିକାରୁ' ବୋଲି ଶ୍ରୀ ଚକ୍ରଧର ମହାପାତ୍ର ତାଙ୍କ 'ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ'ରେ ଯାହା ଲେଖିଛନ୍ତି, ତାହା ଠିକ୍ ନୁହେଁ ।

ଗଜପତି ପ୍ରତାପରୁଦ୍ରଙ୍କ ଅନ୍ତେ ତାଙ୍କ ପୁତ୍ରମାନଙ୍କୁ ହତ୍ୟାକରି ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ରାଜା ହୋଇଥିବାରୁ ପୁରୀର ବ୍ରାହ୍ମଣମାନେ ଗୋବିନ୍ଦ ବିଦ୍ୟାଧରଙ୍କପ୍ରତି ବିଶେଷ ଅସନ୍ତୁଷ୍ଟ ହୋଇପଡ଼ିଥିଲେ । ଏହା ଫଳରେ ରାଜା ଓ ରାଜଗୁରୁ ତଥା ବ୍ରାହ୍ମଣ ପଣ୍ଡିତମାନଙ୍କ ମଧ୍ୟରେ ସୁସମ୍ପର୍କ ରହିପାରି ନ ଥିଲା । ଗୋବିନ୍ଦ ବିଦ୍ୟାଧରଙ୍କ ଅନ୍ତେ ତାଙ୍କ ପୁତ୍ର ଚକ୍ରପ୍ରତାପ ରାଜା ହେବା ମାତ୍ରେ ପୁରୀର ବ୍ରାହ୍ମଣମାନଙ୍କପ୍ରତି ମାନ୍ୟତା ପ୍ରଦର୍ଶନ ନ କରି କାଶୀଧାମରୁ ବିଶ୍ୱନାଥାନନ୍ଦ ନାମକ ଜଣେ ବିଖ୍ୟାତ ପଣ୍ଡିତଙ୍କୁ ଅଣାଇ ରାଜଗୁରୁ ପଦରେ ଅଧିଷ୍ଠିତ କରିଥିଲେ । ତତ୍‌ପୂର୍ବରୁ କେବଳ ବତ୍ସସ ସାମନ୍ତମାନେ ପୁରୁଷାନୁକ୍ରମେ ରାଜଗୁରୁପଦବୀ ଲାଭକରୁଥିଲେ । ଚକ୍ରପ୍ରତାପଙ୍କ ସମୟରେ ସେହି ପରମ୍ପରା ଭଙ୍ଗହୋଇ ନନ୍ଦସାମନ୍ତ ରାଜଗୁରୁହେବାର ନୂତନ ପରମ୍ପରା ସୃଷ୍ଟିହେଲା । ଫଳରେ ଏହି ଆନନ୍ଦ ବା ନନ୍ଦସାମନ୍ତଙ୍କୁ ପ୍ରଦେଶୀ ବା ପରଦେଶୀ କହି ସ୍ୱଦେଶୀ ପଣ୍ଡିତମାନେ ବିଦ୍ରୋହୀହେଲେ । କିନ୍ତୁ ବିଶ୍ୱନାଥ ନିଜର

---

* *ଦ୍ୱିତୀୟ ଭାଗ ତୃତୀୟ ଅଧ୍ୟାୟରେ ସିରାଇ ସାତଶାସନ....ଦ୍ରଷ୍ଟବ୍ୟ*

ପାଣ୍ଡିତ୍ୟ ବଳରେ ଅନ୍ୟମାନଙ୍କୁ ପରାସ୍ତକରିଥିଲେ । କିଛିଦିନ ପରେ ବିଶ୍ୱନାଥାନନ୍ଦ ନିଜର ସୁଯୋଗ୍ୟ ପୁତ୍ର ବଳଦେବାନନ୍ଦଙ୍କୁ ରାଜଗୁରୁ ଦାୟିତ୍ୱ ଦେଇ କାଶୀଧାମକୁ ପ୍ରତ୍ୟାବର୍ତ୍ତନକଲେ । ବଳଦେବାନନ୍ଦ ମଧ୍ୟ ପିତାଙ୍କ ପରି ଅସାଧାରଣ ପଣ୍ଡିତ ଥିଲେ ଏବଂ ତାଙ୍କର ସ୍ତ୍ରୀ ଲକ୍ଷ୍ମୀଦେବୀ ଯେଉଁ ଭଳି ରୂପବତୀ, ସେଇଭଳି ଗୁଣବତୀ ଥିଲେ । କିନ୍ତୁ ରାଜାନୁଗ୍ରହ ସତ୍ତ୍ୱେ ପରଦେଶୀଭାବେ ବିବେଚିତ ହେଉଥିବା ଏହି ରାଜଗୁରୁଦମ୍ପତି ବହସ ସାମନ୍ତ ତଥା ସ୍ୱଦେଶୀ ବ୍ରାହ୍ମଣମାନଙ୍କ ଆକ୍ରୋଶ ଏଡ଼ାଇବା ଲକ୍ଷ୍ୟରେ ପୁରୀରୁ ଆସି ବୀରନରସିଂହପୁରରେ ରହିଲେ । କିନ୍ତୁ ଅଳ୍ପ ଦିନ ମଧ୍ୟରେ ବୀରନରସିଂହପୁର ଉପରେ ମଧ୍ୟ ପୁରୀର ପ୍ରଭାବ ପଡ଼ିଲା । ତେଣୁ ବଳଦେବାନନ୍ଦ ସେଠାରୁ ଆସି ବିଶ୍ୱନାଥପୁର ମଙ୍ଗଳାଙ୍କ ନିକଟରେ ରହିଥିଲେ ଏବଂ ସେହି ଗ୍ରାମବାସୀମାନେ ରାଜଗୁରୁଦମ୍ପତିଙ୍କୁ ସେମାନଙ୍କ ସଦ୍‌ଗୁଣ ହେତୁ ସହାୟତା ପ୍ରଦାନକରିଥିଲେ ।

ଓଡ଼ିଶାର ଶେଷ ସ୍ୱାଧୀନରାଜା ମୁକୁନ୍ଦଦେବଙ୍କ ସମୟରେ କଳାପାହାଡ଼ର ଆକ୍ରମଣରେ ପୁରୀର ଶ୍ରୀମନ୍ଦିର ଶ୍ରୀହୀନ ହୋଇପଡ଼ିଥିଲା । ଚାରିଆଡ଼ୁ ଷଡ଼ଯନ୍ତ୍ରର ଶିକାର ହୋଇ ୧୫୬୮ ଖ୍ରୀ: ରେ ମୁକୁନ୍ଦଦେବ ଏକପ୍ରକାର ଗୃହଯୁଦ୍ଧରେ ନିହତ ହେବା ପରେ ଓଡ଼ିଶାରେ ଅରାଜକତା ଦେଖାଦେଇଥିଲା । ସେହି ସମୟରେ ଗୋବିନ୍ଦ ବିଦ୍ୟାଧର ଓ ଚକ୍ରପ୍ରତାପଙ୍କ ମନ୍ତ୍ରୀ ଦନେଇ ବିଦ୍ୟାଧରଙ୍କ ପୁତ୍ର ରମେଇ ରାଉତରା ରାମଚନ୍ଦ୍ର ଦେବ ନାମରେ ଓଡ଼ିଶାରେ ରାଜାହେଲେ । ସେ କଟକ ପରିବର୍ତ୍ତେ ଖୋର୍ଦ୍ଧାରେ ରାଜଧାନୀ ପ୍ରତିଷ୍ଠାକରି ତା'ର ନାମ 'ଜଗନ୍ନାଥପୁର କଟକ' ରଖିଲେ । ରାମଚନ୍ଦ୍ର ଦେବ ଯେପରି ଶକ୍ତିଶାଳୀ ଯୋଦ୍ଧା ଥିଲେ, ସେହିପରି ବିଜ୍ଞ ଓ ବିଚକ୍ଷଣ ପ୍ରଶାସକ ମଧ୍ୟ ଥିଲେ । କଳାପାହାଡ଼ଦ୍ୱାରା ଲୁଣ୍ଠିତ ଜଗନ୍ନାଥ ମନ୍ଦିରରେ ଜଗନ୍ନାଥଙ୍କୁ ପୁନଃପ୍ରତିଷ୍ଠିତ କରାଇବାଦ୍ୱାରା ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ଉଭୟ ଶାସନ ଓ ସମାଜ ସ୍ତରରେ ଉପୁଜିଥିବା ଅଶାନ୍ତି ଓ ବିଶୃଙ୍ଖଳାକୁ ଦୂରକରି ସେ ସୁଶାସନ ପ୍ରତିଷ୍ଠା କରିପାରିଥିଲେ । ଏହା ଫଳରେ ଗଜପତି ରାମଚନ୍ଦ୍ରଦେବଙ୍କ ସୁଖ୍ୟାତି ଓ ସୁନାମ ବୃଦ୍ଧିପାଇଥିଲା ଏବଂ ଶ୍ରୀମନ୍ଦିରରେ ଦୀର୍ଘ ସାତ ବର୍ଷ ଧରି ଶ୍ରୀଜଗନ୍ନାଥଙ୍କ ଅନୁପସ୍ଥିତି ହେତୁ ହାତବାନ୍ଧି ବସିଥିବା ସେବାୟତ ତଥା ବ୍ରାହ୍ମଣମାନେ ତାଙ୍କୁ 'ଅଭିନବ ଇନ୍ଦ୍ରଦ୍ୟୁମ୍ନ' ବା 'ଦ୍ୱିତୀ ଇନ୍ଦ୍ରଦ୍ୟୁମନ' ଉପାଧି ଦେଇଥିଲେ । ପୂର୍ବୋକ୍ତ ବହସ ସାମନ୍ତ ବଂଶର ବର୍ଦ୍ଧନ ମହାପାତ୍ର ଏତିକିବେଳେ 'ଦୁର୍ଗୋତ୍ସବ ଚନ୍ଦ୍ରିକା' ନାମକ ସଂସ୍କୃତ ଗ୍ରନ୍ଥ ରଚନାକରି ତହିଁରେ ରାମଚନ୍ଦ୍ର ଦେବଙ୍କ ପ୍ରଶସ୍ତି ବର୍ଣ୍ଣନା କରିବା ସଙ୍ଗେସଙ୍ଗେ ଉକ୍ତ ଗ୍ରନ୍ଥକୁ ରାମଚନ୍ଦ୍ର ଦେବଙ୍କ ନାମରେ ଭଣତିକରିଥିଲେ । ରାମଚନ୍ଦ୍ରଦେବ ଏଥିରେ ସନ୍ତୁଷ୍ଟହୋଇ ବର୍ଦ୍ଧନ ମହାପାତ୍ରଙ୍କୁ ରାଜଗୁରୁ ଉପାଧି ପ୍ରଦାନକରିଥିଲେ । ଏଣେ ପୁଣି ପୂର୍ବରୁ ବିଶ୍ୱନାଥପୁରରେ ଆଶ୍ରୟ ନେଇଥିବା ରାଜଗୁରୁ ବଳଦେବାନନ୍ଦଙ୍କୁ ରାମଚନ୍ଦ୍ର ଦେବ ସେଠାରୁ ଅଣାଇ ନିଜ ରାଜଧାନୀ ଖୋର୍ଦ୍ଧାସନ୍ନିକଟ ବରପଦାଗଡ଼ ସଂଲଗ୍ନ ଉଷୁନା ଗ୍ରାମରେ ରଖାଇ ତାଙ୍କର ଅଲୌକିକ ପ୍ରତିଭା ହେତୁ ତାଙ୍କୁ, ଅର୍ଥାତ୍ 'ବଳଦେବ ରାଜଗୁରୁ ମହାପାତ୍ରଙ୍କୁ,

ଚନ୍ଦ୍ରଗ୍ରହଣ ସମୟରେ ଇଚ୍ଛାପୁର ଶାସନ ନିମିତ୍ତେ ସବଳଙ୍ଗ ଗ୍ରାମ ଆସିବା ଓ ଚକଡ଼ା ବିସାସଏ ବା୧୨୦ଟି ଦାନ' କରିଥିଲେ । କଥିତଅଛି, ବଳଦେବ ରାଜଗୁରୁ ନିଜର ଅସାଧାରଣ ମନ୍ତ୍ରସିଦ୍ଧି ବଳରେ କିଛି ସମୟପାଇଁ ଆକାଶରେ ଚନ୍ଦ୍ରଙ୍କୁ ଅଦୃଶ୍ୟ କରାଇ 'ଚନ୍ଦ୍ରଚୋର ରାଜଗୁରୁ' ଉପାଧି ପାଇଥିଲେ । ରାମଚନ୍ଦ୍ରଦେବଙ୍କ ଅନ୍ତେ ତାଙ୍କ ପୁତ୍ର ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ କାଳରେ ବର୍ଦ୍ଧନ ମହାପାତ୍ରଙ୍କ ପୁତ୍ର ବଳଭଦ୍ର ମହାପାତ୍ର ରାଜଗୁରୁ ହୋଇଥିଲେ ବୋଲି ଶ୍ରୀ ଚକ୍ରଧର ମହାପାତ୍ର 'ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ'ରେ ଲେଖିଛନ୍ତି । କିନ୍ତୁ ବର୍ଦ୍ଧନ ମହାପାତ୍ରଙ୍କ ବଳଭଦ୍ର ନାମଧେୟ ପୁତ୍ର ଥିବାର ଅଥବା ବଳଭଦ୍ରଙ୍କର ବତ୍ସସ ଗୋତ୍ର ଥିବାର କୌଣସି ପ୍ରମାଣ ସେ ଦର୍ଶାଇ ନାହାନ୍ତି । ଅନ୍ୟପକ୍ଷରେ 'ବଳଭଦ୍ର ମତାନ୍ତରରେ ବଳଦେବ ଜଣାଯାଏ' ବୋଲି ସେ ସ୍ୱୀକାର କରିଛନ୍ତି[୧୭୮] । ତେଣୁ ସେହି ବଳଭଦ୍ର ହିଁ ବିଶ୍ୱନାଥଙ୍କ ପୁତ୍ର ବଳଦେବ ଏହା ସମୀଚୀନ ମନେହୁଏ ।

ସେ ଯାହାହେଉ, ଚକ୍ରପ୍ରତାପଙ୍କ ସମୟରୁ ରାଜଗୁରୁ ପଦବୀରେ ରହିଥିବା ନନ୍ଦସାମନ୍ତ ବଳଦେବଙ୍କୁ ରାଜଗୁରୁଭାବେ ଯଥାଯୋଗ୍ୟ ମାନ୍ୟତା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ବତ୍ସସ ସାମନ୍ତ ବର୍ଦ୍ଧନଙ୍କୁ ରାଜଗୁରୁ ପଦବୀ ପ୍ରଦାନ କରିବାଦ୍ୱାରା ଭୋଇବଂଶର ପ୍ରତିଷ୍ଠାତା ରାମଚନ୍ଦ୍ର ଦେବ ବତ୍ସସ ଓ ନନ୍ଦସାମନ୍ତ ବଂଶ ମଧ୍ୟରେ ଲାଗିରହିଥିବା ସଂଘର୍ଷ ଓ ମନୋମାଳିନ୍ୟର ଅବସାନ ଘଟାଇ କିପରି ଉଭୟଙ୍କ ମଧ୍ୟରେ ଭବିଷ୍ୟତରେ ବୈବାହିକ ସୁସମ୍ପର୍କ ସ୍ଥାପନ ନିମନ୍ତେ ବଳିଷ୍ଠ ଭିତ୍ତିଭୂମି ପ୍ରସ୍ତୁତକରିଥିଲେ, ତାହା ନିମ୍ନୋକ୍ତ ଘଟଣାରୁ ଜଣାପଡ଼େ ।

(୧) ''ମୁକୁନ୍ଦଦେବ (୧ମ)ଙ୍କ ଜୀବନର ମାରକଦଶା ମେଣ୍ଟିବାପାଇଁ ଉଷୁନା ବରପଦାଠାରେ ଏକ ବିଶାଳ ଯଜ୍ଞ ବୃଦ୍ଧ ରାଜଗୁରୁ କରାଇଲେ । ତାଙ୍କର ମାତୁଳ ବଂଶର ଜଣେ ଶ୍ରେଷ୍ଠ ଋତ୍ୱିକ ନୀଳାମ୍ବର ନନ୍ଦ ସାମନ୍ତ ଯଜ୍ଞର ଅଧକ୍ଷ ହେଲେ । ତାଙ୍କରି ମାରଫତରେ ଏକ ଶାସନ ଶ୍ରୀମୁକୁନ୍ଦପୁର ନାମରେ ପ୍ରତିଷ୍ଠା କରାଗଲା । ନନ୍ଦ ସାମନ୍ତ ଦାନାଧକ୍ଷ ହେଲେ ।[୧୭୯]

(୨) ''ପରମାନନ୍ଦଙ୍କ ଦାନପତ୍ର ଦେଖି ପରମାନନ୍ଦଙ୍କ ଶ୍ୱଶୁର ଉଷୁନା ନନ୍ଦ ସାମନ୍ତ ଲୋକନାଥ କହିଥିଲେ ବିଶ୍ୱାମିତ୍ରଙ୍କ ପରି ବ୍ରହ୍ମର୍ଷି ତ ଦିନେ ଦୁର୍ଭିକ୍ଷରେ କୁକୁର ମାଂସ ଚୋରିକରି ଜୀବନ ରକ୍ଷା କରିଥିଲେ । ପରମାନନ୍ଦ ଗୋଚର୍ମଦାନ ଗ୍ରହଣ କରିଛି । ଏଥିରେ ତା'ର ଦୋଷ କ'ଣ ?''[୧୮୦]

(୩) ''ଭାନୁଦେବଙ୍କ ମୃତ୍ୟୁ ପରେ ସେ (ପରମଲକ୍ଷ୍ମୀ) ଗୁରୁକୁଳରେ ବେଦାଦି ବିଦ୍ୟାଧ୍ୟୟନ କରୁଥିବାବେଳେ ତାଙ୍କର ବୟସ ୨୧ ବର୍ଷ ବେଳେ ତାଙ୍କ ପିତାମହ ରାଜଗୁରୁ ପଦବୀ ହରାଇଲେ । ତେଣୁ କଠୋର ନିଷ୍ଠାର ସହିତ ପରମ ଲକ୍ଷ୍ମୀ ନିଜକୁ ସର୍ବଶାସ୍ତ୍ରରେ

---

୧୭୮- ୪/୮୭ ୧୭୯- ୪/୧୨୦ ୧୮୦- ୪/୧୫୧

ନିୟୋଜିତ କରି ଗଢ଼ିଚାଲିଲେ । କଠୋର ଦାରିଦ୍ର୍ୟ ତାଙ୍କୁ ବାଧା ଦେଇ ପାରିଲା ନାହିଁ । ତାଙ୍କର ସ୍ଥିରନିଶ୍ଚୟ ମନଯୋଗୁଁ ସେ ମାତୁଳାଳୟ ଉଷୁନାରେ ନନ୍ଦସାମନ୍ତଙ୍କ ନିକଟରେ ବର୍ଷେ ରହି ତା' ପରେ ବକ୍ସିଙ୍କ ନିକଟରେ ପାଞ୍ଚ ବର୍ଷ କଟାଇଲେ ।''[୧୮୧]

ପ୍ରସିଦ୍ଧ ସ୍ମୃତିଶାସ୍ତ୍ରପ୍ରଣେତା ଗଦାଧର ରାଜଗୁରୁଙ୍କ ପୁତ୍ର ରାମଚନ୍ଦ୍ର ମହାପାତ୍ର 'ଅଳଙ୍କାର ଚିନ୍ତାମଣି' ଓ 'ନରହରି ଚରିତମ୍' ନାମରେ ଦୁଇଟି ଗ୍ରନ୍ଥ ରଚନାକରି ଗଜପତି ଗୋପୀନାଥ ଦେବ (୧୭୯୦ - ୨୭)ଙ୍କ ଅମଳରେ 'ଖଡ଼ଗରାୟ' ଉପାଧି ପାଇଥିଲେ ଏବଂ ସେହି ସୁକବି ରାମଚନ୍ଦ୍ର ଖଡ଼୍ଗରାୟଙ୍କ ବାସସ୍ଥାନ ଉଷୁନା ବୋଲି ପଣ୍ଡିତ କୁଳମଣି ମିଶ୍ରଙ୍କ ଦ୍ୱାରା 'ଚତୁରଙ୍ଗ' ୨ୟ ବର୍ଷ ୬ଷ୍ଠ ସଂଖ୍ୟାରେ ପ୍ରକାଶିତ ତଥ୍ୟକୁ ଶ୍ରୀ କେଦାରନାଥ ମହାପାତ୍ର ଉଦ୍ଧାର କରିଥିବା ବେଳେ,[୧୮୨] ରାମଚନ୍ଦ୍ର ଖଡ଼୍ଗରାୟ କୌଶିକ ବଂଶରୁ କାଶ୍ୟପବଂଶକୁ ଅର୍ଥାତ୍ କାଶ୍ୟପ ଗୋତ୍ରୀୟ ଉଷୁନାନନ୍ଦ ସାମନ୍ତବଂଶକୁ ପୋଷ୍ୟପୁତ୍ର ହୋଇ ଯାଇଥିଲେ ବୋଲି ଶ୍ରୀ ଚକ୍ରଧର ମହାପାତ୍ର ଲେଖିଛନ୍ତି[୧୮୩] । ଉଲ୍ଲେଖଯୋଗ୍ୟ ଯେ ଉଷୁନା ନନ୍ଦ ସାମନ୍ତ ବଂଶ ବ୍ୟତୀତ ଅନ୍ୟ କୌଣସି ଠାରେ ବ୍ରାହ୍ମଣ ବଂଶ 'ଖଡ଼୍ଗରାୟ' ଉପାଧି ଧାରଣକରିଥିବାର ଜଣାଯାଏ ନାହିଁ । ଏବେ ମଧ୍ୟ ଉଷୁନାରେ ଏହି ଉପାଧିଧାରୀ ବଂଶ ଅଛନ୍ତି । ସୁତରାଂ ଗଜପତି ବୀରକେଶରୀଦେବ (୧୭୩୭ - ୯୩)ଙ୍କ ସମୟରେ ନାଗପୁରର ଭୋଁସଲା ଦରବାରରେ କାବ୍ୟକୃତିପାଇଁ ସମ୍ମାନିତ ହୋଇଥିବା ସଂସ୍କୃତ କବି କମଳଲୋଚନ ଖଡ଼୍ଗରାୟ ପୂର୍ବୋକ୍ତ ରାମଚନ୍ଦ୍ର ଖଡ଼୍ଗରାୟଙ୍କ ବଂଶଧର କି ନୁହନ୍ତି ସେ ସମ୍ପର୍କରେ ଅଧିକ ଅନୁଧାନର ଆବଶ୍ୟକତା ରହିଛି । ଏହା ମଧ୍ୟ ଉଲ୍ଲେଖଯୋଗ୍ୟ ଯେ, ଏବେ ମଧ୍ୟ ପୁରୀରାଜାଙ୍କର ରାଜଗୁରୁ ଥିବା ନନ୍ଦସାମନ୍ତ ରମେଶଚନ୍ଦ୍ର ରାଜଗୁରୁଙ୍କ ଘର ଶ୍ରୀମୁକୁନ୍ଦପୁର ଶାସନରେ ।

ସିରାଇ ସାତ ଶାସନ ବ୍ୟତୀତ ବରପଦାଗଡ଼ ନିକଟରେ ନିରାକାରପୁର ରେଳଷ୍ଟେସନର ପୂର୍ବ ଦିଗକୁ ଲଳିତାପାଟପୁର ଓ ଚନ୍ଦ୍ରମାପାଟପୁର ନାମରେ ଆଉ ଦୁଇଟି ଶାସନ ଅଛି । ଖୋର୍ଦ୍ଧା ଭୋଇବଂଶର ରାଜା ଦ୍ୱିତୀୟ ରାମଚନ୍ଦ୍ରଦେବ ମୁର୍ଷିଦ୍‌କୁଲି ଖାଁଙ୍କ କନ୍ୟା ସୌରିୟାଙ୍କୁ ବିବାହ କରିବା ହେତୁ ହିନ୍ଦୁ ବିଦ୍ୱେଷର ସମ୍ମୁଖୀନ ହୋଇ ନ ପାରି ୧୭୩୬ ଖ୍ରୀ. ରେ ସେହି ଯବନୀ ରାଣୀଙ୍କସହ ରାଜ୍ୟ ତ୍ୟାଗକରି ନରସିଂହପୁର ରାଜ୍ୟରେ ରହିଲେ ଏବଂ ବର୍ଷକ ପରେ ଉଭୟ ସ୍ୱାମୀ-ସ୍ତ୍ରୀ ସେହିଠାରେ ବିଷପାନକରି ଆତ୍ମହତ୍ୟା କଲେ ।[୧୮୪] ସେ ଯବନୀ ବିବାହ କରିଥିବା ହେତୁ ତାଙ୍କର ପ୍ରଥମା ରାଣୀ କଳାବତୀ ଘୋର ବିରୋଧ କରିଥିବାବେଳେ ଦ୍ୱିତୀୟା ରାଣୀ ଲଳିତା ଦୃଢ଼ଭାବେ ସ୍ୱାମୀଙ୍କ ପକ୍ଷ ସମର୍ଥନକରି ଯବନୀ ସପତ୍ନୀଙ୍କୁ ଭଗିନୀଭାବେ ଗ୍ରହଣକରିଥିଲେ । ରାମଚନ୍ଦ୍ରଦେବଙ୍କ ଅନ୍ତେ

---

*୧୮୧- ୪/୧୬୨ ୧୮୨- ୪/୧୬୪ ୧୮୩- ୪/୧୬୩ ୧୮୪- ୪/୨୩୦*

ଦ୍ୱିତୀୟା ରାଣୀ ଲଳିତା ପାଟମହାଦେଈଙ୍କର ଏକମାତ୍ର ପୁତ୍ର ଭାଗୀରଥି କୁମାର ବୀରକେଶରୀ ଦେବ ନାମରେ ସିଂହାସନ ଆରୋହଣ କଲେ । ବୀରକେଶରୀଦେବ ତାଙ୍କର ମାତା ଲଳିତା ପାଟ ମହାଦେଈଙ୍କ ନାମରେ ଲଳିତାପାଟପୁର ଶାସନ ପ୍ରତିଷ୍ଠାକଲେ ଏବଂ ସେହି ଶାସନରେ ୧୭୬୭ ଖ୍ରୀ. ରେ ଲଳିତା ପାଟମହାଦେଈଙ୍କଦ୍ୱାରା ଏକ ବିଷ୍ଣୁ ମନ୍ଦିର ନିର୍ମିତ ହୋଇଥିଲା ।[୧୮୫] ସେହି ମନ୍ଦିରରେ ଥିବା ଶିଳାଲିପିରେ ଏକ ସଂସ୍କୃତ ଶ୍ଳୋକ ଖୋଦିତ ହୋଇଛି, ଯାହାର ଅର୍ଥ ମୁକୁନ୍ଦଦେବ (୨ୟ)ଙ୍କ ପୁତ୍ର ହରେକୃଷ୍ଣଙ୍କ ପୁତ୍ରବଧୂ, ରାମଚନ୍ଦ୍ରଦେବ (୨ୟ)ଙ୍କ ରାଣୀ ବୀରକେଶରୀ ଦେବଙ୍କ ମାତା ଲଳିତାଦେବୀ ତାଙ୍କ ପୁତ୍ରଙ୍କ ୩୯ଙ୍କ, ଅର୍ଥାତ୍ ରାଜତ୍ୱର ୩୨ତମ ବର୍ଷରେ ମନ୍ଦିର ନିର୍ମାଣ କରାଇଲେ । (୧୬୮୯ ଶକାବ୍ଦରେ) ଲଳିତାପାଟପୁର ଶାସନ ବରପଦା ଗଡ଼ ନିକଟରେ ଥିବାରୁ ଏହା ସିରାଇ ପ୍ରଗଣାରେ ଅବସ୍ଥିତ ବୋଲି ଚକ୍ରଧର ମହାପାତ୍ର ଲେଖିଛନ୍ତି । କିନ୍ତୁ ଏହା ସିରାଇ ପ୍ରଗଣା ସୀମା ବାହାରେ ଖୋର୍ଦ୍ଧା ଜିଲ୍ଲାର ରାମେଶ୍ୱର ଜିଲ୍ଲାରେ ଅବସ୍ଥିତ ।

ରାମଚନ୍ଦ୍ରଦେବ (୨ୟ)ଙ୍କ ପିତା ହରେକୃଷ୍ଣ ଦେବ (୧୭୧୬-୨୦)ଙ୍କ ସମୟରେ ଗୋଆତ୍ରେୟ ସାମନ୍ତ ଗଦାଧର ମହାପାତ୍ର ରାଜଗୁରୁ ଥିଲେ । ଗଦାଧରଙ୍କ ଦଦେଇ ହଳଧର ମିଶ୍ର ହରେକୃଷ୍ଣ ଦେବଙ୍କ ରାଣୀ ସତ୍ୟଭାମା ଦେବୀଙ୍କୁ ମନ୍ତ୍ରଦାନକରି ଏକ ଚକଡ଼ା ଭୂଇଁରେ ବୀରହରେକୃଷ୍ଣପୁର ଶାସନ ଦାନ ଗ୍ରହଣ କରିଥିଲେ । ରାଣୀ ସତ୍ୟଭାମାଙ୍କ ନାମରେ ହରେକୃଷ୍ଣଦେବ ସତ୍ୟଭାମାପାଟପୁର ଶାସନ ବସାଇଥିଲେ ଏବଂ ଏହି ଶାସନ ମଧ ସିରାଇ ପ୍ରଗଣାରେ ଅବସ୍ଥିତ ବୋଲି ଚକ୍ରଧର ମହାପାତ୍ର 'ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ'ରେ ଲେଖିଛନ୍ତି । କିନ୍ତୁ ଏହା ଲେମ୍ବାଇ ପ୍ରଗଣାରେ ଅବସ୍ଥିତ ।

ବରପଦାଗଡ଼ରୁ ମାତ୍ର ଡାକେବାଟରେ ଅବସ୍ଥିତ (ପାତ୍ରଶିପୁର) ପଟ୍ଟଯୋଶୀପୁର ଶାସନ । ଏହି ଶାସନ ଗ୍ରାମର ପଶ୍ଚିମ ମୁଣ୍ଡରେ ସିଦ୍ଧବଳଦେବଙ୍କ ମନ୍ଦିର । ଏହି ମନ୍ଦିର ନିର୍ମିତ ହୋଇଥିଲା ଦିବ୍ୟସିଂହ ଦେବ (୧୬୮୯-୧୭୧୬)ଙ୍କ ରାଜତ୍ୱକାଳରେ, ଯିଏ ଯୁବରାଜଭାବେ ବରପଦାଗଡ଼ରୁ ଯାଇ ରାଜାଭାବେ ରଥିପୁର ଗଡ଼ରେ ସିଂହାସନାରୂଢ଼ ହୋଇଥିଲେ ବୋଲି ଲେଖାଥିବା ମାଦଳାପାଞ୍ଜିର ବିବରଣୀ ପ୍ରଥମରୁ ଦିଆଯାଇଛି ।

ଦିବ୍ୟସିଂହ ଦେବଙ୍କର ୪ ଅଙ୍କ ଅର୍ଥାତ୍ ୧୭୧୫ ଖ୍ରୀ.ରେ ଦିଆନ୍ ପରମାନନ୍ଦ ପଟ୍ଟନାୟକଙ୍କ ଇଚ୍ଛାକ୍ରମେ ନିର୍ମିତ ଏହି ମନ୍ଦିର ସମ୍ପର୍କରେ ମାଦଳାପାଞ୍ଜିରେ (ମୁଖ୍ୟ ଭଣ୍ଡାରପାଞ୍ଜିର ଦିବ୍ୟସିଂହ ଦେବ ୨ୟ ଖଣ୍ଡ, ୨ୟ ଫଳା, ୧୧୪ ପୃଷ୍ଠାରେ) ବିସ୍ତୃତ ବିବରଣୀ ଲିପିବଦ୍ଧ ହୋଇ ରହିଛି --

---

୧୮୫- ୩/୧୯୧



ବରପଦାଗଡ଼ର ସିଦ୍ଧବଳଦେବ

"ଶ୍ରୀ ଜଗନ୍ନାଥ ଦେବଙ୍କ ଭଣ୍ଡାରରକ୍ଷକକୁ ଆକଟ ଲେଖନକୁ। ଶ୍ରୀ ଗଜପତି ଦିବ୍ୟସିଂହ ଦେବ ମହାରାଜାଙ୍କ ବିଜୟ ଶୁଭରାଜ୍ୟେ x x x ଏ ରାଜା ଏମାନ ମୁଗଲଗୋଳକୁ ଅତି ଗହଣ କଲେ। ରଥିପୁରଗଡ଼ କରିବି ବୋଇଲେ। ସେ ଗଡ଼ ଆପଦିବ ନାହିଁ। ଏମନ୍ତ ବୋଲିଣ ବକ୍ସି ଅଗ୍ରହାଟକୁ ନେଇ ରାଜା ରଥିପୁର ଗଲେ। ପାତ୍ର ପରମାନନ୍ଦ ଆପଣା ଗହଣେ ପାଟ ବକସି କାରିଯ କଲା; ମୁଗଲକାମକୁ ଖଣ୍ଡିବାକୁ ପରମେଶ୍ୱର ସ୍ମରଣା କରି ରଥିପୁରଗଡୁ ସେ ଗହଣମାନଙ୍କୁ କଲେ। ଦେବ ସିରେଇ ଦଣ୍ଡପାଟ ବିସେ ପ୍ରଗଣା ମଧ ପାତୁଣିପୁର ଶିରେଇ ଦଣ୍ଡପାଟ ୩୯ ବାଟି ମଧେ ୭ବାଟି ୩ ଗୁଣ୍ଠ ଶ୍ରୀପରମ ସିଦ୍ଧବଳଦେବ ମଣ୍ଡପୋଇ ଭିଆଣ କରି ରାଜଭୋଗ ଯାନିଯାତ୍ରା ଆଦି ଖଞ୍ଜାକଲେ। ପରମେଶ୍ୱରଙ୍କୁ ସେବିବାକୁ ଭ୍ରମରପରମାନନ୍ଦ ମନାସନ୍ତେ ଏମନ୍ତ ଭିଆଣ କଲେ। ଯାନିଯାତ୍ରା ଗୁଆଳିକୁ ରାଜା ଭଣ୍ଡାର ପଇଡ଼ ୭ କାହାଣ ଗୁମୁଟ ଆଦି ଚୂନୁରା ଭିଆଣକୁ ୯ କାହାଣ ୧ ଶୁଦ୍ଧ ଅସ୍ତ୍ରପି - ଚନ୍ଦନକରାଳକୁ ୧ ଶୁଦ୍ଧ ଅସ୍ତ୍ରପି ନେବେ। ବ୍ରାହ୍ମଣ ହକରା ବିଧାନକୁ ଗହନ

ବିଧାନମାନଙ୍କୁ x x x ୩ କାହାଣ ୧୩ ଗଣ୍ଡା । ରାଜଖଞ୍ଜା ଭିଆରଣକୁ ସିଦ୍ଧବକୁଳ ପାତ୍ରମାନେ ଗରୁକଲେ । ଏ ଭିଆଣ ୩୪ ଅଙ୍କେ କରି ପରମେଶ୍ୱରଙ୍କ ଗହଣ ଗରୁ କଲେ x x x ।''

ଏଥିରୁ ଅନୁମାନ କରାଯାଏ ଯେ, ଦିବ୍ୟସିଂହ ଦେବଙ୍କ ପାତ୍ର ପରମାନନ୍ଦ ପଟ୍ଟନାୟକଙ୍କର ବାସସ୍ଥାନ ବରପଦାଗଡ଼ ନିକଟ ପଟ୍ଟଯୋଶୀପୁର, ସୋଢ଼ରପୁର କିମ୍ବା ସେହି ପାଖରେ କେଉଁଠି ଥିଲା । ଦିବ୍ୟସିଂହ ଦେବଙ୍କ ରାଜତ୍ୱ ଶେଷ ବେଳକୁ ପାତ୍ର ପରମାନନ୍ଦ ପଟ୍ଟନାୟକ ମଧ ବୃଦ୍ଧ ହୋଇଯାଇଥିଲେ । ପୁଣି ସେତେବେଳକୁ ଯବନମାନଙ୍କ ଆକ୍ରମଣ ଆଶଙ୍କାରେ ଶ୍ରୀକ୍ଷେତ୍ରରୁ ଶ୍ରୀ ଜଗନ୍ନାଥଙ୍କୁ ମଧ ବେଳେ ବେଳେ ସ୍ଥାନାନ୍ତର କରାଯାଉଥିଲା । ତେଣୁ ବୃଦ୍ଧ ପାତ୍ର ପରମାନନ୍ଦ ପଟ୍ଟନାୟକ ରାଜାଙ୍କୁ କହି ଶ୍ରୀ ବଳଭଦ୍ର, ଶ୍ରୀ ଜଗନ୍ନାଥ ଓ ଶ୍ରୀ ସୁଭଦ୍ରାଙ୍କୁ ନିଜ ବାସସ୍ଥାନ ନିକଟରେ ପ୍ରତିଷ୍ଠିତ କରାଇ ପୂଜାର୍ଚ୍ଚନାପାଇଁ ସୁବ୍ୟବସ୍ଥା ଖଞ୍ଜି ଦେଇଥିଲେ । ଉଲ୍ଲେଖଯୋଗ୍ୟ ଯେ, ଏହି ତିନି ଠାକୁରଙ୍କ ବିଗ୍ରହ ଦାରୁ ନିର୍ମିତ ହେଲେ ହେଁ ଶ୍ରୀମନ୍ଦିର ବିଗ୍ରହ ଅନୁରୂପ ନୁହଁନ୍ତି । ଏ ବିଗ୍ରହସବୁ ଶ୍ରୀବଳଦେବ, ଶ୍ରୀଜଗନ୍ନାଥ ଓ ଶ୍ରୀ ସୁଭଦ୍ରାଙ୍କ ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି - ଠିକ୍ ରାମ ଲକ୍ଷ୍ମଣ ସୀତାଙ୍କ ପରି । ମୂର୍ତ୍ତିମାନଙ୍କର ଉଚ୍ଚତା ପ୍ରାୟ ୪ ଫୁଟ ହେବ । ମନ୍ଦିରର ମ୍ୟାନେଜିଂ ଟ୍ରଷ୍ଟି ବରପଦାଗଡ଼ ସଂଲଗ୍ନ ବକୁଗ୍ରାମ ନିବାସୀ ଶ୍ରୀବ୍ରଜକିଶୋର ଜଗଦ୍ଦେବଙ୍କ ନିକଟରେ ଥିବା ପୁରୁଣା ରେକର୍ଡ଼ରୁ ଜଣାଯାଏ ଯେ, ବ୍ରିଟିଶ ରାଜତ୍ୱରେ ''ଦିବ୍ୟସିଂହଦେବ (୩ୟ)ଙ୍କ ୧୩ଅଙ୍କ ସ୍ନ ୧୨୭୭ସାଲ (୧୮୬୯ ଖ୍ରୀଷ୍ଟାବ୍ଦ) ମିଥୁନ ୧୭ ଦିନ'' ତତ୍କାଳୀନ ପୁରୀ ସଦର କାନୁନ୍‌ଗୋ କୌଣସି କାରଣରୁ ଏହି ଐତିହାସିକ ମନ୍ଦିର ସମ୍ପର୍କରେ ତଦନ୍ତକରି ତାଙ୍କର ତଦନ୍ତ ରିପୋର୍ଟ ସରକାରଙ୍କୁ ଦେଇଥିଲେ । ଏହି ରିପୋର୍ଟରେ ଠାକୁରଙ୍କ ଭୂ-ସମ୍ପତ୍ତି ପାଟ୍ଟଯୋଶୀପୁର ମୌଜାର ମା ୮୨-୬-ଗୁଣ୍ଠ ୧୦ବିଶ୍ୱା ଏବଂ ସୋଢ଼ରପୁର ମୌଜାରେ ମା ୫୭-୫ଗୁଣ୍ଠ ଏହିପରି ମୋଟ ୧୩୯ ମାଣ ୧୧ ଗୁଣ୍ଠ ଦଶ ବିଶ୍ୱା ବା ୬ ବାଟି ୧୯ ମାଣ ୧୧ଗୁଣ୍ଠ ଦଶ ବିଶ୍ୱା ଥିବାର ଉଲ୍ଲେଖ ଅଛି । ସୁତରାଂ ମନ୍ଦିର ପ୍ରତିଷ୍ଠା କାଳରୁ ସେ ପର୍ଯ୍ୟନ୍ତ ଦୀର୍ଘ ୨୫୪ ବର୍ଷ ମଧ୍ୟରେ ବହୁବାର ଜମିଜମା ବନ୍ଦୋବସ୍ତ କରାଯାଇଥିଲେ ହେଁ ମାତ୍ର ୧୬ ଗୁଣ୍ଠ ଛଅ ବିଶ୍ୱା ଜମି ଏପାଖ ସେପାଖ ହୋଇ ପ୍ରାୟତଃ ମୂଳ ଖଞ୍ଜା ସମ୍ପତ୍ତି ଅକ୍ଷୁଣ୍ଣ ରହିଥିଲା । ଏହି ଅଞ୍ଚଳର ଜଣେ ବିଶିଷ୍ଟ ସମାଜସେବୀ ବକୁ ଉଚ୍ଚ ବିଦ୍ୟାଳୟ (ଭିକାରି ଚରଣ ବିଦ୍ୟାନିକେତନ)ର ପ୍ରତିଷ୍ଠାତା ସ୍ୱର୍ଗତ ଭିକାରିଚରଣ ମଙ୍ଗରାଜ ଏକଦା ଏହି ସିଦ୍ଧବଳଦେବ ମନ୍ଦିର ମ୍ୟାନେଜିଂ ଟ୍ରଷ୍ଟି ଥାଇ ୧୯୭୪ ମସିହାରେ ପୁରାତନ ମନ୍ଦିରର ମରାମତି କରାଇବା ସହିତ ଠାକୁରଙ୍କ ଦାରୁ ବିଗ୍ରହ ଗୁଡ଼ିକ ଜୀର୍ଣ୍ଣଶୀର୍ଣ୍ଣ ହୋଇଯାଇଥିବାରୁ ୧୯୭୭ ମସିହାରେ ନବକଳେବର ବିଧାନରେ ନୂତନ ଦାରୁମୂର୍ତ୍ତି ବସାଇଥିଲେ ।

## ଗଡ଼ବଳଭଦ୍ରପୁର

ଗଡ଼ବଳଭଦ୍ରପୁର ଏପରି ଏକ ଗ୍ରାମ, ଯେଉଁଠି ମୁଠାଏ ମାଟି ଭିତରେ ଅଜସ୍ର ସ୍ମୃତିର ଧୂଳିକଣା ପୂରି ରହିଛି । କଣାସ ଠାରୁ ତିନି କିଲୋମିଟର ଦକ୍ଷିଣକୁ, ଦୟାନଦୀ ପଶ୍ଚିମ ଦିଗରୁ ମଲାଗୁଣି ନଦୀ ଆସି ତା' ସହିତ ମିଶିଛି । ମଲାଗୁଣିର ଅନ୍ୟନାମ ମନ୍ଦାକିନୀ, ଯାହାକୁ 'ନଦୀ ମନ୍ଦାକିନୀ ଅମନ୍ଦଗାମିନୀ, ରଣପୁର ରାଷ୍ଟ୍ର ବନବିହାରିଣୀ' ବୋଲି କବିବର ରାଧାନାଥ ବର୍ଣ୍ଣନା କରିଛନ୍ତି । ଦୟା ଆଉ ମଲାଗୁଣି ନଦୀର ମିଳନସ୍ଥଳରେ ଗଡ଼ବଳଭଦ୍ରପୁର ଗ୍ରାମ । ଦୟାନଦୀର ଆଉ ଏକ ଶାଖା ନଦୀ 'ରାଜୁଆ' କଣାସଠାରୁ ପ୍ରାୟ ୧୦ କିଲୋମିଟର ଉତ୍ତରକୁ ତିରିମଲଠାରେ ଦୟାନଦୀର ଡାହାଣ ପାଖରୁ ବାହାରି ପୁଣି ଗଡ଼ବଳଭଦ୍ରପୁର ଉତ୍ତର ପାଖରେ ଦୁଇଧାର ହୋଇ ଗୋଟିଏ ଧାର ଦୟାରେ ଓ ଅନ୍ୟ ଧାରଟି ମଲାଗୁଣିରେ ପଡ଼ିଛି । ସଂପ୍ରତି ଗଡ଼ବଳଭଦ୍ରପୁର ଗ୍ରାମର ପୂର୍ବଦିଗରେ ଦୟା, ଦକ୍ଷିଣ-ପଶ୍ଚିମ ଦିଗରେ ମଲାଗୁଣି ଏବଂ ଉତ୍ତର-ପଶ୍ଚିମ ଦିଗରେ ରାଜୁଆର ଦୁଇଧାର ଏହିପରିଭାବେ ଚତୁର୍ଦ୍ଦିଗ ନଦୀ ଦ୍ୱାରା ପରିବେଷ୍ଟିତ । ଫଳରେ ଏହି ଗ୍ରାମର ବାସିନ୍ଦାମାନେ ବର୍ଷ ତମାମ ନୌକାରେ ନଦୀ ପାରିହୋଇ ବାହାରକୁ ଯିବା ଆସିବା କରନ୍ତି (ଚଳିତ ୧୯୯୮ ମସିହାରେ ବଳଭଦ୍ରପୁର ଦକ୍ଷିଣ ସୀମାକୁ ଲାଗି ମଲାଗୁଣି ନଦୀରେ ଏକ ପୋଲ ନିର୍ମିତ ହୋଇଛି )। କିନ୍ତୁ ପ୍ରାଚୀନ ବଳଭଦ୍ରପୁର ଦୁର୍ଗର ଉତ୍ତର ଦିଗରେ କୌଣସି ନଦୀ ନ ଥିଲା, କେବଳ ଥିଲା ଖାଲୁଆ ପାଟଜମି । 'ରାଜୁଆ' ନଦୀର ସୃଷ୍ଟି ମାତ୍ର ଶହେ ଦେଢ଼ଶହ ବର୍ଷ ମଧ୍ୟରେ ହୋଇଥିବା ଜଣାଯାଏ । ଗଙ୍ଗବଂଶ ଓ ସୂର୍ଯ୍ୟବଂଶ ରାଜତ୍ୱ କାଳରେ ବଳଭଦ୍ରପ୍ରସାଦଦୁର୍ଗ ପରଗ ଦଣ୍ଡପାଟର ଅନ୍ତର୍ଭୁକ୍ତ ଥିଲା । ମାଦଳାପାଞ୍ଜିରେ ଉଲ୍ଲେଖ ଥିବା ପରଗ 'ଦଣ୍ଡପାଟ'କୁ ମୋଗଲ ରାଜତ୍ୱ କାଳରେ 'ଆଇନ୍-ଇ-ଆକବରୀ'ରେ ବରଙ୍ଗ ମାହାଲ ନାମରେ ନାମିତ କରାଯାଇ ଉକ୍ତ ମାହାଲକୁ ଛଅଗୋଟି ବିସି ବା ଖଣ୍ଡରେ ବିଭକ୍ତ କରାଯାଇଥିଲା । ଭୁବନେଶ୍ୱରଠାରୁ ବାଣପୁର ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଖୋର୍ଦ୍ଧା ଅଞ୍ଚଳ ବରଙ୍ଗ ମାହାଲ ବା ପରଗ ଦଣ୍ଡପାଟର ଅନ୍ତର୍ଭୁକ୍ତ ଥିଲା । ଏହି କାରଣରୁ ଅଦ୍ୟାବଧି ମଧ୍ୟ ଖୋର୍ଦ୍ଧା ଅଞ୍ଚଳକୁ ପରଗ ଅଞ୍ଚଳ ବୋଲି କୁହାଯାଏ ।

ଯେଉଁ ଛଅ ଗୋଟି ବିସି ବା ଖଣ୍ଡରେ 'ବରଙ୍ଗ' ମାହାଲକୁ ବିଭକ୍ତ କରାଯାଇଥିଲା ତହିଁରୁ ଅଟିରି, ପରାଙ୍ଗ ଓ ଶବରୀ- ଏହି ତିନିଗୋଟି ନାମ ମିଳୁଛି ଏବଂ ଅନ୍ୟ ତିନିଗୋଟି ବିଶି ବା ଖଣ୍ଡର ନାମ ମିଳୁ ନାହିଁ ବୋଲି ଡ. ମହତାବ ଲେଖିଛନ୍ତି । ଅନୁମାନ କରାଯାଏ, ବଳଭଦ୍ର ପ୍ରସାଦ ନାମରେ ଏକ ବିସି ବା ଖଣ୍ଡ ଥିଲା । ଏପରି ଅନୁମାନର ଦୁଇଟି କାରଣ ରହିଛି । ପ୍ରଥମତଃ ବଳଭଦ୍ରପୁର ବା ବଳଭଦ୍ରପ୍ରସାଦଦୁର୍ଗ ନଦୀଦ୍ୱାରା ବେଷ୍ଟିତ ହୋଇଥିବାରୁ ଏବଂ ଏହାର ଉତ୍ତର ଦିଗରେ ବାସଭୂମିପାଇଁ ଅନୁପଯୁକ୍ତ ଅତି ଖାଲୁଆ ପାଟଜମି ରହୁଥିବାରୁ

ଉତ୍ତର ଓ ପଶ୍ଚିମ ଦିଗରୁ ଏହି ଦୁର୍ଗ ପ୍ରତି ଶତ୍ରୁ ଆକ୍ରମଣ ଆଶଙ୍କା ଦୂର କରିବା ଅଭିପ୍ରାୟରେ ପ୍ରାୟ ଏକ ମାଇଲ ଉତ୍ତରକୁ ଦୟାନଦୀ କୂଳରେ ଏକ ଦୋହରା ବସ୍ତି ବସାଇ ସେଠାରେ ଗଡ଼ର ଦଳବେହେରାଙ୍କୁ ଅବସ୍ଥାପିତ କରାଯାଇଥିଲା । ସେହି ଦୋହରା ବସ୍ତିଟି ଦୁର୍ଗର ଦ୍ୱିତୀୟ ଖଣ୍ଡ ବା ଦୋଖଣ୍ଡ ଥିଲା, ଯାହା ଏବେ ଦୋକନ୍ଦା ନାମରେ ପରିଚିତ । ଦ୍ୱିତୀୟତଃ, ମୋଗଲ ସମ୍ରାଟ ଆକବରଙ୍କ ଆଦେଶ କ୍ରମେ ତାଙ୍କର ସେନାପତି ତୋଡରମଲ୍ଲ ୧୫୮୦ ଖ୍ରୀଷ୍ଟାବ୍ଦରେ ପ୍ରଥମେ ପରଙ୍ଗ ବା ବରଙ୍ଗ ମାହାଲର ଜମିଜମା ବନ୍ଦୋବସ୍ତ କରାଇଥିଲେ ଏବଂ ୧୫୯୨-୯୩ ଖ୍ରୀ.ଅ.ରେ ଆକବରଙ୍କର ଅନ୍ୟତମ ସେନାପତି ରାଜା ମାନସିଂହ ସେହି ବନ୍ଦୋବସ୍ତକୁ ପକ୍କା କରାଇ ଆକବରଙ୍କ ନିର୍ଦ୍ଦେଶକ୍ରମେ ରାମଚନ୍ଦ୍ରଦେବ (୧)ଙ୍କୁ ଖୋର୍ଦ୍ଧାର ରାଜା ରୂପେ ସ୍ୱୀକୃତି ପ୍ରଦାନ କରିଥିଲେ । ଖୋର୍ଦ୍ଧା କିଲ୍ଲା ଅଧୀନରେ ଖୁରୁଧା, ରଥିପୁର, ତାପଙ୍ଗ, ନାଳସିଂ, ରାମେଶ୍ୱର, କୋକଲ, ରୋଡ଼ଙ୍ଗ ଇତ୍ୟାଦି ୭୧ଟି ଗଡ଼ ମଧ୍ୟରେ ବଳଭଦ୍ରପ୍ରସାଦ ଅନ୍ୟତମ ଗଡ଼ ଥିଲା । କିନ୍ତୁ ପ୍ରଶାସନିକ ସୁବିଧା ଦୃଷ୍ଟିରୁ ରାମଚନ୍ଦ୍ରଦେବ (୧) ଖୋର୍ଦ୍ଧା ରାଜ୍ୟକୁ ଯେଉଁ ୯ ଗୋଟି ଜିଲ୍ଲାରେ ବିଭକ୍ତ କରିଥିଲେ, ତା'ମଧ୍ୟରେ ବଳଭଦ୍ର ପ୍ରସାଦକୁ ବଳଭଦ୍ରପୁର ନାମରେ ଅନ୍ୟତମ ଜିଲ୍ଲାଭାବେ ସ୍ଥାନ ଦିଆଯାଇଥିଲା । ସେହି ନଅଟି ଜିଲ୍ଲା ହେଉଛି - ବାଣପୁର, କୁହୁଡ଼ି, ରାମେଶ୍ୱର, ବଳଭଦ୍ରପୁର, ତାପଙ୍ଗ, କୁଶପଲ୍ଲୀ, ମାଣକଗଡ଼, ପାରିକୁଦ ଓ ଦାଣ୍ଡିମାଳ । ଇଂରେଜ କମିଶନର ଷ୍ଟାର୍ଲିଂ ସାହେବ ପାର୍ଶିଭାଷାରେ ଲେଖାହୋଇଥିବା ପ୍ରାଚୀନ ନଥିପତ୍ରରୁ ଉଦ୍ଧାର କରି ଏହି ସବୁ ତଥ୍ୟ ଲିପିବଦ୍ଧ କରିଛନ୍ତି ବୋଲି ଐତିହାସିକ କେଦାରନାଥ ମହାପାତ୍ର ଲେଖିଛନ୍ତି । ବଳଭଦ୍ରପୁର ଜିଲ୍ଲା ଅଧୀନରେ ୩୪ଟି ମୌଜା ବା ରାଜସ୍ୱ ଗ୍ରାମ ଥିଲା । ସେଗୁଡ଼ିକ ହେଲା - ବଳଭଦ୍ରପୁର, ଦୋକନ୍ଦା, କଣାସ, ସହନା, ଚାନ୍ଦପଡ଼ା, ଡିମିରି, ଗଡ଼ସାହି, ବାଇଁଗଣତଳି*, ଗୋମୁଣ୍ଡା*, ମାହାଲୋ*, ବୋତଳମା, ଓସ୍ତପାରି, ବାଲିପାଟଣା, କଉଡ଼ିଆପୁର, ଚୁପୁରଙ୍ଗି, ପାହିଲୁଣ୍ଡି, କାଳିଘଡ଼ି, ବସନ୍ତପୁର, ଦୁପୁର, ଗଡ଼ିଶାଗୋଦା, ବାହାରକୁଦା, ଶିରିପୁର, କଲାପଦର, ଗୋପିନାଥପୁର, ପାଇକମରା, ଲୁଣିଆପଦର, ସିଂଘାକୁଦା ଓ ଜିପୁର ।

ଉଲ୍ଲେଖଯୋଗ୍ୟ ଯେ, ଇଂରେଜ ରାଜତ୍ୱରେ ଓଡ଼ିଶାରେ ଜିଲ୍ଲା ଓ ସବ୍‌ଡିଭିଜନ୍ ଗଠନ କାଳରେ ବଳଭଦ୍ରପୁର ଜିଲ୍ଲା ଖୋର୍ଦ୍ଧାକିଲ୍ଲା ଅଧୀନରେ ଥିଲେ ହେଁ ଏହାକୁ ଖୋର୍ଦ୍ଧା ସବ୍‌ଡିଭିଜନ୍‌ରେ ସାମିଲ କରା ନ ଯାଇ ପୁରୀ ସଦର ସବ୍‌ଡ଼ିଭିଜନ୍‌ରେ ରଖାଯାଇଥିଲା । ସୁତରାଂ ଆଇନ ଶୃଙ୍ଖଳା, ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ଜଳସେଚନ, ରାସ୍ତାଘାଟ ଇତ୍ୟାଦି ସମସ୍ତ ପ୍ରଶାସନିକ ବିଭାଗର ନିୟନ୍ତ୍ରଣ ବ୍ୟବସ୍ଥା ପୁରୀ ସଦର ସବ୍‌ଡିଭିଜନ୍ ଅନ୍ତର୍ଭୁକ୍ତ ଥାଇ ମଧ୍ୟ ଉଲ୍ଲିଖିତ ୩୪ ଗୋଟି ମୌଜାର କେବଳ ରାଜସ୍ୱ ବିଭାଗ ନିୟନ୍ତ୍ରଣ ବ୍ୟବସ୍ଥା ଖୋର୍ଦ୍ଧା ସବ୍‌ଡିଭିଜନ୍ ତଥା ବାଣପୁର

---
* *ବେଚ୍ଛପରା ମୌଜା*

ତହସିଲର ଅନ୍ତର୍ଭୁକ୍ତ ଥିଲା । ଦେଶ ସ୍ୱାଧୀନ ହେବା ପରେ ନୂତନ ଆଇନ ପ୍ରଣୟନ କରାଯାଇ ୧୯୫୪ରେ ଓଡ଼ିଶାର ଜମିଦାରୀ ଓ ମଧ୍ୟସ୍ୱତ୍ୱାଧିକାରୀ ବ୍ୟବସ୍ଥାକୁ ଉଠାଇବା ପର୍ଯ୍ୟନ୍ତ ଉପରୋକ୍ତ ୩୪ ଗୋଟି ମୌଜାଧୀନ ଗ୍ରାମମାନଙ୍କରେ ଏହି ପ୍ରକାର ଦ୍ୱୈତ ପ୍ରଶାସନ ପ୍ରଣାଳୀ ପ୍ରଚଳିତ ଥିଲା । ଏବେ ଏହି ୩୪ ମୌଜାରୁ ଶେଷ ଦୁଇ ଗୋଟି ଅର୍ଥାତ୍ ସିଂଘାକୁଦା ଓ ଢିପୁର ଗ୍ରାମ ଦୁଇଟି ସତ୍ୟବାଦୀ ଥାନା ଏବଂ ସତ୍ୟବାଦୀ ବ୍ଲକ ଅଧୀନରେ ରହିଛି । ଅବଶିଷ୍ଟ ୩୨ଗୋଟି ମୌଜା କଣାସ ବ୍ଲକ ଅଧୀନରେ ଥିଲେ ହେଁ ପ୍ରଥମ ୧୯ଟି ମୌଜା କଣାସ ଥାନାରେ ଓ ପରବର୍ତ୍ତୀ ୧୩ଟି ମୌଜା ବ୍ରହ୍ମଗିରି ଥାନାରେ ରହିଛି । ଖୋର୍ଦ୍ଧା ଜିଲ୍ଲା ଅଧୀନରେ ଥିବା ବଳଭଦ୍ରପୁର ଜିଲ୍ଲାକୁ ଖୋର୍ଦ୍ଧା ସବ୍‌ଡିଭିଜନ୍ ଅନ୍ତର୍ଭୁକ୍ତ କରା ନ ଯାଇ ପୁରୀ ସଦର ସବ୍‌ଡିଭିଜନ୍‌ରେ ରଖାଯିବାର କାରଣ ଏହାର ଜଟିଳ ଭୌଗୋଳିକ ଅବସ୍ଥିତି । ଦୟା ଓ ମଳାଗୁଣି ନଦୀର ଉଭୟ ପାର୍ଶ୍ୱରେ ପରଙ୍ଗଦଣ୍ଡପାଟର ବଳଭଦ୍ରପ୍ରସାଦ ବିସି ଏବଂ ସିରାଇଦଣ୍ଡପାଟର ସିରାଇ ବିସିର ଗ୍ରାମଗୁଡ଼ିକ ପରସ୍ପର ଛନ୍ଦାଛନ୍ଦି ହୋଇ ରହିଥିଲା । ବିସି ଓ ଖଣ୍ଡ ସବୁ ମୋଗଲ ରାଜତ୍ୱ କାଳରେ ପ୍ରଗଣାରେ ପରିଣତ ହେଲେ । କିନ୍ତୁ ସିରାଇଦଣ୍ଡପାଟର ସିରାଇବିଶି ମୋଗଲ ଶାସନକାଳରେ ସିରାଇ ପ୍ରଗଣାରେ ପରିଣତ ହୋଇଥିଲେ ହେଁ ପରଙ୍ଗ ଦଣ୍ଡପାଟର ବଳଭଦ୍ରପ୍ରସାଦ ବିସି ପ୍ରଗଣା ପରିବର୍ତ୍ତେ ଜିଲ୍ଲାରେ ପରିଣତ ହୋଇଥିଲା । ଐତିହାସିକମାନେ ଅତି ପ୍ରାଚୀନ ତାମ୍ରଲିପିମାନଙ୍କରେ ବ୍ୟବହୃତ 'ବିଷୟ' ଶବ୍ଦପାଇଁ ଇଂରାଜୀ ପ୍ରତିଶବ୍ଦ district ବ୍ୟବହାର କରିଛନ୍ତି । ତେଣୁ 'ବିଷୟ'ର ପରବର୍ତ୍ତୀ ପରିବର୍ତ୍ତିତ ରୂପ 'ବିସି' ଓଡ଼ିଆରେ ଜିଲ୍ଲା ହୋଇଯାଇଛି ।

ପରଙ୍ଗ ଦଣ୍ଡପାଟ ବା ବରଙ୍ଗ ମାହାଲ ସହିତ ଭୋଇବଂଶର ପ୍ରଥମ ରାଜା ରାମଚନ୍ଦ୍ରଦେବ ପ୍ରଥମେ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନକରି ଖୋର୍ଦ୍ଧା ଜିଲ୍ଲା ପ୍ରତିଷ୍ଠା କରିଥିବା ହେତୁ ସମ୍ଭବତଃ ଅନ୍ୟ ଅଞ୍ଚଳଠାରୁ ଖୋର୍ଦ୍ଧା ଜିଲ୍ଲାଧୀନ ଅଞ୍ଚଳଗୁଡ଼ିକର ସ୍ୱତନ୍ତ୍ରତା ରକ୍ଷା କରିବା ଉଦ୍ଦେଶ୍ୟରେ ଏପରି କରାଯାଇଥିଲା । ବଳଭଦ୍ରପୁର ଆଉ ସିରାଇଗ୍ରାମ ଦୟାନଦୀର ଉଭୟ ପାର୍ଶ୍ୱରେ ମାତ୍ର ଚାରି ମାଇଲ ବ୍ୟବଧାନରେ ଅବସ୍ଥିତ । କିନ୍ତୁ ସିରାଇ ପ୍ରଗଣାର ଗ୍ରାମଗୁଡ଼ିକ ଦୟାନଦୀର ପଶ୍ଚିମରେ କାଇପଦରରୋଡ଼ ରେଳଷ୍ଟେସନ୍‌ଠାରୁ ପାଖାପାଖି ଭୂଷଣ୍ଡପୁର ରେଳଷ୍ଟେସନ୍ ପର୍ଯ୍ୟନ୍ତ ବ୍ୟାପିଥିବା ବେଳେ ବଳଭଦ୍ରପୁର ଜିଲ୍ଲାର କେତେକ ଗ୍ରାମ ଦୟାନଦୀର ପୂର୍ବରେ, ଏପରିକି ଲୁଣାନଦୀର ପୂର୍ବ ପାଖରେ ବିଚ୍ଛିନ୍ନ ହୋଇ ରହିଥିଲା । ତେଣୁ ସିରାଇ ପ୍ରଗଣା ଓ ବଳଭଦ୍ରପୁର ଜିଲ୍ଲା ମଧ୍ୟରେ କୌଣସି ପ୍ରକାର ପ୍ରଶାସନିକ ସୀମାରେଖା ଚିହ୍ନଟ କରିବା ସମ୍ଭବପର ହୋଇ ନ ଥିଲା । ଫଳରେ ବଳଭଦ୍ରପୁର ଜିଲ୍ଲାକୁ ପୁରୀ ସଦର ସବଡିଭିଜନ୍ ଅନ୍ତର୍ଭୁକ୍ତ କରାଯାଇଥିଲା ।

କିମ୍ବଦନ୍ତୀ ଅଛି ଯେ, ରାଜା ବଳଭଦ୍ରଦେବଙ୍କ ନାମାନୁସାରେ ବଳଭଦ୍ରପୁରର ନାମକରଣ କରାଯାଇଥିଲା । ଇତିହାସରେ ଆମେ ବଳଭଦ୍ର ଦେବ ନାମଧାରୀ ଜଣେ ମାତ୍ର

ରାଜାଙ୍କୁ ପାଉଁ, ଯିଏ ଖୋର୍ଦ୍ଧା ଭୋଇବଂଶର ୪ର୍ଥ ରାଜା ରୂପେ ୧୬୪୭ରୁ ୧୬୫୭ ଖ୍ରୀ. ପର୍ଯ୍ୟନ୍ତ ଦଶ ବର୍ଷ ରାଜତ୍ୱ କରିଥିଲେ । ଯଦି ସେହି ବଳଭଦ୍ର ଦେବଙ୍କ ନାମରେ ବଳଭଦ୍ରପୁର ଗଡ଼ ନାମିତ ହୋଇଥିଲା ବୋଲି ଧରାଯାଏ, ତା'ହେଲେ ତାଙ୍କର ପଞ୍ଚାବନ ବର୍ଷ ପୂର୍ବରୁ ଭୋଇବଂଶର ପ୍ରଥମ ରାଜା ରାମଚନ୍ଦ୍ରଦେବଙ୍କ ସମୟରେ ୧୫୯୨ ଖ୍ରୀ.ଅ.ରେ ଖୋର୍ଦ୍ଧାର ୭୧ ଗଡ଼ ଏବଂ ୯ ଜିଲ୍ଲା ମଧ୍ୟରେ ବଳଭଦ୍ରପୁର ନାମ ଥିଲା କିପରି ? ମାଦଳାପାଞ୍ଜିରୁ ଆମେ ଦୁଇଟି ବଳଭଦ୍ରପୁର ନାମ ପାଉଁ । ପ୍ରଥମ ବଳଭଦ୍ରପୁର ଗ୍ରାମ ବସାଇଥିଲେ ଗଙ୍ଗବଂଶର ରାଜା ଅନଙ୍ଗଭୀମଦେବ ଖ୍ରୀଷ୍ଟୀୟ .୧୨ଶ ଶତାବ୍ଦୀର ଶେଷ ଦଶକ ଅର୍ଥାତ୍ ୧୧୯୦-୯୮ ମଧ୍ୟରେ । "ଅନଙ୍ଗ ଭୀମଦେବ ବଡ଼ ଦେଉଳ ତୋଳାଇଲେ, ଠାକୁରଙ୍କ ପୂଜାନୀତି ଖଞ୍ଜିଲେ ଏବଂ ଶ୍ରୀ ପୁରୁଷୋତ୍ତମ ଦେଉଳ ଦୁଇ ପାଖରେ ବଳଭଦ୍ରପୁର ଜଗନ୍ନାଥପୁର କରି ଦୁଇ ଶାସନ ବସାଇଲେ ।"(୧୮୬) କିନ୍ତୁ ଚର୍ଚ୍ଚିତ ବଳଭଦ୍ରପୁର ଶାସନ ନୁହେଁ, କି ପୁରୁଷୋତ୍ତମ ଦେଉଳ ପାଖରେ ବି ନାହିଁ ।

ଭୋଇବଂଶର ରାଜା ବଳଭଦ୍ରଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ଶାସନ, ବୀରବଳଭଦ୍ରପୁର ନାମରେ ପୁରୀ ନିକଟରେ ଅଦ୍ୟାବଧି ରହିଛି । ପୁଣି ବ୍ରହ୍ମଗିରି ଓ ସାତପଡ଼ା ମଧ୍ୟରେ ଆଉ ଏକ ଗ୍ରାମ ମଧ୍ୟ ବଳଭଦ୍ରପୁର ନାଁରେ ଅଛି । ଆଉ ଏକ କିମ୍ବଦନ୍ତୀ ପ୍ରଚଳିତ ଅଛି ଯେ, ସୂର୍ଯ୍ୟବଂଶର ରାଜା ପୁରୁଷୋତ୍ତମ ଦେବଙ୍କ ସମୟରେ ଏହି ସ୍ଥାନରେ ବାସକରୁଥିବା ଗୋଟିଏ ବକ ଦିନେ ନଈକୂଳରେ ମାଛକୁ ଚାହିଁ ବସିଥିବା ବେଳେ ଦୈବାତ୍ କାହୁଁ ଗୋଟିଏ ବଡ଼ ଛଞ୍ଚାଣ ପକ୍ଷୀ ଉଡ଼ିଆସି ବଗକୁ ଝାମ୍ପିନେବାପାଇଁ ଆକ୍ରମଣକଲା, କିନ୍ତୁ ବଗଟି ସଙ୍ଗେ ସଙ୍ଗେ ଛଞ୍ଚାଣକୁ ଓଲଟାଇ ମାଡ଼ି ବସି ମାରିଦେଲା । ପୁରୁଷୋତ୍ତମ ଦେବ ଏହା ଜାଣି ଏହିଠାରେ ଏକ ଗଡ଼ ପ୍ରତିଷ୍ଠା କଲେ । ଉଲ୍ଲେଖଯୋଗ୍ୟ ଯେ କଟକ ବାରବାଟୀଦୁର୍ଗ ପ୍ରତିଷ୍ଠା ସମ୍ପର୍କରେ ଅନୁରୂପ କିମ୍ବଦନ୍ତୀଟିଏ ଅଛି । ସେ ଯାହାହେଉ, ପୁରୁଷୋତ୍ତମ ଦେବଙ୍କ ସମୟରେ ମଧ୍ୟ ବଳଭଦ୍ରପୁର ଗଡ଼ ସ୍ଥାପିତ ହୋଇଥିବା ଘଟଣାକୁ ସମ୍ପୂର୍ଣ୍ଣ ପ୍ରତ୍ୟାଖ୍ୟାନ କରାଯାଇ ନ ପାରେ । ତେବେ ଏ ସମ୍ପର୍କରେ ଅଧିକ ଅନୁଧ୍ୟାନ ଓ ଗବେଷଣାର ଆବଶ୍ୟକତା ରହିଛି ।

ଅନ୍ୟ ଏକ କିମ୍ବଦନ୍ତୀମତେ, ଗଡ଼ବଳଭଦ୍ରପୁରରେ ଖୋର୍ଦ୍ଧାରାଜାଙ୍କର ଖମାର ଇତ୍ୟାଦି ଥିଲା । ଖୋଦ୍ ରାଜା ଏଠାରେ ସାମୟିକଭାବେ ଅବସ୍ଥାନ କରୁଥିଲେ ଏବଂ ୧୮୧୭ରେ ଖୋର୍ଦ୍ଧା ପାଇକବିଦ୍ରୋହ ସମୟରେ ଗଡ଼ର ଅଧିଷ୍ଠାତ୍ରୀ ଦେବୀ କୁଞ୍ଜେଶ୍ୱରୀ ଠାକୁରାଣୀଙ୍କୁ ଏଠାରୁ ନେଇ କଣାସର, କୃଷ୍ଣନଗରରେ ରଖାଇବାପରେ ନିଜେ ଗଡ଼ ତ୍ୟାଗକରି ପଳାଇଥିଲେ । ସମ୍ପ୍ରତି ଗଡ଼ବଳଭଦ୍ରପୁର ଗାଁରେ ରାଜ-ପ୍ରତିଷ୍ଠିତ ଠାକୁର ଗୋପୀନାଥ ଦେବଙ୍କ ମନ୍ଦିର ରହିଛି । ଠାକୁରଙ୍କ ପଞ୍ଚଦୋଳ ମେଳଣର ଏହି ଗୋପୀନାଥ ଦେବ ଥାନପତି । ଆଗରୁ

---

୧୮୬- ୧୩/୩୩

କୁହାଯାଇଛି ଯେ, ଦୋକନ୍ଦା ଗ୍ରାମଟି ବଳଭଦ୍ରପୁର ଗଡ଼ର ଏକ ଦୋହରା ବସ୍ତି ବା ଦ୍ୱିତୀୟ ଖଣ୍ଡି (ଦୋଖଣ୍ଡ) । ଗଡ଼ରେ ଅନେକ ସମୟରେ ରାଜା ବା ରାଜାଙ୍କର ଦେଓ୍ୱାନ ଅବସ୍ଥାନ କରୁଥିବାରୁ ଓ ବଳଭଦ୍ରପୁର ଜିଲ୍ଲାର କୋଷାଗାର ଏବଂ ଖମାରଘର ଏଠାରେ ରହିଥିବା ହେତୁ ଏହି ଗଡ଼ର ନିରାପତ୍ତା ନିମନ୍ତେ ଅଧିକ ସତର୍କତା ଅବଲମ୍ବନ କରାଯିବା ଉଦ୍ଦେଶ୍ୟରେ ହିଁ ଦୋଖଣ୍ଡ ବସ୍ତିରେ ଗଡ଼ର ଦଳବେହେରାଙ୍କୁ ଅବସ୍ଥାପିତ କରାଯାଇଥିଲା । ଉତ୍ତର-ପଶ୍ଚିମ ଦିଗରୁ କୌଣସି ଶତ୍ରୁ ଆକ୍ରମଣକୁ ପ୍ରତିହତ କରିବା ଉଦ୍ଦେଶ୍ୟରେ ଉତ୍ତର ଦିଗରେ ଦୋକନ୍ଦା (ଦୋଖଣ୍ଡ)ରେ ଅବସ୍ଥାପିତ ଦଳବେହେରାଙ୍କ ପଦବୀ ଥିଲା ପଶ୍ଚିମକବାଟ । ଗଡ଼ର ଦୁଇ ପାର୍ଶ୍ୱର ସୁରକ୍ଷା ଦାୟିତ୍ୱରେ ଥିବା ଦଳବେହେରା ଦୁଇଟି ଖଣ୍ଡା ଧାରଣ କରୁଥିବାରୁ ଗାଁର ନାମ ଦୋଖଣ୍ଡାରୁ ଦୋକନ୍ଦା ହୋଇଛି ବୋଲି ମଧ୍ୟ କେହି କେହି କହନ୍ତି ।

ସେହିପରି ଦକ୍ଷିଣଦିଗରୁ ବଳଭଦ୍ରପୁରଗଡ଼ ପ୍ରତି ଜଳପଥରେ ଦୟାନଦୀ ଦେଇ ଚିଲିକା ଆଡୁ ଶତ୍ରୁଭୟ ନିବାରଣପାଇଁ ବଳଭଦ୍ରପୁରର ଏକମାଇଲ ଦକ୍ଷିଣକୁ ଦୟାନଦୀକୂଳରେ ଏ ଗଡ଼ର ଅନ୍ୟ ଏକ ସାହି ଥିଲା, ଯେଉଁଠି ଗଡ଼ର ଦଳାଇ ରହୁଥିଲେ । ସେହି ସାହିର ନାମ ଗଡ଼ସାହି । ଏଇ ମାତ୍ର କେତେ ବର୍ଷ ପୂର୍ବେ ଦଳବେହେରା କୃପାସିନ୍ଧୁ ପଶ୍ଚିମକବାଟଙ୍କ ମୃତ୍ୟୁ ପରେ ତାଙ୍କ ବଂଶ ଲୋପ ପାଇଛି, ଯଦିଓ ତାଙ୍କର ଭାୟାଳୀମାନେ ଦୋକନ୍ଦାରେ ଅଛନ୍ତି । ଦୋକନ୍ଦା ଗ୍ରାମର ନାମକରଣ, ଦୋକନ୍ଦାରେ ବଳଭଦ୍ରପୁର ଗଡ଼ର ଦଳବେହେରାଙ୍କ ଅବସ୍ଥାନ ଏବଂ ଦୋକନ୍ଦା ପଞ୍ଚଦୋଳ ମେଳଣରେ ବଳଭଦ୍ରପୁର ଠାକୁର ଗୋପୀନାଥ ଦେବଙ୍କର ଥାନାପତି ଆସନ- ଏହି ତିନୋଟି ଘଟଣାରୁ ହିଁ ଗଡ଼ବଳଭଦ୍ରପୁର ସହିତ ଦୋକନ୍ଦାଗ୍ରାମର ନିବିଡ଼ ସମ୍ପର୍କ ପ୍ରମାଣିତ ହୁଏ ଏବଂ ଏହି ସମ୍ପର୍କ ଯୁଗ ଯୁଗ ଧରି ଏ ଦୁଇ ଗ୍ରାମ ମଧ୍ୟରେ ରହିଆସିଛି ଓ ଏବେ ମଧ୍ୟ ରହିଛି —

ସ୍ୱର୍ଗତ ଦିଗମ୍ବର ଶ୍ରୀଚନ୍ଦନ 'ଖୁରୁଧାଦର୍ପଣ'ରେ ବଳଭଦ୍ରପୁର ଜିଲ୍ଲା ସମ୍ପର୍କରେ ବିସ୍ତୃତ ବିବରଣୀ ପ୍ରଦାନ କରିବା ସଙ୍ଗେ ସଙ୍ଗେ ''ଏ ଗଡ଼ର ଗଡୁଆମାନେ ଅନ୍ୟାୟ ବା ଅପମାନ ସହ୍ୟ କରିପାରନ୍ତି ନାହିଁ'' କହି ସେ ସମ୍ପର୍କରେ ଏହିପରି ଏକ ଦୃଷ୍ଟାନ୍ତ ପ୍ରଦାନ କରିଛନ୍ତି -

ଟେଲର୍ ସାହେବ ଖୋର୍ଦ୍ଧାରେ ବହୁଦିନଧରି ବନ୍ଦୋବସ୍ତ ଅଫିସର ଥିଲେ ଓ ପରେ ପୁଣି ଖୋର୍ଦ୍ଧାର ଏସ୍.ଡ଼ି.ଓ ହୋଇଥିଲେ । ସେ ବନ୍ଦୋବସ୍ତ ଅଫିସର ଥିଲାବେଳେ ବନ୍ଦୋବସ୍ତ ସର୍ଭେ କାର୍ଯ୍ୟରେ ଧଣ୍ଡି (ପତାକା) ଖୁଣ୍ଟପାଇଁ ଜଣେ ଲୋକର ବାଡ଼ିରୁ ସେ ଲୋକକୁ ନ ଜଣାଇ ନ କହି ଗୋଟାଏ ବାଉଁଶ ହାଣି ଆଣିବାରୁ ବନ୍ଦୋବସ୍ତ କର୍ମଚାରୀ ଓ ବାଉଁଶବୁଦା ମାଲିକଙ୍କ ମଧ୍ୟରେ ବଚସାହେଲା । କ୍ରମେ ଉଭୟ ବଳଭଦ୍ରପୁର ଓ ଗଡ଼ସାହୀ ଗ୍ରାମର ସବୁଲୋକ ଟେଲର୍ ସାହେବଙ୍କ ବିରୋଧରେ ମେଳବାନ୍ଧି ଝଗଡ଼ା କଲେ । ଏଥିରେ ଟେଲର୍ ସାହେବ ରାଗିଯାଇ ସେହି ମାହାଲରେ ଜମାଧାର୍ଯ୍ୟ ବେଳକୁ ଅଧିକ ଜମା ବଢ଼ାଇ ଧାର୍ଯ୍ୟ କଲେ, ଲୋକେ ଆପତ୍ତି

କଲେ ଆଉ ଶୁଣିଲେ ନାହିଁ । ପୁଣି ସେ ଯେତେବେଳେ ଖୋର୍ଦ୍ଧାର ଏସ୍.ଡି.ଓ ହେଲେ ସେତେବେଳେ ମଧ୍ୟ ଏହି ଗାଁ ପ୍ରତି ତାଙ୍କର କ୍ରୋଧ କମି ନ ଥିଲା । ସେଥିପାଇଁ ତାଙ୍କର ଖୋର୍ଦ୍ଧାରେ ରହଣି ୨୦ ବର୍ଷ ମଧ୍ୟରେ ସେ ଦିନେମାତ୍ର ଏ ଅଞ୍ଚଳରେ ପାଦ ପକାଇ ନ ଥିଲେ ।[୧୮୭]

ଚକଡ଼ାପୋଥି ମତେ ଖୋର୍ଦ୍ଧାର ରାଜା ନରସିଂହ ଦେବଙ୍କ ପରେ ମୁକୁନ୍ଦଦେବ ରାଜା ହୋଇଥିଲେ । ସେତେବେଳେ ଜଣେ ମାହାଳିଆ ଗଙ୍ଗାଧର ନିଜକୁ ଖୋର୍ଦ୍ଧାର ରାଜା ବୋଲି ଦାବି କରି ପୁରୀରେ ୨୨ ଦିନ ରହିବା ପରେ କୋକଳଗଡ଼ର ରାୟପିତାମ୍, ମୁତୁସର ଛୋଟରାୟ ଓ ବଳଭଦ୍ରପୁର ଲୋକେ ମେଳ ହୋଇଯାଇ ତାକୁ ଶ୍ରୀକ୍ଷେତ୍ରରୁ ଘଉଡ଼ାଇ ଦେଇଥିଲେ ।[୧୮୮]

ପ୍ରାୟ ସବୁ ଐତିହାସିକ ଏକମତ ଯେ, ଖୋର୍ଦ୍ଧା ପାଇକ ବିଦ୍ରୋହ ଦମନକରିବାପାଇଁ ଇଂରେଜ ସେନାପତି କ୍ୟାପ୍ଟାନ୍ ଲି.ଫାବ୍‌ରେଙ୍କର ୫୫୦ ଜଣ ବନ୍ଧୁକଧାରୀ ସୈନ୍ୟଙ୍କ ସହିତ ପୁରୀ ଅଭିଯାନର ଖବର ପାଇ ୧୮୧୭ ଅପ୍ରେଲ୍ ୧୮ ତାରିଖରେ ମୁକୁନ୍ଦଦେବଙ୍କ ପୁରୀ ବାଲିସାହି ନଅରରୁ ତାଙ୍କର ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ବାଣପୁର ଅଞ୍ଚଳକୁ ଏବଂ ଦେଓ୍ୱାନ କୃଷ୍ଣଚନ୍ଦ୍ର ଭ୍ରମରବର ରାୟ କଣାସ ଅଞ୍ଚଳକୁ ପଳାଇଯାଇ ଆତ୍ମଗୋପନ କରିଥିଲେ ।[୧୮୯] କଣାସ ଆଖପାଖରେ ଜଙ୍ଗଲ ନ ଥିଲା । ତେଣୁ ଏଥିରୁ ଅନୁମିତ ହୁଏ ଯେ, କଣାସ ଅଞ୍ଚଳର ନଦୀବେଷ୍ଟିତ ପ୍ରାକୃତିକ ଦୁର୍ଗ ବଳଭଦ୍ରପୁର ସମ୍ପର୍କରେ ଦେଓ୍ୱାନ କୃଷ୍ଣଚନ୍ଦ୍ରଙ୍କର ସଠିକ୍ ଧାରଣା ଥିଲା ଏବଂ ଏହି ଦୁର୍ଗକୁ ସର୍ବୋତ୍ତମ ନିରାପଦ ସ୍ଥାନ ମନେକରି ସେ ଏହିଠାରେ ହିଁ କିଛିକାଳ ଆତ୍ମଗୋପନ କରି ରହିଥିଲେ । ଆଗରୁ ସେ ଏଠାରେ ଅବସ୍ଥାନ କରି ଏ ସ୍ଥାନର ନିରାପତ୍ତା ସମ୍ପର୍କରେ ନିଶ୍ଚିତ ଓ ନିଃସନ୍ଦେହ ନ ଥିଲେ ବିପଦ ସମୟରେ କଦାପି ଏଠାକୁ ଆସି ନ ଥାନ୍ତେ । ଆମେ ଜାଣୁ ଯେ ବଳଭଦ୍ରପୁରରୁ ମାତ୍ର ଚାରି ମାଇଲ ଦୂରରେ ଅବସ୍ଥିତ ବରପଦାଗଡ଼ରେ ପୁରୁଷୋତ୍ତମ ଦେବ, ଦିବ୍ୟସିଂହଦେବ ଓଗେର ଭୋଇବଂଶୀୟ ରାଜାମାନେ ସାମୟିକ ଅବସ୍ଥାନ କରୁଥିଲେ । ତେଣୁ ବଳଭଦ୍ରପୁରରେ ଜିଲ୍ଲା କୋଷାଗାର ତତ୍ତ୍ୱାବଧାନ ସମ୍ପର୍କିତ ରାଜାଙ୍କର ସାମୟିକ ଅଥବା ଦେଓ୍ୱାନଙ୍କର ଅଧିକ ସମୟ ଅବସ୍ଥାନକୁ ଅସ୍ୱୀକାର କରାଯାଇନପାରେ । ଅଧିକନ୍ତୁ ନିମ୍ନଲିଖିତ କାରଣଗୁଡ଼ିକ ଏହି ଉକ୍ତିର ସତ୍ୟତା ପ୍ରତିପାଦନ ନିମନ୍ତେ ସହାୟକ ହୋଇଥାଏ ।-

(୧) ସାଧାରଣତଃ ଗଡ଼ର ଦଳବେହେରାମାନେ ହିଁ ଗଡ଼ରେ ଅବସ୍ଥାନ କରନ୍ତି, କିନ୍ତୁ ଯେଉଁ ଗଡ଼ରେ ସ୍ୱୟଂ ରାଜା ଅବସ୍ଥାନ କରନ୍ତି, ସେ ଗଡ଼ର ଦଳବେହେରା ଗଡ଼ ବାହାରେ ଗଡ଼ର ନିରାପତ୍ତାରକ୍ଷୀଭାବେ ଅବସ୍ଥାନକରନ୍ତି । ବଳଭଦ୍ରପୁର ଗଡ଼ର ଦଳବେହେରା ସେହିଭଳି ଗଡ଼ ବାହାରେ ଗଡ଼ର ନିରାପତ୍ତାରକ୍ଷୀଭାବେ ଅବସ୍ଥାନ କରୁଥିଲେ ।

---

୧୮୭- ୧୮/୯୪,୨୧୬ ୧୮୮- ୧୬/୧୪ ୧୮୯- ୮/୪୨

(୨) ପାଇକବିଦ୍ରୋହ ଦମନକରି ଇଂରେଜ ସରକାର ଖୋର୍ଦ୍ଧାକୁ 'ଖାସ୍ ମାହାଲ' କରିଦେବା ପରେ ସମଗ୍ର ଖୋର୍ଦ୍ଧା ଜିଲ୍ଲା ଇଲାକାରୁ ଖୋର୍ଦ୍ଧା ରାଜାଙ୍କର ମାଲିକାନା ସ୍ୱତ୍ୱ ଲୋପପାଇ ପରବର୍ତ୍ତୀ ଜମିଜମା ବନ୍ଦୋବସ୍ତରେ ୧୮୧୭ କିମ୍ବା ୧୮୨୨-୨୩ରେ ସମସ୍ତ ଇଲାକାରେ ଇଂରେଜ ସରକାରଙ୍କର ମାଲିକାନା ସ୍ୱତ୍ୱ ସାବ୍ୟସ୍ତ କରାଯାଇଥିଲେ ହେଁ ବଳଭଦ୍ରପୁର ଗଡ଼ରେ ଯେଉଁ ସ୍ଥାନରେ ଖୋର୍ଦ୍ଧା ରାଜାଙ୍କର ଜିଲ୍ଲା କୋଷାଗାର ଥିଲା,ସେହି ସ୍ଥାନ ଅର୍ଥାତ୍ ବଳଭଦ୍ରପୁର ମୌଜାର ୧୨୬ ଖାତାର ୯୩, ୯୪ ଓ ୯୫ ଏହି ୩ଗୋଟି ପ୍ଲଟରେ ଥିବା ଏ.୦.୧୫୯ ଡେସିମିଲ୍ ଘରଡିହ ରାଜାଙ୍କର ବ୍ୟକ୍ତିଗତ ସମ୍ପତ୍ତିଭାବେ ବିବେଚିତ ହୋଇଥିବାରୁ ତହିଁରୁ ରାଜାଙ୍କର ମାଲିକାନା ସ୍ୱତ୍ୱ ଉଚ୍ଛେଦ କରାନଯାଇ ମୁକୁନ୍ଦଦେବ (୨ୟ)ଙ୍କ ଉତ୍ତରାଧିକାରୀ ରାମଚନ୍ଦ୍ରଦେବ (୩ୟ)ଙ୍କ ନାମରେ ରେକର୍ଡ଼ କରାଯାଇଥିଲା । କିନ୍ତୁ ଏହି ସାମାନ୍ୟ ଜମି ପରବର୍ତ୍ତୀ ଠାକୁରରାଜାମାନଙ୍କର କୌଣସି କାମରେ ଲାଗିଲା ନାହିଁ । ତେଣୁ ବନ୍ଦୋବସ୍ତ ମାନଙ୍କରେ ପୁରୁଣା ରେକର୍ଡ଼ ସେହିପରି ଗଡ଼ି ଆସିଲା । ଏବେ ମଧ୍ୟ ବଳଭଦ୍ରପୁର ମୌଜାର ୧୨୬ ଖାତାର ମାଲିକାନା ସ୍ୱତ୍ୱ 'ଶ୍ରୀ ରାମଚନ୍ଦ୍ରଦେବ ମହାରାଜା, ପିତା ମୁକୁନ୍ଦଦେବ ମହାରାଜା, ଜାତି କ୍ଷତ୍ରିୟ ସା.ପୁରୀ'ଙ୍କ ନାମରେ 'ଚାନ୍ଦନା' ରୂପେ ରହିଛି ।

(୩) ଏବେ ଗଡ଼ବଳଭଦ୍ରପୁରର ଗୋଟିଏ ସ୍ଥାନରେ ମାଟିତଳେ ଏକ ଶକ୍ତ ପଥର କାନ୍ଥର ଭଗ୍ନାବଶେଷ ଦେଖିବାକୁ ମିଳେ । ଏହି କାନ୍ଥରେ ଲାଗିଥିବା ମାଙ୍କଡ଼ା ପଥର ଖଣ୍ଡଗୁଡ଼ିକ ଆଜିକାଲି କଟାଯାଉଥିବା ପଥର ଖଣ୍ଡଠାରୁ ଢେର୍ ବଡ଼ । ଏହାର (ପ୍ରତି ଖଣ୍ଡର) ଲମ୍ବ ୨ ଫୁଟ ୬ ଇଞ୍ଚ, ଓସାର ୨ ଫୁଟ ଏବଂ ଉଚ୍ଚତା ୧ ଫୁଟ ୪ ଇଞ୍ଚ । ସେଇ ପଥର କାନ୍ଥି ପାଖରେ ଏକ ପ୍ରକାଣ୍ଡ କଳାମୁଗୁନି ପଥର ଖମ୍ବ ରହିଛି । ଏହି ଖମ୍ବର ଉଚ୍ଚତା ୧୦ ଫୁଟ ଏବଂ ଗୋଲେଇ ୫ ଫୁଟ । ଏହାର ଉଭା ଯେତିକି ପୋତା ସେତିକି, ଅର୍ଥାତ୍ ଉପରକୁ ଯେତିକି ଦିଶୁଛି, ମାଟିତଳେ ସେତିକି ପୋତାଯାଇଛି ବୋ଼ଲି କୁହାଯାଏ । ଏହା ହାତୀଖମ୍ବ ନାମରେ ପରିଚିତ ଏବଂ ଏଥିରେ ରାଜାଙ୍କର ହାତୀ ବନ୍ଧା ହେଉଥିଲା ବୋଲି ଜନଶ୍ରୁତି ରହିଛି । ବଳଭଦ୍ରପୁର ଆଖପାଖରେ କଳାମୁଗୁନିପଥର ନାହିଁ; ସୁତରାଂ ତାପଙ୍ଗ ବା ଭୁଷଣ୍ଡପୁର ଅଞ୍ଚଳରୁ ଏହି ପ୍ରକାଣ୍ଡ ପଥରଖଣ୍ଡଟିକୁ ଆଣି ଏଠାରେ ପୋତାଯାଇଥାଇପାରେ । ବଳଭଦ୍ରପୁର ଦୟା ଓ ମଳାଗୁଣି ନଦୀର ଖାଲୁଆ ବନ୍ୟାଞ୍ଚଳ ମଝିରେ ଅବସ୍ଥିତ ଥିବାରୁ ଏବଂ ସେତେବେଳେ ଏହାର ତିନିପାଖରେ ନଦୀ ବେଢ଼ିରହିଥିବାରୁ ଏହି ଗଡ଼ରୁ ନଦୀ ପାରହୋଇ ଅଥବା ଖାଲୁଆ ପାଟ ଅଞ୍ଚଳ ଦେଇ ରାଜା କିମ୍ବା ଦେଓ୍ୱାନଙ୍କର ଯାତାୟାତପାଇଁ ଏଠାରେ ହାତୀ ବାନ୍ଧି ରଖିବାର ଆବଶ୍ୟକତା ଥିଲା । ଉଲ୍ଲେଖଯୋଗ୍ୟ ଯେ, ଖୋର୍ଦ୍ଧା ରାଜା ବଳଭଦ୍ରଦେବଙ୍କ ଚତୁର୍ଥ ଅଙ୍କରେ ଗୋପାଳଦାସ ନାମକ ଏକ ଦନ୍ତାହାତୀ ବଣରୁ ଧରାହୋଇଥିଲା ଏବଂ ସେଇ ହାତୀକୁ ପରେ ମହାନୁଆଜ୍ ଖାଁ ଦିଲ୍ଲୀ ମୋଗଲ

ସମ୍ରାଟଙ୍କପାଇଁ ନେଇଯାଇଥିଲେ ।[୧୯୦] ସମ୍ଭବତଃ ବଳଭଦ୍ର ଦେବଙ୍କ ଦନ୍ତାହାତୀ ଗୋପାଳ ଦାସ ବଳଭଦ୍ରପୁର ଗଡ଼ରେ ଥିବା ହାତୀ ଖମ୍ବରେ ବନ୍ଧାହୋଇଥିଲା ।

ନଦୀବେଷ୍ଟିତ ଏକ ପ୍ରାଚୀନ ଦୁର୍ଗଭାବରେ ବଳଭଦ୍ରପୁରର ଐତିହ୍ୟ ଯେପରି ସମୃଦ୍ଧ, ଦୁଇଟି ନଦୀର ମିଳନ ସ୍ଥଳରେ ଅବସ୍ଥିତ ଥିବାରୁ ପ୍ରାଚୀନ ନୌବାଣିଜ୍ୟ ବିଭବପ୍ରତି



ଗଡ଼ବଳଭଦ୍ରପୁରର ହାତୀଖମ୍ବ

୧୯୦- ୧୪/୨୬୭

ଏହାର ଅବଦାନ ମଧ୍ୟ ସେହିପରି ଅତୁଳନୀୟ । ଦିନ ଥିଲା, ଯେତେବେଳେ ଓଡ଼ିଆ ସାଧବମାନେ ସୁ-ଗଭୀର ଚିଲିକା କୂଳରୁ ବୋଇତରେ ଯାଇ ଜାଭା, ସୁମାତ୍ରା, ବାଲିଦ୍ୱୀପ ଇତ୍ୟାଦି ଦରିଆପାରି ଦେଶମାନଙ୍କରେ ବେପାର ବଣିଜ କରି ଉତ୍କଳପାଇଁ ଏକ ସମୃଦ୍ଧ ଓ ଗୌରବମୟ ଐତିହ୍ୟ ସୃଷ୍ଟିକରିଥିଲେ, ସେତେବେଳେ ସୁ-ନାବ୍ୟା ଦୟାନଦୀ ବକ୍ଷରେ ଶହ ଶହ ପଣ୍ୟବାହୀ କୋଶଳୀ ଓ ପଟୁଆ ନାଆ ଯାତାୟାତ କରୁଥିଲା । ଦୟା ଓ ମଲାଗୁଣି ନଦୀର ମିଳନସ୍ଥଳରେ ଅବସ୍ଥିତ ବଳଭଦ୍ରପୁର ସେତେବେଳେ କିପରି ଏକ ସୁପ୍ରସିଦ୍ଧ ବାଣିଜ୍ୟ ପେଣ୍ଠର ଗୌରବ ଲାଭକରିଥିବ, ତାହା କେବଳ ଏହାର ନୌବାଣିଜ୍ୟ-ଅନୁକୂଳ ଅବସ୍ଥିତିରୁହିଁ ଅନୁମାନ କରାଯାଇପାରେ । ଏବେ ସୁଦ୍ଧା କେତୋଟି ନୌକାଜୀବୀ ପରିବାର ସେହି ସୁଦୂର ଅତୀତ ବିଭବର ସ୍ମୃତି ବହନକରି ବଳଭଦ୍ରପୁର ପେଣ୍ଠରେ ଦୃଶ୍ୟମାନ ହୁଅନ୍ତି । କର୍ପୂର ଯାଇଛି, କନା ତଥାପି ପଡ଼ିରହିଛି ।

**ଗଡ଼ଖାରଦ**

ଦେଉପୁର ପଞ୍ଚାୟତର ମାଳିସାହି ଗ୍ରାମ ଗଡ଼ଖାରଦ ମୌଜାର ଏକ ପଡ଼ାଗ୍ରାମ । ଗ୍ରାମବାସୀମାନେ ୨୭ଗୋଟି ବୀରଶିଳାକୁ ଏକତ୍ର ରଖି ଠାକୁରାଣୀରୂପେ ପୂଜାକରୁଥିବା କଥା ପୂର୍ବରୁ କୁହାଯାଇଛି । ମାଳିସାହିର ପଶ୍ଚିମରେ ଯେଉଁ ସ୍ଥାନରେ ବୀରଶିଳାଗୁଡ଼ିକୁ ଏକତ୍ର ରଖାଯାଇଛି, ସେଠାରୁ ପ୍ରାୟ ଦୁଇ ଶହ ହାତ ଦୂରରେ ଏକ ପ୍ରାଚୀନ ଶିବମନ୍ଦିର ରହିଛି । ଏହି ମନ୍ଦିରରେ ରାଜପ୍ରତିଷ୍ଠିତ ଠାକୁର ଶ୍ରୀକୁମୁଦେଶ୍ୱର ମହାଦେବ ପୂଜାପାଉଛନ୍ତି । ମନ୍ଦିରଟିର ଉଚ୍ଚତା ପ୍ରାୟ ତିରିଶ ଚାଳିଶ ଫୁଟ । ମନ୍ଦିର ଚାରିପାଖରେ ଆଠଫୁଟ ଉଚ୍ଚର ପଥର ପାଚେରୀ ଏବଂ ବେଢ଼ା ଭିତରେ ଏକ ଦୋଳବେଦୀ ରହିଛି । ଉତ୍ତରପୂର୍ବ କୋଣକୁ ଲାଗି ପଥର ପାହାଚ ବନ୍ଧା ଛୋଟ ପୁଷ୍କରିଣୀଟିଏ ମଧ୍ୟ ଅଛି । କୁମୁଦେଶ୍ୱର ମହାଦେବଙ୍କର ରାଜଖଞ୍ଜା ବୃତ୍ତିଭୋଗୀ ପୂଜକମାନେ ମାଳିସାହି ଗ୍ରାମର ବାସିନ୍ଦା । ମନ୍ଦିରଟି ଖୋର୍ଦ୍ଧା ଭୋଇବଂଶ ରାଜା ହରେକୃଷ୍ଣ ଦେବଙ୍କ ପୁତ୍ର ତଥା ୨ୟ ରାମଚନ୍ଦ୍ର ଦେବଙ୍କ ଜ୍ୟେଷ୍ଠ ଭ୍ରାତା ଗଜପତି ଗୋପୀନାଥ ଦେବ (୧୭୨୭-୧୭୩୬)ଙ୍କ ରାଜତ୍ୱ ସମୟରେ ନିର୍ମିତ ହୋଇଥିଲା ।

ଗଜପତି ଗୋପୀନାଥ ଦେବ ଏକଦା କାମାନ୍ଧ ହୋଇ ବାଙ୍କି ରାଜ୍ୟର ରାଣୀ ଶୁକଦେଈଙ୍କୁ ପାଇବା ଲକ୍ଷ୍ୟରେ ବାଙ୍କି ରାଜ୍ୟ ଆକ୍ରମଣ କରି ବାଙ୍କି ରାଜାଙ୍କୁ ହତ୍ୟା କରିବା ପରେ ବୀରାରମଣୀ ଶୁକଦେଈ ବୈଧବ୍ୟ ଦୁଃଖରେ ଜର୍ଜରିତା ହୋଇ ସୁଦ୍ଧା ଅସୀମ ସାହସ ଓ ବୀରତ୍ୱର ସହିତ ଅଶ୍ୱପୃଷ୍ଠରେ ଅସି-ଧାରଣପୂର୍ବକ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ଗୋପୀନାଥ ଦେବଙ୍କୁ ପରାସ୍ତ ଓ ପଦାନତକରି ଉପଯୁକ୍ତ ଶାସ୍ତି ଦେଇଥିଲେ ।[୧୯୧] ବୀରାଙ୍ଗନା

---

୧୯୧- ୧୪/୨୭୨



ଗଡ଼ଖାରଦର କୁମୁଦେଶ୍ୱର ମନ୍ଦର

ରାଣୀ ଶୁକଦେଈଙ୍କର ସେହି ରୋମାଞ୍ଚକର କାହାଣୀ କ୍ଷୁଦ୍ର ବାଙ୍କିରାଜ୍ୟର ଇତିହାସରେ ଏକ ଗୌରବୋଜ୍ଜ୍ୱଳ ସୁବର୍ଣ୍ଣ ଅଧ୍ୟାୟ ସଂଯୋଗ କରିଥିଲା । ପ୍ରକାଶଯୋଗ୍ୟ ଯେ ରାଣୀ ଶୁକଦେଈ ଗୋପୀନାଥ ଦେବଙ୍କୁ ବନ୍ଦି କରି ମଧ ନିଜେ ସ୍ୱାମୀହରା ହୋଇ ଯେଉଁ ଦାରୁଣ ବୈଧବ୍ୟ ଯନ୍ତ୍ରଣା ଭୋଗୁଥିଲେ, ଅନ୍ୟ ଜଣେ ନାରୀର ସେହି ଦୁର୍ବିସହ ବୈଧବ୍ୟ ଯନ୍ତ୍ରଣାର କାରଣ ସେ ନିଜେ ନ ହୁଅନ୍ତୁ - ଏହି ମହତ୍ ଭାବନାରେ ଗୋପୀନାଥଦେବଙ୍କୁ ହତ୍ୟା ନ କରି ତାଙ୍କ ମୁଣ୍ଡରେ ଚରମ ଲାଞ୍ଛନା ଓ ଅପମାନର ବୋଝ ଲଦି ଛାଡ଼ିଦେଇଥିଲେ । ତା'ପରେ ଗୋପୀନାଥ ଦେବ ମାନସିକ ଚିନ୍ତାଗ୍ରସ୍ତ ହୋଇ ଦୁଃସାଧ ଶୋଥ (କିମ୍ୱାରିଆ) ବ୍ୟାଧିଗ୍ରସ୍ତ ହୋଇପଡ଼ିଲେ । ସେତେବେଳେ ଗଞ୍ଜାମର ଇଚ୍ଛାପୁର ତାଲୁକା ଖୋର୍ଦ୍ଧା ରାଜାଙ୍କର ଅଧୀନସ୍ଥ

ଏକ କରଦ ରାଜ୍ୟ ଥିଲା । ଗୋପୀନାଥ ଦେବଙ୍କୁ ଇଚ୍ଛାପୁର ରାଜା ନେଇ ତାଙ୍କ ରାଜ୍ୟର ଜଣେ ସୁଦକ୍ଷ କବିରାଜ ଧନଞ୍ଜୟ ନେଦିନାଥ ରାଓଙ୍କ ଦ୍ୱାରା ଦୀର୍ଘକାଳ ଚିକିତ୍ସା କରିବା ପରେ ଗୋପୀନାଥ ଦେବ ସୁସ୍ଥ ହୋଇ ଖୋର୍ଦ୍ଧାକୁ ଫେରିଥିଲେ । କିନ୍ତୁ ଫେରିବାର ମାତ୍ର ୧୫ ଦିନ ପରେ ସେ ପୁଣି କାମାନ୍ଧ ହୋଇ ରଣପୁର ରାଜା କୃଷ୍ଣଚନ୍ଦ୍ର ନରେନ୍ଦ୍ର ସପରିବାର ଜଗନ୍ନାଥ ଦର୍ଶନ ଉଦ୍ଦେଶ୍ୟରେ ଯାଉଥିବା ବାଟରେ ରଣପୁରରାଣୀଙ୍କପ୍ରତି ବଳାତ୍କାର କରିବାର ଅଭିଯୋଗ ରଣପୁର ରାଜାଙ୍କଠାରୁ ଶୁଣିବାମାତ୍ରେ, ଗୋପୀନାଥ ଦେବଙ୍କୁ ତାଙ୍କର ନିଜ ଖୋଜାବକ୍ସି କୃଷ୍ଣନରେନ୍ଦ୍ର, ଦେଓ୍ୱାନ ମୀର୍ଜାସୟଦ୍ ବେଗ୍ ଏବଂ ମନ୍ତ୍ରୀ ବେନୁ ଭ୍ରମରବର ରାୟ ତିନିହେଁ ମେଳହୋଇ ହତ୍ୟା କରିଥିବା ଘଟଣା ଖୋର୍ଦ୍ଧା ଭୋଇ ରାଜବଂଶ ଇତିହାସରେ ଏକ କାଳିମାମୟ ଅଧ୍ୟାୟ ସୃଷ୍ଟିକରିଥିଲା ।[୧୧୨]

ଗୋପୀନାଥ ଦେବ ଶୋଥ (କିମ୍ବାରିଆ) ରୋଗରେ ଆକ୍ରାନ୍ତ ହୋଇ ଇଚ୍ଛାପୁର ତାଲୁକାରେ ଚିକିତ୍ସିତ ହେଉଥିବା ସମୟରେ ନିଜର ସାନଭାଇ କେଶବ ରାଏ (ପରବର୍ତ୍ତୀ ଗଜପତି ରାମଚନ୍ଦ୍ର ଦେବ)ଙ୍କୁ ଖୋର୍ଦ୍ଧା ରାଜ୍ୟର 'ପାଟପାତ୍ର' ବା ପ୍ରଧାନମନ୍ତ୍ରୀଭାବେ ନିଯୁକ୍ତ କରି ତାଙ୍କ ହାତରେ ରାଜ୍ୟ ଶାସନ ଦାୟିତ୍ୱ ନ୍ୟସ୍ତ କରିଥିଲେ । ସେହି ସମୟରେ ଗୋପୀନାଥ ଦେବଙ୍କ ପୁତ୍ର ଢେଙ୍କାମଣି ଭ୍ରମରବର ରାଉତରାୟ ସମ୍ଭବତଃ ପିତାଙ୍କ ଅନୀତି ସହ୍ୟ କରି ନ ପାରି ଖୋର୍ଦ୍ଧା ତ୍ୟାଗକରି ସସ୍ତ୍ରୀକ ଯାଇ ଚିଲିକା କୂଳସ୍ଥ ଖାରଦ ଗ୍ରାମରେ ଗଡ଼ ନିର୍ମାଣ କରି ରହିଥିଲେ । ଏ ସମ୍ପର୍କରେ ଶ୍ରୀଜଗନ୍ନାଥ ମନ୍ଦିର ମାଦଳାପାଞ୍ଜି 'ଦେଶଖଞ୍ଜା-୫୩'ର ବିବରଣୀ ଏହିପରି -

''ଗୋପୀନାଥ ଦେବ ମହାରାଜା କାଳେ ଭୋଗ କରନ୍ତେ ଆପଣା ଭାଇକୁ ପାଟପାତ୍ର କଲା । ସେ ଭୂଇଁକଲା । ଏ ବ୍ରାହ୍ମଣେ ପିଡ଼ିଲା । ବହୁ କକରଥ ହେଲା । ଥଳକୂଳ ନ ମାନିଲା । ବୋଇଲା ମୁଁ ମହାଶ୍ରମ । ମୋତେ କି ନିମନ୍ତେ ନ ଡର ବୋଲି ଆଟପକଲା । ଫେରଆନ୍ ହେଲା । ଏ ନିମନ୍ତେ ଅଙ୍କ କାଟିବା ବେଳେ ଶିଶୁହତ୍ୟା କଲା । ଯାକୁ ଧରମ ନ ସହି । ଏମନ୍ତ କଲାକେ ପରମେଶ୍ୱର ବଡ଼ ଠାକୁରେ କୂଟ କଲେ । କିମ୍ବାରିଆ ରୋଗ ଧରିଲା । ବହୁ ବିକଳ ହେଲା । ମାତ୍ର ଜିନି କିଏ ଶୁଣିବ । ତାକୁ ପାନ୍ତୁଲୁ ଇଚ୍ଛାପୁର ରାଜା ଅଦରିଲା । ତାକୁ ବଶକରି ହୀରା ଚିତା ଦେଇ ତାକୁ ନେଇ ସେବିଲା । ସେ ସେଠାରୁ ଗମନ୍ତେ ଢେଙ୍କାମଣି ଭ୍ରମରବର ରାଉତରା ଆପଣ ସେଠାରେ ଢେଙ୍କାମଣି ବୋଇଲେ ଆମ୍ଭେ ସେଠାବେ ନ ଯିବୁ । ଆପଣାନାମେ ଗଡ଼ଖାରଦ କଲା । ସେଠାରେ ଭ୍ରମରବର ପାତ୍ର ରହିଲା । କୋଠଭିଆତୁ ଖଞ୍ଜା ବେଠୀ ଆଦି ଦେଲା । ଦଳବେହେରା ବୋଲି ବହୁତ ଆଟପ କଲା । ଆପଣା ନାରୀ କୁମୁଦେଶ୍ୱରୀ ନାମେ କୁମୁଦେଶ୍ୱର ଦେବଲିଙ୍ଗ କଲା । ମଣ୍ଡପୋଇ କଲା । ଭୂମିବରତନ କଲା । କୋଠ ଭଣ୍ଡାରୁ ବିତ ଦେଲା । ବିଢେଇଙ୍କଲୀ ଦଶ ମାଣକୁ ଆଡ଼ତିଆ ପ୍ରମାଣେ ବେଠିଆଦି କରି ତୋଟାଦଣ୍ଡା ଆଦି ଛ'ମାଣ ବାର ବିଶ୍ୱା

ଜଳଖାଇ ବିଜେ ପ୍ରତିମାକୁ ସୁନିଆଁ ୨୧ ମାଢ଼ ପ୍ରମାଣ । ପୁଣି କୋଠଭଣ୍ଡାରୁ (ରାଜକୋଷରୁ) ଦ୍ୱିଜାପଠନି ତହସପ କଲା X X X ପୁଣ ଶାସନ ଦାନକଲା । କ୍ଷେତ୍ର ଦଣ୍ଡପାଟ ପଞ୍ଚକୋଶୀ ସୀମାକୁ ଶଙ୍ଖୁଆ ଉପରବନ୍ଧରେ ଆପଣାନାମେ ଲିଙ୍ଗକଲା । ବାରଘର ଶୋତ୍ରିୟ ବ୍ରାହ୍ମଣ ନେଇ ରାଉତରାପୁର ଶାସନ ଦାନକୁ ଭୂମି ଭିଆଣ କଲା ।'

ଏ ସଂକ୍ରାନ୍ତରେ ଐତିହାସିକ କେଦାରନାଥ ମହାପାତ୍ରଙ୍କ ରଚିତ 'ଖୁରୁଧା ଇତିହାସ'ରେ ପ୍ରଦତ୍ତ ଗଜପତି ଗୋପୀନାଥ ଦେବଙ୍କ ଖଣ୍ଡିଏ ଦାନପତ୍ରରେ ତଥ୍ୟ ଉଲ୍ଲେଖଯୋଗ୍ୟ । ତାହା ଏହିପରି - 'ଗଞ୍ଜାମ ଜିଲ୍ଲାରୁ ପ୍ରାପ୍ତ ତାଙ୍କର ଖଣ୍ଡିଏ ଦାନପତ୍ରରୁ ଜଣାଯାଏ ଯେ, ତାଙ୍କ ୧୧ ଅଙ୍କ ? (ଦଶଅଙ୍କ ହେବ ମେଷ ୧୩ ଦିନ ସୋମବାର ବୈଶାଖ, ବହୁଳ ୩୦ ଅମାବାସ୍ୟା) ସୂର୍ଯ୍ୟୋପରାଗ ସମୟରେ ଗୋପୀନାଥ ଦେବ ତାଙ୍କୁ ଶୋଥ ରୋଗରୁ ଆରୋଗ୍ୟ ପ୍ରଦାନ କରିଥିବା ଧନଞ୍ଜୟ ନେଦିନାଥ ରାଓ ନାମକ ଆନ୍ଧ୍ର କବିରାଜଙ୍କୁ 'ନୁନିଘାଟି ଗୋପୀନାଥପୁର' ଗ୍ରାମଦାନ କରିଥିଲେ । ଗଣନାନୁସାରେ ୧୦.୪.୧୭୨୭ ତାରିଖରେ ବୈଶାଖ ଅମାବାସ୍ୟା ସୋମବାର ଓ ସୂର୍ଯ୍ୟୋପରାଗ ପଡ଼ିଥିଲା । ଏ ଗ୍ରାମଟି ସେତେବେଳେ ଖୁରୁଧା ରାଜାଙ୍କ ଅଧୀନରେ ଥିବା ଇଚ୍ଛାପୁର ତାଲୁକାରେ ଅବସ୍ଥିତ ଥିଲା ।[୧୯୩]

ମାଦଳା ପାଞ୍ଜିର ବିବରଣୀ ସହିତ ଇଚ୍ଛାପୁର ତାଲୁକା ସମ୍ପର୍କୀୟ ଏ ଦାନପତ୍ରର ବିବରଣୀ ମେଳଖାଉଛି । ମାଦଳାପାଞ୍ଜିର ବିବରଣୀରୁ ଅନୁମିତ ହୁଏ ଯେ, ଢେନାମଣି ଭ୍ରମରବର ରାଉତରାଙ୍କୁ ଖାରଦରେ ଗଡ଼ ଓ ମନ୍ଦିରାଦି ନିର୍ମାଣ କରି ସପରିବାର ଅବସ୍ଥାନ କରିବାରେ ସେତେବେଳର ଖୋର୍ଦ୍ଧାରାଜ୍ୟ ପ୍ରଧାନମନ୍ତ୍ରୀ କେଶବ ରାଓ (ଭାବୀ ଗଜପତି ୨ୟ ରାମଚନ୍ଦ୍ର ଦେବ) ରାଜକୋଷରୁ ଆବଶ୍ୟକ ଧନ ଦେଇ ସହାୟତା କରିଥିଲେ । ଖାରଦଗଡ଼ ଖୋର୍ଦ୍ଧାରାଜ୍ୟର ମୂଳ ୭୧ ଗଡ଼ ମଧ୍ୟରେ ନ ଥିଲେ ହେଁ ଖୋର୍ଦ୍ଧାରାଜ୍ୟ ପ୍ରତିଷ୍ଠାର ୧୩୫ ବର୍ଷ ପରେ ଖୋର୍ଦ୍ଧା ଢେନାମଣିଙ୍କଦ୍ୱାରା ପ୍ରତିଷ୍ଠିତ ଏକ ପ୍ରମୁଖ ଗଡ଼ ଥିଲା । ସୁତରାଂ ଏ ଗଡ଼ର ବିଶେଷତ୍ୱ ଏହି ଯେ, ଏ ଗଡ଼ର ଦଳବେହେରା ଖୋର୍ଦ୍ଧା ଭୋଇ ରାଜବଂଶର ଜନୈକ ଢେନାମଣିଙ୍କ ବଂଶଧର ।



୧୯୩- ୩/୧୬୫

## ଦ୍ୱାଦଶ ଅଧ୍ୟାୟ

# 'ଫିରିଙ୍ଗି କଳିଭାରତ'ରେ ଖୋର୍ଦ୍ଧା ଇତିହାସ

**ଖୋର୍ଦ୍ଧାର ଦିଆନ --**

ମୋଗଲ ରାଜତ୍ୱକାଳରେ ପ୍ରଚଳିତ ପାର୍ଶି ଶବ୍ଦ 'ଦେୱାନ୍' ଲୋକଭାଷାରେ 'ଦିଆନ' ହୋଇଗଲା । ଦେୱାନ କହିଲେ ରାଜ୍ୟର ମନ୍ତ୍ରୀ ବା ମୁଖ୍ୟ ସଚିବଙ୍କୁ ବୁଝାଏ । ୧୮୧୭ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧାର ରାଜା ମୁକୁନ୍ଦଦେବ(୨)ଙ୍କ ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କ ନେତୃତ୍ୱରେ ପରିଚାଳିତ ପାଇକବିଦ୍ରୋହର ୨ୟ ନେତା କୃଷ୍ଣଚନ୍ଦ୍ର ଭ୍ରମରବର ଖୋର୍ଦ୍ଧା ରାଜାଙ୍କ ଦେୱାନଙ୍କ ପୁତ୍ର ଥିଲେ ବୋଲି ଆମେ ଜାଣୁ । ପାଇକ ବିଦ୍ରୋହରେ ବକ୍ସିଙ୍କର ପ୍ରଧାନ ସହଯୋଗୀ ଥିଲେ ଦେୱାନ କୃଷ୍ଣଚନ୍ଦ୍ର । କିନ୍ତୁ ତା' ପୂର୍ବରୁ, ଅର୍ଥାତ୍ ଇଂରେଜମାନେ ଓଡ଼ିଶା ଅଧିକାର କରିବା ସମୟରେ ଖୋର୍ଦ୍ଧା ରାଜାଙ୍କର କିଏ ଦେୱାନ ଥିଲେ ସେ ସମ୍ପର୍କରେ କୌଣସି ଐତିହାସିକ ତଥ୍ୟ ନ ଥିଲା । ୧୮୦୩ ଖ୍ରୀ.ରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ବେଳକୁ ମୁକୁନ୍ଦଦେବଙ୍କର ବୟସ ହୋଇଥିଲା ମାତ୍ର ୧୮ ବର୍ଷ । ତେଣୁ ନିଜେ କୌଣସି ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନେବାଭଳି ଶକ୍ତି ତାଙ୍କର ହୋଇ ନ ଥିଲା । ସେଥିପାଇଁ ସେ ରାଜପୁରୋହିତ ବା ରାଜଗୁରୁ ଜୟକୃଷ୍ଣ ମହାପାତ୍ରଙ୍କ ମନ୍ତ୍ରଣା ଉପରେ ନିର୍ଭରକରୁଥିଲେ ହେଁ ପୁରୀର ବ୍ରାହ୍ମଣ ପଣ୍ଡିତମାନଙ୍କ ପରାମର୍ଶକ୍ରମେ ଇଂରେଜମାନଙ୍କ ଓଡ଼ିଶା ଆଗମନକୁ ସ୍ୱାଗତ କରିଥିଲେ ଏବଂ ସେମାନେ ଓଡ଼ିଶାକୁ ସମ୍ପୂର୍ଣ୍ଣଭାବେ ଅଧିକାର କରିବା ପର୍ଯ୍ୟନ୍ତ ମରହଟ୍ଟାଙ୍କ ବିରୋଧରେ ସେମାନଙ୍କୁ ସର୍ତ୍ତମୂଳକ ସାହାଯ୍ୟ ସମର୍ଥନ ଦେଇଥିଲେ । କିନ୍ତୁ ଇଂରେଜମାନେ ସେଇ ସର୍ତ୍ତ ପୂରଣ ନ କରିବାରୁ ପରେ ପୁଣି ସେମାନଙ୍କ ବିରୋଧରେ ଜୟୀ ରାଜଗୁରୁଙ୍କ ନେତୃତ୍ୱରେ ବିଦ୍ରୋହ ଓ ଯୁଦ୍ଧକରିବାକୁ ବାଧହୋଇଥିଲେ, ଯାହା ଫଳରେ ଇଂରେଜମାନେ ଜୟୀ ରାଜଗୁରୁଙ୍କୁ ଫାଶି ଦେଇ ମୁକୁନ୍ଦଦେବଙ୍କୁ ବନ୍ଦି କଲେ । ଓଡ଼ିଶା ଇତିହାସର ଏହି ଗୁରୁତ୍ୱପୂର୍ଣ୍ଣ ମୁହୂର୍ତ୍ତରେ ମୁକୁନ୍ଦଦେବ ରାଜଗୁରୁଙ୍କ ପରାମର୍ଶ ଗ୍ରହଣ କରିଥିବାରୁ ରାଜଗୁରୁ ଜୟକୃଷ୍ଣ ମହାପାତ୍ରଙ୍କୁ

ମୁକୁନ୍ଦଦେବଙ୍କ ମନ୍ତ୍ରୀ କୁହାଯାଇଥାଏ । ବସ୍ତୁତଃ ସେତେବେଳେ ରାଜଗୁରୁ ଜୟକୃଷ୍ଣ ମହାପାତ୍ର ଉଭୟ ମନ୍ତ୍ରୀ ଓ ସେନାପତିର ଭୂମିକା ଗ୍ରହଣକରିଥିଲେ । କିନ୍ତୁ ସେହି କାରଣରୁ ଜଣେ ବ୍ୟକ୍ତି ଏକ ସମୟରେ ରାଜପୁରୋହିତ, ମନ୍ତ୍ରୀ ଓ ସେନାପତି ଏହି ତିନୋଟି ପଦବୀର ଅଧିକାରୀ ଥିଲେ ବୋଲି କୁହାଯାଇ ନ ପାରେ । ସେନାପତି ପଦବୀରେ ତ ବକ୍ସି ନିଶ୍ଚୟ ଥିଲେ, ଯେଉଁ ସମୟରେ ଖୋର୍ଦ୍ଧା କହିଲେ ଓଡ଼ିଶାକୁ ବୁଝାଉଥିଲା ଏବଂ ଖୋର୍ଦ୍ଧାର ରାଜାଙ୍କୁ ଲକ୍ଷେ ରାଜାଙ୍କ ମଉଡ଼ମଣି ବୋଲି କୁହାଯାଉଥିଲା, ସେତେବେଳେ ଖୋର୍ଦ୍ଧା ରାଜାଙ୍କର କେହି ପାରମ୍ପରିକ ମନ୍ତ୍ରୀ ବା ଦେୱାନ ନ ଥିଲେ ବୋଲି ମଧ୍ୟ ବିଶ୍ୱାସ କରାଯାଇପାରେ ନା । ସୁତରାଂ ସେତେବେଳେ ଖୋର୍ଦ୍ଧାର ମନ୍ତ୍ରୀ ବା ଦେୱାନ କିଏ ଥିଲେ ଏବଂ ଓଡ଼ିଶାର ଏପରି ଏକ ଭାଗ୍ୟ ନିର୍ଣ୍ଣାୟକ ଘଟଣା ସହିତ ରାଜ୍ୟର ପାରମ୍ପରିକ ମନ୍ତ୍ରୀ ଓ ସେନାପତି କାହିଁକି ସମ୍ପୃକ୍ତ ହୋଇ ନ ଥିଲେ ଓଡ଼ିଶା ଇତିହାସରେ ଏଯାବତ୍ ଏହା ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ହୋଇ ରହିଛି ।

ଏହି ପୃଷ୍ଠଭୂମିରେ ସେତେବେଳେ ଜଣେ ଅଜ୍ଞାତ ଅଶ୍ରୁତ ଗ୍ରାମୀଣ କବି ମଧୁସୂଦନ ବିପ୍ର ସେହି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନର ଆଂଶିକ ସମାଧାନପାଇଁ ତାଙ୍କ ସ୍ୱହସ୍ତ ଲିଖିତ ତାଳପତ୍ର ପୋଥି 'ଫିରିଙ୍ଗି କଳିଭାରତ'ରେ କେତେକ ତଥ୍ୟ ପ୍ରଦାନ କରିଛନ୍ତି । ଏହି ତାଳପତ୍ର ପୋଥି ଏବେ ସୁଦ୍ଧା ଗଚ୍ଛିତ ଅଛି ଖୋର୍ଦ୍ଧା ସନ୍ନିକଟ 'ତାପଙ୍ଗଗଡ଼ର ଦଳବେହେରା'ଙ୍କ ବଂଶଜ ଶ୍ରୀ ବିଚିତ୍ରାନନ୍ଦ ରାଉତରାୟଙ୍କ ନିକଟରେ । ଓଡ଼ିଶା ମ୍ୟୁଜିୟମ୍‌ର ପୂର୍ବତନ ଅଧକ୍ଷ ଡକ୍ଟର ଅର୍ଜ୍ଜୁନ ଯୋଶୀ ଏହି ତାଳପତ୍ର ପୋଥିକୁ ତାଙ୍କର ସହକର୍ମୀ କ୍ୟୁରେଟର ପଣ୍ଡିତ ନୀଳମଣି ମିଶ୍ରଙ୍କ ଦ୍ୱାରା ନକଲ କରାଇଥିଲେ । ୧୯୮୬ ମସିହାରେ ତାଙ୍କ ସମ୍ପାଦନାରେ କଟକ ଟ୍ରେଡ଼ିଂ କମ୍ପାନୀଦ୍ୱାରା ଏହା ପ୍ରକାଶିତ ।

'ଫିରିଙ୍ଗି କଳିଭାରତ' ୧୪ ଅକ୍ଷରୀ ଦାଣ୍ଡୀ ବୃତ୍ତରେ ରଚିତ ୧୨ ଅଧ୍ୟାୟ ବିଶିଷ୍ଟ ଏକ କାବ୍ୟ । ତାପଙ୍ଗଗଡ଼ ତଥା ଖୋର୍ଦ୍ଧାଗଡ଼ରୁ ଅଳ୍ପ ଦୂରରେ ଅବସ୍ଥିତ ଗଡ଼ସାନପୁଟ ନିବାସୀ କବି ମଧୁସୂଦନ ବିପ୍ର ଆଜିକୁ ୧୬୦ ବର୍ଷ ତଳେ ୧୨୪୨ ସାଲ (ମେଷ ୨୫ ଦିନ) ଅର୍ଥାତ୍ ୧୮୩୫ ଖ୍ରୀ.ରେ ଏହି ପୋଥି ଲେଖା ସମ୍ପୂର୍ଣ୍ଣ କରିଥିଲେ ବୋଲି ଲେଖିଛନ୍ତି । କିନ୍ତୁ କେତେ ବର୍ଷ ଆଗରୁ କେବେ ଆରମ୍ଭ କରିଥିଲେ ସେ କଥା ଲେଖି ନାହାନ୍ତି । ଏତେ ପୁରୁଣା ତାଳପତ୍ର ଲେଖାରେ ଭ୍ରମ ପ୍ରମାଦ ରହିବା ସ୍ୱାଭାବିକ ଏବଂ ଅଛି ମଧ୍ୟ । 'ଫିରିଙ୍ଗି କଳି ଭାରତ'ରେ ଖୋର୍ଦ୍ଧା ରାଜା ମୁକୁନ୍ଦଦେବ (୨)ଙ୍କ ସମୟରେ ଯବନ, ମରହଟ୍ଟା, ରଣପୁର ରାଜା, ବାଙ୍କି ରାଜା ଏବଂ ଫିରିଙ୍ଗି ସଙ୍ଗେ କଳି ଓ ଯୁଦ୍ଧର ବର୍ଣ୍ଣନା ସହିତ ଅନେକ କାଳ୍ପନିକ ଓ ଅବାନ୍ତର ପୌରାଣିକ ଉପାଖ୍ୟାନର ଅବତାରଣା କରାଯାଇଛି । କିନ୍ତୁ ତା'ସତ୍ତ୍ୱେ ତହିଁରେ ଏପରି କେତେକ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ତଥ୍ୟ ନିହିତ ଅଛି, ଯାହା

ପ୍ରମାଣସାପେକ୍ଷ ହେଲେ ମଧ୍ୟ ପ୍ରାସଙ୍ଗିକ ମନେହେଉଛି । ସେହି ତଥ୍ୟଗୁଡ଼ିକ ହେଲା- (୧) ମୁକୁନ୍ଦଦେବ ଦ୍ୱିତୀୟଙ୍କର ହରିହର ଭ୍ରମରବର ନାମରେ ଜଣେ ସୁଦକ୍ଷ ଦେୱାନ ଥିଲେ, ଯିଏ ଖୁବ୍ ସମ୍ଭ୍ରାନ୍ତ, ଜ୍ଞାନୀ ଓ ବିଚକ୍ଷଣ ଯୋଦ୍ଧା ଥିଲେ । (୨) ଇଂରେଜମାନେ ଗଞ୍ଜାମଆଡୁ ବାଣପୁର-ଖୋର୍ଦ୍ଧା ବାଟ ଦେଇ କଟକ ଅଭିମୁଖେ ଯିବାପାଇଁ ବକ୍ସିଙ୍କ ଅନୁମତି ଲୋଡ଼ି ଚିଠି ଲେଖିଥିଲେ, କିନ୍ତୁ ବକ୍ସି ଅନୁମତି ଦେଇ ନ ଥିଲେ । (୩) ମନ୍ତ୍ରୀ ହରିହର ଭ୍ରମରବର ଓ ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧରଙ୍କୁ ଅବଜ୍ଞା କରି ଅଳ୍ପ ବୟସ୍କ ଚପଳମତି ମୁକୁନ୍ଦଦେବ, ରାଜଗୁରୁଙ୍କ କଥାରେ ପରିଚାଳିତ ହେଉଥିଲେ । (୪) ଜୟୀ ରାଜଗୁରୁଙ୍କର ଇଂରେଜମାନଙ୍କ ସହିତ ସଂଘର୍ଷ ହେବା ପରେ ଇଂରେଜମାନେ ଯେତେବେଳେ ଖୋର୍ଦ୍ଧା ଆକ୍ରମଣ କଲେ ସେତେବେଳେ ଜୟୀ ରାଜଗୁରୁଙ୍କ ନେତୃତ୍ୱରେ ପରିଚାଳିତ ଯୁଦ୍ଧରେ ବକ୍ସି ଓ ଦିଆନ୍‌ଙ୍କୁ ଯୋଗଦେବାକୁ ମୁକୁନ୍ଦଦେବ ଆହ୍ୱାନ ଦେଇଥିଲେ ଏବଂ ବକ୍ସି ଜଗବନ୍ଧୁ ଓ ଦେୱାନ ହରିହର ସେ ଆହ୍ୱାନ ଗ୍ରହଣକରି ଯୁଦ୍ଧରେ ଯୋଗଦେଇଥିଲେ ।

ଐତିହାସିକ ଆବଶ୍ୟକତା ଦୃଷ୍ଟିରୁ ଏହିସବୁ ତଥ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଏବଂ ସେ ଦୃଷ୍ଟିରୁ ଗ୍ରାମୀଣ କବି ମଧୁସୂଦନ ବିପ୍ରଙ୍କର 'ଫିରିଙ୍ଗି କଳି ଭାରତ' ଓଡ଼ିଶା ଇତିହାସପାଇଁ ଏକ ମହାନ୍ ଅବଦାନ କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ଏହିସବୁ ତଥ୍ୟ ପରିବେଷଣ କଲାପରେ 'ଫିରିଙ୍ଗି କଳି ଭାରତ'ର ଶେଷ ଅଧ୍ୟାୟରେ କବି ବର୍ଣ୍ଣନା କରିଛନ୍ତି ତାପଙ୍ଗ ଗଡ଼ର ଦଳବେହେରା ମାଧବଚନ୍ଦ୍ର ରାଉତରାୟଙ୍କର ୧୮୨୭ ଖ୍ରୀଷ୍ଟାବ୍ଦରେ ଫିରିଙ୍ଗି ଅର୍ଥାତ୍ ଇଂରେଜ ସରକାର ସହିତ ସାତ ଦିନ ବ୍ୟାପୀ ଯୁଦ୍ଧର ଚମକପ୍ରଦ ବିବରଣୀ । ତହିଁରୁ ଚାରିଦିନର ଯୁଦ୍ଧ ସେ ସ୍ୱଚକ୍ଷୁରେ ଦେଖିଛନ୍ତି ଏବଂ ତତ୍‌ପରବର୍ତ୍ତୀ ଘଟଣା ସ୍ୱୟଂ ଦଳବେହେରା ମାଧବଚନ୍ଦ୍ର ରାଉତରାୟଙ୍କ ମୁହଁରୁ ଶୁଣିଛନ୍ତି ବୋଲି ଲେଖିଛନ୍ତି । ସୁତରାଂ ତାପଙ୍ଗ ଗଡ଼ର ଦଳବେହେରାଙ୍କର ଫିରିଙ୍ଗି ସହିତ କଳି ପ୍ରସଙ୍ଗକୁ ନେଇ କବି ଗ୍ରନ୍ଥଟିର ନାମ 'ଫିରିଙ୍ଗି କଳି ଭାରତ' ରଖିଛନ୍ତି ଏବଂ ଓଡ଼ିଶା ଇତିହାସରେ 'ତାପଙ୍ଗ ବିଦ୍ରୋହ' ବା 'ତାପଙ୍ଗ ଯୁଦ୍ଧ'କୁ ଏକ ନୂତନ ଅଧ୍ୟାୟଭାବେ ଯୋଡ଼ିଛନ୍ତି ।

## ତାପଙ୍ଗଗଡ଼ର ଦଳବେହେରା

ଇଏ ସେଇ ତାପଙ୍ଗ ଦଳବେହେରା, ଯାହାଙ୍କୁ ଇତିହାସର ଅନ୍ଧଗଳି ଭିତରୁ ଖୋଜି ଆଣି ଅଗଣିତ ପାଠକମାନଙ୍କ ପାଖରେ ପହଞ୍ଚାଇ ଦେଇଥିଲେ ଓଡ଼ିଶାର ବରେଣ୍ୟ ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ ଦେଶସେବକ ଓ ସ୍ୱନାମଧନ୍ୟ କବି 'ବକୁଳବନର କୋକିଳ' ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ର ତାଙ୍କର 'ତାପଙ୍ଗଗଡ଼ର ଦଳବେହେରା' ଶୀର୍ଷକ କବିତା ମାଧ୍ୟମରେ । ଫିରିଙ୍ଗି ସହିତ ଯୁଦ୍ଧକରି ଦଳବେହେରା ଶେଷକୁ ଆତ୍ମଗୋପନ କରିଥିଲେ ଏବଂ ତାଙ୍କୁ ଯିଏ ଧରିଆଣିଦେବ ସିଏ ହଜାରେ ଟଙ୍କା ପୁରସ୍କାର ପାଇବ ବୋଲି ଖୋର୍ଦ୍ଧାର

ଗୋରା ସରକାର ଘୋଷଣା କରିଥିଲେ । ଦିନେ ଜଙ୍ଗଲ ମଧ୍ୟରେ ବାଟବଣା ହୋଇ ଯାଇଥିବା ଅଚିହ୍ନା ଲୋକଟିଏ ଛଦ୍ମବେଶୀ ଦଳବେହେରାଙ୍କୁ ଦେଖି ତାପଙ୍ଗଗଡ଼କୁ ବାଟ ପଚାରିବାରୁ ଦଳବେହେରା ତାଙ୍କୁ ବାଟ ଦେଖାଇଦେବା ସଙ୍ଗେସଙ୍ଗେ ତାର ପରିଚୟ ଓ ତାପଙ୍ଗଗଡ଼କୁ ଯିବାର ଉଦ୍ଦେଶ୍ୟ ଜାଣିବାକୁ ଚାହିଁଲେ । ଲୋକଟି କହିଲା ଯେ ସେ ଚିଲିକା କୂଳର ଜଣେ ଗରିବ କେଉଟ । ତୋଫାନରେ ତା'ର ନାଆଟି ଭାସିଯାଇଛି । ସେ ଶୁଣିଛି ତାପଙ୍ଗଗଡ଼ର ଦଳବେହେରା କୁଆଡ଼େ ଭାରି ଦୟାଳୁ ଓ ଦାନଶୀଳ, ତେଣୁ ତାଙ୍କ ପାଖକୁ ଯାଉଛି କିଛି ସାହାଯ୍ୟ ମାଗିବ ବୋଲି । ଦଳବେହେରା ତା' ପରେ ଲୋକଟିକୁ ସାଙ୍ଗରେ ଡାକିନେଇ ଯାଇ ଖୋର୍ଦ୍ଧା କଚେରିରେ ପହଞ୍ଚିଲେ ଏବଂ ଫିରିଙ୍ଗି ହାକିମ ପାଖେ ହାଜରହୋଇ କହିଲେ, 'ସାହେବ ! ତାପଙ୍ଗଗଡ଼ର ଦଳବେହେରାଙ୍କୁ ଧରିଆଣିଲେ ଯେଉଁ ହଜାର ଟଙ୍କା ପୁରସ୍କାର ଦେବ ବୋଲି ଘୋଷଣା କରିଥିଲ ଏଇ ଲୋକଟିକୁ ଦିଅ । ମୁଁ ହେଉଛି ତାପଙ୍ଗଗଡ଼ର ଦଳବେହେରା ଆଉ ଏଇ ଲୋକଟି ମୋତେ ଧରି ଆଣି ଆପଣଙ୍କ ପାଖେ ହାଜରକରିଛି ।' ଏହି ଘଟଣାରୁ ଦଳବେହେରାଙ୍କର ମହାନ୍ ବ୍ୟକ୍ତିତ୍ୱର ପରିଚୟ ପାଇ ଫିରିଙ୍ଗି ସାହେବ ତାଙ୍କ ପ୍ରତି କୌଣସି ଶାସ୍ତି ବିଧାନ କରିବା ପରିବର୍ତ୍ତେ ତାଙ୍କୁ ସମ୍ମାନ ପ୍ରଦର୍ଶନପୂର୍ବକ ମୁକ୍ତକରିଦେଲେ । କବି ମଧୁସୂଦନ ବିପ୍ର ମଧ ତାପଙ୍ଗ ଗଡ଼ର ଦଳବେହେରାଙ୍କ ଶେଷ ଜୀବନର ଏଇ ମହନୀୟ ଘଟଣାଟି ବର୍ଣ୍ଣନାକରି ତାଙ୍କ କାବ୍ୟର ଉପସଂହାର କରିଛନ୍ତି । କବିଙ୍କ ବର୍ଣ୍ଣନାରେ କିଛିଟା ଅତିରଞ୍ଜିତ ବିବରଣୀ ଥାଇପାରେ, କିନ୍ତୁ ତାପଙ୍ଗ ଯୁଦ୍ଧକୁ କବି ନିଜେ ପ୍ରତ୍ୟକ୍ଷ କରିଥିବାରୁ ଏହା ଯେ ସମ୍ପୂର୍ଣ୍ଣ ସତ୍ୟ ଘଟଣା ଉପରେ ଆଧାରିତ, ଏଥିରେ ସନ୍ଦେହ ନାହିଁ ।

'ଫିରିଙ୍ଗି କଳି କାରତ'ରେ କବି ମଧୁସୂଦନ ବିପ୍ରଙ୍କ ପ୍ରଦତ୍ତ ବିବରଣୀ ଅନୁଯାୟୀ ପୂର୍ବସୂଚିତ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ତଥ୍ୟଗୁଡ଼ିକ ସମ୍ପର୍କରେ ଅଥବା ଖୋର୍ଦ୍ଧାର ଦିଆନ୍‌ଙ୍କ ସମ୍ପର୍କରେ ସବିଶେଷ ଆଲୋଚନା କରାଯିବା ପୂର୍ବରୁ ଦେଓ୍ୱାନ୍ ହରିହର ଭ୍ରମରବରଙ୍କ ପରିଚୟ ସମ୍ପର୍କରେ ଡ. ଅର୍ଜୁନ ଯୋଶୀ ଯେଉଳି ଅହେତୁକ ଭ୍ରମଧାରଣାର ବଶବର୍ତ୍ତୀ ହୋଇ ତାଙ୍କୁ ହରିହର ପାତ୍ର ନାମରେ କେହି ଜଣେ ବ୍ୟକ୍ତି ଏବଂ ତାଙ୍କ ସ୍ଥାନରେ ରାଜଗୁରୁ ଜୟକୃଷ୍ଣ ମହାପାତ୍ରଙ୍କୁ ଦେଓ୍ୱାନ ବୋଲି ଅଭିହିତ କରିଛନ୍ତି, ସେ ସମ୍ପର୍କରେ ସମ୍ୟକ୍ ସ୍ପଷ୍ଟୀକରଣ ଦେବା ଆବଶ୍ୟକ ।

ଡ. ଯୋଶୀ ବହିର ମୂଳରେ ପ୍ରତ୍ୟେକ ଅଧାୟର ସଂକ୍ଷିପ୍ତ ଇଂରାଜୀ ବିବରଣୀ ଏବଂ ଐତିହାସିକ ପୃଷ୍ଠଭୂମି ଭିତ୍ତିରେ ତାପଙ୍ଗ ବିଦ୍ରୋହର ଏକ ସ୍ୱତନ୍ତ୍ର ଇଂରାଜୀ ବିବରଣୀ ସନ୍ନିବେଶିତ କରିଛନ୍ତି । 'ଫିରିଙ୍ଗି କଳି ଭାରତ'ରେ ଦିଆନ୍ ପଦଟିର ବହୁଳ ବ୍ୟବହାର କରାଯାଇଛି, ଯେଉଁଥିରେ କାହାରି ନାମ ସଂଲଗ୍ନ କରାଯାଇ ନାହିଁ । କିନ୍ତୁ କେତେକ

ସ୍ଥାନରେ ଦିଆନ୍ ହରିହର ଭ୍ରମରବର ବୋଲି ସ୍ପଷ୍ଟଭାବେ ଉଲ୍ଲେଖ କରାଯାଇଛି । କୌଣସି ଗୋଟିଏ ସ୍ଥାନରେ ମଧ ଦିଆନ୍ ଜୟକୃଷ୍ଣ ରାଜଗୁରୁ ବୋଲି ଉଲ୍ଲେଖ ନାହିଁ । ବକ୍ସି ଜଗବନ୍ଧୁ ବିଦ୍ୟାଧର ଓ ଦେଓ୍ୱାନ ହରିହର ଭ୍ରମରବର ରାଜା ମୁକୁନ୍ଦଦେବଙ୍କ ଆଦେଶକ୍ରମେ ମିଳିତଭାବେ ସୈନ୍ୟ ଚାଳନା କରି ରଣପୁର ଜୟକଲେ ବୋଲି ତୃତୀୟ ଓ ଚତୁର୍ଥ ଦୁଇଟି ଅଧ୍ୟାୟରେ ଯୁଦ୍ଧର ଆମୂଳାନ୍ତ ବିବରଣୀ ବର୍ଣ୍ଣନା କରାଯାଇଛି । ତା'ସତ୍ତ୍ୱେ ଦେଓ୍ୱାନ୍ ହରିହର ଭ୍ରମରବରଙ୍କ ସ୍ଥାନରେ ଦେଓ୍ୱାନ୍ ଜୟକୃଷ୍ଣ ରାଜଗୁରୁ ରଣପୁର ଜୟ କଲେ ବୋଲି ଡ. ଯୋଶୀ ଲେଖିଛନ୍ତି । ଏହି ଦୃଷ୍ଟିରୁ 'ଫିରିଙ୍ଗି କଳି ଭାରତ'ର କେତୋଟି ପଙ୍‌କ୍ତି ସହିତ ଡ. ଯୋଶୀଙ୍କର ତତ୍‌ସଂପୃକ୍ତ ଇଂରାଜୀ ଲେଖାକୁ ନିମ୍ନରେ ଉଦ୍ଧାର କରାଯାଉଛି-

**ଅଧ୍ୟାୟ - ୩** — ଦିଆନ୍ ବୀରବେଶ ହୋଇଲେକ ବେଗେ/ମସ୍ତକେ ବାନ୍ଧିଲେ କୁସୁମି ଜରିପାଗେ-୪୦

ଦିଆନେ ଶ୍ରୀଛାମୁରେ ଯାଇ ହେଲେ ଉଭା/ ନାରାୟଣ ଆଗେ ଯେହ୍ନେ ଗରୁଡ଼ର ପ୍ରଭା - ୪୩

ଦିଆନେ ମୁରାଟିଲେ ପଛ ପଟୁଆରେ / ଯାର ନାମେ ଚମକ ପଡ଼ଇ କଟକରେ - ୪୮

ଦିଆନ ବକ୍ସି ଯେ ଅଶ୍ୱ ଦେଲେ ମେଲି / ଯୋଜନକ ଆକୃତିରେ ସଇନ ଗଲେ ଚାଳି - ୮୫

ଦିଆନ ବକ୍ସି ଦୁଇ ଜଣ ମେଳହୋଇ / ଜଗନ୍ନାଥଙ୍କ ଦେଉଳ ଦ୍ୱାରେ ହେଲେ ଯାଇ - ୧୮୯

ଦିଆନେ କହିଲେ ଯେ ନିଶରେ କର ଦେଇ / ଦେଉଳରେ ଯେ ଲୁଚିଛି ଶୁଣିଥାଉ ସେହି - ୧୯୪

ମୋର ନାମ ଅଟଇ କ୍ଷତ୍ରି ହରିହର / ମୋର ନାମେ କମ୍ପୁଅଛି ଦିଲ୍ଲୀ ସେ ସହର - ୧୯୫

ଦିଆନ ବକ୍ସିଙ୍କ ଆବର ସୈନ୍ୟବଳ / ଚାଲିବାରେ ମଣିନାଗ ପର୍ବତ ଟଳମଳ - ୩୪୧

**ଅଧ୍ୟାୟ - ୪** — ଦିଆନ ବକସିଙ୍କର ସଂଗ୍ରାମେ ଶଙ୍କା ନାହିଁ / ମାରମାର ବୋଲିଣ ସେ ପଡ଼ିଲେ ଧସାଇଁ - ୫୬

**ଅଧ୍ୟାୟ-୧୦** — ଆଜ୍ଞାକଲେ ଗଜପତି ଦିଆନ ସାହେବଙ୍କୁ / ତୁମ୍ଭେ ଯାଅ ଏବେ ଦାନେବ ସଭାକୁ -୪୫

ଆପେ ନ ଗଲେ ଯେ ନ ରହିବ ରାଜ୍ୟ / ଯାଉଛି ବୋଲି ଭ୍ରମରବର ହେଲେ ସଜ - ୪୬

ଦରଶନ କଲେ ମସ୍ତକେ ଦେଲେ କର / ବାଜି ଆରୋହିଣ ବାହାର ହରିହର - ୪୭

ଏମନ୍ତ ସମୟରେ ହରିହର ଭ୍ରମରବର / ତୁରଙ୍ଗରୁ ଓହ୍ଲାଇଗଲେ ଦାନେବ ଦରବାର - ୫୧

ଦାନେବ ପରିମୁଖେ ବସିଲେକ ଯହୁଁ / ସକଳ ସମାଚାର ପୁଚ୍ଛା କଲେ ତହୁଁ - ୫୫

ତୁମେ ପରା ନୃପତିର ଅଟହାଦେ ମନ୍ତ୍ରୀ / ତୁମ୍ଭେ ଥାଉ ଥାଉ ହୋଇଲା ଏତେ ରୀତି - ୫୬

ଡା. ଯୋଶୀ ତୃତୀୟ ଅଧ୍ୟାୟ ୧୨ଶ ପଦରେ ବ୍ୟବହୃତ 'ଦିଆନ୍' ଶବ୍ଦପାଇଁ ୧୯ ପୃଷ୍ଠା ତଳେ ଫୁଟ୍‌ନୋଟ୍‌ରେ 'ଦିଆନ = ଦେଓ୍ୱାନ ଜୟକୃଷ୍ଣ ରାଜଗୁରୁ' ବୋଲି

ଲେଖିଛନ୍ତି ଏବଂ ତାଙ୍କ ଇଂରାଜୀ ଟିପ୍ପଣୀରେ ମଧ୍ୟ ସେହି ଭ୍ରମକୁ ବାରମ୍ବାର ଦୋହରାଇଛନ୍ତି - 'The Dewan Jaikrushna Rajaguru and Baxi Jagabandhu Bidyadhar represented to the king of Khurda that they would march with force

x x x x

" These forces headed by Buxi Jagabandhu Bidyadhar and Dewan Jaikrushna Rajaguru encamped at Siko."

x x x x

"During the war the forts of KandhaNuagarh and Narasinghpur were also conquered by the king of Khurda under the command of Buxi Jagabandhu Bidyadhar and Dewan Jaikrushna Rajguru."

x x x x

"The story of the conquest of Ranpur was narrated by Buxi Jagabandhu Bidyadhar and Jaikrushan Rajguru on their return to Khurda."

x x x x

"The Dewan returned with forces and met the king. The king congratulated Rajaguru."

x x x x

କିନ୍ତୁ ଜୟୀ ରାଜଗୁରୁ ଖୋର୍ଦ୍ଧାରେ ଇଂରେଜମାନଙ୍କ ସହ ଯୁଦ୍ଧରେ ହାରିଯିବା ପରେ ରାମେଶ୍ୱରଗଡ଼ ଜଙ୍ଗଲରେ ଆତ୍ମଗୋପନ କରିଥିବା ରାଜା ମୁକୁନ୍ଦ ଦେବଙ୍କ ଆଦେଶରେ ଦେଓ୍ୱାନ ହରିହର ଭ୍ରମରବର ଇଂରେଜଙ୍କ ସହ ସନ୍ଧି କରିବା ଉଦ୍ଦେଶ୍ୟରେ ଖୋର୍ଦ୍ଧା ଫିରିଙ୍ଗି କଚେରୀକୁ ଯାଇଥିଲେ ବୋଲି ଫିରିଙ୍ଗି କଳି ଭାରତର ଉକ୍ତିକୁ ଡ. ଯୋଶୀ ନିର୍ଭୁଲଭାବେ ପ୍ରକାଶ କରିଛନ୍ତି -

'There after Paindiki Harichandan returned. Dewan Harihar Bhramarbar proceeded on horseback to the British Court at Khurda and met Fletcher and Journel.'

ପରବର୍ତ୍ତୀ ଭ୍ରମ ଉପୁଜିଛି 'ପାତ୍ର' ଶବ୍ଦକୁ ନେଇ । 'ପାତ୍ର' ଶବ୍ଦର ଅର୍ଥ ମନ୍ତ୍ରୀ ବା ଅମାତ୍ୟ । କବି ମଧୁସୂଦନ ବିପ୍ର 'ପାତ୍ର' ଶବ୍ଦଟିକୁ ଉଭୟ ଅର୍ଥରେ ମନ୍ତ୍ରୀ ଓ ଅମାତ୍ୟଭାବେ ଭିନ୍ନ ଭିନ୍ନ ସ୍ଥାନରେ ବ୍ୟବହାର କରିଛନ୍ତି, ଯଥା 'ପାତ୍ର ହରିହର ଯେ କ୍ଷତ୍ରୀୟ ବଳବନ୍ତ । ନାମ ତାହାଙ୍କର ଶୁଣି ଡରନ୍ତି ସମସ୍ତ (୬) ୪, ଆଠସସ୍ର ପାଦାନ୍ତି ଘେନି ପାତ୍ର ହରିହର, ତେଣେ ବାଙ୍କିଗଡ଼େ ଲାଗିଛନ୍ତି ଯେ ଆମ୍ଭର (୭) ୭୦ ଏତେବେଡ଼ ପାତ୍ରମାନେ ମଉନେ

ରହିଲେ । ଅନୁଗ୍ରହ ପାତ୍ରମାନେ ପୃଥିବୀ ବୁଝିଲେ (୬)୯ । ପାତ୍ରମାନେ ଛାମୁରେ କରନ୍ତି ଦରଶନ ଦେଶୀ ଯେ ବିଦେଶୀ ମେଳେ ଜମାଦାର ମାନ (୬) ୪୧୬ ଇତ୍ୟାଦି ।

କିନ୍ତୁ ଡ. ଯୋଶୀ 'ପାତ୍ର' ଶବ୍ଦଟିର ଭୁଲ ତର୍ଜମା କରିଛନ୍ତି ଏବଂ ଏହାକୁ ଏକ ସାଙ୍ଗିଆ ରୂପେ ଗ୍ରହଣକରି ଦେଓ୍ୱାନ ହରିହରଭ୍ରମରବରଙ୍କୁ କେହି ଜଣେ ହରିହର ପାତ୍ର ବୋଲି ଲେଖିଛନ୍ତି - 'Harihar Patra was fighting at Banki with 8000 (eight thousand) force.'

ସେହିପରି ବକ୍ସି ଜଗବନ୍ଧୁଙ୍କର ବିଶେଷ ରୂପଗୁଣ ରୂପେ ବ୍ୟବହୃତ ବିଶେଷଣ ପଦ 'ସୁରବର ସୁନ୍ଦର'କୁ ମଧ୍ୟ ଡ. ଯୋଶୀ ଜଣେ ବ୍ୟକ୍ତିବିଶେଷଭାବେ ଗ୍ରହଣ କରିଛନ୍ତି ।

'ସୁରବର ସୁନ୍ଦର ସେ ବକ୍ସି ବିଦ୍ୟାଧର - ନାମ ଜଗବନ୍ଧୁ ଯେ ଥାଟରେ ସରଦାର' (୬) ୭ ଫିରିଙ୍ଗି କଳିଭାରତ ।

'In the eight reignal year of the king foreigners appeared in the kingdom. Buxi Jagabandhu, Harihar Patra Surabar Sundar remained silent when favourite officials were preferred in administration of the kingdom.' - Dr. Joshi

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ, ଆଜିକୁ ୧୬୦ ବର୍ଷ ତଳେ ଜଣେ ଅଜ୍ଞାତ ଗ୍ରାମୀଣ କବିଙ୍କଦ୍ୱାରା ଲିଖିତ ଖୋର୍ଦ୍ଧା ଇତିହାସର ଏକ ଗୁରୁତ୍ୱପୂର୍ଣ୍ଣ ଅଜ୍ଞାତ ଅଧ୍ୟାୟକୁ ଡ. ଅର୍ଜୁନ ଯୋଶୀ ଯେଉଁଭଳିଭାବେ ବହୁ କଷ୍ଟସ୍ୱୀକାର ପୂର୍ବକ ଧ୍ୱଂସମୁଖରୁ ଉଦ୍ଧାରକରି ଲୋକଲୋଚନକୁ ଆଣିପାରିଛନ୍ତି, ସେଥିପାଇଁ ସେ ଧନ୍ୟବାଦାର୍ହ ଏବଂ ତାଙ୍କର ଏହି ଦୁଃସାଧ ମହତ୍ କାର୍ଯ୍ୟ ସର୍ବଥା ଅଭିନନ୍ଦନୀୟ । ଏପରି ଏକ ମହତ୍ କାର୍ଯ୍ୟର କୁତ୍ରାପି ସମାଲୋଚନାର ପ୍ରଶ୍ନ ଉଠେନା । କିନ୍ତୁ ଡ. ଯୋଶୀ ନିଜେ ଲେଖିଛନ୍ତି - 'The chapterwise substance of Firingi Kali Bharat' have been given in English for porper understanding ot those who have no knowledge of Oriya language.' ସୁତରାଂ, ଓଡ଼ିଆ ଭାଷା ଜାଣି ନ ଥିବା ବ୍ୟକ୍ତି ଫିରିଙ୍ଗି କଳି ଭାରତ'ରେ ପ୍ରଦତ୍ତ ତଥ୍ୟକୁ ଭ୍ରମାତ୍ମକଭାବେ ଗ୍ରହଣ ନ କରନ୍ତୁ, ଏହି ଉଦ୍ଦେଶ୍ୟରେ ହିଁ ଡ. ଯୋଶୀଙ୍କ ଲେଖାରେ ଦୈବାତ୍ ଉପୁଜିଥିବା ତଥ୍ୟଗତ ପ୍ରମାଦଗୁଡ଼ିକୁ ଦର୍ଶାଇଦିଆଗଲା । ଏହାପରେ 'ଫିରିଙ୍ଗି କଳି ଭାରତ'ରେ ପ୍ରଦତ୍ତ ବିବରଣୀ ଅନୁଯାୟୀ ବିଭିନ୍ନ କ୍ଷେତ୍ରରେ ଖୋର୍ଦ୍ଧାର ଦେଓ୍ୱାନ ହରିହର ଭ୍ରମରବରଙ୍କ କୃତିତ୍ୱ ଓ ପୂର୍ବସୂଚିତ ଗୁରୁତ୍ୱପୂର୍ଣ୍ଣ ତଥ୍ୟଗୁଡ଼ିକ ସମ୍ପର୍କରେ ଅବଗତ କରାଇଲେ କିଛି ଅସୁବିଧା ରହିବ ନାହିଁ ।

ଦେଓ୍ବାନ ହରିହର ଭ୍ରମବରଙ୍କ ସମ୍ପର୍କରେ 'ଫିରିଙ୍ଗ କଳି ଭାରତ'ରେ ଯେପରି ବିସ୍ତାରିତ ବର୍ଣ୍ଣନା କରାଯାଇଛି, ସେଥିରୁ ମନେହୁଏ ସେ ଜଣେ ବିଚକ୍ଷଣ ରାଜନୀତିଜ୍ଞ, ସୁଦକ୍ଷ ଯୋଦ୍ଧା ଏବ ପ୍ରଭାବଶାଳୀ ମନ୍ତ୍ରୀ ଥିଲେ। କବି ମଧୁସୂଦନ ବିପ୍ରଙ୍କ ବିବରଣୀ ଅନୁଯାୟୀ ମୁକୁନ୍ଦଦେବ (୨) ତାଙ୍କ ରାଜତ୍ୱର ୭, ୮ ଓ ୯ ଅଙ୍କରେ ଅର୍ଥାତ୍ ୧୮୦୨, ୧୮୦୩ ଓ ୧୮୦୪ରେ ଯେଉଁ ତିନିଗୋଟି ଯୁଦ୍ଧର ସମ୍ମୁଖୀନ ହୋଇଥିଲେ ସେ ତିନିଗୋଟିଯାକ ଯୁଦ୍ଧରେ ଦେଓ୍ବାନ ହରିହର ପ୍ରମୁଖ ଭୂମିକା ଗ୍ରହଣକରିଥିଲେ। ସବୁଠୁଁ ଉଲ୍ଲେଖଯୋଗ୍ୟ ଘଟଣା ହେଲା ଖୋର୍ଦ୍ଧା ରାଜାଙ୍କ ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ଓ ରାଜଗୁରୁ ଜୟକୃଷ୍ଣ ମହାପାତ୍ରଙ୍କ ମଧ୍ୟରେ କୌଣସି କାରଣବଶତଃ ପାରସ୍ପରିକ ସହଯୋଗ, ସମ୍ପର୍କ ନ ଥିଲା ପରି ମନେହେଉଥିବା ବେଳେ ଦେଓ୍ବାନ ହରିହର ଉଭୟ ବକ୍ସି ଜଗବନ୍ଧୁ ଓ ରାଜଗୁରୁ ଜୟକୃଷ୍ଣଙ୍କ ସହିତ ସାମରିକ ତଥା ପ୍ରଶାସନିକ କ୍ଷେତ୍ରରେ ସର୍ବଦା ସହଯୋଗପୂର୍ଣ୍ଣ ସମନ୍ୱୟ ରକ୍ଷାକରିଥିବାର ଦୃଷ୍ଟାନ୍ତ ମିଳେ।

୧୮୦୨ ଖ୍ରୀ:ରେ ରଣପୁର ରାଜା ବୃନ୍ଦାବନ ନରେନ୍ଦ୍ର ଖୋର୍ଦ୍ଧାରାଜ୍ୟର ସୀମାରେ ଗଣ୍ଡଗୋଳ ଭିଆଇବାରୁ ଚପଳମତି ଯୁବକ ମୁକୁନ୍ଦଦେବ ରାଗିଯାଇ ରଣପୁର ବିରୋଧରେ ଯୁଦ୍ଧକରିବାକୁ ନିଜେ ଅଣ୍ଟାଭିଡ଼ି ବାହାରିଲେ। ତାହା ଦେଖି ଦେଓ୍ବାନ ଓ ବକ୍ସି ତାଙ୍କୁ ଶାନ୍ତ କରାଇ କହିଲେ, ଏଇ ଛାର ରଣପୁର ରାଜା ସଙ୍ଗେ ଯୁଝିବାକୁ ମଣିମା କାହିଁକି ଯିବେ ? ଆମକୁ ଆଦେଶ ଦେଲେ ତ ଆମେ ବାନ୍ଧିଆଣିବୁ - 'ଦିଆନ୍ ବକ୍ସି ଯେ କହନ୍ତି ସାବଧାନେ -ଯେଉଁ ହୁକୁମକୁ ପୃଥ୍ୱୀରେ ନାହିଁ ବୀର, କନ୍ଧ ବୃନ୍ଦାବନ ଯେ କେତେକ ମାତର ! ଏ ଛାର କଥାକୁ ବିଜେ କରିବେ କାହିଁପାଇଁ, ଆଜ୍ଞା ଦେଲେ ଛାମୁରେ ବାନ୍ଧି ଆଣିବଇଁ x x x ଆହୁରି କୁହାଯାଇଛି - 'ପୃଥିବୀ ହାନିଲାଭ ଶ୍ରୀନବର କଥା, ବକ୍ସି ଦିଆନଙ୍କୁ ଯେ ଲାଗଇ ରାଜ୍ୟ ଚିନ୍ତା'। x x x

ଏଇଥିପାଇଁ ମନେହୁଏ ୧୮୦୨ ଖ୍ରୀ. ବେଳକୁ ଉଭୟ ଦେଓ୍ବାନ ହରିହର ଓ ବକ୍ସି ଜଗବନ୍ଧୁଙ୍କ ମଧ୍ୟରେ ଖୁବ୍ ସୁସମ୍ପର୍କ ଥିଲା ଏବଂ ଉଭୟେ ମିଶି ରାଜ୍ୟର ହାନିଲାଭ-ସବୁକଥା ବୁଝୁଥିଲେ। ତେଣୁ ମୁକୁନ୍ଦଦେବ ବକ୍ସିଙ୍କୁ ରଣପୁର (ମହ୍ଲାର) ରାଜ୍ୟ ଜୟକରିବାକୁ କହିବାରୁ ଉଭୟ ବକ୍ସି ଓ ଦେଓ୍ବାନ ରଣପୁର ଅଭିମୁଖେ ଯୁଦ୍ଧଯାତ୍ରାକଲେ। ବକ୍ସିଙ୍କ ଫଉଜ ପଛେ ପଛେ ଦେଓ୍ବାନଙ୍କ ଫଉଜ ପଟୁଆର କରିଚାଲିଲେ। 'ଓଳଗ ମେଲାଇ ଯେ ବକ୍ସି ବୀରମଣି, ଆଗୁଁସାର ହୋଇ ଥାଟ କରିଲେ ପଲାଣି' x x x 'ଦିଆନେ ମୁରାଟିଲେ ପଛ ପଟୁଆରେ, ଯାର ନାମ ଚମକ ପଡ଼ଇ କଟକରେ' x x x

## ବକ୍ସି ଓ ଦେୱାନଙ୍କ ମିଳିତ ନେତୃତ୍ୱ

ଦେୱାନ ଓ ବକ୍ସିଙ୍କ ମିଳିତ ନେତୃତ୍ୱରେ ରଣପୁର ଗଡ଼ ଆକ୍ରମଣ ଅଭିଯାନ ଚାଲିଲା- 'ଦିଆନ ବକ୍ସି ଯେ ଅଶ୍ୱ ଦେଲେ ମେଳି, ଯୋଜନକ ଆକୃତିରେ ସଇନ ଗଲେ ଗଲି x x x ଦିଆନ ବକ୍ସିଙ୍କ ଯେ ଆବର ସୈନ୍ୟବଳ, ଚାଲିବାରେ ମଣିନାଗ ପର୍ବତ ଟଳମଳ' x x x 'ଦିଆନେ ଡାକଦେଲେ ତୋପ ବେଗେ ଛାଡ଼' x x x 'ବକସି ଡାକନ୍ତି ସୈନ୍ୟ ବେଢ଼ିକରି ମାର ।' ଏହିପରି ଭାବରେ ଦେୱାନ ହରିହର ଓ ବକ୍ସି ଜଗବନ୍ଧୁ ମିଳିତଭାବେ ସୈନ୍ୟଚାଳନା କରି ରଣପୁର ଗଡ଼ ସହିତ ତତସଂଲଗ୍ନ କନ୍ଧନୂଆଗଡ଼ ଓ ନରସିଂହପୁରଗଡ଼ ଜୟକଲେ ।

କେବଳ ଯୁଦ୍ଧକ୍ଷେତ୍ରରେ ନୁହେଁ, ପ୍ରଶାସନ କ୍ଷେତ୍ରରେ ମଧ୍ୟ ଉଭୟଙ୍କ ମିଳିତ ନେତୃତ୍ୱର ଦୃଷ୍ଟାନ୍ତ ମିଳେ । କନ୍ଧନୂଆଗଡ଼ ଯୁଦ୍ଧ ବେଳେ ଦଳେଇ ଦଳବେହେରାମାନେ ଦେୱାନ ଓ ବକ୍ସିଙ୍କ ପାଖରେ ଗୁହାରି ଜଣାଇଲେ ଯେ, ରାଜା ସେମାନଙ୍କୁ ଦେଇଥିବା ଜାଗିରି ଜମିପାଇଁ ସେମାନଙ୍କୁ ସାଧାରଣ ରଇତଙ୍କ ପରି ଖଜଣା ଦେବାକୁ ପଡୁଛି, ତେଣୁ ସେମାନେ ଅପଦସ୍ଥ ଓ ହଇରାଣ ହେଉଛନ୍ତି । - 'ଶୁଣି ପଏକାର ଯେ କରନ୍ତି ଗୁହାରି, ଜାଗେରୀ ନେଇ ଆମ୍ଭେ ମରୁଛୁ ଝୁରି ଝୁରି, ରଇତଙ୍କ ପ୍ରାୟେ ଯେ କଉଡ଼ି ଗଣି ଗଣି, ଆମ୍ଭକଥା ବୁଝିଲେ ପଛକୁ ନଖାନ୍ତୁ ଏଥେ ପାଣି' x x x ଦଳେଇ ଦଳବେହେରାମାନଙ୍କ ମୁହଁରୁ ଏ ଗୁହାରି ଶୁଣି ଉଭୟେ ଦେୱାନ ଓ ବକ୍ସି ସେମାନଙ୍କ କଥା ବୁଝିବେବୋଲି କହି ସାନ୍ତ୍ୱନା ଦେଲେ- 'ଦିଆନ ବକ୍ସି ଯେ କରନ୍ତି ସମାଧାନ, ତୁମ୍ଭ କଥା ପକାଇବା ନୃପତି ସନ୍ନିଧାନ ।' ସୁତରାଂ ବକ୍ସି ଜଗବନ୍ଧୁଙ୍କ ସହିତ ଯୁଦ୍ଧକ୍ଷେତ୍ରରେ ଦେୱାନ ହରିହର ସହଯୋଗ କରୁଥିଲେ ଏବଂ ଦେୱାନ ହରିହରଙ୍କ ସହିତ ମଧ୍ୟ ପ୍ରଶାସନ କ୍ଷେତ୍ରରେ ବକ୍ସି ଜଗବନ୍ଧୁ ସହଯୋଗକରୁଥିଲେ ଏବଂ ଉଭୟଙ୍କର ରାଜା ମୁକୁନ୍ଦଦେବଙ୍କପ୍ରତି ପ୍ରଗାଢ଼ ଭକ୍ତି ଓ ମାନ୍ୟତା ଥିଲା । ରଣପୁର ଜୟକରି ଫେରିବା ବାଟରେ ଖୋର୍ଦ୍ଧା ସନ୍ନିକଟ ମଳିପଡ଼ାରେ ପହଞ୍ଚିବା ବେଳକୁ ରାଜଦର୍ଶନ କରିବାପାଇଁ ଦୁହିଁଙ୍କର ମନ ଉଚ୍ଛନ୍ନ ହୋଇପଡ଼ିଥିଲା ଏବଂ ଉଭୟେ ଖୋର୍ଦ୍ଧାଗଡ଼ରେ ପହଞ୍ଚି ରାଜାଙ୍କୁ ଯଥାଯୋଗ୍ୟ ମାନ୍ୟତା ଜଣାଇଲେ । - 'ବାଟେ ଯାଉଁଯାଉଁ ବିଚାରନ୍ତି ମନ, ଆଜ ଦେଖିବା ହେ ଦୂତୀଭଗବାନ' x x x 'ଦୂତୀ ଜଗନ୍ନାଥଙ୍କୁ ଦେଖିବା ଆଜ ଭାଇ - ଦୁଇମାସ ପାପ ଯେ ପକାଇବା ଦହି' x x x ଦିଆନ ବକ୍ସି ଯେ ଛାମୁରେ ହେଲେ ଯାଇ - ଉଭାହୋଇ ତୁଷ୍ଟି ଯେ କରନ୍ତି ବିନୋଇଁ' x x x

କିନ୍ତୁ ତା'ପରେ ଏଇ ରଣପୁର ଯୁଦ୍ଧଫେରନ୍ତା ବିଜୟୀ ବୀର ଦୁଇ ଜଣଙ୍କ ପ୍ରତି ମୁକୁନ୍ଦଦେବଙ୍କର ଯେପରି ଆସ୍ଥା ଓ ଆନ୍ତରିକତା ରହିବାର କଥା, ସେପରି ରହିଲା ନାହିଁ । କୌଣସି କାରଣବଶତଃ ମୁକୁନ୍ଦଦେବ ତାଙ୍କ ଦେୱାନ ଓ ସେନାପତିଙ୍କ ପ୍ରତି ବିମୁଖ

ହୋଇପଡ଼ିଲେ ଏବଂ ସେ ଦୁହିଁଙ୍କୁ ଆଉ ବିଶ୍ୱାସକୁ ନେଲେ ନାହିଁ । ଫଳତଃ ୧୮୦୩ରେ ବାଙ୍କି ଜୟକରିବାକୁ କାହାରିକୁ ନ କହି କେବଳ ରାଜଗୁରୁଙ୍କୁ ଗୋପନରେ କହିଲେ ଏବଂ ଅନ୍ୟମାନଙ୍କୁ ଶ୍ରୀକ୍ଷେତ୍ର ଯିବା କହିଲେ- 'ବକ୍ରାଙ୍ଗମଣ୍ଡଳେ କରିବେ ଚୋଟମୋଟ - ପାତ୍ରଙ୍କୁ ନ କହିଲେ ନୃପତି ଗରିଷ୍ଠ, ଗୁପତରେ ସମସ୍ତ ପାତ୍ରଙ୍କୁ ହକାରି- କ୍ଷେତ୍ରକୁ ବିଜେ ବୋଲି କହିଲେ ଦଣ୍ଡଧାରୀ, ରାଜଗୁରୁ ଜଣାଇଲେ ନୃପତି ଛାମୁର - ଦଶସସ୍ର ବିଦେଶୀ ଅଛନ୍ତି ଚୋପଦାର, ଅନେକ ତୁରଙ୍ଗମ ଅନେକ ହାତୀ ରଥୀ- ଦଶସସ୍ର ବିଦେଶୀ ଅଛନ୍ତି ସହସ୍ର ପଦାନ୍ତି, ଦୁଇସସ୍ର ଜମ୍ବୁରା, ତିନି ସସ୍ର ଯେ ଜଜାଲ - କ୍ଷେତ୍ରକୁ ଯିବାକଥା ଅଟଇ ଅମୂଲ୍ୟ, ଗୁପତେ ରାଜଗୁରୁଙ୍କୁ କହିଲେ ନୃପରାଣ - ବାଙ୍କିପରେ ଖଣ୍ଡା ମୁଁ କରିବି ବର୍ଷଣ ।

ସେତେବେଳେ ଓଡ଼ିଶାରେ ମରହଟ୍ଟା ରାଜତ୍ୱ ଚାଲିଥିଲା । ମରହଟ୍ଟାମାନଙ୍କୁ କବି 'ବିଦେଶୀ' ବୋଲି ଲେଖିଛନ୍ତି । ସେହି ବିଦେଶୀ ଓ ଦେଶୀ ସୈନ୍ୟମାନଙ୍କୁ ନେଇ ରାଜଗୁରୁ ଜୟକୃଷ୍ଣ ମହାପାତ୍ର ବାଙ୍କି ଅଭିଯାନପାଇଁ ଯେତେବେଳେ ପ୍ରସ୍ତୁତ ହୋଇ ବାହାରିଲେ ବକ୍ସି ସମ୍ଭବତଃ ଅଭିମାନରେ ଆଉ ରାଜାଙ୍କୁ ଦେଖାଦେଲେ ନାହିଁ । କିନ୍ତୁ କୂଟନୀତିବିଶାରଦ ଦେୱାନ ହରିହର ପରିସ୍ଥିତିକୁ ନିଜ ନିୟନ୍ତ୍ରଣ ବାହାରକୁ ଏତେ ସହଜରେ ଛାଡ଼ି ନ ଦେଇ ସେଇ ମୁହୂର୍ତ୍ତରେ ଯାଇ ମୁକୁନ୍ଦଦେବଙ୍କ ସମ୍ମୁଖରେ ଛିଡ଼ାହୋଇ ରହିଲେ । ମୁକୁନ୍ଦଦେବ ଏ ପରିସ୍ଥିତିରେ ଆଉ ତାଙ୍କଠାରୁ ପ୍ରକୃତ ଘଟଣା ଲୁଚାଇରଖିବା ଅବସ୍ଥାରେ ରହିପାରିଲେ ନାହିଁ ଏବଂ କହିଲେ 'ମୋ ବାବା ବାଙ୍କି ଆକ୍ରମଣ କରି ଅପମାନିତ ହୋଇ ଫେରିଥିଲେ, ଏବେ ପୁଣି ସେଇ ବାଙ୍କି ରାଜା ମୋ ରାଜ୍ୟ ସୀମାରେ ଔଦ୍ଧତ୍ୟ ଦେଖାଉଛି- 'ଦିଆନେ ଶ୍ରୀଛାମୁରେ ଛନ୍ତି ଉଭାହୋଇ - ନୃପତି ଗୁପତେ ତାଙ୍କୁ କହିଲେ ବୁଝାଇ, ଦାଦା ଠାକୁରେ ଯେ ଯୋଗ୍ଯିବେଳେ ଯୁଦ୍ଧକଲେ- ଗଡ଼ ନ ମଲା ସଇନ୍ୟମାନେ ନାଶଗଲେ, ଏବେ ଆଠ ଅଙ୍କ ହେଲା ବାଙ୍କି ବସେ ମାଡ଼ି - କୌଣସି ପ୍ରକାରରେ ନ ଗଲା ସେ ଛାଡ଼ି' x x x

## ବକ୍ସିଙ୍କପ୍ରତି ଘୋର ଅପମାନ

ଏପରି ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ସମ୍ପର୍କରେ ମୁକୁନ୍ଦଦେବ ତାଙ୍କୁ ଏଯାବତ୍ କିଛିମାତ୍ର ଜାଣିବାକୁ ନ ଦେଇ ରାଜଗୁରୁଙ୍କ ନେତୃତ୍ୱରେ ଶ୍ରୀକ୍ଷେତ୍ର ଯିବା ନାମରେ ବାଙ୍କି ଆକ୍ରମଣପାଇଁ ଚୂଡ଼ାନ୍ତ ପ୍ରସ୍ତୁତି କରିସାରିଥିଲେ ହେଁ, ଦେୱାନ ହରିହର ଭ୍ରମରବର ସେଥିପାଇଁ କିଛିମାତ୍ର ପ୍ରତିକ୍ରିୟା ପ୍ରକାଶ ନ କରି ମୁକୁନ୍ଦଦେବଙ୍କୁ ସଙ୍ଗେ ସଙ୍ଗେ ଉତ୍ତର ଦେଲେ - ତା'ହେଲେ ଆମେ ତା' ସହିତ ଯୁଦ୍ଧ କରିବା । 'ଶୁଣି ହରିହର ତାଙ୍କୁ ଦେଲେ ଉତ୍ତର - ବୋଇଲେ ଭୋଦେବ ତେବେ କରିବା ସମର' x x x ଏହାପରେ ମୁକୁନ୍ଦ ଦେବଙ୍କର ଆଉ ଦେୱାନ ହରିହରଙ୍କୁ ଅବଜ୍ଞା କରିବାର ଚାରା ନ ଥିଲା । ସେ ଦେୱାନ୍‌ଙ୍କ ବୀରତ୍ୱ ଓ ବ୍ୟକ୍ତିତ୍ୱପ୍ରତି ଉପଯୁକ୍ତ ସମ୍ମାନ ପ୍ରଦର୍ଶନ କରିବାକୁ ବାଧ୍ୟହେଲେ ଏବଂ

ରାଜଗୁରୁଙ୍କୁ ଡମପଡ଼ାକୁ ପଠାଇ ଦେୱାନଙ୍କୁ ବାଙ୍କି ଆକ୍ରମଣ କରିବାକୁ କହିଲେ - 'ଦିୱାନଙ୍କୁ ବେଗେ ଆଜ୍ଞା ଦେଲେ ଦଣ୍ଡଧର - ବାଙ୍କି ଉପରେ ଯେ ଏବେ ତୁମେ ଖଣ୍ଡାଧର' x x x 'ଜୟୀ ରାଜଗୁରୁଙ୍କୁ କହିଲେ ମହାରାଜ - ଡଅଁପଡ଼ା ଯିବାକୁ ଯେ ତୁମେ ହୁଅ ସଜ । x x x ଲକ୍ଷ୍ୟକରିବାର କଥା ଯେ, ଦେୱାନ ଓ ବକ୍ସିଙ୍କ ଅଗୋଚରରେ ବାଙ୍କି ଅଭିଯାନପାଇଁ ମୁକୁନ୍ଦଦେବଙ୍କ ଅନୁମତିକ୍ରମେ ରାଜଗୁରୁ ପ୍ରସ୍ତୁତ ହୋଇସାରିଥିଲେ । ସୁତରାଂ ପୁଣି ଯେତେବେଳେ ବାଙ୍କି ଅଭିଯାନପାଇଁ ଦେୱାନଙ୍କୁ ରାଜା ଆଜ୍ଞା ହେଲା ଉଭୟ ଦେୱାନ ଓ ରାଜଗୁରୁ ମିଳିତଭାବେ ବାଙ୍କି ଅଭିଯାନ କରିପାରିଥାନ୍ତେ- ଯେପରି ବକ୍ସି ଓ ଦେୱାନ ମିଶି ରଣପୁର ଅଭିଯାନ କରିଥିଲେ; କିନ୍ତୁ ତା' ହେଲା ନାହିଁ । ଦେୱାନଙ୍କ ସହ ରାଜଗୁରୁ ମିଶିଲେ ନାହିଁ, ତେଣୁ ରାଜଗୁରୁଙ୍କ ମନ ମେଣ୍ଟାଇବାପାଇଁ କ୍ଷୁଦ୍ରାଦପିକ୍ଷୁଦ୍ର ଡମପଡ଼ା ଆକ୍ରମଣ କରିବାକୁ ପଠାଇଲେ । ଏହି ଘଟଣାରୁ ସହଜରେ ଅନୁମତି ହୁଏ ଯେ, ବକ୍ସି ବା ଦେୱାନ କାହାରି ସହିତ ରାଜଗୁରୁଙ୍କର ସଦ୍‌ଭାବ ନ ଥିଲା, ଏବଂ ସେ ଦେୱାନ ଓ ବକ୍ସିଙ୍କଠାରୁ ନିଜକୁ ଅଧିକ ଶକ୍ତିଶାଳୀ ଓ କ୍ଷମତାଶାଳୀ ମନେକରୁଥିଲେ ।

ରାଜଗୁରୁ ଡମପଡ଼ାକୁ ସୈନ୍ୟଚାଳନା କରି ଡଁପଡ଼ା ସୈନ୍ୟଙ୍କ ନେତୃତ୍ୱ ନେଇଥିବା ବାଙ୍କିରାଜା ବ୍ରଜବିହାରୀ ଶ୍ରୀଚନ୍ଦନଙ୍କ ଭାଇ ବାସୁଦେବ ଭ୍ରମରବରଙ୍କୁ ମାରି ଡଁପଡ଼ା ଜିଣିଲେ ଓ ବାଙ୍କିକୁ ଦେୱାନ ହରିହରଙ୍କ ପାଖକୁ ଖବର ପଠାଇଲେ । ଦେୱାନ ହରିହର ବାଙ୍କିଗଡ଼ ଆକ୍ରମଣ କରିବାରେ ଗଡ଼ ଛାଡ଼ି ରାଜା ଓ ଅନ୍ୟ ସମସ୍ତେ ପଳାଇ ଅନ୍ୟତ୍ର ଆଶ୍ରୟନେଲେ ଏବଂ ବାଙ୍କୀ ରାଜାଙ୍କ ଓକିଲ ହରେକୃଷ୍ଣ ପଟ୍ଟନାୟକ କଟକ ଯାଇ ମରହଟ୍ଟା ସୁବେଦାରଙ୍କ ପାଖେ ଖୋର୍ଦ୍ଧା ରାଜାଙ୍କ ବିରୋଧରେ ଗୁହାରିକଲେ - 'ଓଡ଼ିଶା ଗଜପତି ଫୌଜ କଣିଲେ- ପାଞ୍ଚସସ୍ର ବିଦେଶୀ ରାଜଗୁରୁ ତୁଲେ, ଡଁପଡ଼ା ଭାଙ୍ଗିଲେ କରିତୋପ ମାଡ଼- ଭାଙ୍ଗିଲେ ତେଡ଼େ ଗଡ଼ ପଥରର ବାଡ଼, ନାଶକରି ସମସ୍ତ ମାଡ଼ିଣ ବସିଲେ, ଧନରତ୍ନ କାଞ୍ଚନ ସର୍ବ ଲୁଟିନେଲେ ।' x x x ''ଆଠ ସସ୍ର ପାଦାନ୍ତି ଘେନି ପାତ୍ର ହରିହର ତେଣେ ବାଙ୍କି ଗଡ଼େ ଲାଗିଛନ୍ତି ଯେ ଆମର,''।

ସୁବେଦାର ଚାରି ମାସପାଇଁ ଯୁଦ୍ଧ ସ୍ଥଗିତ ରଖିବାକୁ ମୁକୁନ୍ଦଦେବଙ୍କ ପାଖକୁ ପତ୍ରଲେଖି ଦାମୋଦର ରାଏଗୁରୁଙ୍କ ହାତରେ ପଠାଇଲେ ଏବଂ ମୁକୁନ୍ଦଦେବ ବାଙ୍କିରୁ ସୈନ୍ୟ ଫେରାଇଆଣିବାକୁ ହରିହରଙ୍କ ପାଖକୁ ଆଦେଶ ପଠାଇଲେ ।

କିନ୍ତୁ ତା ପରେ ପୁଣି ମୁକୁନ୍ଦଦେବ ଦେୱାନ ଓ ବକ୍ସି ପ୍ରଭୃତିଙ୍କୁ ବିଶ୍ୱାସକୁ ନନେଇ କେବଳ ରାଜଗୁରୁଙ୍କ ପରାମର୍ଶରେ ପରିଚାଳିତହେଲେ । 'ନବୀନ ବୟସୀ ଯେ ରାଜ୍ୟର ଜଞ୍ଜାଳ - ଆପଣେ ନ ବୁଝି ପରେ ବୁଝାନ୍ତି ମହିପାଳ, ଏକା ଆଜ୍ଞା କରନ୍ତି ଗୋସାଇଁ ଜୟମୁନି - ରାଜ୍ୟ ଭଲମନ୍ଦ ବୁଝନ୍ତି ଲାଭହାନୀ ।' ଏକ ସମୟରେ ଇଂରେଜମାନଙ୍କର ଓଡ଼ିଶା ଅଧିକାରକୁ ମୁକୁନ୍ଦଦେବ ପୁରୀର ବ୍ରାହ୍ମଣପଣ୍ଡିତମାନଙ୍କ ପରାମର୍ଶକ୍ରମେ ସର୍ତ୍ତମୂଳକ

ସମର୍ଥନ ଦେଇଦେଲେ। ତା ପରେ ପୁଣି ଇଂରେଜମାନେ ସର୍ତ୍ତ ଖିଲାପ କରିବାରୁ ଜୟୀ ରାଜଗୁରୁଙ୍କୁ ଧରି ଇଂରେଜଙ୍କ ବିରୋଧରେ ବିଦ୍ରୋହ ଓ ଯୁଦ୍ଧ କରିବାକୁ ବାଧ‌ହେଲେ। ସେ ଯୁଦ୍ଧରେ ଦେୱାନ ହରିହର ଭ୍ରମରବର ରାଜଗୁରୁ ଜୟକୃଷ୍ଣ ମହାପାତ୍ରଙ୍କ ସହିତ ଇଂରେଜମାନଙ୍କ ଆକ୍ରମଣକୁ ଡେଲାଙ୍ଗଠାରେ ପ୍ରତିହତ କରିଥିଲେ। - 'ସମରେ ହରିହର ଭ୍ରମରବର ସଜ - ପୂର୍ବ ଦିଗେ ଉଗ୍ର ଦୃଷ୍ଟି କଲା ଗ୍ରହରାଜ, ଅତି ଗର୍ବରେ ଯେ ବାହାର ରାଜଗୁରୁ- ଡରେ ବାସୁକି ଯେ ନୁଆଇଁଲେ ମେରୁ, x x x ରାଜଗୁରୁ ଦେୱାନ ଯେ ଥିଲେ ଯେଉଁ ଘରେ, ଭେଦୁଆ ଦେଖାଇଦେଲେ କ ସେଠାରେ x x x ଦିଆନ ଜୟଦେବ ଦୁଇ ଜଣ ଥାଇ - ମାର ମାର ବୋଲିଣ ଡାକନ୍ତି ତୁହାଇ x x x ସୁଆର ପଦାନ୍ତି ଘେନି ଜୟଦେବ ହରିହର - ବାଜି ଆରୋହିଲେ ଯେ ଧରିଣ ସର୍ବବୀର, ଯୋଜନ ଆକୃତିରେ ସୈନ୍ୟ ଦେଲେ ବୁଣି ପଳାଇଲେ ସାହେବ ସଜୀବ ଥାନେ ଘେନି।' x x x

ତା'ପରେ ଇଂରେଜମାନେ ତିନିଦିଗରୁ ଖୋର୍ଦ୍ଧାଗଡ଼ ଆକ୍ରମଣ କରି ଖୋର୍ଦ୍ଧା ଅଧିକାର କରିନେବାରୁ ମୁକୁନ୍ଦଦେବ ସଦଳବଳ ପଳାଇଯାଇ ରାମେଶ୍ୱରଗଡ଼ ଜଙ୍ଗଲରେ ଆତ୍ମଗୋପନକଲେ ଏବଂ ଇଂରେଜଙ୍କ ସହିତ ସନ୍ଧି କରିବାକୁ ପିଣ୍ଡିକି ହରିଚନ୍ଦନଙ୍କୁ ପଠାଇଲେ, କିନ୍ତୁ କ୍ରୋଧାନ୍ୱିତ ଫିରିଙ୍ଗି ସାହେବ ପିଣ୍ଡିକି ହରିଚନ୍ଦନଙ୍କୁ କହିଲେ, - ରାଜା, ମନ୍ତ୍ରୀ, ସେନାପତି, ରାଜଗୁରୁ କେହି ନ ଆସି ତୁ କିଏ କାହିଁକି ଆସିଛୁ। ଏତେବେଳକୁ ମୁକୁନ୍ଦଦେବଙ୍କ ଚେତନା ଆସିଲା ଏବଂ ଦେୱାନ ହରିହର ହିଁ ଫିରିଙ୍ଗି ସହିତ ସନ୍ଧି ଆଲୋଚନା କରିବାକୁ ସମର୍ଥ ବୋଲି ଅନୁଭବକରି - 'ଆଜ୍ଞା କଲେ ଗଜପତି ଦିୱାନ ସାହେବଙ୍କୁ - ତୁମେ ଯାଅ ଏବେ ଦାନେବ ସଭାକୁ, ଆପେ ନ ଗଲେ ଯେ, ନ ରହିବ ରାଜ୍ୟ- ଯାଉଛି ବୋଲି ଭ୍ରମରବର ହେଲେ ସଜ x x x ପ୍ରବେଶ ହେଲେ ଯାଇ ବାରୁଣାବନ୍ତ ପୁରେ - ଲୋକେ ଜାହିର କଲେ ସାହେବ ହଜୁରେ, ପୃଥିବୀର ଧନୀ ଅଇଲେ ଦିୱାନ ମୁକୁଳା ମଉଗଜ ଏ ରାଜାର ସମ୍ମାନ, x x x ଶୁଣିଣ ଜର୍ଣ୍ଣେଲ ସାହେବ ଫୁଲଚରି, ସାହେବମାନେ ଛନ୍ତି ନୟନ ନିହାରୀ, ଏମନ୍ତ ସମୟେ ହରିହର ଭ୍ରମରବର - ତୁରଙ୍ଗରୁ ଓହ୍ଲାଇଲେ ଦାନେବ ଦରବାର, x x x ନାଗ ଇନ୍ଦ୍ର ଆଗେ କି ସିଂହ ହେଲେ ଛିଡ଼ା - ବେଗେ ବସିବାକୁ ଦେଲେ କୁରୁଚି ପିଢ଼ା, ଦାନେବ ପରିମୁଖେ ବସିଲେକ ଜହୁଁ, ସକଳ ସମାଚାର ପୁଛିଲେକ ତହୁଁ, ତୁମେ ପରା ନୃପତିର ଅଟ ହାଦେ ମନ୍ତ୍ରୀ - ତୁମେ ଥାଉଁ ଥାଉଁ ଯେ ହୋଇଲା ଏତେ ରୀତି, କୁମାର ବୟସ ରାଜା ଛନକା ଅଟେ ମନ - ପ୍ରୌଢ଼ା ପାତ୍ରମାନେ ତୁମେ ଥାଅ ସନ୍ନିଧାନ।' x x x

ଖୋର୍ଦ୍ଧାଗଡ଼ ବରୁଣେଇପାହାଡ଼ ତଳେ ଥିବାରୁ କବି ଖୋର୍ଦ୍ଧାକୁ ବାରୁଣାବନ୍ତ ଏବଂ ଇଂରାଜୀ ନାମ କର୍ଣ୍ଣେଲ୍ ଓ ଫ୍ଲେଚରଙ୍କୁ ଜର୍ଣ୍ଣେଲ ଓ ଫୁଲଚରି ଲେଖିଛନ୍ତି।

ଉପରୋକ୍ତ ପଙ୍‌କ୍ତିମାନଙ୍କରୁ ଏହା ଅନୁମିତ ହୁଏ ଯେ ଦେୱାନ ହରିହର ଭ୍ରମରବର କେବଳ ଜଣେ ସୁଦକ୍ଷ ମନ୍ତ୍ରୀ ନ ଥିଲେ, ସେ ଥିଲେ ଜଣେ ଜ୍ଞାନୀ, ମାନୀ, ଧନୀ ଓ ପ୍ରଭାବଶାଳୀ କୂଟନୀତିଜ୍ଞ । ତାଙ୍କପ୍ରତି ଇଂରେଜମାନଙ୍କର ଯଥେଷ୍ଟ ଖାତିରଥିଲା । କିନ୍ତୁ ଦେୱାନ ହରିହର ଡେଲାଙ୍ଗଠାରେ ରାଜଗୁରୁଙ୍କ ସହିତ ମିଶି ଇଂରେଜଙ୍କ ବିରୋଧରେ ଯୁଦ୍ଧକରିଥିବା ମନେପଡ଼ିଯିବା ମାତ୍ରେ ସାହେବ କ୍ରୋଧାନ୍ୱିତ ହୋଇଉଠିବାରୁ ସେଠାରେ ଉପସ୍ଥିତ ଥିବା ମହାଶୟେ (ମହାଶୟ ସାଙ୍ଗିଆଧାରୀ ଜଣେ ସମ୍ଭ୍ରାନ୍ତ ବ୍ୟକ୍ତି) ଦେୱାନଙ୍କ ପ୍ରତି ଅସମ୍ମାନ ପ୍ରଦର୍ଶନ ନ କରିବାକୁ ସାହେବଙ୍କୁ କହିଲେ, 'ମହାଶୟେ ବୁଝାଇ କହିଲେ ଅପାର - ଅଦଣ୍ଡପାତ୍ର ଏ ଯେ ଅଟଇ ହରିହର, ଯେବଣ ଦିନେ ଏହାକୁ ବରଷ ବତିଶ - ତାପଙ୍ଗରେ ଯୁଦ୍ଧକଲେ ଅଠର ମାସ, ଚେମାଜୀ ସହିତେ ଚାରି ଜମାଦାର - ଅସ୍ଥି ମାଂସ କୁଢ଼ କୁଢ଼ କଲେ ଗଡ଼ଦ୍ୱାର, ସାମାନ୍ୟ ନୁହଁଇ ଏ ଅଟଇ ବଡ଼ ବୀର- ଦସଇହୁ ମୁଖେ ଦେଇ ଭାଜିଲେ ଚାରିଜମାଦାର, ଶୁଣିଣ ଦାନେବ ମନରେ ଶଙ୍କାକଲା - ଓଗାଳବନ୍ଦୀ କରି ଯତ୍ନେ ରଖାଇଲା । x x x

କେବଳ ଇଂରେଜମାନେ ନୁହନ୍ତି, ମରହଟ୍ଟା ଓ ମୋଗଲ ଶାସକମାନେ ମଧ୍ୟ ଦେୱାନ ହରିହରଙ୍କୁ ଖାତିରକରୁଥିଲେ । 'ଦିଲ୍ଲୀନଗରେ ଯେ ପଡ଼ଇ ଯାର ନାମ' x x x ଯାର ନାମେ ଚମକ ପଡ଼ଇ କଟକେରେ x x x ଯାର ନାମେ ପାଛା ଯେ ପଡ଼ନ୍ତି ନାଗପୁରେ,'' ଇତ୍ୟାଦି ପଙ୍କ୍ତିରୁ ଏହା ପ୍ରମାଣିତ ହୁଏ । ଦେୱାନ ହରିହରଙ୍କ ବୀରତ୍ୱ ବର୍ଣ୍ଣନା କରିବାକୁ ଯାଇ କବି ତାଙ୍କର ବତିଶ ବର୍ଷ ବୟସରେ ମରହଟ୍ଟାମାନଙ୍କ ସହ ତାପଙ୍ଗଠାରେ ଅଠରମାସକାଳ ଯୁଦ୍ଧର ଉଦାହରଣ ଦେଇଛନ୍ତି । କିନ୍ତୁ ୧୮୦୪ ବେଳକୁ ଦେୱାନ ହରିହରଙ୍କୁ କେତେ ବୟସ ହୋଇଥିଲା ସେ ସମ୍ପର୍କରେ କିଛି ସୂଚନା ଦେଇନଥିଲେ ହେଁ ସେ ଜଣେ 'ପ୍ରୌଢ଼ାପାତ୍ର' ବୋଲି ଇଂରେଜଙ୍କ ମୁହଁରେ କୁହାଇଛନ୍ତି । ରାଜାମାନେ ଯେପରି ପୁରୁଷାନୁକ୍ରମେ ରାଜଗାଦିରେ ବସନ୍ତି ଖୋର୍ଦ୍ଧା ରାଜାଙ୍କର ମନ୍ତ୍ରୀ (ଦେୱାନ) ଓ ସେନାପତି (ବକ୍ସି) ସେହିପରି ପୁରୁଷାନୁକ୍ରମେ ନିଜ ନିଜ ପଦବୀରେ ଅଧିଷ୍ଠିତ ହେଉଥିଲେ । ସେହି ସୂତ୍ରରେ ଦେୱାନ ହରିହର ଭ୍ରମରବରଙ୍କ ପରେ ତାଙ୍କ ପୁତ୍ର କୃଷ୍ଣଚନ୍ଦ୍ର ଭ୍ରମରବର ଖୋର୍ଦ୍ଧାର ଦେୱାନ ହୋଇଥିବା ସ୍ୱାଭାବିକ ।

## ଫିରିଙ୍ଗି ସହିତ ରାଜଗୁରୁଙ୍କ ସଂଘର୍ଷ

୧୮୦୩ରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ପର୍ଯ୍ୟନ୍ତ ଓଡ଼ିଶା ମରହଟ୍ଟାମାନଙ୍କ ଶାସନାଧୀନ ଥିଲା । ତେଣୁ 'ଫିରିଙ୍ଗି କଳି ଭାରତ'ରେ ବର୍ଣ୍ଣିତ ରଣପୁର ଓ ବାଙ୍କିରାଜାଙ୍କ ସହିତ ଖୋର୍ଦ୍ଧା ରାଜା ମୁକୁନ୍ଦଦେବଙ୍କ ସଂଘର୍ଷକୁ ଆଭ୍ୟନ୍ତରୀଣ ବିବାଦ କୁହାଯାଇପାରେ ଏବଂ ସେହି କାରଣରୁ ସେଥିପ୍ରତି ବିଶେଷ କିଛି ଐତିହାସିକ ଗୁରୁତ୍ୱ

ଆରୋପ କରାଯାଇ ନ ପାରେ । କିନ୍ତୁ କବି ମଧୁସୂଦନ ବିପ୍ର 'ଫିରିଙ୍ଗି କଳି ଭାରତ'ରେ ଇଂରେଜଙ୍କ ଓଡ଼ିଶା ଅଧିକାର ଓ ତା'ପରେ ପରେ ଜୟୀ ରାଜଗୁରୁ ଓ ମୁକୁନ୍ଦଦେବଙ୍କ ସହିତ ସଂଘର୍ଷର ଯେଉଁ ବିବରଣୀ ପ୍ରଦାନ କରିଛନ୍ତି, ଐତିହାସିକ ଦୃଷ୍ଟିରୁ ତାହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଦୀର୍ଘ ୭୦ ପୃଷ୍ଠା ବ୍ୟାପୀ ୮ମ, ୯ମ ଓ ୧୦ମ ତିନୋଟି ଅଧ୍ୟାୟର ୧୦୪୪ ପଦରେ ଇଂରେଜମାନଙ୍କର ଓଡ଼ିଶା ଅଧିକାର ସମୟରେ ମରହଟ୍ଟା ଓ ଖୋର୍ଦ୍ଧା ସୈନ୍ୟବାହିନୀ ସହିତ ଯୁଦ୍ଧର ବିସ୍ତୃତ ବର୍ଣ୍ଣନା କରାଯାଇଛି । ଏହି ଯୁଦ୍ଧ ବର୍ଣ୍ଣନା ବେଳେ କବି ଓଡ଼ିଶାରେ ମରହଟ୍ଟାମାନଙ୍କୁ ବିଦେଶୀ ଓ ଇଂରେଜମାନଙ୍କୁ 'ଦାନବ' ଆଖ୍ୟା ଦେଇଛନ୍ତି ଏବଂ ଫ୍ଲେଚର୍, ମେଲ୍‌ଭିଲ୍ ହାର୍କୋଟ, ହଣ୍ଟର, କାପ୍ଟାନ୍, କର୍ଣ୍ଣେଲ୍, ମେଜର୍ ଭଳି ଇଂରାଜୀ ନାମ ଓ ଶବ୍ଦଗୁଡ଼ିକୁ ଯଥାକ୍ରମେ ଫୁଲ୍‌ଚରି, ମଲିମିଲି, ହାରକଟ, ହାଣ୍ଟୋର, କପିତାନ, ଜର୍ଣ୍ଣେଲ୍ (ଗର୍ନଲ) ଓ ମେହେଜର ବୋଲି ଲେଖିଛନ୍ତି । ଏହା ସ୍ୱାଭାବିକ ଯେ ଏହି ତିନିଗୋଟି ଅଧ୍ୟାୟର ବିବରଣୀ ମଧ୍ୟରେ କେତେକ ଅତିରଞ୍ଜିତ ବିବରଣୀ ନିଶ୍ଚୟ ଅଛି; କିନ୍ତୁ ମୋଟାମୋଟିଭାବେ ସେହିସବୁ ବିବରଣୀ ଦେଶକାଳପାତ୍ର ସହିତ ଏପରି ମେଳ ଖାଉଛି ଯେ ତାହା ପ୍ରତ୍ୟକ୍ଷଦର୍ଶୀ ବିବରଣୀ ପରି ମନେହେଉଛି, ଯଦିଓ ଏହା କବିଙ୍କର ପ୍ରତ୍ୟକ୍ଷଦର୍ଶୀ ବିବରଣୀ ନୁହେଁ । କିନ୍ତୁ କବି ସମସାମୟିକ ହୋଇଥିବାରୁ ନିଜ ଅନୁଭୂତିରେ ଯାହା ଆଣିଛନ୍ତି ଅଥବା ଲୋକମୁଖରୁ ବା ଅନ୍ୟ କୌଣସି ସୂତ୍ରରୁ ଯାହା ଶୁଣିଛନ୍ତି, ତାକୁ ଆଧାରକରି ଘଟଣାଗୁଡ଼ିକ ବର୍ଣ୍ଣନାକରିଛନ୍ତି ବୋଲି ବିଶ୍ୱାସ । ସେ ଦୃଷ୍ଟିରୁ ତହିଁର ସତ୍ୟାସତ୍ୟ ଅବଶ୍ୟ ବିଚାରଯୋଗ୍ୟ । କବିଙ୍କ ବର୍ଣ୍ଣନାମତେ ଘଟଣାଗୁଡ଼ିକର ସଂକ୍ଷିପ୍ତ ବିବରଣୀ ଏହିପରି-

## ହାରକୋର୍ଟଙ୍କ ଅନୁରୋଧକୁ ବକ୍ସିଙ୍କ ପ୍ରତ୍ୟାଖ୍ୟାନ

ଇଂରେଜମାନେ ନାଗପୁରରେ ମରହଟ୍ଟାମାନଙ୍କୁ ଜିଣିବାପରେ ମରହଟ୍ଟାମାନଙ୍କ ଅଧୀନରେ ଥିବା କଟକ ଅଧିକାର କରିବାକୁ ଅଗ୍ରସରହେଲେ । କ୍ୟାପ୍‌ଟେନ୍ ମେଲ୍‌ଭିଲ୍ ଓ କର୍ଣ୍ଣେଲ୍ ହାର୍କୋଟ ବହୁ ସଶସ୍ତ୍ର ସୈନ୍ୟଙ୍କ ସହ ଅନେକ ଶଗଡ଼ରେ ରସଦ ଓ ଯୁଦ୍ଧ ସରଞ୍ଜାମ ଲଦି ଦକ୍ଷିଣ ଦିଗରୁ ଆସି ରମ୍ଭାଠାରେ ଜଣେ ଡଗରଦ୍ୱାରା ଖୋର୍ଦ୍ଧାରାଜାଙ୍କ ସେନାପତି ବକ୍ସିଙ୍କ ନିକଟକୁ ଏକ ଚିଠି ଲେଖି ବାଣପୁର-ଖୋର୍ଦ୍ଧା ବାଟ ଦେଇ କଟକ ଯିବାକୁ ଅନୁମତି ଲୋଡ଼ିଲେ । କିନ୍ତୁ ବକ୍ସି ସେ ରାସ୍ତାରେ ଛାଡ଼ିବାକୁ ରାଜାଜ୍ଞା ନାହିଁ ବୋଲି ଲେଖି ରଘୁ ପରମଗୁରୁ ନାମକ ଜଣେ ଓକିଲ ହାତରେ ଉତ୍ତର ପଠାଇଲେ । ମେଲ୍‌ଭିଲ୍ ପରମଗୁରୁଙ୍କୁ ଶାଲ୍ ଓ ମଠାଯୋଡ ଇତ୍ୟାଦି ଦେଇ ତାଙ୍କଠାରୁ ଖୋର୍ଦ୍ଧା ରାଜାଙ୍କ ସମ୍ପର୍କରେ ସମସ୍ତ ତଥ୍ୟ ସଂଗ୍ରହ କରିବା ପରେ ଆଉ ଦୁଇଜଣ ଲୋକଙ୍କ ହାତରେ ବହୁ ଉପଢ଼ୌକନ ଦେଇ ମୁକୁନ୍ଦଦେବଙ୍କ ପାଖକୁ ପଠାଇଲେ ଏବଂ ଦଳବଳ ସହ ସମୁଦ୍ର କୂଳେ କୂଳେ

ଅଗ୍ରସର ହୋଇ ଚିଲିକା ମୁହାଣ ପାରହୋଇଗଲେ । ଏହି ଖବର ପାଇ ବାଲାଜୀ, କନ୍ୟାର, କାହ୍ନୁଜୀ, ଅନନ୍ତାଜୀ ଓ ଶୁକଦେବ ଆଦି ମରହଟ୍ଟାମାନେ କଟକ ଲାଲବାଗରେ ଏକତ୍ର ବିଚାରକରି ଇଂରେଜମାନଙ୍କ ଗତିରୋଧପାଇଁ କାହ୍ନୁଜୀଙ୍କ ନେତୃତ୍ୱରେ ମୁକୁନ୍ଦପୁରକୁ ସୈନ୍ୟ ପଠାଇଲେ । କାହ୍ନୁଜୀ ରାଜା ମୁକୁନ୍ଦଦେବଙ୍କ ପାଖକୁ ଯାଇ ଇଂରେଜଙ୍କ ବିରୋଧରେ ସାହାଯ୍ୟ ଲୋଡ଼ିବାରୁ ମୁକୁନ୍ଦଦେବ ହଁ ଭରିଲେ; କିନ୍ତୁ କିଛି କଲେ ନାହିଁ । ଇଂରେଜମାନେ ଯାଇ ମଙ୍ଗଳପୁର ପୋଖରୀ ପାଖରେ ଡେରାପକାଇ ମରହଟ୍ଟାମାନଙ୍କୁ ଘଉଡ଼ି ସେଦିନ ବାଲିଅନ୍ତା ଯାଏ ଆଗେଇଗଲେ । ଏତିକିବେଳେ ଉତ୍ତର ଦିଗରୁ କଲିକତାଆଡୁ ମଧ ଫିରିଙ୍ଗି ସୈନ୍ୟ ମାଡ଼ିଆସିଲେ । ଦୁଇ ପଟରୁ ଫିରିଙ୍ଗିଙ୍କ ଆକ୍ରମଣହେତୁ ମରହଟ୍ଟାମାନେ କଟକ ଛାଡ଼ି ପଳାଇଗଲେ । କିନ୍ତୁ କଟକର ସୁବେଦାର ଜୟୀ ରାଜଗୁରୁଙ୍କୁ ମନାଇ ତାଙ୍କୁ ସାଙ୍ଗରେ ନେଇ ମୁକୁନ୍ଦଦେବଙ୍କୁ ଭେଟିଲେ । ଜୟୀ ରାଜଗୁରୁ କହିଲେ "ଆମେ ମରହଟ୍ଟାଙ୍କ ସଙ୍ଗେ ମିଶି ଇଂରେଜଙ୍କୁ ତଡ଼ିବା ।" ମରହଟ୍ଟା ସୁବେଦାର ରାଜଗୁରୁଙ୍କୁ ଅନେକ ଟଙ୍କା ଲାଞ୍ଚଦେଲେ । କଟକ ବାରବାଟୀ ଦୁର୍ଗରେ ଦୀର୍ଘ ଏଗାର ବର୍ଷକାଳ ବନ୍ଦି ଜୀବନ କଟାଉଥିବା ଜଣେ ଦୁର୍ଦ୍ଧର୍ଷ ଅପରାଧୀକୁ ମୁକୁଳାଇଦିଆଯାଇ ଫିରିଙ୍ଗିମାନଙ୍କ ବାରବାଟୀ ଦୁର୍ଗ ପ୍ରବେଶ ରୋକିବାପାଇଁ ତାଙ୍କୁ କିଲ୍ଲାଦାର କରିଦିଆଗଲା । କିନ୍ତୁ ଇଂରେଜମାନେ ତୋପ ଫୁଟାଇ ବାରବାଟୀ ଦୁର୍ଗଦ୍ୱାର ଭାଙ୍ଗି ଅଧିକାର କରିନେଲେ । ଏ ସଂଘର୍ଷରେ ୨୭୨ ଜଣ ପ୍ରାଣହରାଇଲେ ।

ଏହାପରେ ମେଲ୍‌ଭିଲ ସାହେବ ଜଣେ ମୁନ୍‌ସୀ ହାତରେ ମୁକୁନ୍ଦଦେବଙ୍କ ପାଖକୁ ଚିଠି ପଠାଇ ସାକ୍ଷାତ ଆଲୋଚନାପାଇଁ ପ୍ରସ୍ତାବଦେଲେ । କିନ୍ତୁ ମୁକୁନ୍ଦଦେବ କହିଲେ ଯେ ସାହେବଙ୍କ ସଙ୍ଗେ ଆଲୋଚନାପାଇଁ ରାଜଗୁରୁ ଯିବେ ।

ଏହି ସମୟରେ, ମୁକୁନ୍ଦଦେବଙ୍କ ୮ ଅଙ୍କ ଶେଷରେ ୪ଦିନଠାରେ* ତାଙ୍କର ଏକ ପୁତ୍ର ଜାତହେଲା । ମୁକୁନ୍ଦଦେବଙ୍କ ଆଦେଶମତେ ଜୟୀ ରାଜଗୁରୁ କେତେକ ସୈନ୍ୟବଳ ଧରି କଟକ ଯାଇ ସାହେବଙ୍କୁ ଦେଖାକଲେ । ସାହେବ ଦୁଇଟି ପ୍ରଗଣା ଫେରାଇଦେବାକୁ କହିବାରୁ ଜୟୀ ରାଜଗୁରୁ ଚାରିଗୋଟି ପ୍ରଗଣାପାଇଁ ଜିଦ୍‌ଧରି ଅଡ଼ିବସିଲେ ଏବଂ ଆଲୋଚନାରେ କୌଣସି ସିଦ୍ଧାନ୍ତ ହେବା ପୂର୍ବରୁ କଟକ ଛାଡ଼ି ଚାଲିଆସି ଫିରିଙ୍ଗି ସହିତ ଯୁଦ୍ଧକରି ସେମାନଙ୍କୁ ତଡ଼ିଦେବାପାଇଁ ମୁକୁନ୍ଦଦେବଙ୍କୁ ପରାମର୍ଶଦେଲେ । ତା'ପରେ ରାଜଗୁରୁ ଫିରିଙ୍ଗିଙ୍କ ସହିତ ଯୁଦ୍ଧକରିବା ଉଦ୍ଦେଶ୍ୟରେ ଜଣେ ମରହଟ୍ଟା ଯୋଦ୍ଧାଙ୍କ ନାମରେ ଚିଟାଉ (ଆଦେଶନାମା) ବାଣ୍ଟି ନିରୀହ ଓ ଗରିବ ପ୍ରଜାମାନଙ୍କଠାରୁ ଟଙ୍କା ଅସୁଲକଲେ । (ଏକା ବିଦେଶୀ ଯେ ଯୋଦ୍ଧାରେ ଚିଟି ବାଣ୍ଟି - କଲେ ଟଙ୍କା ଅସୁଲ ଗରିବ ତଣ୍ଟି କାଟି - ୯/୨୬ ମନକୁ ଶ୍ରୀ ହୁକୁମମାନ କଟାଇଲେ - ଅରକ୍ଷିତ ଲୋକଙ୍କୁ ନେଇ ପିଟାଇଲେ ୯/୨୭) ରାଜଗୁରୁ ମୁକୁନ୍ଦଦେବଙ୍କ ନାମରେ ମନକୁମନ ହୁକୁମମାନ ଲେଖି ନିରୀହ

---

** ୧୨୧୨ସାଲ (୧୮୦୪ ମସିହା) ଭାଦ୍ରବ ମାସ ପୂର୍ଣ୍ଣମୀ*

ଲୋକମାନଙ୍କୁ ଯୁଦ୍ଧରେ ଯୋଗଦେବାକୁ ବାଧକଲେ । ବିଛା (ମାର୍ଗଶିର) ମାସ କୃଷ୍ଣପକ୍ଷ ଦ୍ୱିତୀୟା ଦିନ ଖୋର୍ଦ୍ଧାରୁ ଜୟୀ ରାଜଗୁରୁ ଓ ଦେୱାନ ହରିହର ସଙ୍ଗରେ ବହୁ ସୈନ୍ୟ ନେଇ ପୂର୍ବଦିଗକୁ ଗଲେ ଏବଂ ଡେଲାଙ୍ଗ କଚେରିରୁ ଇଂରେଜଙ୍କ ଲୋକମାନଙ୍କୁ ଘଉଡ଼ିଦେଇ ସେଠାରେ ଛାଉଣି ପକାଇ ରହିଲେ । ତା'ପରେ ପିପିଲିଠାରୁ କର୍ଣ୍ଣେଲ ସାହେବ ସୈନ୍ୟ ଧରି ଡେଲାଙ୍ଗ ଆସିଲେ ଓ ରାତିରେ ଡେଲାଙ୍ଗ ପାଖ ଲୁଣାନଦୀ ଆରପାଖେ ଲୁଚିରହି ରାତି ଦୁଇଘଡ଼ି ପରେ ରାଜଗୁରୁ ଓ ଦେୱାନଙ୍କ ସୈନ୍ୟଙ୍କ ଉପରେ ଚଢ଼ାଉକଲେ । ଦିନ ଦୁଇ ଘଡ଼ିଯାଏଁ ଯୁଦ୍ଧ ଲାଗିଲା ଓ ଯୁଦ୍ଧରେ ପ୍ରାୟ ପଚିଶ ଜଣ ପ୍ରାଣହରାଇଲେ । କିନ୍ତୁ ଇଂରେଜମାନେ ହାରି ପଳାଇଲେ । ପୁନର୍ବାର କଟକରୁ ହଣ୍ଟରସାହେବ ଆସି କର୍ଣ୍ଣେଲଙ୍କ ସହ ମିଶି ପିପିଲିଆଡୁ ଡେଲାଙ୍ଗକୁ ଅଗ୍ରସରହେଲେ । କାଳୁପଡ଼ାଠାରେ (ବିଶ୍ୱନାଥ ମୁଣ୍ଡିଆ ତଳେ) ଭୀଷଣ ଯୁଦ୍ଧ ଲାଗିଲା । ଏହି ଯୁଦ୍ଧରେ ମଧ ଇଂରେଜମାନେ ହାରିଗଲେ । ୧୦ ଜଣଙ୍କର ପ୍ରାଣହାନୀ ହୋଇଥିଲା ।

ଏହାପରେ ଇଂରେଜମାନେ ଖୋର୍ଦ୍ଧାଘାଟୀ (ଗଡ଼)କୁ ତିନି ଦିଗରୁ ଆକ୍ରମଣ କରିବାପାଇଁ ଯୋଜନାକଲେ । ଫ୍ଲେଚର ରଣପୁର ଓ ନୟାଗଡ଼ ଭେଦୁଆମାନଙ୍କ ସହାୟତାରେ ସୈନ୍ୟବଳ ଧରି ପଶ୍ଚିମ ପାଖରୁ ଆସି ତରତୁଆଠାରେ ପହଞ୍ଚିଗଲେ । ତେଣେ ଉତ୍ତରଦିଗରୁ ମେଲଭିଲ୍ ବାଙ୍କି ଡମପଡ଼ା ଜମିଦାରଙ୍କ ସହାୟତାରେ ତୁଳସୀପୁର ପାଖରୁ ଆସି ଟାଙ୍ଗିଆପଡ଼ାରେ ପହଞ୍ଚିଲେ । ମୁକୁନ୍ଦଦେବ ଚାର ମୁଖରୁ ଏ ଖବର ପାଇ ତରତୁଆକୁ ମସ୍ତଖାଁଙ୍କ ନେତୃତ୍ୱରେ ଟାଙ୍ଗିଆପଡ଼ାକୁ ରଙ୍ଗିହଜୁରୀ ଓ ମୁସାବ୍ ଖାଁଙ୍କ ନେତୃତ୍ୱରେ ସୈନ୍ୟ ପଠାଇଲେ ଏବଂ ରାଜଗୁରୁଙ୍କ ଯୋଗୁଁ ଏ ବିପଦରେ ପଡ଼ିଲେ ବୋଲି ଅନୁତାପକରି ତାଙ୍କୁ ଶୀଘ୍ର ଡେଲାଙ୍ଗରୁ ଖୋର୍ଦ୍ଧାକୁ ଫେରିଆସିବାକୁ ନିର୍ଦ୍ଦେଶ ପଠାଇଲେ । (''ଏକା ରାଜଗୁରୁ ଏତେ ଦୂରକଲା - ଏଡ଼େ ଅଧିକାର କିଞ୍ଚିତେ ବୁଡ଼ାଇଲା - ୯ / ୧୫୯, ଡେଲାଙ୍ଗକୁ ନୃପତି ପେଷିଲେ ଦେଶାଉର ୯/୧୬୮ ରାଜଗୁରୁଙ୍କୁ ଘେନି ଆସିବୁ ତୁରିତେ, ଭଲା ପୃଥିବୀ ଭୋଗ କରାଇଲେ ମୋତେ, ୧୬୯) ।

ଏତିକିବେଳେ ଗଙ୍ଗପଡ଼ାଗଡ଼ରୁ ଖବର ଆସିଲା ଯେ, ପୂର୍ବପାଖରୁ କର୍ଣ୍ଣେଲ, କ୍ୟାପ୍ଟେନ୍, ହଣ୍ଟର, ମେଜର୍ ପ୍ରଭୃତି ଇଂରେଜମାନେ ସୈନ୍ୟବଳ ସହ ଆସି ରଥିପୁରରେ ପହଞ୍ଚିଗଲେଣି । ମୁକୁନ୍ଦଦେବଙ୍କ ଆଦେଶରେ ବୈଷ୍ଣବ ଭାରତୀ ନାମରେ ଜଣେ ମରହଟ୍ଟା ଯୋଦ୍ଧା ଗଙ୍ଗପଡ଼ାକୁ ସୈନ୍ୟ ସହ ଗଲେ ଏବଂ ସେଠାରେ ଇଂରେଜ ସୈନ୍ୟ ସହ ତାଙ୍କର ଭୀଷଣ ଯୁଦ୍ଧ ହେଲା । ତରତୁଆଠାରେ ଫ୍ଲେଚର ମସ୍ତଖାଁକୁ ଏବଂ ଟାଙ୍ଗିଆପଡ଼ାଠାରେ ମେଲଭିଲ୍ ନୁସାବ୍ ଖାଁଙ୍କୁ ପରାସ୍ତକରି ଗୁରୁଜଙ୍ଗ ଟାଙ୍ଗିଯାଏ ଅଗ୍ରସରହେଲେ । କିନ୍ତୁ ଗୋଜିଗୋହିରି (ଗଙ୍ଗପଡ଼ା)ଠାରେ ଇଂରେଜ ସୈନ୍ୟଙ୍କୁ ଅସ୍ତବ୍ୟସ୍ତ କରି ବୈଷ୍ଣବ ଭାରତୀ

ଦୁଇ ଦିନ କାଳ ଅଟକାଇ ରଖିବାପରେ ଗୁରୁଙ୍ଗଙ୍ଗଠାରୁ ଯାଇ ମେଲଭିଲ୍ ଓ କର୍ଣ୍ଣେଲ୍ ଗଙ୍ଗପଡ଼ା ଆକ୍ରମଣକଲେ । ଏହିପରିଭାବେ ଦୁଇଆଡୁ ଇଂରେଜମାନଙ୍କ ଷଣ୍ଢଆସୀ ଆକ୍ରମଣକୁ ଆଉ ପ୍ରତିହତ କରିନପାରି ବୈଷ୍ଣବ ଭାରତୀ ଗଙ୍ଗପଡ଼ାରୁ ହଟି ଆସିଲେ ।

ଏହାପରେ ଇଂରେଜ ସୈନ୍ୟ ଖୋର୍ଦ୍ଧାଗଡ଼କୁ ତିନିଆଡୁ ଅବରୋଧ କରିଦେବାରୁ ମୁକୁନ୍ଦଦେବ ତାଙ୍କ ଶିଶୁପୁତ୍ର (ଜେନାମଣି)ଙ୍କ ସହିତ ରାଣୀଙ୍କୁ ସବାରିରେ 'ମଦାଅଗ୍ନି' ମଲାଗୁଣି ନଦୀକୂଳ ଜଙ୍ଗଲ (ରାମେଶ୍ୱର)କୁ ପଠାଇଦେଲେ । ଏତିକିବେଳେ ଇଂରେଜଙ୍କ ପକ୍ଷରୁ ଆସିଥିବା ସନ୍ଧି ପ୍ରସ୍ତାବକୁ ଅଗ୍ରାହ୍ୟ କରି ମୁକୁନ୍ଦଦେବ ଗଡ଼ରକ୍ଷା କରିବାକୁ ଦେଓ୍ୱାନ, ବକ୍ସି ଓ ରାଜଗୁରୁ ପ୍ରଭୃତିଙ୍କୁ ନିର୍ଦ୍ଦେଶଦେଲେ । ସେତେବେଳକୁ ଧନୁ (ପୌଷ) ମାସ ହୋଇଥିଲା । ଏବଂ ସକାଳୁ ଏପରି ଶୀତ ହେଉଥିଲା ଯେ ହାତ ଥରୁଥିଲା । କ୍ରମାଗତଭାବେ ତିନି ଦିନ ତିନି ରାତି ଖୋର୍ଦ୍ଧାଗଡ଼ ସହିତ ଯୁଦ୍ଧକରି ମଧ ଇଂରେଜମାନେ ଗଡ଼ଦ୍ୱାରରେ ପହଞ୍ଚିପାରିଲେ ନାହିଁ ଏବଂ କୌଣସି ସୂତ୍ରରୁ ଠାକୁରାଣୀ (ବରୁଣେଇ) ମୁକୁନ୍ଦଦେବଙ୍କୁ ଯୁଦ୍ଧରେ ସାହାଯ୍ୟ କରୁଥିବା ଜାଣିପାରି ଫ୍ଲେଚର ସାହେବ ଏକ ଗୋରୁ ହାଣି ବନ୍ଧୁକ ଓ ତୋପ ମୁହଁରେ ସେ ରକ୍ତ ବୋଳିଦେବାରୁ ଠାକୁରାଣୀ ଆଡ଼ହୋଇଗଲେ ଏବଂ ଇଂରେଜମାନେ ରଜକଦୁଠ (ସାମନ୍ତରାପୁର) ଆଡୁ ଆକ୍ରମଣ କରି ତୋପ ଫୁଟାଇ ଗଡ଼ଦ୍ୱାର ଭାଙ୍ଗିଦେଲେ । ତେଣୁ ମୁକୁନ୍ଦଦେବ ଗଡ଼ଛାଡ଼ି ପଳାଇଯାଇ ରାମେଶ୍ୱରରେ ଆଶ୍ରୟ ନେଲେ ।

## ତାପଙ୍ଗ ଯୁଦ୍ଧ

ମୋଗଲ ସମ୍ରାଟ ଆକବରଙ୍କ ରାଜତ୍ୱ କାଳରେ ଖୋର୍ଦ୍ଧା ଭୋଇବଂଶର ପ୍ରଥମ ରାଜା ଗଜପତି ରାମଚନ୍ଦ୍ରଦେବଙ୍କଦ୍ୱାରା ପ୍ରତିଷ୍ଠିତ ଖୋର୍ଦ୍ଧା ରାଜ୍ୟର ୭୧ ଗଡ଼ ମଧ୍ୟରୁ ତାପଙ୍ଗଗଡ଼ ଅନ୍ୟତମ ଥିଲା । ଖୋର୍ଦ୍ଧାଠାରୁ ଦକ୍ଷିଣକୁ ମାତ୍ର ୧୦ କିଲୋମିଟର ଦୂରରେ ଏକ ଉଚ୍ଚ ପାହାଡ଼ତଳେ ଅବସ୍ଥିତ ଐତିହାସିକ ତାପଙ୍ଗଗଡ଼ର ଅନ୍ୟ ଏକ ନାମ 'ନିଜିଗଡ଼ତାପଙ୍ଗ' । ଏହାର ଦକ୍ଷିଣପୂର୍ବ ଦିଗରେ ୫ କିଲୋମିଟର ଦୂରରେ ଆଜକୁ ପ୍ରାୟ ଶହେ ବର୍ଷ ତଳେ ବେଙ୍ଗଲ ନାଗପୁର ରେଲଓ୍ୱେ କମ୍ପାନୀ ତାପଙ୍ଗଗଡ଼ର ଐତିହାସିକ ପ୍ରସିଦ୍ଧି ଦୃଷ୍ଟିରୁ, ନାରାୟଣଗଡ଼ (ନରଣଗଡ଼) ଠାରେ ରେଲଷ୍ଟେସନ୍‌ଟିଏ ବସାଇ ତାପଙ୍ଗ ନାମରେ ନାମିତ କରିଥିଲେ । ୫ ନମ୍ବର ଜାତୀୟ ରାଜପଥର ମାତ୍ର ଏକ କିଲୋମିଟର ପୂର୍ବକୁ ଖଣ୍ଡିଆଖାବରା ହୋଇ ଠିଆହୋଇଥିବା ତାପଙ୍ଗ ମୁଣ୍ଡିଆ ଦିନେ ତାପଙ୍ଗଗଡ଼ର ଉତ୍ତର ପାଖର ଦିଗବାରେଣୀ ଓ ପ୍ରାଚୀରତୁଲ୍ୟ ଥିଲା । ଷଷ୍ଠ ଦଶକର ପ୍ରାରମ୍ଭରେ ପାରାଦ୍ୱୀପ ବନ୍ଦର ନିର୍ମାଣପାଇଁ ଆବଶ୍ୟକ କଳା ମୁଗୁନିପଥରର ବୃହତ୍ ଖଣ୍ଡମାନ ସେହି ମୁଣ୍ଡିଆରୁ ଡିନାମାଇଟ୍‌ଦ୍ୱାରା ଭଙ୍ଗାହୋଇ ଯାଇଥିଲା । ତା'ପରେ କ୍ରମାଗତଭାବେ ରାସ୍ତା, ପୋଲ, କୋଠାବାଡ଼ି ଇତ୍ୟାଦି ନିର୍ମାଣପାଇଁ ଆବଶ୍ୟକ ହେଉଥିବା ଉତ୍କୃଷ୍ଟ କଳା ମୁଗୁନିପଥର ଗେଟି

(ଚିପସ୍)ର ଉତ୍ପାଦନ ଖଣିଭାବେ ଏବେ ସେହି ମୁଣ୍ଡିଆ ପ୍ରତିଦିନ ଡିନାମାଇଟ୍ ବିସ୍ଫୋରଣରେ ବହୁଧା ବିଦୀର୍ଣ୍ଣ ହୋଇ ମଧ୍ୟ ବ୍ୟବସାୟୀମାନଙ୍କର କୋଟି କୋଟି ଟଙ୍କାର ଲାଭପ୍ରଦ କାମଧେନୁଭାବେ ଠିଆହୋଇଛି । ସେହି ପାହାଡ଼ତଳେ ଚିରଦିନପାଇଁ ଅସ୍ତମିତ ହୋଇଯାଇଛି ଓଡ଼ିଶାର ଗୌରବରବି, ହଜିଯାଇଛି ଦୁର୍ଦ୍ଧର୍ଷ ବୀର ଓଡ଼ିଆର ଶେଷରଶ୍ମି । ସେହି ହଜିଲା ଗୌରବର ପାଉଁଶ ପୁଳାଏ ବୁକୁରେ ଧରି ପରିତ୍ୟକ୍ତ ଶ୍ମଶାନପରି ପଡ଼ିରହିଛି ଐତିହାସିକ ତାପଙ୍ଗଗଡ଼ର ଧ୍ୱଂସାବଶେଷ ।

'ଫିରିଙ୍ଗି କଳି ଭାରତ'ର କବି ମଧୁସୂଦନ ବିପ୍ରଙ୍କ ମତରେ, ଖୋର୍ଦ୍ଧାର ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କ ପିତା ଦିବ୍ୟସିଂହ ଦେବଙ୍କ ସମୟରେ ଯବନମାନେ ଖୋର୍ଦ୍ଧା ଆକ୍ରମଣ କରିଥିଲେ । ସେତେବେଳେ ତାପଙ୍ଗଗଡ଼ର ନାରାୟଣ ରାଉତରା ଓ ତାଙ୍କ ସାନ ଭାଇ ନରସିଂହ ରାଉତରା ଖୁବ୍ ପରାକ୍ରମଶାଳୀ ଯୋଦ୍ଧା ଥିଲେ । ଖୋର୍ଦ୍ଧା ରାଜାଙ୍କ ଆହ୍ୱାନକ୍ରମେ ସେ ଦୁଇଭାଇ ଯବନମାନଙ୍କ ସଙ୍ଗେ ଲଢ଼ି ସେମାନଙ୍କୁ ଘଉଡ଼ାଇଦେଇଥିଲେ । ସେଥିପାଇଁ ଖୋର୍ଦ୍ଧା ରାଜା, ନାରାୟଣ ରାଉତରାଙ୍କ ନାମରେ ନାରାୟଣଗଡ଼ ପ୍ରତିଷ୍ଠା କରିଥିଲେ (ଏ ବୃତ୍ତାନ୍ତ ମନଗଢ଼ା; ଉଭୟ ନରଣଗଡ଼ ଓ ତାପଙ୍ଗଗଡ଼ ବହୁପୂର୍ବରୁ ପ୍ରତିଷ୍ଠିତ ହୋଇ ଖୋର୍ଦ୍ଧା ରାଜ୍ୟର ପ୍ରାଚୀନଗଡ଼ ଭାବେ ସ୍ୱୀକୃତି ଲାଭକରିଥିଲା ଖୁରୁଧା ଇତିହାସ ପୃ୩୧) ('ନାରାୟଣ ରାଉତଙ୍କ ନାମ ଅନୁସାରେ, ନାରାୟଣଗଡ଼କୁ ସେ ବସାଇଲେ ଖରେ' ୧୨/୭୫) ତା'ପରେ ପୁଣି ଯବନମାନେ ମୁକୁନ୍ଦପୁରକୁ ଯାଇ ସେଠାରେ ବ୍ରାହ୍ମଣମାନଙ୍କ ଯଜ୍ଞଭାଗି ନାନା ଉପଦ୍ରବ କଲେ । ତେଣୁ ନରସିଂହ ରାଉତରା ସୈନ୍ୟବଳ ସହ ସେଠାକୁ ଯାଇ ଯବନମାନଙ୍କ ସହିତ ଘୋର ଯୁଦ୍ଧକଲେ ! ଏବଂ ସେମାନଙ୍କୁ ପରାସ୍ତ କରି ସେଠାରୁ ଘଉଡ଼ାଇଦେଲେ । ମୁକୁନ୍ଦପୁରଠାରେ ନରସିଂହ ରାଉତରାଙ୍କ ଯୁଦ୍ଧର 'ତାପ' (ପ୍ରଖରତା) ଦେଖି ଗଜପତି ଦିବ୍ୟସିଂହ ଦେବ 'ତାପଙ୍ଗ ଗଡ଼' ନିର୍ମାଣକଲେ । ('ତାଙ୍କ ଯୁଦ୍ଧ ତାପ ଶୁଣିଣ ନରେଶ୍ୱର, ଗଡ଼ତାପଙ୍ଗ ଦୁର୍ଗକୁ ରଚିଲେ ନିକର' ୧୨।୮୦ ।) ତାପଙ୍ଗଗଡ଼ର ସେଇ ନାରାୟଣ ରାଉତରା ଓ ନରସିଂହ ରାଉତରାଙ୍କ ଉତ୍ତରାଧିକାରୀ ଦଳବେହେରା ମାଧବଚନ୍ଦ୍ର ରାଉତରା ମଧ୍ୟ ଜଣେ ବିଚକ୍ଷଣ ଯୋଦ୍ଧା ଥିଲେ ।

ସେ ପୁଣି ଲେଖିଛନ୍ତି, ଫିରିଙ୍ଗିମାନେ କଟକ ଜୟକଲାପରେ ଖୋର୍ଦ୍ଧା ଆକ୍ରମଣ କରିବା ସମୟରେ ଖୋର୍ଦ୍ଧାର ରାଜା ମହା ଘୋର ସମର କଲେ ଏବଂ ବକ୍ସି ଜଗବନ୍ଧୁ ମଧ୍ୟ ଫିରିଙ୍ଗିଙ୍କ ସହିତ ଘୋର ଯୁଦ୍ଧକଲେ । ସେ ଯୁଦ୍ଧରେ ଫିରିଙ୍ଗିମାନେ ପୂର୍ବ, ପଶ୍ଚିମ ଓ ଉତ୍ତର ତିନି ଦିଗରୁ ଆକ୍ରମଣ କରି ଖୋର୍ଦ୍ଧାଗଡ଼କୁ ଅଧିକାରକଲେ । କିନ୍ତୁ ଦଳବେହେରା ମାଧବଚନ୍ଦ୍ରଙ୍କର ବୀରତ୍ୱଯୋଗୁଁ ଖୋର୍ଦ୍ଧାଗଡ଼ର ଦକ୍ଷିଣଦ୍ୱାର ସ୍ୱରୂପ ବିବେଚିତ ହେଉଥିବା ତାପଙ୍ଗଗଡ଼କୁ ଆସି ପାରିଲେ ନାହିଁ । ଖୋର୍ଦ୍ଧା ପାଇକବିଦ୍ରୋହରେ ବକ୍ସିଙ୍କ ପରାଜୟ ପରେ

ଫିରିଙ୍ଗିମାନେ ଆଉ ସବୁଗଡ଼ରୁ ଜଭରାଣ କର ଆଦାୟକଲେ, କିନ୍ତୁ ତାପଙ୍ଗଗଡ଼ ଦଳବେହେରା ଦଶ ବର୍ଷ ଯାଏ କର ଦେଲେ ନାହିଁ ।

୧୮୧୭ ଖୋର୍ଦ୍ଧା ପାଇକବିଦ୍ରୋହର ଦଶ ବର୍ଷ ପରେ ୧୨୩୪ ସାଲ (ଖ୍ରୀ. ୧୮୨୭)ର ବୃଷମାସ ୨ ଦିନ, ପଚାଶ ଜଣ ସୈନ୍ୟଙ୍କ ସହିତ ଜଣେ ମୁନ୍‌ସୀ ଘୋଡ଼ାରେ ଚଢ଼ି ତାପଙ୍ଗଗଡ଼କୁ କର ଆଦାୟ କରିବାପାଇଁ ଆସିଥିଲେ । ସେମାନେ ପ୍ରଥମେ ଚିନ୍ତାମଣି ରଣସିଂହଙ୍କ ଦ୍ୱାର ପାଖେ ପହଞ୍ଚି କର ଦେବାପାଇଁ ଡାକିଲେ । ସେତେବେଳେ ଚିନ୍ତାମଣି ଘରେ ନଥିଲେ । ଡାକଶୁଣି ଚିନ୍ତାମଣିଙ୍କ ସ୍ତ୍ରୀ ହାରାମଣି ଦ୍ୱାର ପାଖକୁ ଆସି ପଚାରିଲେ - ତୁମେମାନେ କିଏ ? କାହିଁକି ଡାକୁଛ ? ଜଣେ 'ପିଅନ' ଉତ୍ତରଦେଲା, ଆମେ ଇଂରେଜ ସରକାରଙ୍କର କର ଆଦାୟ କରିବାକୁ ଆସିଛୁ, ତୁମେ କର ଦେଇଦିଅ । ଏହା ଶୁଣି ହାରାମଣି କହିଲେ ଆମେ ଆମର ଦଳବେହେରାଙ୍କୁ କର ଦେଉଛୁ । ତମକୁ ଦେବୁ ନାହିଁ । ଏଇଥିରୁ କ୍ରମେ ବଚସା ଆରମ୍ଭ ହେବାରୁ ଏବଂ ସୈନ୍ୟମାନେ ହାରାମଣିଙ୍କ ପ୍ରତି ଅବମାନନା କରି କଟୂକ୍ତି ପ୍ରୟୋଗ କରିବାରୁ ବୀରାରମଣୀ ହାରାମଣି ଖଣ୍ଡାଧରି ଦୁଆର ମୁହଁରେ ଠିଆହୋଇ ଡାକଦେଲେ - ଆସ କିଏ ଆସୁଛ ଏ ଦୁଆରକୁ । ଗହଳ ଚହଳ ଶୁଣି ଦଳବେହେରା ମାଧବଚନ୍ଦ୍ର ଏବଂ ଦଳେଇ ଗୋବର୍ଦ୍ଧନ ବୈରୀଗଞ୍ଜନ ଓଗେର ତାଙ୍କର ସହଯୋଗୀମାନେ ଆସି ସେଠାରେ ପହଞ୍ଚିଲେ । ଫିରିଙ୍ଗି ସୈନ୍ୟମାନଙ୍କ ସହ ସଂଘର୍ଷରେ ଦୁଇ ଜଣ ଗୋରା ସୈନ୍ୟଙ୍କୁ ଗୁଳିମାରି ହତ୍ୟା କଲେ । ମୁନ୍‌ସୀ ସୈନ୍ୟମାନଙ୍କ ସହ ପଳାଇଯାଇ ଖୋର୍ଦ୍ଧାରେ ଏ ଖବର ଦେବାରୁ ଖୋର୍ଦ୍ଧା ଫିରିଙ୍ଗି ସାହେବ ସଙ୍ଗେ ସଙ୍ଗେ କଟକକୁ ଖବରଦେଲେ । କଟକରୁ ହାର୍‌କୋଟ୍ ଅଳ୍ପ କିଛି ସୈନ୍ୟ ଧରି ଆସି ଖୋର୍ଦ୍ଧାରେ ପହଞ୍ଚିଲେ ଏବଂ ୧୨୩୪ ସାଲ ବୃଷ କୋଡ଼ିଏ ଦିନ ତାପଙ୍ଗ ଦଳବେହେରାଙ୍କ ପାଖକୁ ଏକ ନିର୍ଦ୍ଦେଶନାମା ପଠାଇ ଜଣାଇଲେ ଯେ ତାପଙ୍ଗଗଡ଼ର ଦଳବେହେରା ପ୍ରଥମେ ତାଙ୍କର ଦୋଷପାଇଁ କ୍ଷମା ପ୍ରାର୍ଥନା କରନ୍ତୁ ଏବଂ ମିଥୁନ ପାଞ୍ଚ ଦିନ ପୂର୍ବରୁ ସରକାରଙ୍କ କର ଦେଇଦିଅନ୍ତୁ । ତା' ନ ହେଲେ ସେଇ ମିଥୁନ ପାଞ୍ଚ ଦିନ ତାପଙ୍ଗଗଡ଼ ଆକ୍ରମଣ କରାଯିବ । ଦଳବେହେରା ଏ ନିର୍ଦ୍ଦେଶନାମାକୁ ରାଗରେ ଟିକ୍ ଟିକ୍ କରି ଚିରି ଫିଙ୍ଗିଦେଲେ । ହାରକୋର୍ଟ ଏ ଖବର ପାଇ ଅଧିକ ସୈନ୍ୟ ଆଣିବାକୁ କଟକ ଲେଉଟିଗଲେ । ଏବଂ କଟକରୁ ବହୁ ସୈନ୍ୟ ଧରିଆସି ମିଥୁନ ୫ ଦିନ ତାପଙ୍ଗଗଡ଼ ଆକ୍ରମଣ କରିବାପାଇଁ ପ୍ରସ୍ତୁତ ହୋଇ ରହିଲେ ।

ଏଣେ ଦଳବେହେରା ମାଧବଚନ୍ଦ୍ର ରାଉତରା ଓ ଦଳାଇ ଗୋବର୍ଦ୍ଧନ ବୈରୀଗଞ୍ଜନ ଘୋଡ଼ାରେ ଚଢ଼ି ପୁରୀ ଯାଇ ମହାରାଜା ମୁକୁନ୍ଦଦେବଙ୍କୁ ଭେଟି ଫିରିଙ୍ଗି ବିରୋଧରେ ଯୁଦ୍ଧ କରିବେ ବୋଲି କହି ସମର୍ଥନ ଲୋଡ଼ିବାରୁ ମୁକୁନ୍ଦଦେବ ପ୍ରଥମେ

ମନାକରିଦେଲେ । କିନ୍ତୁ ପରେ ପୁଣି ଦଳବେହେରାଙ୍କ କଥାରେ ବିଶ୍ୱାସ କରି ତାଙ୍କ ମୁଣ୍ଡରେ ଶାଢ଼ିବାନ୍ଧିଦେଲେ ଏବଂ ତାଙ୍କ ସଙ୍ଗେ ଜଣେ ରାଜଗୁରୁଙ୍କୁ ଗୁପ୍ତଭାବେ ତାପଙ୍ଗ ପଠାଇଲେ (ଗୁପତ ସନ୍ଦେଶ କେଭେ ପ୍ରଘଟ ନ କର, ରାଜଗୁରୁ ଗୁପ୍ତେ ଯାନ୍ତୁ ତୁମ ସଙ୍ଗତର ୧୨/୧୮୧) । (୮୪ ବର୍ଷ ଆଗରୁ ମୁକୁନ୍ଦଦେବଙ୍କ ମୃତ୍ୟୁ ହୋଇଥିବା ଦୃଷ୍ଟିରୁ ଘଟଣାଟି ସମ୍ପୂର୍ଣ୍ଣ ମନଗଢ଼ା ବା ଶୁଣାକଥା ହୋଇପାରିଥାଏ) ଦଳବେହେରା ତାପଙ୍ଗକୁ ଫେରି ନିଜ ଇଲାକାର ସବୁ ଦଳାଇ, ଦଳବେହେରା ଓ ମୁଖ୍ୟବ୍ୟକ୍ତିମାନଙ୍କର ଏକ ଗୁପ୍ତ ବୈଠକ ଡକାଇଲେ । ସାତ ଜଣ ଦଳବେହେରା ଓ ଚାଳିଶ ଜଣ ଦଳାଇ ଏକତ୍ରିତ ହେବାରୁ ରାଜଗୁରୁ ସେମାନଙ୍କୁ ମହାରାଜାଙ୍କର ଗୁପ୍ତ ସନ୍ଦେଶ ଜଣାଇଲେ । ତେଣୁ ସମସ୍ତେ ଫିରିଙ୍ଗି ସହିତ ଯୁଦ୍ଧକରିବାକୁ ସମ୍ମତ ହୋଇ ନିଜନିଜର ସୈନ୍ୟ ଆଣିବାକୁ ଗଲେ । ମଳିପଡ଼ାଗଡ଼, ନାରାୟଣଗଡ଼, ରାମଚଣ୍ଡୀଗଡ଼, ଷଢ଼େଇଗଡ଼, ଛତ୍ରମାଗଡ଼, ରଥିପୁରଗଡ଼ ଓ କାଇପଦରଗଡ଼ରୁ ଦଳେଇ ଏବଂ ଦଳବେହେରା ମାନେ ସୈନ୍ୟ ଧରି ଆସିଲେ । ଦଧିମାଛଗାଡ଼ିଆର ମୌସମ (ମଧୁସୂଦନ ?) କରଣ; ବଙ୍ଗିଦା, କଣ୍ଟିଲ ଓ ଝିଙ୍କିଝାରିର କରଣ ସାମନ୍ତମାନେ ଆସିଲେ । ଅଣ୍ଡାର କୋଠକରଣ ମଧ ଆସିଲେ । ତାପଙ୍ଗ ବାରପଲ୍ଲୀ (ବାରପଡ଼ା)ର ପାଇକମାନେ ଡକରା ହୋଇ ଆସିଲେ । ଏମାନେ ସମସ୍ତେ ଆସି ମିଥୁନମାସ ତିନି ଦିନ ତାପଙ୍ଗଗଡ଼ରେ ଏକତ୍ରିତହେଲେ ।

ଅଣ୍ଡାର କୋଠକରଣ ସୈନ୍ୟମାନଙ୍କ 'ଚର୍ଚ୍ଚା' ବୁଝିଲେ, କଣ୍ଟିଲ କରଣ ଭଣ୍ଡାର ଅଧିକାରୀ ହେଲେ, ମହାବଳବାନ୍ ଝଙ୍କିଝାରିକରଣ ଧନୁର୍ଜ୍ଜୟ ଶ୍ରୀଚନ୍ଦନ ସୈନ୍ୟ ସଜ୍ଜା ଦାୟିତ୍ୱରେ ରହିଲେ ଏବଂ ଦଧିମାଛଗାଡ଼ିଆର ମୌସମକରଣ ସମସ୍ତଙ୍କ ଉପରେ ଶିବିର ପରିଚାଳନା ଦାୟିତ୍ୱରେ ରହିଲେ । ତାପଙ୍ଗର ପୂର୍ବଦିଗରେ 'କାଣ୍ଡଗୋଦାପଦା'କୁ ଯୁଦ୍ଧଭୂମି ରୂପେ ବଛାଗଲା । ଦିନକ ପୂର୍ବରୁ ଅର୍ଥାତ୍ ମିଥୁନ ୪ ଦିନ ତାପଙ୍ଗଗଡ଼ର ଅଧିଷ୍ଠାତ୍ରୀ ଦେବୀ ହସ୍ତେଶ୍ୱରୀ ଠାକୁରାଣୀଙ୍କର ପୂଜାର୍ଚ୍ଚନା କରାଯାଇ ସୈନ୍ୟ ସଜ୍ଜା ଓ ଯୁଦ୍ଧାଭ୍ୟାସ କରାଗଲା । (ମିଥୁନ ଚାରିଦିନ ସୈନ୍ୟ ସଜାଇଲେ, ରାଉତରା ହସ୍ତେଶ୍ୱରୀ ପୂଜା ପାଠକଲେ' ୨୧୧) ।

ମିଥୁନ ୫ ଦିନ ଭୋର୍‌ବେଳକୁ ଦଳବେହେରା ମାଧବଚନ୍ଦ୍ର ରାଉତରା ତାଙ୍କର ସହଯୋଗୀ ଦଳାଇ ଗୋବର୍ଦ୍ଧନ ବୈରୀଗଞ୍ଜନ ଓ ଭାଗୀରଥି ଦଳସିଂହ ଓଗେରଙ୍କ ସହ ବୀରବେଶ ହୋଇ ଯାଇ ହସ୍ତେଶ୍ୱରୀଙ୍କୁ ଆରାଧନାକଲେ ଏବଂ ସୈନ୍ୟମାନଙ୍କ ସହ ଯାଇ ଗଡ଼ର ପଶ୍ଚିମପାଖ ଘନ ଜଙ୍ଗଲ ଭିତରେ ଥିବା ଗୁପ୍ତ ଅସ୍ତ୍ରାଗାର ନିକଟରେ ପହଞ୍ଚିଲେ । ଏହି ଅସ୍ତ୍ରାଗାରରେ ଦଶସହସ୍ର ସୈନ୍ୟଙ୍କପାଇଁ ଢାଲ ତରବାରିଠାରୁ ଆରମ୍ଭକରି ବନ୍ଧୁକ, ତୋପ, କମାଣ ପର୍ଯ୍ୟନ୍ତ ବହୁ ଅସ୍ତ୍ରଶସ୍ତ୍ର, ଗୁଳିଗୋଳା ଓ ବାରୁଦ ଭଣ୍ଡାର ଇତ୍ୟାଦି ମହଜୁଦ୍ ଥିଲା । ଏହି ଅସ୍ତ୍ରାଗାରକୁ ସର୍ବଦା ଦୁଇ ଜଣ ଦଳାଇଙ୍କ ତତ୍ତ୍ୱାବଧାନରେ ପାଞ୍ଚଟି ହାତୀ

ସହିତ ପଚାଶ ଜଣ ପାଇକ ଜଗିରହୁଥିଲେ। ସୈନ୍ୟମାନେ ନିଜ ନିଜ ପସନ୍ଦ ମୁତାବକ ଅସ୍ତ୍ରାଗାରରୁ ବିଭିନ୍ନ ଅସ୍ତ୍ରଶସ୍ତ୍ର ବାଛିନେଲେ। ଦଳବେହେରା ମାଧବଚନ୍ଦ୍ର ଧନୁର୍ଜୟ ଶ୍ରୀଚନ୍ଦନଙ୍କ ବେକରେ ଫୁଲମାଳ ଦେଇ ତାଙ୍କୁ ସେନାପତି ପଦରେ ବରଣ କଲେ। ତିନିଟି ହାତୀଙ୍କ ଉପରେ ଛଅଟି ତୋପ ଲଦାହେଲା ଏବଂ ଦୁଇ ଶହ ବନ୍ଧୁକଧାରୀଙ୍କ ସହିତ ସୈନ୍ୟମାନେ ଗଡ଼ ଭିତର ଦେଇ ଯାତ୍ରାରମ୍ଭ କଲାବେଳେ ଆଗରେ ବୀରବାଜା ବାଜୁଥିଲା।

ଗୋରା ସୈନ୍ୟମାନେ ଆଗରୁ ଆସି କାଞ୍ଜିଆଗଡ଼ଠାରେ ଛାଉଣି ପକାଇ ଥିଲେ। ମାଧବଙ୍କ ସୈନ୍ୟମାନେ ହସ୍ତେଶ୍ୱରୀଙ୍କୁ ପ୍ରଣାମକରି ଯାଇ କାଣ୍ଡଗୋଦାପଦାରେ ପହଞ୍ଚିଲେ। ଗୋରା ସୈନ୍ୟମାନେ କାଞ୍ଜିଆଗଡ଼ରୁ ଆସି କାଣ୍ଡଗୋଦାପଦାରେ ପହଞ୍ଚିଲେ। ଦିନ ସାତ ଘଡ଼ିଠାରେ ଯୁଦ୍ଧ ଆରମ୍ଭହେଲା ଓ ପ୍ରାୟ ୧୪ ଘଡ଼ି ପର୍ଯ୍ୟନ୍ତ ଘୋର ଯୁଦ୍ଧହେଲା। ସେଦିନ ଫିରିଙ୍ଗି ପକ୍ଷରୁ ଶହେପନ୍ଦର ଜଣ ଏବଂ ତାପଙ୍ଗ ପକ୍ଷରୁ ମାତ୍ର ସାତ ଜଣ ମଲେ ଓ ସତର ଆହତ ହେଲେ। ଦ୍ୱିତୀୟ ଦିନ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଯୁଦ୍ଧ ହେଲା ଏବଂ ଉଭୟପକ୍ଷର ଅଶୀ ଜଣ ସୈନ୍ୟ ମଲେ। ତୃତୀୟ ଦିନ ଯୁଦ୍ଧରେ ତାପଙ୍ଗ ସୈନ୍ୟମାନେ ଅଧିକ ଦକ୍ଷତାର ସହିତ ଘୋର ଯୁଦ୍ଧକଲେ ଏବଂ ଫିରିଙ୍ଗି ପକ୍ଷର ବହୁସୈନ୍ୟ ମୃତାହତ ହେଲେ। ତେଣୁ କର୍ଣ୍ଣେଲ ହାରକୋର୍ଟ ତାପଙ୍ଗ ପକ୍ଷର ସେନାପତିଙ୍କ ଉପରେ ଗୁଳିବର୍ଷଣ କରିବା ଫଳରେ ସେନାପତି ଧନୁର୍ଜୟ ଶ୍ରୀଚନ୍ଦନ ଗୁଳିବିଦ୍ଧ ହୋଇ ଘୋଡ଼ା ଉପରୁ ଟଳିପଡ଼ିଲେ। ସେନାପତି ମରିଯିବାରୁ ତାପଙ୍ଗ ସୈନ୍ୟମାନଙ୍କ ମଧରେ 'ହାହାକାର' ପଡ଼ିଗଲା। ଏ ଅବସ୍ଥା ଦେଖି ସୈନ୍ୟମାନଙ୍କୁ ଉତ୍ସାହିତ କରିବାପାଇଁ ଦଳବେହେରା ମାଧବଚନ୍ଦ୍ର ସଙ୍ଗେ ସଙ୍ଗେ ଅଶ୍ୱ ଉପରେ ଖଡ଼୍ଗ ଧରି ଯାଇ ଆଗୁଆ ହୋଇ ଯୁଦ୍ଧ ଚଳାଇଲେ। ଧନୁର୍ଜୟଙ୍କ ମୃତ୍ୟୁପରେ ଜୟକାର କରି ଉଲ୍ଲସିତ ହୋଇଉଠିଥିବା ଫିରିଙ୍ଗି ସୈନ୍ୟମାନେ ମାଧବଚନ୍ଦ୍ରଙ୍କ ଉଗ୍ର ଯୁଦ୍ଧଦେଖି ପଛଘୁଞ୍ଚା ଦେଇ ଛାଉଣିକୁ ପଳାଇଲେ।

ସେଦିନ ରାତ୍ରିରେ ସୈନ୍ୟମାନେ ବିଶ୍ରାମ ନେବା ପରେ ତାପଙ୍ଗ ସେନାଛାଉଣିର ମୁଖ୍ୟ ବ୍ୟବସ୍ଥାପକଭାବେ ନିଯୁକ୍ତ ଥିବା ମଉସମ କରଣ ବିଶ୍ୱାସଘାତକତାକରି ରାତାରାତି ଖୋର୍ଦ୍ଧାଯାଇ ଫିରିଙ୍ଗି ସାହେବଙ୍କୁ ତାପଙ୍ଗ ପକ୍ଷର ଗୁପ୍ତ ଖବରମାନ କହିଦେଲେ।

('ଦୁଇବଳ ସୈନ୍ୟ କଲେ ଭୋଜନ ଶୟନ, ସେହି ରାତ୍ରେ ପଳାଏ କରଣ ମଉସମ'୩୦୦/ କରଣ ମଉସମ ନିକୁଚ୍ଛା ବୁଧିକଲା ଖୋରଧା ସାହେବ ପାଖେ ପ୍ରବେଶ ହୋଇଲା' ୩୦୧/ 'ନାନାଦି ଗୁପ୍ତ କଥା ସେ କରିଲା ଗୋଚର, ସାହେବର ହୋଇଲା ବିଶ୍ୱାସ ପାତର' ।୩୦୨।)

ଚତୁର୍ଥ ଦିନ ମୌସମ କରଣ ଖୋର୍ଦ୍ଧାରେ ଫିରିଙ୍ଗି ସାହେବଙ୍କୁ କହିଲେ ଯେ, ଦଳବେହେରା ମାଧବଚନ୍ଦ୍ର ରାଉତରା ହସ୍ତେଶ୍ୱରୀଭକ୍ତ ଏବଂ ପ୍ରତ୍ୟେକ ମଙ୍ଗଳବାର ଦିନ

ସେ ଅହୋ-ରାତ୍ର ହସ୍ତେଶ୍ୱରୀଙ୍କ ସମ୍ମୁଖରେ ମୌନଭାବେ ବସି ଦେବୀଙ୍କୁ ଧ୍ୟାନକରନ୍ତି । ସୁତରାଂ ଆସନ୍ତାକାଲି ମଙ୍ଗଳବାର ହେଉଥିବାରୁ ସେ କଦାପି ଯୁଦ୍ଧ କରିବାକୁ ବାହାରିବେ ନାହିଁ । ସେହି ଅବସରରେ ଫିରିଙ୍ଗିମାନେ ଯଦି ମଙ୍ଗଳବାର ଦିନରାତି ଯୁଦ୍ଧ ଚଳାଇବେ ତାପଙ୍ଗ ସୈନ୍ୟ ନିଶ୍ଚୟ ହାରିବେ ।

ଏଣେ ଚତୁର୍ଥ ଦିନ ଯୁଦ୍ଧରେ ମାଧବଚନ୍ଦ୍ର ଅପୂର୍ବ ବୀରତ୍ୱର ସହିତ ଯୁଦ୍ଧ କରି ବହୁ ଗୋରାସୈନ୍ୟଙ୍କୁ ହତାହତ କରିଦେଲେ । ଗୋରାମାନେ ବନ୍ଧୁକଟିପି ପଚାଶ ଜଣ ପାଇକଙ୍କୁ ଆହତ କରିଥିଲେ । ମଙ୍ଗଳବାର ଅର୍ଥାତ୍ ପଞ୍ଚମ ଦିନ ମାଧବଚନ୍ଦ୍ର ହସ୍ତେଶ୍ୱରୀ ଆରାଧନାରେ ରହିଲେ । ଯୁଦ୍ଧକ୍ଷେତ୍ରରେ ମାଧବଙ୍କୁ ନ ଦେଖି ମଉସମ କରଣଙ୍କ କଥା ଠିକ୍ ବୋଲି ହାରକୋର୍ଟଙ୍କର ବିଶ୍ୱାସହେଲା । ତେଣୁ ସୂର୍ଯ୍ୟାସ୍ତ ପରେ ମଧ ଯୁଦ୍ଧ ବନ୍ଦ ନ କରି ନିଶ୍ଚିତ ବିଜୟ ଆଶାରେ ଯୁଦ୍ଧ ଚଳାଇଲେ । କିନ୍ତୁ ତାପଙ୍ଗ ସୈନ୍ୟମାନେ ମାଧବଙ୍କ ଅନୁପସ୍ଥିତିରେ ସାରାଦିନ ଯୁଦ୍ଧକରି ହାଲିଆ ଓ ହତୋତ୍ସାହ ହୋଇପଡୁଥିବା ଦେଖି ହସ୍ତେଶ୍ୱରୀ ଠାକୁରାଣୀ ସ୍ୱୟଂ ମାୟାମାଧବ ବେଶରେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହେଲେ । ହାରକୋର୍ଟଙ୍କର ଗୋଟିଏ ଗୁଳି ଆସି ମାୟାମାଧବଙ୍କ ବାମ କାନ୍ଧରେ ବାଜିବାରୁ ମାଧବଙ୍କର ମୃତ୍ୟୁ ହେଲା ଭାବି ଫିରିଙ୍ଗି ସୈନ୍ୟମାନେ ଆନନ୍ଦରେ କୋଳାହଳ କରି ଛାଉଣିକୁ ପ୍ରତ୍ୟାବର୍ତ୍ତନକଲେ । ସେହିଦିନ ଫିରିଙ୍ଗି ପକ୍ଷରୁ ଶହେ ସୈନ୍ୟ ମରିଥିଲେ । ରାତିରେ ହାରକୋର୍ଟ ସାହେବ ଖୋର୍ଦ୍ଧା ଯାଇ ମଉସମ କରଣଙ୍କୁ ପଚାରିଲେ, ମୋର ଗୁଳି ମାଧବ ଦେହରେ ବାଜିଛି, ସେ ମରିଛି ନା ବଞ୍ଚିଛି ? ମଉସମ କହିଲେ, ମାଧବ ମଙ୍ଗଳବାର ପୂଜାଛାଡ଼ି କଦାପି ଯୁଦ୍ଧକ୍ଷେତ୍ରକୁ ଯାଇ ନ ଥିବ, ଏହା ନିଶ୍ଚୟ ଦେବୀ ମାୟା ହୋଇଥିବ ।

ଏଣେ ମଙ୍ଗଳବାର ରାତି ପାହିବାରୁ ମାଧବଚନ୍ଦ୍ର ହସ୍ତେଶ୍ୱରୀଙ୍କ ପୀଠରେ ଧ୍ୟାନଭାଙ୍ଗି ଚାହିଁ ଦେଖିଲେ ଯେ ଦେବୀଙ୍କ ବାମକାନ୍ଧରୁ ରକ୍ତ ବୋହୁଛି । ସେ ତୁରନ୍ତ ବାହାରକୁ ଯାଇ ପୂର୍ବଦିନର ଯୁଦ୍ଧବୃତ୍ତାନ୍ତ ଶୁଣି ଜାଣିଲେ ଯେ ଦେବୀ ତାଙ୍କପାଇଁ ଯୁଦ୍ଧକରିଛନ୍ତି । ତେଣୁ ଅତ୍ୟନ୍ତ ଆନନ୍ଦ ମନରେ ସେ ଷଷ୍ଠ ଦିନ ଯୁଦ୍ଧକୁ ବାହାରିଲେ ଏବଂ ହସ୍ତେଶ୍ୱରୀ ନିଜେ ମାଧବଙ୍କପାଇଁ ଯୁଦ୍ଧ କରିଥିଲେ ଏହା ପ୍ରଚାରିତ ହୋଇଯିବାରୁ ତାପଙ୍ଗ ସୈନ୍ୟମାନେ ଦୁଇଗୁଣ ଉତ୍ସାହରେ ଷଷ୍ଠ ଦିନ ଯୁଦ୍ଧକଲେ । ଫଳରେ ଫିରିଙ୍ଗି ସୈନ୍ୟମାନେ ଛତ୍ରଭଙ୍ଗ ଦେଇ ଯୁଦ୍ଧକ୍ଷେତ୍ରରୁ ପଳାଇଲେ । ହାରକୋର୍ଟ ସାହେବ ବିବ୍ରତ ହୋଇ ରାତିରେ ଖୋର୍ଦ୍ଧାଯାଇ ଅନ୍ୟ ସାହେବମାନଙ୍କ ସଙ୍ଗେ ବିଚାର ବିମର୍ଶ କଲେ । ସେଠାରେ ମଉସମ କରଣ କହିଲେ ଯେ ଦଳବେହେରା ମାଧବ ଚନ୍ଦ୍ରଙ୍କୁ ହସ୍ତେଶ୍ୱରୀ ସହାୟ ଥିବାଯାଏ ଏବଂ ତାପଙ୍ଗଗଡ଼ର ପଶ୍ଚିମପାଖେ ଥିବା ଗୁପ୍ତ ଅସ୍ତ୍ରାଗାରକୁ ଅକ୍ତିଆର ଅଥବା ଧ୍ୱଂସ କଲାଯାଏ ଫିରିଙ୍ଗି ସୈନ୍ୟ ଜିଣିବା ଅସମ୍ଭବ । ମୌସମ କରଣଙ୍କ ଗୁପ୍ତ ପରାମର୍ଶମତେ ଫିରିଙ୍ଗିମାନେ ଗୁଳିରେ ଗୋରକ୍ତ ଗୋଳାଇ ସପ୍ତମଦିନ

ଯୁଦ୍ଧପାଇଁ ଆସିଲେ । ତେଣୁ ହସ୍ତେଶ୍ୱରୀ ଠାକୁରାଣୀ ଯୁଦ୍ଧକ୍ଷେତ୍ରରୁ ଆଡ଼ହୋଇଗଲେ । ଏଣେ ତିନି ଶହ ବନ୍ଧୁକଧାରୀ ସୈନ୍ୟ ଖୋର୍ଦ୍ଧାରୁ ବାହାରି ତାପଙ୍ଗଗଡ଼ର ପଶ୍ଚିମ ପାଖ ହାତିଆ ମୁଣ୍ଡିଆପାଖରେ ପହଞ୍ଚି ସେ ପାଖରୁ ଅତର୍କିତଭାବେ ଗୁପ୍ତ ଅସ୍ତ୍ରାଗାର ଉପରେ ଚଢ଼ାଉକଲେ । ଅସ୍ତ୍ରାଗାର ଜଗିଥିବା ଅଳ୍ପସଂଖ୍ୟକ ସୈନ୍ୟଙ୍କୁ ସେମାନେ ସହଜରେ ପରାସ୍ତ କରି ବାରୁଦ ଭଣ୍ଡାରରେ ନିଆଁ ଲଗାଇଦେଲେ । ଗଡ଼ର ପଶ୍ଚିମ ପାଖେ ଫିରିଙ୍ଗିମାନେ ଅସ୍ତ୍ରାଗାର ଦଖଲ କରିବା ସମ୍ବାଦ ପ୍ରଚାରିତ ହେବାମାତ୍ରେ ପୂର୍ବପାଖେ ଯୁଦ୍ଧରତ ତାପଙ୍ଗ ସୈନ୍ୟମାନେ ଯୁଦ୍ଧକ୍ଷେତ୍ରରୁ ଛତ୍ରଭଙ୍ଗଦେଲେ । ଦଳବେହେରା ମାଧବଚନ୍ଦ୍ର ରାଉତରା ଜଙ୍ଗଲ ମଧ୍ୟକୁ ପଳାଇଯାଇ ଆତ୍ମଗୋପନକଲେ ।

ଗଡ଼ବଡ଼ପାରି ଗ୍ରାମର ଭ୍ରମରବର ଥିଲେ ତାପଙ୍ଗ ଦଳବେହେରା ମାଧବଚନ୍ଦ୍ରଙ୍କ ଶ୍ୱଶୁର । ମାଧବଚନ୍ଦ୍ର ଜଙ୍ଗଲ ଭିତରେ ପଳାଇଯାଇ ଗଡ଼ ବଡ଼ପାରିରେ ଶ୍ୱଶୁର ଘରେ ଲୁଚିରହିଲେ । ଏଣେ ଫିରିଙ୍ଗିମାନେ ତାପଙ୍ଗ ଯୁଦ୍ଧରେ ଜୟଲାଭ କରିବା ପରେ ଗଡ଼ଭିତରେ ପଶି ଦଳବେହେରାଙ୍କ ଘର ଓ ଅସ୍ତ୍ରାଗାର ଇତ୍ୟାଦି ଲୁଣ୍ଠନକରିନେଲେ । ଏ ପରିସ୍ଥିତିରେ ଭୟଭୀତ ହୋଇ ତାପଙ୍ଗ ବାରପଡ଼ାର ଲୋକେ ଫିରିଙ୍ଗିମାନଙ୍କୁ ଯାଚିକରି କର ଦେଇଦେଲେ । ତା'ପରେ ଫିରିଙ୍ଗିମାନଙ୍କ କୋପଦୃଷ୍ଟି ପଡ଼ିଲା ଚିଲିକା କୂଳର ଲୁଣଜୀବୀଙ୍କ ଉପରେ । ସେ ଅଞ୍ଚଳର ଲୋକେ ଲୁଣମାରି ପେଟପୋଷୁଥିଲେ । ଆବାଳ ବୃଦ୍ଧବନିତା ଲୁଣ ମାରୁଥିଲେ । ଫିରିଙ୍ଗିମାନେ ସେମାନଙ୍କ ଉପରେ ଚଢ଼ାଉକରି ଲୁଣମରା ବନ୍ଦ କଲେ । ଗରିବ ଲୋକଙ୍କ ପେଟପୋଟଣା ପ୍ରତି ଏ ପ୍ରକାର ଜୁଲମର ଖବର ପାଇ ଦଳବେହେରା ମାଧବଚନ୍ଦ୍ରଙ୍କ କ୍ରୋଧ ବଢ଼ିଗଲା । ସେ ଲୁଚି ଲୁଚି ଆସି ଚିଲିକାକୂଳରେ ପହଞ୍ଚିଲେ ଏବଂ ସେଠାରେ ଫିରିଙ୍ଗି ସରକାର ତରଫରୁ ଲୋକଙ୍କ ଉପରେ ଜୁଲମ କରି ଲୁଣ ମରା ବନ୍ଦକରାଉଥିବା ସୁବାଦାର ଓ ଦୁଇ ଜଣ ଜମାଦାରଙ୍କୁ ଗୁଳିମାରି ହତ୍ୟାକରି ପୁଣି ଲୁଚିକରି ଶ୍ୱଶୁର ଘରକୁ ପଳାଇଲେ ।

ସୁବାଦାର ଓ ଜମାଦାରଙ୍କୁ ଚିଲିକାକୂଳରେ କିଏ ହତ୍ୟାକଲା ଫିରିଙ୍ଗିମାନେ ପ୍ରଥମେ ଜାଣିପାରି ନ ଥିଲେ । କିନ୍ତୁ ମୌସମ କରଣ ସେମାନଙ୍କ ପାଖରେ ଖବର ପହଞ୍ଚାଇଦେଲେ ଯେ ଦଳବେହେରା ମାଧବଚନ୍ଦ୍ର ଲୁଚିକରି ଆସି ଏ ହତ୍ୟାକାଣ୍ଡ ଘଟାଇ ପୁଣି ଯାଇ ଶ୍ୱଶୁରଘରେ ଲୁଚିଛନ୍ତି । ତେଣୁ ଫିରିଙ୍ଗି ସୈନ୍ୟ ଯାଇ ଗଡ଼ବଡ଼ପାରି ଗ୍ରାମକୁ ଘେରାଉକରି ଭ୍ରମରବରଙ୍କ ଘର ତଲାସକଲେ । କିନ୍ତୁ ଦଳବହେରା ସୁରାକ୍ ପାଇ ଆଗରୁ ଖସିଯାଇଥିଲେ ଘଞ୍ଚ ଜଙ୍ଗଲ ଭିତରକୁ । ଗଡ଼ ବଡ଼ପାରି ଭ୍ରମରବରଙ୍କ ଘରୁ ମାଧବଙ୍କୁ ଧରି ନ ପାରି ଫିରିଙ୍ଗି ସୈନ୍ୟ ଖୋର୍ଦ୍ଧା ଫେରିଆସିଲେ । ଖୋର୍ଦ୍ଧାର ଫିରିଙ୍ଗିସାହେବ ଘୋଷଣାକଲେ ଯେ ତାପଙ୍ଗ ଦଳବେହେରାଙ୍କୁ ଯିଏ ଧରାଇଦେବ ସେ ଏକହଜାର ଟଙ୍କା

ପୁରସ୍କାର ପାଇବ । ଏହା ପରେ ଜଣେ ବିପନ୍ନ କୈବର୍ତ୍ତକୁ ସାହାଯ୍ୟ କରିବାପାଇଁ ଦଳବେହେରା ଯେପରି ଭାବରେ ନିଜ ମୁଣ୍ଡକୁ ପାଣିଛଡ଼ାଇ ଫିରିଙ୍ଗି ସରକାର ହାତରେ ଧରାଦେଲେ ତାହା ପ୍ରଥମରୁ କୁହାଯାଇଛି ।

'ଫିରିଙ୍ଗି କଳି ଭାରତ'ର କବି ମଧୁସୂଦନ ବିପ୍ର ତାଙ୍କ ପୋଥିରେ ଫିରିଙ୍ଗିମାନଙ୍କ ସହିତ ପେଶୱା, ସିନ୍ଧିଆ, ଭୋଁସଲା, ହୋଲ୍‌କାର ଆଦି ମରହଟ୍ଟାମାନଙ୍କର ଯୁଦ୍ଧ ସମ୍ବନ୍ଧରେ ବହୁଳ ବର୍ଣ୍ଣନାକରିଛନ୍ତି । ବହୁ ପୌରାଣିକ କାହାଣୀର ଅବତାରଣା କରିଛନ୍ତି ଏବଂ ବହୁ କାଳ୍ପନିକ କାହାଣୀ ମଧ ସୃଷ୍ଟି କରିଛନ୍ତି, କିନ୍ତୁ ଆଲୋଚ୍ନାର ପରିସର କେବଳ ଖୋର୍ଦ୍ଧା ଇତିହାସ ସମ୍ପକିତ ବିଷୟବସ୍ତୁ ଭିତରେ ସୀମିତ । ତେଣୁ ସେ ସବୁର ଚର୍ଚ୍ଚା କରାଯାଉ ନାହିଁ । ଖୋର୍ଦ୍ଧା ଇତିହାସ ସମ୍ପର୍କିତ ଖୋର୍ଦ୍ଧାର ରାଜା ମୁକୁନ୍ଦଦେବ(୨), ଦେୱାନ ହରିହର ଭ୍ରମରବର ରାୟ, ସେନାପତି ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାପାତ୍ର ଓ ରାଜଗୁରୁ ଜୟକୃଷ୍ଣ ମହାପାତ୍ରଙ୍କ ବିଷୟରେ 'ଫିରିଙ୍ଗି କଳି ଭାରତ'ରେ ଯେଉଁ ଗୁରୁତ୍ୱପୂର୍ଣ୍ଣ ତଥ୍ୟଗୁଡ଼ିକ ଉଦ୍‌ଘାଟିତ ହୋଇଛି ସେ ସମ୍ପର୍କରେ ଆଗରୁ ସୂଚନା ଦିଆଯାଇଛି । ଐତିହାସିକମାନେ ସେସବୁର ସତ୍ୟାସତ୍ୟ ନିରୂପଣପାଇଁ ବିସ୍ତୃତ ଆଲୋଚନା କରିବା ଆବଶ୍ୟକ । (ତାପଙ୍ଗ ଯୁଦ୍ଧ ବୃତ୍ତାନ୍ତ ଯେ ଅତିମାତ୍ରାରେ ଅତିରଞ୍ଜିତ ଏହା ଗୋରାସୈନ୍ୟମାନଙ୍କ ମୃତାହତ ସଂଖ୍ୟାରୁ ଅନୁମିତ ହୁଏ । ଏତେ ସଂଖ୍ୟକ ଗୋରାସୈନ୍ୟ ମୃତାହତ ହୋଇଥିଲେ ବ୍ରିଟିଶ ପ୍ରଶାସନରେ ହଇଚଇ ସୃଷ୍ଟିହୋଇଥାଆନ୍ତା ଏବଂ ତାପଙ୍ଗ ଯୁଦ୍ଧ ସଂକ୍ରାନ୍ତ କିଛି ନା କିଛି ତଥ୍ୟ ସରକାରୀ ନଥିପତ୍ରରେ ଥାଆନ୍ତା) ।

ଆଶ୍ଚର୍ଯ୍ୟର ବିଷୟ ଏହି ଯେ, କବି ମଧୁସୂଦନ ବିପ୍ର 'ଫିରିଙ୍ଗି କଳି ଭାରତ'ରେ ଖୋର୍ଦ୍ଧା ପାଇକ ବିଦ୍ରୋହ ସମ୍ପର୍କରେ ପ୍ରାୟ କିଛି ଲେଖି ନାହାନ୍ତି । ବକ୍ସି ଜଗବନ୍ଧୁଙ୍କୁ ସେ ୧୮୦୨ ଖ୍ରୀ.ରେ ରଣପୁର ଯୁଦ୍ଧର ବିଜୟୀ ବୀରଭାବେ ଭୂୟସୀ ପ୍ରଶଂସା କରିଛନ୍ତି । ୧୮୦୪ ଖ୍ରୀ. ଖୋର୍ଦ୍ଧା ଫିରିଙ୍ଗି ଯୁଦ୍ଧରେ ଜୟୀ ରାଜଗୁରୁ, ଦେୱାନ ହରିହର ଓ ବକ୍ସି ଜଗବନ୍ଧୁଙ୍କ ବୀରତ୍ୱ ବର୍ଣ୍ଣନା କରିଛନ୍ତି । ପୁଣି ୧୮୨୭ ଖ୍ରୀ. ତାପଙ୍ଗ ଯୁଦ୍ଧରେ ତାପଙ୍ଗ ଦଳବେହେରାଙ୍କ ବୀରତ୍ୱ ସମ୍ପର୍କରେ ସୁବିସ୍ତୃତ ବିବରଣୀ ଦେଇଛନ୍ତି । ଓଡ଼ିଶା ଇତିହାସର ଏକ ଗୌରବମୟ ଅଧ୍ୟାୟ ୧୮୧୭ ଖ୍ରୀ. ପାଇକ ବିଦ୍ରୋହରେ ବକ୍ସି ଜଗବନ୍ଧୁଙ୍କ ପ୍ରମୁଖ ଭୂମିକା ସମ୍ପର୍କରେ ଦୁଇଟି ଜାଗାରେ ଫୋପାଡ଼ିଲା ପରି ମାତ୍ର ଦୁଇଟି ପଦ ଲେଖିଛନ୍ତି: 'ତହିଁପରେ ଜଗବନ୍ଧୁ ପାଇକ ଧରିଣ, ଫିରିଙ୍ଗି ସହିତ ଯୁଦ୍ଧ କରିଥିଲେ ପୁଣ' (୯୧) । 'ବକ୍ସି ଜଗବନ୍ଧୁ ଯହୁଁ ହାରିଗଲେ ରଣେ, ଯଭରେ କର ଆଦାୟ କଲେ ଗୋରାମାନେ', (୧୬୬)

ଏତିକି ଲେଖି ମଧୁସୂଦନ ବିପ୍ର ପାଇକ ବିଦ୍ରୋହ ସମ୍ପର୍କରେ ନୀରବ ରହିଛନ୍ତି କାହିଁକି ?

କବି ବିପ୍ରଙ୍କ ବାସସ୍ଥାନ ଖୋର୍ଦ୍ଧାଗଡ଼ରୁ ମାତ୍ର ଦଶ କିଲୋମିଟର ଦୂର । ପୁଣି ବାଙ୍କପୁର, ତାପଙ୍ଗ ଆଉ କଣାସ - ଏ ତିନୋଟି ଯାକ ଗାଁ କବିଙ୍କ ଗାଁ ଗଡ଼ସାନପୁଟଠାରୁ ମାତ୍ର ପାଞ୍ଚ କିଲୋମିଟର ବ୍ୟାସାର୍ଦ୍ଧ ମଧ୍ୟରେ ଅବସ୍ଥିତ । ତେଣୁ ପାଇକ ବିଦ୍ରୋହ ବେଳେ ଖୋର୍ଦ୍ଧାରେ ଯେଉଁ ବ୍ୟାପକ ସଂଘର୍ଷ ଓ ପୋଡ଼ାଜଳା ଇତ୍ୟାଦି କାଣ୍ଡ ଘଟିଲା ସେ ଖବର ଗଡ଼ସାନପୁଟରେ ନିଶ୍ଚୟ ପହଞ୍ଚିଥିବ ଏବଂ ବିଦ୍ରୋହ ଦମନ କରିବାକୁ ଆସି କ୍ୟାପ୍‌ଟେନ୍. ଲି. ଫାବ୍‌ରେ ପାଞ୍ଚ ଶହ ଜଣ ବନ୍ଧୁକଧାରୀ ସୈନ୍ୟଙ୍କ ସହ ଖୋର୍ଦ୍ଧାରୁ ବାହାରି କଦଳୀବାଡ଼ି ଓ ବାଙ୍କପୁର ଗାଁରେ ନିଆଁ ଲଗାଇ ଦେଇ ଯାଇ ତାପଙ୍ଗରେ ରାତ୍ରିଯାପନ କରି ପୁଣି ପରଦିନ ସକାଳୁ ଯେତେବେଳେ ତାପଙ୍ଗରୁ ପୁରୀ ଅଭିମୁଖେ ବାହାରି କଣାସ ଗଲେ ସେତେବେଳେ ତ ଗଡ଼ସାନପୁଟ ଗାଁରେ ହୋହଲ୍ଲା ପଡ଼ିଯାଇଥିବ । କାରଣ ତାପଙ୍ଗରୁ କଣାସ ଯିବା ବାଟରେ ଗଡ଼ସାନପୁଟ ପଡ଼େ । ସୁତରାଂ ମଧୁସୂଦନ ବିପ୍ରଙ୍କର ୧୮୧୭ ପାଇକ ବିଦ୍ରୋହ ସମ୍ପର୍କରେ କିଛି ଜ୍ଞାନ ବା ଧାରଣା ନ ଥିଲା, ଏପରି କୁହାଯାଇପାରିବ ନାହିଁ, ଯେହେତୁ ପାଇକ ବିଦ୍ରୋହ ମଧୁସୂଦନ ବିପ୍ରଙ୍କ ଜୀବଦ୍ଦଶାର ସମସାମୟିକ ଘଟଣା ।

ମଧୁସୂଦନ ବିପ୍ରଙ୍କ ତାପଙ୍ଗ ଯୁଦ୍ଧ ବିବରଣୀରୁ ଜଣାପଡୁଛି ଯେ ତାପଙ୍ଗ ଦଳବେହେରା ମାଧବଚନ୍ଦ୍ର ଖୁବ୍ ସାହସୀ ଓ ଶକ୍ତିଶାଳୀ ଯୋଦ୍ଧା ଥିଲେ । ସେ ହୁଏତ ନିଜକୁ ବକ୍ସି ଜଗବନ୍ଧୁଙ୍କର ସମକକ୍ଷ ଅଥବା ତାଙ୍କଠାରୁ ନିଜକୁ ଅଧିକ ଶକ୍ତିଶାଳୀ ମଣୁଥିଲେ । ଦୁଇଟି ସମକକ୍ଷ ବଳୁଆ ଷଣ୍ଢ ଯେପରି କେହି କାହାର ବଶ୍ୟତା ସ୍ୱୀକାର କରନ୍ତି ନାହିଁ, ଦୁଇଜଣ ସମକକ୍ଷ କ୍ଷତ୍ରିୟ ବା ଖଣ୍ଡାୟତ ଯୋଦ୍ଧା ମଧ୍ୟ ସେହିପରି କେହି କାହାର ବଶ୍ୟତା ସ୍ୱୀକାର ନ କରି ପ୍ରତ୍ୟେକ ଅପରଠାରୁ ନିଜକୁ ଅଧିକ ବଳଶାଳୀ ବୋଲି ବିଚାରୁ ଥାଆନ୍ତି । ସବୁକ୍ଷେତ୍ରରେ ନ ହେଲେ ମଧ୍ୟ କେତେକ କ୍ଷେତ୍ରରେ ଏହି ଦୃଷ୍ଟାନ୍ତ ଦେଖିବାକୁ ମିଳିଥାଏ । ତାପଙ୍ଗ ଦଳବେହେରା ଓ ବକ୍ସି ଜଗବନ୍ଧୁଙ୍କ ମଧ୍ୟରେ ଏହିପରି ତେଢ଼ାତେଢ଼ି ଭାବ ରହିଥିଲା ବୋଲି ବିଶ୍ୱାସ କରିବାର ମଧ୍ୟ କାରଣ ରହିଛି । ୧୮୧୭ ପାଇକ ବିଦ୍ରୋହରେ ଖୋର୍ଦ୍ଧା ଆଖପାଖ ଅଞ୍ଚଳର ଯେଉଁ ବିଶିଷ୍ଟ ପାଇକ ଯୋଦ୍ଧାମାନେ ବକ୍ସିଙ୍କୁ ସମର୍ଥନକରି ଲଢ଼ିଥିଲେ ସେମାନଙ୍କ ନାମ ଇତିହାସରେ ଲେଖାହୋଇରହିଛି । ପୁଣି ଯେଉଁମାନେ ବକ୍ସିଙ୍କୁ ବିରୋଧକରି ଫିରିଙ୍ଗିକୁ ସମର୍ଥନ କରିଥିଲେ ସେମାନଙ୍କ ନାମ ମଧ୍ୟ ଇତିହାସ ଲେଖିରଖିଛି । କିନ୍ତୁ ତାପଙ୍ଗ ଦଳବେହେରାଙ୍କ ନାମ କୌଣସି ତାଲିକାରେ ନାହିଁ । ୧୮୦୪ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଖୋର୍ଦ୍ଧା ଯୁଦ୍ଧରେ ଜୟଲାଭକରି ଜୟୀ ରାଜଗୁରୁଙ୍କୁ ଫାଶିଦେଇ ମୁକୁନ୍ଦଦେବଙ୍କୁ ବନ୍ଦି କଲାପରେ ଖୋର୍ଦ୍ଧାରେ ଇଂରେଜ ଶାସନର ମୂଳଭିତ୍ତିକୁ ମଜବୁତ କରିଥିଲେ ଏବଂ ପୁଣି ୧୮୧୭ରେ ଖୋର୍ଦ୍ଧା ପାଇକ ବିଦ୍ରୋହକୁ ଦମନକଲାପରେ ସେ ଭିତ୍ତିଭୂମିକୁ ଅଧିକ ସୁଦୃଢ଼ କରିଥିଲେ ହେଁ ୧୮୨୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ତାପଙ୍ଗଗଡ଼ର

ଦଳବେହେରାଙ୍କ ବୀରତ୍ୱ ହେତୁ ତାପଙ୍ଗ ବାରପଲ୍ଲିରୁ ଫିରିଙ୍ଗି ସରକାର କର ଆଦାୟ କରି ପାରି ନ ଥିଲେ ବୋଲି ମଧୁସୂଦନ ବିପ୍ର ଯାହା ଲେଖିଛନ୍ତି ତାହା ମଧ ପ୍ରଣିଧାନଯୋଗ୍ୟ ।

ସେ ଲେଖିଛନ୍ତି, ଖୋର୍ଦ୍ଧା ରାଜାଙ୍କର ବହୁପୂର୍ବରୁ ତାପଙ୍ଗଗଡ଼ରେ ଗୁପ୍ତ ଅସ୍ତ୍ରାଗାର ଥିଲା । ମୁକୁନ୍ଦଦେବଙ୍କ ସମୟରେ ତାପଙ୍ଗ ଦଳବହେରା ମାଧବଚନ୍ଦ୍ରଙ୍କ ବୀରତ୍ୱରେ ମୁଗ୍ଧହୋଇ ମୁକୁନ୍ଦଦେବ, ତାପଙ୍ଗଗଡ଼କୁ ଖୋର୍ଦ୍ଧା ଜିଲ୍ଲାର ଦକ୍ଷିଣ ଦ୍ୱାରଭାବେ ପ୍ରତିଷ୍ଠିତକଲେ, ଅର୍ଥାତ୍ ଦକ୍ଷିଣ ଦିଗରୁ କୌଣସି ଶତ୍ରୁ ଖୋର୍ଦ୍ଧା ଆକ୍ରମଣ କଲେ ତାକୁ ପ୍ରତିହତ କରିବାର ଅଧିକାର ତାପଙ୍ଗଗଡ଼ର ଦଳବେହେରାଙ୍କୁ ଦେଲେ । ସେ ପୁଣି ଲେଖିଛନ୍ତି, ଇଂରେଜମାନେ କଟକ ଅଧିକାର କରିବା ପରେ ପୂର୍ବ, ଉତ୍ତର ଓ ପଶ୍ଚିମ ଦିଗରୁ ଆକ୍ରମଣକରି ଖୋର୍ଦ୍ଧା ଅଧିକାରକଲେ । କିନ୍ତୁ ମାଧବଚନ୍ଦ୍ରଙ୍କ ବୀରତ୍ୱ ହେତୁ ଦକ୍ଷିଣ ପାଖକୁ ଅର୍ଥାତ୍ ତାପଙ୍ଗ ଆଡ଼କୁ ଆସିଲେ ନାହିଁ । "ଏହି ବେଳ ସାମନ୍ତ ଶ୍ରୀ ମାଧବଚନ୍ଦ୍ର, ଦୟାଦାନ ବୀରତ୍ୱରେ ଯେହ୍ନେ ସ୍ୱର୍ଗେ ଇନ୍ଦ୍ର - ୧୨/୮୪, ତାହାଙ୍କର ଯଶକୀର୍ତ୍ତି ଦେଖି ନରବର, ଦୁର୍ଗର ଦକ୍ଷିଣ ଦ୍ୱାରେ ଦେଲେ ଅଧିକାର-୮୬/, ବହୁପୂର୍ବରୁ ତାପଙ୍ଗ ଗଡ଼ରେ ଅସ୍ତ୍ରାଗାର, ଗୁପତରେ ରହିଥିଲା ଗଜପତିଙ୍କର - ୮୭/ "କଟକକୁ ଜୟକରି ହେଲେ ପରବେଶ, ମହାଘୋର ସମର ଯେ କଲେ ନରଈଶ - ୯୦/, ତହିଁପରେ ଜଗବନ୍ଧୁ ପାଇକ ଧରିଣ, ଫିରିଙ୍ଗି ସହିତ ଯୁଦ୍ଧ କରିଥିଲେ ପୁଣ - ୯୧/, ପୂର୍ବ ପଶ୍ଚିମ ଉତ୍ତର ଦୁଆର ଜିଣିଲେ, ଖୋରଧାଗଡ଼କୁ ବଳେ ଅଧିକାରକଲେ-୯୨, ସାମନ୍ତ ମାଧବଚନ୍ଦ୍ରଙ୍କର ବୀରପଣ, ଦେଖିଣ ଦକ୍ଷିଣଦ୍ୱାରେ ନ କଲେ ଗମନ - ୯୪/, ସମସ୍ତଗଡ଼ରୁ କର ଆଦାୟ କରିଲେ, ପ୍ରଜାମାନଙ୍କୁ ସେ ନାନା ଭୟଦେଖାଇଲେ ।" - ୯୫/,

ଏଥିରୁ ଜଣାପଡୁଛି ୧୮୦୪ ଖୋର୍ଦ୍ଧା ଯୁଦ୍ଧ ପରେ ତାପଙ୍ଗ ସମେତ ସମସ୍ତ ଗଡ଼ରୁ ଫିରିଙ୍ଗି ସରକାର କର ଆଦାୟକଲେ । କିନ୍ତୁ ୧୮୧୭ ପାଇକ ବିଦ୍ରୋହ ପରଠାରୁ ତାପଙ୍ଗ ଦଳବେହେରାଙ୍କ ୧୦ ବର୍ଷ ଯାଏ କର ଦେଲେ ନାହିଁ ବୋଲି ନିଜେ ପୁରୀରେ ରାଜାଙ୍କୁ ଭେଟି କହିଛନ୍ତି- "ବକ୍ସି ଜଗବନ୍ଧୁ ଯୁହୁଁ ହାରିଗଲେ ରଣେ, ଯଭରେ କର ଆଦାୟ କଲେ ଗୋରାମାନେ - ୧୨/୧୬୬/, ସେହିଦିନୁ ଦଶ ବର୍ଷ ନ ଦେଲୁ ଯେ କର, ଆମ୍ଭ ଉପରେ ଫିରିଙ୍ଗି ହୋଇ କୋପତ୍ତର ।"

ସେହିପରି ଉପରେ ଉଦ୍ଧୃତ ପଦରେ ତାପଙ୍ଗଗଡ଼କୁ ଖୋର୍ଦ୍ଧା କିଲ୍ଲାର ଦକ୍ଷିଣଦ୍ୱାର ବୋଲି କୁହାଯାଇଥିବାବେଳେ ୧୮୦୨ ଖ୍ରୀ.ରେ ଖୋର୍ଦ୍ଧା ରାଜାଙ୍କ ସୈନ୍ୟ ଜୟୀ ରାଜଗୁରୁଙ୍କ ନେତୃତ୍ୱରେ ଡମପଡ଼ା ଅଧିକାର କରିବାପରେ ମରହଟ୍ଟା ସୁବାଦାର କ୍ଷୁବ୍ଧ ହୋଇ ଖୋର୍ଦ୍ଧା ଆକ୍ରମଣ କରିପାରନ୍ତି- ଏହି ଆଶଙ୍କାରେ ମୁକୁନ୍ଦଦେବ ଖୋର୍ଦ୍ଧାଗଡ଼ର ଚାରିଦ୍ୱାରକୁ କଡ଼ା ପହରାଦେଇ ଜଗିରହିବାକୁ ପରିଚ୍ଛାଙ୍କୁ ନିର୍ଦ୍ଦେଶ ଦେଲାବେଳେ ପୂର୍ବରେ 'ବରପଦା',

ଉତ୍ତରରେ 'ଗଙ୍ଗପଡ଼ା', ପଶ୍ଚିମରେ 'ତରତୁଆ' ଓ ଦକ୍ଷିଣରେ 'ଲାଲସିଂହ' (ନାଲସିଂ) ଏହି ଚାରିଦ୍ୱାର କଥା କୁହାଯାଇଛି-

"ଘାଟିର ଉତ୍ତର ଦ୍ୱାର ଅଟେ 'ଗଙ୍ଗପଡ଼ା', ହସ୍ତେ ଖଣ୍ଡାଧରି ଦ୍ୱାରେ ବିଜୟେ ଚାମଣ୍ଡା' - ୭/୧୨୫/, 'ବରପଦା' ବୋଲି ପୂର୍ବେ ଅଟଇ ଯେ ଦ୍ୱାର, ସେ ଦ୍ୱାରରେ କେବା କରି ପାରିବ ସମର - ୧୨୭/, ଖୁରୁଧା ଦକ୍ଷିଣେ ଯେ ଦ୍ୱାର ଲାଲ ସିଂହ, ସେ ଦ୍ୱାରେ ଲାଗିଲେ ଯମପୁର ନିଶ୍ଚେ ଯିବ - ୧୨୯/, ବାରୁଣାବନ୍ତ ପଶ୍ଚିମଦ୍ୱାର 'ତରତୁଆ', ସେ ଦ୍ୱାର ଅଟଇ ହାଡ଼ ରକ୍ତ ମାଂସ ଖିଆ" - ୧୩୦ ।

ଖୋର୍ଦ୍ଧାଗଡ଼ଠାରୁ ତାପଙ୍ଗଗଡ଼ର ଦୂରତ୍ୱ ଦକ୍ଷିଣକୁ ମାତ୍ର ଦଶ କିଲୋମିଟର ହୋଇଥିବା ବେଳେ ଲାଲସିଂହ ବା ନାଲସିଂହଗଡ଼ର ଦୂରତ୍ୱ ପ୍ରାୟ କିଲୋମିଟର ହେବ । ଗୋଟିଏ ସ୍ଥାନରେ ତାପଙ୍ଗଗଡ଼କୁ ଦକ୍ଷିଣଦ୍ୱାର ବୋଲି ଲେଖିଥିବାବେଳେ ଆଉ ଗୋଟିଏ ସ୍ଥାନରେ ଲାଲସିଂହ ଗଡ଼କୁ ଦକ୍ଷିଣ ଦ୍ୱାର ବୋଲି ମଧୁସୂଦନ ବିପ୍ର କିପରି ଓ କାହିଁକି ଲେଖିଛନ୍ତି ବୁଝିହେଉ ନାହିଁ । ଏଠାରେ ସୂଚାଇଦେବା ଉଚିତ ଯେ, ୧୮୧୭ରେ ଲାଲସିଂହ ଗଡ଼ର ଦଳବେହେରା ଗୌରାଙ୍ଗ ବୈରୀଶଲ ବକ୍ସିଙ୍କୁ ସମର୍ଥନକରି ପାଇକବିଦ୍ରୋହର ପ୍ରମୁଖ ଅଂଶ ଗ୍ରହଣକରିଥିଲେ । ତେବେ ସେ ଯାହାହେଉ, କେଉଁ କାରଣରୁ ତାପଙ୍ଗ ଦଳବେହେରା ପାଇକ ବିଦ୍ରୋହରେ ଯୋଗ ଦେଇ ନ ଥିଲେ, କେଉଁ କାରଣରୁ ସେ ୧୮୦୪ ରୁ ୧୮୧୭ ଖ୍ରୀ. ପର୍ଯ୍ୟନ୍ତ ଫିରିଙ୍ଗି ସରକାରଙ୍କୁ ଖଜଣା ଦେଇ ପୁଣି ୧୮୧୭ ପାଇକ ବିଦ୍ରୋହ ପରଠାରୁ ଦଶ ବର୍ଷ ଧରି ଦେଇ ନ ଥିଲେ ଏବଂ କେଉଁ କାରଣରୁ ମଧୁସୂଦନ ବିପ୍ର ଗୋଟିଏ ସ୍ଥାନରେ ତାପଙ୍ଗଗଡ଼କୁ ଓ ଆଉ ଗୋଟିଏ ସ୍ଥାନରେ ଲାଲସିଂହ ଗଡ଼କୁ ଦକ୍ଷିଣଦ୍ୱାର ବୋଲି କହିଛନ୍ତି, ଏସବୁ ପ୍ରଶ୍ନର ସଠିକ ଉତ୍ତର ଖୋଜି ପାଇବା ସମ୍ଭବପର ନୁହେଁ । କିନ୍ତୁ ତାପଙ୍ଗ ଦଳବେହେରା ପାଇକ ବିଦ୍ରୋହରେ ଯୋଗଦେଇ ନ ଥିବା ହେତୁ ଏବଂ ମଧୁସୂଦନ ବିପ୍ର ଦଳବେହେରାଙ୍କର ଜଣେ ସ୍ତାବକ ହୋଇଥିବା ହେତୁ ପାଇକ ବିଦ୍ରୋହ ବୃତ୍ତାନ୍ତକୁ ନିଜ ଲେଖାରୁ ବାଦଦେଇଛନ୍ତି ଅଥବା ଲେଖି ନାହାନ୍ତି ବୋଲି ଅନୁମାନ କରିବାର ଯଥେଷ୍ଟ କାରଣ ରହିଛି ।

ସେହିପରି ତାପଙ୍ଗଗଡ଼ର ଦଳବେହେରା ମାଧବଚନ୍ଦ୍ର ରାଉତରାୟଙ୍କ ଭଳି ଜଣେ ସୁଦକ୍ଷ ଓ ପ୍ରଭାବଶାଳୀ ପାଇକ ଯୋଦ୍ଧା ବକ୍ସିଙ୍କ ପାଇକ ବିଦ୍ରୋହରେ ଯୋଗ ନ ଦେଇ ନିରପେକ୍ଷ ରହିଥିବାରୁ ତାଙ୍କ ଇଲାକାରୁ ବିଦ୍ରୋହ ସମୟରେ କର ଆଦାୟ ଉପରେ ଜୋର୍ ଦେଲେ ସେ କାଳେ କ୍ଷୁବ୍ଧହୋଇ ବିଦ୍ରୋହରେ ଯୋଗଦେବେ ଏହି ଭୟରେ ହୁଏତ ଇଂରେଜମାନେ ୧୮୧୭ରୁ ୧୮୨୭ ପର୍ଯ୍ୟନ୍ତ ତାଙ୍କଠାରୁ କର ଆଦାୟ ଉପରେ ଗୁରୁତ୍ୱ ଦେଇ ନ ଥିଲେ । କିନ୍ତୁ ୧୮୨୭ରେ ବକ୍ସି ଜଗବନ୍ଧୁ ଆତ୍ମପ୍ରକାଶ କଲାପରେ ସେ ଭୟ ଛାଡ଼ିଯିବାରୁ ତାପଙ୍ଗ ଗଡ଼କୁ କର ଆଦାୟ କରିବାକୁ ଗଲେ, ଏହା ମଧ୍ୟ ଅନୁମାନ କରାଯାଇପାରେ ।

❑ ❑ ❑

# ଦ୍ୱିତୀୟ ଭାଗ

## ପ୍ରଥମ ଅଧ୍ୟାୟ

## ଦଧିଭଦ୍ରାରୁ ଦୟା - ଅତୀତ ଓ ବର୍ତ୍ତମାନ

### ପୁରାଣ ଓ ଇତିହାସ

ତ୍ୱଷ୍ଟା ପ୍ରଜାପତିଙ୍କର ତିନିମୁଣ୍ଡିଆ ପୁଅ (ତ୍ରିଶିରା) ବିଶ୍ୱରୂପ କଠିନ ତପସ୍ୟାରତ ଥିଲାବେଳେ ଦେବରାଜ ଇନ୍ଦ୍ରଙ୍କର ଭୟହେଲା କାଳେ ତପସ୍ୟାବଳରେ ବିଶ୍ୱରୂପ ଇନ୍ଦ୍ରପଦ ନେଇଯିବ। ଇନ୍ଦ୍ର ବଜ୍ର ପ୍ରହାରକରି ତପସ୍ୟାରତ ବିଶ୍ୱରୂପକୁ ହତ୍ୟାକଲେ। ଏ ଜଘନ୍ୟ ହତ୍ୟାକାଣ୍ଡର ପ୍ରତିଶୋଧ ନେବାପାଇଁ ତ୍ୱଷ୍ଟା ବିରାଟ ଯଜ୍ଞକରି ଯଜ୍ଞାନଳରୁ ଆଉ ଏକ ପୁତ୍ର ଜାତକଲେ। ତାର ନାମ ରଖିଲେ ବୃତ୍ର। ବିରାଟକାୟ ବୃତ୍ରାସୁରକୁ ତ୍ୱଷ୍ଟା ଇନ୍ଦ୍ରଙ୍କ ଉପରେ ପ୍ରତିଶୋଧ ନେବାପାଇଁ ପ୍ରବର୍ତ୍ତାଇଲେ। ବୃତ୍ର କଠିନ ତପସ୍ୟା କରି ବ୍ରହ୍ମାଙ୍କଠାରୁ ବର ପାଇଲା ଯେ ସେ କୌଣସି ଅସ୍ତ୍ର ଦ୍ୱାରା ନିହତ ହେବ ନାହିଁ। ତା'ପରେ ସେ ସ୍ୱର୍ଗ ଆକ୍ରମଣକରି ଇନ୍ଦ୍ରଙ୍କୁ ପରାସ୍ତ କଲା। ଇନ୍ଦ୍ର ଦେବଗଣଙ୍କ ସହ ପଳାଇଯାଇ ବିଷ୍ଣୁଙ୍କ ଶରଣାପନ୍ନ ହେବାରୁ ବିଷ୍ଣୁ କହିଲେ, ଯଦି କୌଣସି ସିଦ୍ଧ ମହର୍ଷି ସ୍ୱଇଚ୍ଛାରେ ନିଜର ଅସ୍ଥି ଦାନକରିବେ ସେହି ଅସ୍ଥିକୁ ବଜ୍ରକରି ବୃତ୍ରାସୁର ଉପରେ ପ୍ରହାରକଲେ ସେ ମରିବ। ଧ୍ୟାନରତ ଦଧୀଚି ମହର୍ଷି ଏହା ଜାଣିପାରି ସ୍ୱର୍ଗଭୂମିର ସୁରକ୍ଷା ନିମନ୍ତେ କଣ୍ୱ, ଭାର୍ଗବାଦି ବହୁ ମୁନି ଋଷି ଓ ଦେବତାଙ୍କ ସମ୍ମୁଖରେ ହସି ହସି ନିଜର ଅସ୍ଥି ଦାନକଲେ। ଇନ୍ଦ୍ର ଦଧୀଚିଙ୍କ ଅସ୍ଥିକୁ ବଜ୍ରକରି ସେହି ଅସ୍ଥିରେ ବୃତ୍ରାସୁରକୁ ବଧକଲେ।

ବିଶ୍ୱର କଲ୍ୟାଣପାଇଁ ଦଧୀଚି ନିଜ ଶରୀରକୁ ଦୁଇଖଣ୍ଡ କରିଦେବାରୁ ତାଙ୍କର ଶୋଣିତ ଦୁଇଧାର ହୋଇ ବହିଗଲା। ଗୋଟିଏ ଧାରର ନାମ ଦଧୀଚିଙ୍କ ନାମାନୁସାରେ ଦଧିଭଦ୍ରା ହେଲା - ଯାହା ଦୟାନଦୀ ନାମରେ ପରିଚିତ। ଅନ୍ୟ ଧାରଟିର ତଟରେ ଭାର୍ଗବଋଷି ତପସ୍ୟାରେ ବସି ସମାଧିସ୍ଥ ହୋଇଯିବାରୁ ତାର ନାମ ହେଲା ଭାର୍ଗବୀ।

ଭୁବନେଶ୍ୱରରୁ ଅଳ୍ପ ଦୂରରେ ଝିଣ୍ଟି ଶାସନ ନିକଟରେ ଭାର୍ଗବୀ କୂଳରେ ଥିବା ଭାର୍ଗବ ଆଶ୍ରମରେ ଏକ ବିରାଟ ଉଇହୁଙ୍କାକୁ ଭାର୍ଗବ ଋଷିଙ୍କ ସମାଧି ରୂପେ ଏବେ ପୂଜାକରାଯାଉଛି । ହୁଙ୍କା ମୂଳରେ ଦୁଇହଳ ପୁରୁଣା କଠଉ ଥୁଆହୋଇଛି । ସେହି ପୁରୁଣା ଯୁଗରୁ ଭାର୍ଗବ ଋଷିଙ୍କର ଏ କଠଉ ଓ ସମାଧି ହୁଙ୍କା ରହିଆସିଛି ଏବଂ ୧୯୮୨ ବନ୍ୟା ଭଳି ବହୁ ବଡ଼ ବଡ଼ ବନ୍ୟାରେ ପାଣି ଘେର ଭିତରେ ବୁଡ଼ିରହି ମଧ ଏ ହୁଙ୍କାର କିଛି କ୍ଷତି ହୋଇ ନାହିଁ ବୋଲି ସ୍ଥାନୀୟ ଲୋକେ କହୁଛନ୍ତି । ଦଧିଭଦ୍ରା ଓ ଭାର୍ଗବୀ ଉଭୟ ଧାର ପୁଣି ଚିଲିକା କୂଳରେ ଏକାଠି ମିଶିଯାଇଛନ୍ତି । ଦଧୀଚିଙ୍କ ଅସ୍ଥିଦାନ ଯଜ୍ଞ ପରେ କଣ୍ୱମୁନି କିଛିକାଳପାଇଁ ଦଧିଭଦ୍ରାକୂଳରେ ଆଶ୍ରମ କରି ରହିଥିଲେ । ସେଇ 'କଣ୍ୱାଶ୍ରମ'ରୁ ଆଧୁନିକ କଣାସ ନାମର ଉତ୍ପତ୍ତି ବୋଲି ଜନଶ୍ରୁତି ଅଛି । ଦୟାନଦୀର ଉତ୍ପତ୍ତି ସମ୍ପର୍କରେ ଏ ପୌରାଣିକ ଉପାଖ୍ୟାନଟି ଯେପରି ମହାନ୍, ଅତୀତର ଗୌରବମୟ ଇତିହାସକୁ ଦୟାନଦୀର ଅବଦାନ ତଦପେକ୍ଷା ଅଧିକ ମହତ୍ତର । ପୁରାଣ ଯୁଗରେ ସ୍ୱର୍ଗଭୂମିପାଇଁ ଜଣେ ଦଧୀଚି ପ୍ରାଣପାତ କରି ଯେଉଁ ଦୟାନଦୀରେ ନିଜର ଶୋଣିତ ଢାଳିଦେଇଥିଲେ, ସେଇ ଦୟାନଦୀର ପ୍ରବାହରେ ପୁଣି ଦିନେ ଦୁର୍ଜ୍ଜୟ ବୀର କଳିଙ୍ଗସେନା ରୂପରେ ଲକ୍ଷ ଲକ୍ଷ ଦଧୀଚି ମାତୃଭୂମିପାଇଁ ପ୍ରାଣପାତ କରି ନିଜର ଶୋଣିତ ଢାଳିଦେଲେ । ସେଇ ଦୟାନଦୀ କୂଳରେ ଚଣ୍ଡାଶୋକ ଧର୍ମାଶୋକ ହୋଇଗଲେ; ଧଉଳି ଶିଖରୀର ଶାନ୍ତିବାର୍ତ୍ତା ବହନକରି ଦୟାନଦୀ ଯୁଗ ଯୁଗପାଇଁ ଇତିହାସ ବକ୍ଷରେ କାଳଜୟୀ ହୋଇଗଲା ।

କୌଣସି କୌଣସି ଐତିହାସିକଙ୍କ ମତରେ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ମଗଧ ସମ୍ରାଟ ମହାପଦ୍ମନନ୍ଦଙ୍କଦ୍ୱାରା ଖୋଳାଯାଇଥିବା କଳିଙ୍ଗ କେନାଲ ହିଁ ପରବର୍ତ୍ତୀ କାଳରେ ଦୟାନଦୀ ନାମରେ ଚିହ୍ନିତ ହୋଇଥିବା ସମ୍ଭବପର[୧୯୪]। ମହାପଦ୍ମନନ୍ଦ ଖୋଳାଇଥିବା ସେହି କେନାଲକୁ ତିନି ଶହ ବର୍ଷ ପରେ ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ କଳିଙ୍ଗ ସମ୍ରାଟ ଖାରବେଳ ପୁନର୍ଖନନ କରାଇ ତୋଷାଳୀ ଓ କଳିଙ୍ଗ ନଗରକୁ ସଂପ୍ରସାରିତ କରାଇଥିଲେ । ୧୯୪୮ ମସିହାରେ କରାଯାଇଥିବା ପ୍ରତ୍ନତାତ୍ତ୍ୱିକ ଖନନ ଫଳରେ ଆଧୁନିକ ଶିଶୁପାଳଗଡ଼ ହିଁ ପ୍ରାଚୀନ କଳିଙ୍ଗନଗର ଥିଲା ବୋଲି ଜଣାପଡ଼ିଛି[୧୯୫] ସୁତରାଂ ଦୟାନଦୀର ଉତ୍ପତ୍ତି ସମ୍ପର୍କରେ ଏପରି ଏକ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ତଥ୍ୟକୁ ଉପେକ୍ଷା କରାଯାଇ ନ ପାରେ ।

କିନ୍ତୁ ଏତିକିରେ ଇତି ହେଲା ନାହିଁ ଦୟାନଦୀର ଇତିହାସ । ତାର ପ୍ରତ୍ୟକ୍ଷ ସଂଯୋଗ ଉପରପାଖେ କୁଆଖାଇ-କାଠଯୋଡ଼ି ମଧଦେଇ ନୌବାଣିଜ୍ୟ ବିଭବା ମହାନଦୀ ସଙ୍ଗେ, ଆଉ ତଳପାଖେ ଚିଲିକାହ୍ରଦ ମଧଦେଇ ମହାସମୁଦ୍ର ସଙ୍ଗେ । ସମତଳ ଭୂମି ଉପରେ ପ୍ରବାହିତ ଗଭୀର ଶଯ୍ୟା ଓ ମନ୍ଥର ଗତିଶୀଳା ଦୟାନଦୀ ବର୍ଷତମାମ ସୁନାବ୍ୟା

---

*୧୯୪- ଐ/୭୪ ୧୯୫- ଐ/୭୮*

ଥିଲା । ତେଣୁ ଯେତେବେଳେ କଳିଙ୍ଗର ସାଧବମାନେ ସାତସମୁଦ୍ର ତେରନଈରେ ବଣିଜ ବୋଇତ ମେଲି ଦେଇଥିଲେ ସେତେବେଳେ ପୁଣି ଦୟାନଦୀର ବକ୍ଷ ସ୍ଫୀତ ହୋଇଉଠିଲା ଅସଂଖ୍ୟ ପଣ୍ୟବାହୀ 'କୋଶଳୀ' ଆଉ 'ପଟୁଆ' ନାଆର ପଟୁଆରରେ । ଏଇମାତ୍ର ଷାଠିଏ ବର୍ଷ ତଳର କଥା - ଦୟାନଦୀ କୂଳରେ ଠିଆହୋଇ ଦେଖିଲେ ସମ୍ବଲପୁର-କଟକ ଆଡୁ ଆସୁଥିବା ଅନେକ କୋଶଳୀ ନାଆ, ଆଉ ରମ୍ଭା, ହୁମା, ବାଲୁଗାଁ ଆଡୁ ଆସୁଥିବା ଅନେକ 'ପଟୁଆ' ନାଆ ଦେଖାଯାଉଥିଲା । ଶହେ ଦୁଇ ଶହ ଗଜ ଲମ୍ବ ଗୋଟିଏ ଗୋଟିଏ କୋଶଳୀ ନାଆକୁ ଏକ ସମୟରେ ୨୦/୪୦ ଜଣ ନାଉରି କାତମାରି ସୁଅର ପ୍ରତିକୂଳରେ ବାହିନେଉଥିବା ମଧ ଦେଖାଯାଉଥିଲା ।*

## ଦରିଆପାରି ନୌ-ବାଣିଜ୍ୟ ପ୍ରତି ଦୟାର ଅବଦାନ

ଦୟାନଦୀ କୂଳରେ କଣାସ 'ଗୋଲା' । ଏଇ 'ଗୋଲା'ର ଏକ ଦୀର୍ଘ ଇତିହାସ ଲେଖି ୧୯୩୮ ମସିହାରେ ଐତିହାସିକ ଡା. ରାଧାଚରଣ ପଣ୍ଡା ଏକ ପତ୍ରିକାରେ ପ୍ରକାଶକରିଥିଲେ; ବୋଧହୁଏ 'ନବଭାରତ' କି 'ସହକାର' ପତ୍ରିକାରେ । ଏହା ଥିଲା ସେ କାଳର ନୌବାଣିଜ୍ୟପାଇଁ ବ୍ୟବହୃତ ଆମଦାନୀ- ରପ୍ତାନୀ ପଣ୍ୟଦ୍ରବ୍ୟର 'ଗୋଲା' ବା ମହଜୁଦ୍ ରଖିବାର ସ୍ଥାନ । 'ଗୋଲା'ରୁ ୪୦୦/ ୫୦୦ ଗଜ ଦୂରରେ 'କାନୁପୁର ପେଣ୍ଠ' । ବର୍ଷ ତମାମ ସେ ପେଣ୍ଠରେ ପ୍ରତିଦିନ ଶହ ଶହ ନାଆ ଭିଡ଼ାହେଉଥିଲା; ଦିନରାତି ପଣ୍ୟଦ୍ରବ୍ୟଗୁଡ଼ିକର ବୋଝେଇ ଓ ଖଲାସି କାମ ଚାଲିଥିଲା ।*

ଦୟାକୂଳର ସେଇ 'କାନୁପୁର' ପେଣ୍ଠ । 'କାନୁପୁର' ନାମରେ ଏଠି କାହିଁ ହେଲେ ପାଖରେ ଗାଁ ବସ୍ତି କିଛି ନାହିଁ । ତଥାପି ଏ ପେଣ୍ଠର ନାମ 'କାନୁପୁର' କାହିଁକି ? କାନୁପୁର ପେଣ୍ଠକୁ ଲାଗି ତରପଡ଼ା ଆଉ ବାଲିପାଟଣା -ଲଗାଲଗି ଦୁଇଟି ଗାଆଁ । 'ତର' ଶବ୍ଦର ଅର୍ଥ ଶୁଳ୍କ ବା ଘାଟମୂଲ । କାନୁପୁର ପେଣ୍ଠରୁ ନୌଶୁଳ୍କ ଆଦାୟପାଇଁ ଏଇଠି ଡେରାପଡ଼ିଥିଲା, ତାର ସ୍ମାରକୀ ତରପଡ଼ା ନାଁରେ ଛୋଟ ଗାଆଁଟିଏ ଠିଆହୋଇଛି । ଦୁଇ ଚାରୋଟି ଚାଷୀ ପରିବାର ବ୍ୟତୀତ ଗାଁଆର ଆଉ ସମସ୍ତେ ପ୍ରାୟ ଭୂମିହୀନ । ସେମାନେ ମୁଣ୍ଡରେ, ସାଇକେଲରେ ଶୁଖୁଆ ମାଛ ବେପାର କରି ଚଳୁଛନ୍ତି । କିନ୍ତୁ ବାଲିପାଟଣା ଅପେକ୍ଷାକୃତ ବଡ଼ଗାଆଁଟିଏ । ଏବେ ଲୋକସଂଖ୍ୟା ଏକହଜାର ପାଞ୍ଚଶହ ହେବ । ଏ ଗାଆଁରେ କିନ୍ତୁ ସବୁ ବାସିନ୍ଦା ଗୋଟିଏ ପାଟକର ଭୂମିହୀନ କୈବର୍ତ୍ତ- କିନ୍ତୁ ମତ୍ସ୍ୟଜୀବୀ ନୁହଁନ୍ତି । ଏମାନେ ଥିଲେ ନୌଜୀବୀ । ଏବେ ତ ଆଉ ନୌକା ନାହିଁ, ସମସ୍ତେ ମୁଣ୍ଡରେ ଆଉ ସାଇକେଲରେ ବେପାର କରି ଗୁଜୁରାଣ ମେଣ୍ଟାନ୍ତି । ବାଲିପାଟଣା ଗାଆଁର ଚାରିପାଖରେ ତରପଡ଼ା ମୌଜା ଘେରିରହିଛି । କେବଳ ବସ୍ତିଟିକୁ ନେଇ 'ବାଲିପାଟଣା' ମୌଜା ରାଜସ୍ୱ ବିଭାଗର ମାନଚିତ୍ରରେ ସ୍ଥାନପାଇଛି । ତେଣୁ ବାଲିପାଟଣା ଗାଆଁଟି ତରପଡ଼ା ଗାଆଁର ବହୁ ପଛରେ ସ୍ଥାପିତ ହୋଇଥିବା ଅନୁମିତ ହୁଏ । ଏ ଗାଆଁ ଲୋକଙ୍କର

---

* *ଲେଖକର ଚାକ୍ଷୁସ ଘଟଣା*

ବନ୍ଧୁବାନ୍ଧବ ସବୁ ଆଖପାଖରେ କୋଉଠି ନାହାନ୍ତି । ଅଧିକାଂଶ ଅଛନ୍ତି କଟକ ସହର ଭିତରେ । ଦୟାନଦୀ ଓ ମହାନଦୀ ଭିତରେ ନୌବାଣିଜ୍ୟ ଚଳାଚଳ ସମୟରୁ ହିଁ ବାଲିପାଟଣା ସହିତ କଟକ ସହରର ଏହି ସମ୍ପର୍କ ସ୍ଥାପିତ ହୋଇଆସିଥିବା ସମ୍ଭବ । ତେଣୁ ମନରେ ସ୍ୱତଃ ପ୍ରଶ୍ନ ଉଠିବା ସ୍ୱାଭାବିକ- ଏଇମାନେ କ'ଣ ସେକାଳର ଓଡ଼ିଆ ସାଧବ ବା ନୌବଣିକମାନଙ୍କର ବଂଶଧର ? ବାଲି ଦ୍ୱୀପ ଆଉ କାନୁପୁର ପେଣ୍ଠ ଭିତରେ ବେପାର ଚଳେଇ ଏଇମାନଙ୍କ ପୂର୍ବପୁରୁଷମାନେ ବାଲିଦ୍ୱୀପ ନାଁରେ ବାଲିପାଟଣା ବସ୍ତି ବାନ୍ଧି ରହୁଥିଲେ କି ?

ଡକ୍ଟର ହରେକୃଷ୍ଣ ମହତାବ ତାଙ୍କର ଓଡ଼ିଶା ଇତିହାସରେ 'ସାଗର ପାରେ ଓଡ଼ିଆ' ଅଧ୍ୟାୟରେ ଲେଖିଛନ୍ତି- ଜାଭା ରାଜ୍ୟରେ ପ୍ରଚଳିତ କିମ୍ବଦନ୍ତୀ ଅନୁଯାୟୀ - ''କଳିଙ୍ଗ ରାଜା କୋଡ଼ିଏ ହଜାର ପରିବାରକୁ ଜାଭା ପଠେଇଥିଲେ । ଏ ଲୋକେ ସମୃଦ୍ଧିଶାଳୀ ହୋଇ ସଂଖ୍ୟାରେ ବଢ଼ିବାକୁ ଲାଗିଲେ । ସେମାନେ ୨୮୯ ଜାଭା ଅବ୍ଦ (ଖ୍ରୀ.୩୬୭) ପର୍ଯ୍ୟନ୍ତ ଅନୁନ୍ନତ ଅବସ୍ଥାରେ ଥିଲେ । ଶେଷରେ ସେଇ ବର୍ଷ ବିଧାତା (ରାଜା) ସେମାନଙ୍କୁ 'କାନୁ' ନାମକ ରାଜ୍ୟ ଦେଇ ଅନୁଗ୍ରହକଲେ ।''[୧୯୬]

ତା'ହେଲେ କ'ଣ ସେଇ ଓଡ଼ିଆ ବଣିକମାନଙ୍କର ମଧ୍ୟରୁ ଦଳେ ବେପାର କରୁଥିବା ବେଳେ 'ବାଲି' ଦ୍ୱୀପ ନାଁରେ ବାଲିପାଟଣା ଗ୍ରାମ ଆଉ 'କାନୁ' ରାଜ୍ୟ ନାଆଁରେ କାନୁପୁର ପେଣ୍ଠ ସ୍ଥାପନ କରିଥିଲେ ? ଏସବୁ ପ୍ରଶ୍ନର ଉତ୍ତର ଛାଏଁ ଛାଏଁ ମିଳିଯାଏ, କାନୁପୁର ପେଣ୍ଠ ଆଉ ଦୟାନଦୀ ମୁହାଣ ଭିତରେ ।

କେବଳ ଦୟାନଦୀ ନୁହେଁ, ଏବେ ଚିଲିକା ହ୍ରଦ ବି ପୋତିହୋଇଗଲାଣି । ଏଇମାତ୍ର ପଚାଶ ବର୍ଷ ତଳେ ୧୯୪୦ ମସିହାରେ ଲେଖକ ଦୟାନଦୀ ମୁହାଣରୁ ନାଆରେ ପାରିକୁଦ ଯିବାବେଳେ ଯେଉଁ ସ୍ଥାନରେ ନଇମୁହାଣ ଆଉ ଚିଲିକା କୂଳ ଥିଲା, ଏବେ ସେଠୁ ୫/୬ ମାଇଲ ଯାଏ ଚିଲିକା ଭିତରକୁ ପୋତି ହୋଇ ଧାନଜମି ଅଥବା ଚାରଣ ଭୂମି ହୋଇଗଲାଣି । କିନ୍ତୁ ଏବେ ଯେଉଁଠି 'ବଡ଼ଓରା' 'ସାନଓରା' 'ଅଡ଼ାଳବଡ଼ାଳ' ଗାଆଁ ଅଛି ଏକ ସମୟରେ ସେଇଠି ଦୟାନଦୀ ଚିଲିକା ସହିତ ମିଶିଥିଲା । କୌଣସି ସମଜାତୀୟ ବସ୍ତୁସମୂହକୁ ପାଖକୁ ପାଖ ଲଗାଇ ଏକାଠିକରି ରଖିବାକୁ 'ଅରେଇବା' କୁହାଯାଏ । ଏଇ 'ଅରେଇବା' କ୍ରିୟାରୁ ବିଶେଷ୍ୟ 'ଅରା'- ଯାହାର ଅର୍ଥ ଏକତ୍ରୀକୃତ ଏକଜାତୀୟ ବସ୍ତୁସମୂହ, ପଲ, ଭେଳା.. ଇତ୍ୟାଦି । ଚିଲିକା ଭିତର ଦେଇ ଯାତାୟାତ କରୁଥିବା ବୋଇତ ଏଠି ନଈ ମୁହଁରେ ରହୁଥିଲା ଏବଂ ନଈ ଭିତରେ ଯାତାୟାତ କରୁଥିବା ନୌକାଅରା ବୋଇତର ଦୁଇ ପାଖରେ ନଈ ଦୁଇ କୂଳକୁ ଲାଗି ଖଟିଆହେଉଥିଲା । ଗୋଟିଏ ପାଖରେ ବେଶୀ ନାଆ କିମ୍ବା ବଡ଼ ନାଆ ଓ ଆଉ ଗୋଟିଏ

---

୧୯୬- ୧/୫୮

ପାଖରେ କମ୍ ନାଆ କିମ୍ବା ସାନ ନାଆ ଏକାଠି ରହୁଥିବାରୁ ସେଇ ନାଆ ଭେଳା ଦୁଇଟିକୁ 'ବଡ଼ଅରା' ଓ 'ସାନଅରା' କୁହାଯାଉଥିଲା । ବଡ଼ଓରା ଓ ସାନଓରା ନାମ ଦୁଇଟି ସେଇ ନୌଭେଳା ଦୁଇଟିର ପରବର୍ତ୍ତିତ ରୂପାନ୍ତର ଏବଂ ଭେଳାପାଖକୁ ଲାଗି ଗଡ଼ି ଉଠିଥିବା ଗ୍ରାମ ଦୁଇଟିକୁ ସେହି ନାମରେ ନାମିତକରାଯାଇଛି ।

ସେତେବେଳେ ଆମ ଦେଶରେ ବିନିମୟ ମାଧମ ରୂପେ କଉଡ଼ି ଚଳୁଥିଲା । କିନ୍ତୁ ବାହାର ରାଜ୍ୟରେ କଉଡ଼ି ବିନିମୟ ମାଧମରୂପେ ଗ୍ରହଣୀୟ ହେଉନଥିଲା । ତେଣୁ ମୂଲ୍ୟ ଭିତ୍ତିରେ ବିଭିନ୍ନ ପଣ୍ୟଦ୍ରବ୍ୟ ଅଦଳ ବଦଳ ପ୍ରଥା ପ୍ରଚଳିତ ଥିଲା । ବୋଇତରୁ ନାଆକୁ ଆମଦାନୀ ପଣ୍ୟ ଓ ନାଆରୁ ବୋଇତକୁ ରପ୍ତାନୀ ପଣ୍ୟ ନେବା ଆଣିବା ପୂର୍ବରୁ କୂଳରେ ଯେଉଁ ସ୍ଥାନରେ ପଣ୍ୟଦ୍ରବ୍ୟ ସବୁ ମୂଲ୍ୟ ଭିତ୍ତିରେ ଅଦଳ ବଦଳ କରାଯାଉଥିଲା ସେ ସ୍ଥାନରେ ଗଡ଼ିଉଠିଥିବା ବସ୍ତିର ନାମ କାଳକ୍ରମେ 'ଅଦଳବଦଳ'ରୁ ଅଡ଼ାଲବଡ଼ାଲ ହୋଇଗଲା ।

କିନ୍ତୁ କେବଳ ପଣ୍ୟଦ୍ରବ୍ୟ ଅଦଳବଦଳ ବେପାରପାଇଁ କିଛି ନା କିଛି ବିନିମୟ ମାଧମ ନିହାତି ଦରକାର । ଆଜିକାଲିପରି ସେ କାଳରେ ବୈଦେଶିକ ବିନିମୟ ମୁଦ୍ରା ପ୍ରଚଳନ ପ୍ରଥା ନ ଥିଲା । ତେଣୁ ସୁନାକୁ ବିନିମୟ ମାଧମରୂପେ ବ୍ୟବହାର କରାଯାଉଥିଲା । କିନ୍ତୁ ଆମ ଦେଶରେ କଉଡ଼ି ଚଳୁଥିବାରୁ ସୁନା ଆଉ କଉଡ଼ିର ବିନିମୟ ପ୍ରଥା ଦରିଆପାରି ବଣିଜ ବେପାରପାଇଁ ଅପରିହାର୍ଯ୍ୟ ଥିଲା । ସେହି ହେତୁରୁ ଅଡାଳବଡ଼ାଲଠାରୁ ମାତ୍ର ଦୁଇ ମାଇଲ ଉପରକୁ ଦୟାନଦୀର ଦୁଇକୂଳ ଉପରେ ମୁହାଁମୁହିଁ ହୋଇ ଗୋଟିଏ ପାଖରେ କଉଡ଼ିର ଖଣି ଓ ଆଉ ଗୋଟିଏ ପାଖରେ ସୁନାର ଖଳା' ବା ଭଣ୍ଡାର ରଖାଯାଇଥିଲା । ଆଧୁନିକ 'କଉଡ଼ିଖଣି' ଓ 'ସୁନାଖଳା' ଗ୍ରାମଦୁଇଟି ତହିଁର ଜ୍ୱଳନ୍ତ ନିଦର୍ଶନ ।

ଦୟାନଦୀ କୂଳରେ ଅବସ୍ଥିତ ଏଇ ଗ୍ରାମଗୁଡ଼ିକର ନାମରୁ ହିଁ ସ୍ପଷ୍ଟ ପ୍ରମାଣ ମିଳେ ଯେ ପ୍ରାଚୀନ କଳିଙ୍ଗ ରାଜ୍ୟର ନୌବାଣିଜ୍ୟ ସମୃଦ୍ଧିପାଇଁ ଦୟାନଦୀର ଅବଦାନ ଅତୁଳନୀୟ ଥିଲା ଏବଂ ସେ କାଳର ନୌ-ବଣିକମାନେ କଣାସ 'ଗୋଳା', 'କାନୁପୁର' ପେଣ୍ଠ ଓ ବାଲିପାଟଣା, କଉଡ଼ିଖଣି, ସୁନାଖଳା, ନାବଡ଼ା, (ନୌଅଡ଼ା), ଜଂଘାର (ଜଂଘାଳା=ପୋତ, ବୋଇତ) ଇତ୍ୟାଦି ଗ୍ରାମମାନ ପ୍ରତିଷ୍ଠା କରିଥିଲେ । ସେଇ ବିଶାଳ ବିଭବଶାଳୀ ଅତୀତ ଗୌରବର ସ୍ମାରକୀ ଦୟାନଦୀର ସ୍ୱରୂପ ଆଜି ବିଷାକ୍ତ ରାଜନୀତିର ଦଂଶନରେ କ୍ଷତବିକ୍ଷତ ହୋଇ ସମ୍ପୂର୍ଣ୍ଣ ବଦଳିଯାଇଛି । ଯେଉଁ ତଟଭୂମିରେ ସେ ଯୁଗ ଯୁଗ ଧରି ଅମୃତ ଢାଳି ସୁନା ଫଳେଇ ଆସିଥିଲା, ଆଜି ରାଜନୀତିର ବିଷଜ୍ୱାଳାରେ ଛଟପଟ ହୋଇ ସେଇ ତଟଭୂମି ଉପରେ ଅସ୍ୱାଭାବିକ ପ୍ଲାବନ ଓ ପ୍ରଳୟର ବିଭୀଷିକା ସୃଷ୍ଟି କରି ଚାଲିଛି ।

ଆଜିକୁ ୨୦୦୦/୨୫୦୦ ବର୍ଷ ପୂର୍ବେ ଯେତେବେଳେ ଚିଲିକାହ୍ରଦ ମଧ ଦେଇ ଦୟାତଟବର୍ତ୍ତୀ ନାବିକମାନେ ଭାରତ ମହାସାଗର ବକ୍ଷରେ ବୋଇତ ବାହି ଯାଇ ସୁଦୂର

ଦରିଆପାରି ପ୍ରାଚ୍ୟ ଭୂଖଣ୍ଡ ମାନଙ୍କରେ ବଣିଜ କରୁଥିଲେ, ସେତେବେଳେ ଆମ ଓଡ଼ିଶା (କଳିଙ୍ଗ) କିପରି ଦରିଆପାରି ବୋଇତ ବାଣିଜ୍ୟରେ ସାରା ବିଶ୍ୱରେ ପ୍ରଥମସ୍ଥାନ ଲାଭ କରିଥିଲା, ନିମ୍ନୋକ୍ତ ବିବରଣୀରୁ ତହିଁର ସୂଚନା ମିଳେ ।

"It is known that Kalings Seafarers made a bold oceanic voyage and managed to land at Java as early as 75 A.D. Having landed they settled in the Island, bulit up their contacts and developed regular trade with the main land of India. This marked the beginning of an era of Hindu Civilization in this area of the Far East x x x x x x "The Kalingas continued to maintain their contact with the mother-land The Chilika Lake in Modern Orissa served as excellent enchorage in the days of the kalingas."(୧୯୭)

"The Mahavamsa, which records the history of Cylone, says that the great dynasty of Singhalese was founded by an Indian prince of Kalinga in the 6th century B.C. At that time the ancient kingdom of Kalinga covered a vast area comprising not only the costal regions of modern Orissa, but also the adjacent districts of modern Andhra Pradesh and Bengal."(୧୯୮)

"Jayabhaya happens to be one of the most famous kings of Java in twentieth century who wrote a legend and believed himself to be a distant descendent of Kalinga families sent to Java by some Kalinga Princes in a remote past."

x x x

"It is apparent from an epigraphic record in Oriya of the 14th century A.D. found at Bali that good commercial relations were maintained between Bali and Orissa."

(The Ports in Orissa by Dr. K.Patra, PP 6,8)

"ଖ୍ରୀ;ପୂ: ୭୫ ସାଲରେ କଳିଙ୍ଗରୁ ଏକ ବାହିନୀଯାଇ ଜାଭାରେ ବସବାସ କରିଥିଲେ ବୋଲି ସାଇକ୍ଲୋପେଡ଼ିଆ ଅଫ୍ ଇଣ୍ଡିଆରେ ବର୍ଣ୍ଣିତ ଅଛି ।"

(Orissa and her remains by M.M. Ganguli ୧/୫୭)

"ଏହା ସୁନିଶ୍ଚିତ ଯେ ବହୁପୂର୍ବରୁ କଳିଙ୍ଗରୁ ବହୁ ସଂଖ୍ୟାରେ ଲୋକ ଯାଇ ସୁବର୍ଣ୍ଣଦ୍ୱୀପ (ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ ଓ ମାଳୟ ଦ୍ୱୀପପୁଞ୍ଜ)ରେ ବସବାସ କରିଥିଲେ ।" (୧/୬୨)

❑ ❑ ❑

୧୯୭- ୬୦/୩୬,୩୭ ୧୯୮- ୬୧/୬୭

# ଦ୍ୱିତୀୟ ଅଧ୍ୟାୟ
# ସିରାଇ ଦଣ୍ଡପାଟ

'କଣାସ' 'ସିରେଇ' 'ସହନା' - ଏ ତିନି ଗାଁ କଥା କହନା; 'ଡିମିରି' ଗାଁରେ ଡିମ୍ବବୁଝାମଣା 'ପସିଆପଡ଼ା'କୁ ଯାନା; ଯେବେ ଯିବ ଦୋକନ୍ଦା, ତେବେ ପାଇବ ଦି ଖୁନ୍ଦା।''.. ଇଏ ହେଉଛି ଲଗାଲଗି କେତୋଟି ଗାଁକୁ ନେଇ ବହୁକାଳରୁ ଲୋକମୁଖରେ ପ୍ରଚଳିତ ଢମାଳି ବୋଲିଟିଏ। ସ୍ୱର୍ଗତ ଦିଗମ୍ବର ଶ୍ରୀଚନ୍ଦନ ଏ ଅଞ୍ଚଳ ଲୋକଙ୍କର ଟାଣପଣକୁ ଲକ୍ଷ୍ୟକରି ତାଙ୍କ 'ଖୁରଧା ଦର୍ପଣ' ପୁସ୍ତକରେ ଏହି ପୁରୁଣା ବୋଲିଟର ଅବତାରଣା କରିଛନ୍ତି। ଏ ବୋଲିର ପ୍ରଚଳନ କିଏ କେବେ କାହିଁକି ଆରମ୍ଭକରିଥିଲା ତାର ଇତିହାସ ନାହିଁ । କିନ୍ତୁ ଇତିହାସ ଅଛି ଏଇସବୁ ଗାଁର। ସ୍ଥାନ କାଳ ପାତ୍ରକୁ ନେଇ ଅତୀତରେ ଘଟି ଯାଇଥିବା ଘଟଣା ହିଁ ଇତିହାସ। କାଳ ଅତୀତ ହୋଇଯାଏ, ପାତ୍ରମାନେ ହଜିଯାଆନ୍ତି କାଳଗର୍ଭରେ, କିନ୍ତୁ ସ୍ଥାନଟିଏ ଜନମାନସପଟରୁ ହଜି ମଧ ଧରାପୃଷ୍ଠରେ ସେହି ଅତୀତର ପାତ୍ର ଓ ଘଟଣାମାନଙ୍କୁ ଛାତି ତଳେ ଧରି ପଡ଼ିରହିଥାଏ।

ଓଡ଼ିଶାରେ ଏହିପରି ଅନେକ ବିସ୍ମୃତ ସ୍ଥାନ ଏବେ ବି ପଡ଼ିରହିଛି ଯାହାର ଅତୀତର ଇତିହାସ ଶହ ଶହ ବର୍ଷ ଧରି ମାଟି କାଦୁଅ ତଳେ ପୋତିହୋଇପଡ଼ିଛି। ସେହିସବୁ ଇତିହାସ ସଂଗୃହୀତ ହୋଇପାରିଲେ ଓଡ଼ିଶାର ଏକ ପୂର୍ଣ୍ଣାଙ୍ଗ ସମୃଦ୍ଧ ଇତିହାସ ସଂକଳନ ସମ୍ଭବପର ହୋଇପାରନ୍ତା  କିନ୍ତୁ ସେଥିପାଇଁ ଗାଁକୁ ଯିବାକୁ ପଡ଼ିବ, କାଦୁଅ ପଙ୍କ ମଶାମାଛି ଭିତରେ ଘାଣ୍ଟି ହେବାକୁ ପଡ଼ିବ। ଆଜିର ଯୁଗରେ ଯେତେବେଳେ ଲୋକେ ଗାଁ ଛାଡ଼ି ଏକମୁହାଁ ହୋଇ ସହରକୁ ଛୁଟିଛନ୍ତି ସେତେବେଳେ ପୁଣି ଗାଁକୁ ଫେରି କାଦୁଅ ଭିତରେ ପଶି ଇତିହାସ ଖୋଳିବ କିଏ ?

ଏମିତି କାଦୁଅ ପଙ୍କ ମଶା ମାଛିର ଗାଁଟିଏ ସିରାଇ - ଯାହାର ମାଟିତଳେ ହଜାର ବର୍ଷର ଇତିହାସ ପୋତି ହୋଇ ବିସ୍ମୃତ ହୋଇଯାଇଛି, ଅଛି କେବଳ 'ଉଆସତିହ' ନାଁରେ ପରିତ୍ୟକ୍ତ ପଡ଼ିଆଭୂଇଁ ଖଣ୍ଡେ। ଆସନ୍ତୁ ସେଇ 'ଉଆସତିହ'ରୁ ମାଟିପସାଏ ଲେଉଟାଇବା।

ସଂପ୍ରତି ସିରାଇ ଏକ ଅଜ୍ଞାତ ପଲ୍ଲୀ ଗାଁ । ଏବେ ସିରାଇଗାଁକୁ ଜାଣିବାକୁ ହେଲେ କଣାସ ମାଧ୍ୟମରେ ଜାଣିବାକୁ ହେବ । ପୁରୀ ଜିଲ୍ଲାର କଣାସ ଥାନା, କଣାସ ବ୍ଲକଠାରୁ ମାତ୍ର ଗୋଟିଏ କିଲୋମିଟର ଦୂରରେ ଅବସ୍ଥିତ ସେ ଅଞ୍ଚଳର ବଡ଼ ଗାଁଟିଏ; ଲୋକସଂଖ୍ୟା ୧୯୯୧ ଜନଗଣନାରେ ୨୦୦୦କୁ ଧାପ ଦେଇଛି । କିନ୍ତୁ ପଚାଶ ବର୍ଷ ତଳେ ଏଇ ସିରାଇ ମାଧ୍ୟମରେ ହିଁ କଣାସକୁ ଜାଣିବାକୁ ହେଉଥିଲା; କାରଣ ସେତେବେଳେ ସିରାଇ ପ୍ରଗଣା ଭିତରେ କଣାସ ଛୋଟ ଗାଁଟିଏ ଥିଲା । ଜମିଜମା ଖତିୟାନ୍‌ମାନଙ୍କରେ ସିରାଇ ପ୍ରଗଣାର ନାମ ଉଲ୍ଲେଖ ରହୁଥିଲା ।

ସିରାଇ ପ୍ରଗଣାର ସୃଷ୍ଟି ମୋଗଲ ରାଜତ୍ୱକାଳରେ; କିନ୍ତୁ ତା'ର ବହୁ ପୂର୍ବରୁ ସିରାଇ ଥିଲା ଏକ 'ଦଣ୍ଡପାଟ', ଯାହାର ନାମ ମାଦଳାପାଞ୍ଜିରେ ଉଲ୍ଲେଖ ଥିଲା । ଐତିହାସିକ ଡ. ହରେକୃଷ୍ଣ ମହତାବଙ୍କଦ୍ୱାରା ପ୍ରଦତ୍ତ ବିବରଣୀରୁ ଜଣାଯାଏ ଯେ ଗଙ୍ଗବଂଶ ରାଜତ୍ୱ କାଳରେ 'ସିରାଇ ଦଣ୍ଡପାଟ' ଓଡ଼ିଶାର ଏକ ସୁବୃହତ୍ ଓ ସୁସମୃଦ୍ଧ ବିଭାଗ (ଖଣ୍ଡ ରାଜ୍ୟ) ଥିଲା, ଯାହାକୁ 'ଆରୁ', 'କବର', 'ତଳିତରା' ଓ 'ସିରାଇ' ଏହି ଚାରି ଗୋଟି 'ବିଶି'ରେ ବିଭକ୍ତ କରାଯାଇଥିଲା ।[୧୯୯] ଚିଲିକାହ୍ରଦର ପୂର୍ବ-ଉତ୍ତର-ପଶ୍ଚିମକୁ ଲାଗି ଏହି ଚାରି ଗୋଟି ବିଶି ଅବସ୍ଥିତ ଥିଲା । 'ବିଶି'କୁ ବିଭିନ୍ନ ତାମ୍ରଲିପିରେ 'ବିଶୟ' ନାମ ଦିଆଯାଇଛି ଏବଂ 'ବିଶୟ'କୁ ଐତିହାସିକମାନେ ଇଂରାଜୀରେ District ବୋଲି ଲେଖିଛନ୍ତି । ସେ ଯାହାହେଉ, ସିରାଇ ଦଣ୍ଡପାଟ ଓ ସିରାଇ ବିଶିର ସଦର ମହକୁମା ଯେ ଏଇ ସିରାଇ ଗାଁ ଥିଲା ଏଥିରେ ସନ୍ଦେହ ନାହିଁ ।

## ସହଜପାରି କଟକ

ମାଦଳାପାଞ୍ଜିରେ ବର୍ଣ୍ଣିତ ଅଛି ଯେ ଗଙ୍ଗବଂଶର ଚତୁର୍ଥ ରାଜା ମଦନ ମହାଦେବ (୧୧୭୦-୧୧୯୪) ସିରାଇ ଦଣ୍ଡପାଟର ସହଜପାରି ଗ୍ରାମରେ ନିଜର କଟକ ବା ରାଜଧାନୀ ପ୍ରତିଷ୍ଠାକରିଥିଲେ ।[୨୦୦] ସେହି ସହଜପାରି କଟକର ଧ୍ୱଂସାବଶେଷ ଏବେ ଡେଲାଙ୍ଗ ବ୍ଲକ ଅନ୍ତର୍ଗତ ଘୋରଡ଼ିଆ ପଞ୍ଚାୟତର କୁଆପଦା ଗ୍ରାମମୁଣ୍ଡ ଧ୍ୱଜା ପାହାଡ଼ ଉପରେ ଓ ତାହାର ପଶ୍ଚିମରେ ଥିବା ଜଗତି ପଡ଼ିଆରେ ଦେଖିବାକୁ ମିଳେ । ଏହି ପାହାଡ଼ ଉପରେ ରଜାନଅର ଧ୍ୱଜା ଉଡୁଥିବାରୁ ଏହାକୁ ଧ୍ୱଜା ପାହାଡ଼ କୁହାଯାଉଥିଲା । ଏହି ପାହାଡ଼ର ମଧ୍ୟଭାଗରେ ରାଜପ୍ରାସାଦ ପଥରକାନ୍ଥର ମୂଳଦୁଆ ଏବଂ ଏକ ପୋତାକୂଅ ଅଛି । ଜଗତିପଡ଼ିଆରେ ରାଜାଙ୍କର ସେନାନିବାସ, ଅଶ୍ୱଶାଳା, ଘୋଡ଼ାଶାଳ ଓ ହାତୀଶାଳ ଇତ୍ୟାଦି ଥିବାର ବିଶ୍ୱାସ କରାଯାଏ । ସହଜପାରି କଟକର ଉତ୍ତରରେ ମୋଟରୀଗଡ଼, ଦକ୍ଷିଣରେ ପ୍ରାୟ

---

୧୯୯- ୧/୩୪     ୨୦୦- ୧୦/୩୬୦

ଏକଶହ ଏକର ପରିମିତ ବିରାଟ ତରାପୋଖରୀ (ହ୍ରଦ), ପୂର୍ବରେ କାଳୁପଡ଼ାଗଡ଼ ଏବଂ ପଶ୍ଚିମରେ ବେଗୁନିଆପଡ଼ା ଓ ଝାରପଡ଼ା ଗଡ଼କୁ ନେଇ ଚାରିପାଖରେ ଏକ ସୁଦୃଢ଼ ସୁରକ୍ଷାବଳୟ ସୃଷ୍ଟିକରାଯାଇଥିଲା । ପ୍ରସିଦ୍ଧ ବିଶ୍ୱନାଥ ପାହାଡ଼ର ପଶ୍ଚିମ ପ୍ରାନ୍ତରେ ମୋଟରୀଗଡ଼ ଓ ପାଦଦେଶରେ କାଳୁପଡ଼ାଗଡ଼ ଅବସ୍ଥିତ । କାଳୁପଡ଼ା ଗଡ଼ର ଧ୍ୱଂସାବଶେଷ - ପଥର କାଛିର ମୂଳଦୁଆ, ପଥର ଖମ୍ବ ଏବଂ ପନ୍ଦର ଫୁଟ ବ୍ୟାସ ବିଶିଷ୍ଟ ଏକ ସୁଗଭୀର କୂପ ଦେଖିବାକୁ ମିଳେ । ମାଦଳା ପାଞ୍ଜିରେ ବର୍ଣ୍ଣିତ ବିନ୍ଧେଶ୍ୱରୀ ପର୍ବତ ଓ ବିଷ୍ଣୁସ୍ୱାମୀ ଲିଙ୍ଗକୁ ଯଥାକ୍ରମେ ବିଶ୍ୱନାଥ ପାହାଡ଼ ଓ ବିଶ୍ୱନାଥ ଶିବଲିଙ୍ଗ ବୋଲି କୁହାଯାଏ ।[୨୦୧] ଏକଦା ପ୍ରାଚୀନ ନାଳନ୍ଦା ବିଶ୍ୱବିଦ୍ୟାଳୟ ଅଧକ୍ଷ ତଥା ବହୁ ଶାସ୍ତ୍ରଜ୍ଞ ପ୍ରସିଦ୍ଧ ବୌଦ୍ଧ ପଣ୍ଡିତ ଦିଙ୍ଗନାଗ୍ ଏହି ପାହାଡ଼ ଉପରେ ବାସକରୁଥିଲେ ଏବଂ ତାଙ୍କରି ନାମାନୁସାରେ ତେଲାଙ୍ଗର ନାମକରଣ କରାଯାଇଛି ବୋଲି ବିଶ୍ୱାସ କରାଯାଏ । ମାଦଳାପାଞ୍ଜି ବୃତାନ୍ତ ଅନୁଯାୟୀ ଏହି ପାହାଡ଼ ଏବଂ ଘଞ୍ଚ ଅରଣ୍ୟ ବେଷ୍ଟିତ ଏହାର ନିକଟବର୍ତ୍ତୀ ପାହାଡ଼ମାନଙ୍କରେ ୮୪ଗୋଟି ଗୁମ୍ଫା କରି ବୌଦ୍ଧସନ୍ନ୍ୟାସୀମାନେ ରହୁଥିଲେ । ମଦନ ମହାଦେବଙ୍କ ରାଣୀ ଏହି ବୌଦ୍ଧ ସନ୍ନ୍ୟାସୀମାନଙ୍କୁ ସର୍ବଜ୍ଞ ବୋଲି କହିବାରୁ ରାଜା କହିଲେ - ସେମାନେ ନୁହଁନ୍ତି, ବ୍ରାହ୍ମଣମାନେ ସର୍ବଜ୍ଞ । ପରୀକ୍ଷାପାଇଁ ଏକ ମାଠିଆ ଭିତରେ ଗୋପନରେ ଗୋଟାଏ ସାପ ପୂରେଇ ମାଠିଆ ମୁହଁ ମୁଚ୍ଚାଗଲା ଏବଂ ମାଠିଆ ଭିତରେ କଣ ଅଛି ବୋଲି ପଚରାଯିବାରୁ ବୌଦ୍ଧ ପଣ୍ଡିତମାନେ କହିଲେ ମାଠିଆ ଭିତରେ ସାପଟାଏ ଅଛି; କିନ୍ତୁ ବ୍ରାହ୍ମଣମାନେ କହିଲେ ପାଉଁଶ ଅଛି । ମାଠିଆ ଖୋଲି ଦେଖିବାରୁ କେବଳ ପାଉଁଶ ଗୁଡ଼ାଏ ବାହାରିଲା । ତେଣୁ ରାଜା ବୌଦ୍ଧପଣ୍ଡିତମାନଙ୍କ ପ୍ରତି ଦଣ୍ଡବିଧାନ କରିବାକୁ ବସିବାରୁ ସେମାନେ ରାଜାଙ୍କୁ ଅଭିଶାପ ଦେଇ ରାଜ୍ୟ ଛାଡ଼ି ଚାଲିଗଲେ ।[୨୦୨] ବୌଦ୍ଧ ଗୁମ୍ଫାଗୁଡ଼ିକ ଏବେ ମଧ୍ୟ ଏ ଅଞ୍ଚଳର ଛୋଟ ବଡ଼ ପାହାଡ଼ଗୁଡ଼ିକରେ ଦେଖିବାକୁ ମିଳେ । ଧ୍ୱଜା ପାହାଡ଼ର ପଶ୍ଚିମରେ ପ୍ରାଚୀନ 'ବଣିବକ୍ରେଶ୍ୱର' ମନ୍ଦିର ଅବସ୍ଥିତ । ଦିନେ ଏକ ବଣି ଏଠାରେ ରାଜାଙ୍କୁ ଦେଖି 'ମଣିମା ମଣିମା' ଡାକଦେବାରୁ ତହିଁର କାରଣ ଅନୁସନ୍ଧାନ କରି ଏଠାରେ ଘଞ୍ଚ ଅରଣ୍ୟ ମଧ୍ୟରେ ଏକ ପ୍ରାଚୀନ ଶିବଲିଙ୍ଗ ଥିବାର ଜାଣି ବଣି ବକ୍ରୋକ୍ତିକରି 'ମଣିମା ମଣିମା' ଡାକୁଥିବାରୁ ସେହି ଶିବଲିଙ୍ଗକୁ ବଣିବକ୍ରେଶ୍ୱରନାମରେ ପ୍ରତିଷ୍ଠା କରି ରାଜା ଉପଯୁକ୍ତ ସେବା ପୂଜାର ବ୍ୟବସ୍ଥା ଖଞ୍ଜିଦେଇଥିଲେ । ସମ୍ପ୍ରତି ବ୍ରହ୍ମଗିରିଠାରେ ଥିବା ପ୍ରସିଦ୍ଧ ଅଲାରନାଥ ମନ୍ଦିରକୁ ମଧ୍ୟ ମଦନମହାଦେବ ପ୍ରତିଷ୍ଠା କରିଥିଲେ । ଏଥିରୁ ପ୍ରମାଣିତ ହୁଏ ଯେ ସିରାଇ ଦଣ୍ଡପାଟ ଉତ୍ତରରେ ଲେମ୍ବାଇଠାରୁ ଦକ୍ଷିଣରେ ଚବିଶକୁଦ ପର୍ଯ୍ୟନ୍ତ ବ୍ୟାପିଥିଲା । ମୋଗଲ ରାଜତ୍ୱରେ ସିରାଇ ଦଣ୍ଡପାଟର ପୂର୍ବୋକ୍ତ ଚାରି ଗୋଟି ବିଶିକୁ ଲେମ୍ବାଇ, ରାହାଙ୍ଗ, ଚବିଶକୁଦ ଓ ସିରାଇ ପ୍ରଗଣାରେ ପରିଣତ କରାଯାଇ ସମସ୍ତ ଦଣ୍ଡପାଟକୁ ଚାରି ଭାଗରେ

---

୨୦୧ - ୬୫/୨୦ ୨୦୨- ୧୪/୨୨୫

ବିଭକ୍ତ କରାଯାଇଥିଲା । ଲେମ୍ବାଇ ପ୍ରଗଣା ଅନ୍ତର୍ଗତ ବେଗୁନିଆପଡ଼ାଗଡ଼ ଓ ଚବିଶକୁଦ ପ୍ରଗଣା ଅନ୍ତର୍ଗତ କୋକଲଗଡ଼ ସିରାଇ ଦଣ୍ଡପାଟର ଅନ୍ତର୍ଭୁକ୍ତ ଥିଲା ବୋଲି ମଧ୍ୟ ଦିଗମ୍ବର ଶ୍ରୀଚନ୍ଦନ ଖୁରଧା ଦର୍ପଣରେ ଲେଖିଛନ୍ତି ।[୨୦୩]

୧୫୮୦ ଖ୍ରୀଷ୍ଟାବ୍ଦରେ ମୋଗଲ ସମ୍ରାଟ ଆକବରଙ୍କ ନିର୍ଦ୍ଦେଶକ୍ରମେ ତାଙ୍କ ସେନାପତି ତୋଡ଼ରମଲ୍ଲ ଓଡ଼ିଶାକୁ ଜରିବ କରାଇ ଜମିଜମା ବନ୍ଦୋବସ୍ତ ମାହାଲର ନୂଆ ନାମ ସୃଷ୍ଟିକଲେ, ଅର୍ଥାତ୍ ପ୍ରାଚୀନ ନାମଗୁଡ଼ିକର ପରିବର୍ତ୍ତନ କରି ପାର୍ସି ଭାଷାରେ ରାଜସ୍ୱ ମାହାଲ ଗୁଡ଼ିକର ନୂଆ ନାମକରଣ କଲେ । ଐତିହାସିକ ହଣ୍ଟର ଲେଖିଛନ୍ତି- "The Khandas and Bissis became pergunahs".[୨୦୪] ତୋଡ଼ରମଲ୍ଲ 'ଆଇନ୍-ଇ-ଆକବରୀ'ରେ 'ସିରାଇବିଶି'କୁ 'ସିରାନ୍ ପର୍ଗଣା' ବୋଲି ଲେଖିଲେ । ସେହିଠାରୁ ସିରାଇ ଦଣ୍ଡପାଟର ନାଁ ଲୋପପାଇଲା ଏବଂ 'ସିରାଇ ବିଶି' ସିରାଇ ପ୍ରଗଣାରେ ପରିଣତହେଲା । ତାପରେ ପ୍ରାୟ ଦୀର୍ଘ ଚାରିଶହ ବର୍ଷକାଳ ସିରାଇ ପ୍ରଗଣା ଏକ ରାଜସ୍ୱ ମାହାଲ ହୋଇ ରହିଥିଲା । ଚଳିତ ଶତାବ୍ଦୀର ମଧ୍ୟଭାଗରେ ଓଡ଼ିଶାରୁ ଜମିଦାରୀ ପ୍ରଥାର ଉଚ୍ଛେଦ ସଙ୍ଗେ ସଙ୍ଗେ ସିରାଇ ପ୍ରଗଣା ଲୋପପାଇଲା । ୧୯୬୧ ଜାନୁଆରୀ ୨୬ ତାରିଖରେ ଓଡ଼ିଶାରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ପ୍ରତିଷ୍ଠା ଦିବସରେ ପୂର୍ବତନ ସିରାଇ ବିଶିର ଅଧିକାଂଶ ଅଞ୍ଚଳକୁ ନେଇ କଣାସ ବ୍ଲକ ଗଠିତହେଲା ।

ହଣ୍ଟରଙ୍କ ବର୍ଣ୍ଣନାନୁଯାୟୀ ପୁରୀ ଜିଲ୍ଲାକୁ ୩୧ ଗୋଟି ରାଜସ୍ୱ ମାହାଲରେ ବିଭକ୍ତ କରାଯାଇଥିଲା ଏବଂ ସିରାଇ ପ୍ରଗଣା ତନ୍ମଧ୍ୟରୁ ଗୋଟିଏ ଥିଲା । ସେତେବେଳେ ସିରାଇ ପ୍ରଗଣାର ଲୋକସଂଖ୍ୟାଥିଲା ୪୭୧୪୧ । ଏବେ କେବଳ ସିରାଇ ଗାଁର ଲୋକସଂଖ୍ୟା ୨୦୦୦ ହୋଇଗଲାଣି ଏବଂ କଣାସ ବ୍ଲକର ଲୋକସଂଖ୍ୟା ପ୍ରାୟ ଏକ ଲକ୍ଷ । ସେତେବେଳେ ସିରାଇ ପ୍ରଗଣାର ମୋଟ ଚାଷଜମିର ପରିମାଣ ଥିଲା ୪୩୬୩୪ ଏକର । ଚାରିଶହ ବର୍ଷ ତଳେ ଚିଲିକାକୂଳ ଅଞ୍ଚଳରେ ଚାଷଜମି ତୁଳନାରେ ବହୁ ଅଧିକ ପରିମାଣର ଜଙ୍ଗଲ, ପତିତ ଓ ପାଟ (ଖାଲ) ଜମି ଥିଲା । କିନ୍ତୁ ଦୟା, ମନ୍ଦାକିନୀ, ଲୁଣା, ଭାର୍ଗବୀ ଇତ୍ୟାଦି ନଦୀମାନଙ୍କଦ୍ୱାରା ଆନୀତ ପଟୁମାଟି ଦ୍ୱାରା ପୋତିହୋଇ ୪୦୦ ବର୍ଷ ମଧ୍ୟରେ ସେ ସବୁ ଜଙ୍ଗଲ, ପାଟ ଓ ପତିତ ଏବେ ଚାଷଜମିରେ ପରିଣତ ହୋଇଗଲାଣି । ଏବେ ଆଉ ପାଟ ଜଙ୍ଗଲ ପତିତ କିଛି ଦେଖିବାକୁ ମିଳୁନି । ତା' ସତ୍ତ୍ୱେ କଣାସ ବ୍ଲକର ଏବେ ମୋଟ ଚାଷ ଜମିର ପରିମାଣ ୪୫୭୨୫ ଏକର । ଏଇଥିରୁ ସହଜରେ ଅନୁମାନ କରିହେବ ସିରାଇ ବିଶିର ଆୟତନ କଣାସ ବ୍ଲକଠାରୁ କେତେ ଅଧିକ ଥିଲା ।

---

*୨୦୩- ୧୪/୨୨୬ ୨୦୪- ୩୬/୨୪*

## ସିରାଇ ପ୍ରଗଣା

ସିରାଇ ପ୍ରଗଣା ମୁଖ୍ୟତଃ ଏକ ନଦୀମାତୃକ ଅଞ୍ଚଳ ଥିଲା । ଚିଲିକା ହ୍ରଦର ଉତ୍ତରକୂଳରେ ଦୟା, ମନ୍ଦାକିନୀ ଓ ଲୁଣା ଇତ୍ୟାଦି ନଦୀଦ୍ୱାରା ଏହାର ଅଧିକାଂଶ ଅଞ୍ଚଳ ପ୍ରାୟ ପ୍ରତି ବର୍ଷ ବନ୍ୟାପ୍ଳାବିତ ହେଉଥିଲା । ହଣ୍ଟରଙ୍କ ଭାଷାରେ ... "In the chowbiskud and sirei, two fiscal divisions of which more than fifty precent are liable to innundation । କିନ୍ତୁ ସେହିସବୁ ନଦୀବନ୍ୟାରେ ଆନୀତ ପଟୁମାଟିରେ ପୋତିହେବାଦ୍ୱାରା ଏହି ଅଞ୍ଚଳର ଉର୍ବରତା ବୃଦ୍ଧିପାଉଥିଲା ଏବଂ ତା'ଫଳରେ ଖରିଫ୍ ଫସଲ ସହିତ ଉତ୍କୃଷ୍ଟ ରବି ଓ ପନିପରିବା ଫସଲ ମଧ ଉତ୍ପାଦିତ ହେଉଥିଲା । ହଣ୍ଟରଙ୍କ ପ୍ରଦତ୍ତ ତଥ୍ୟ ଅନୁଯାୟୀ ସିରାଇ ପ୍ରଗଣାକୁ ନଅ ଗୋଟି ରାଜସ୍ୱ ଇଲାକା (estate) ରେ ବିଭକ୍ତକରାଯାଇଥିଲା ।[୨୦୪]

୧୫୮୦ ଖ୍ରୀଷ୍ଟାବ୍ଦରେ ତୋଡରମଲ୍ଲଙ୍କ ଦ୍ୱାରା ସିରାଇ ବିଶି ସିରାଇ ପ୍ରଗଣାରେ ପରିଣତ ହେବା ପରେ ପ୍ରଗଣାର ପ୍ରଶାସନିକ ସୁପରିଚାଳନା ନିମନ୍ତେ ଯେଉଁ କର୍ମଚାରୀମାନଙ୍କୁ ନିଯୁକ୍ତ କରାଯାଇଥିଲା ସେମାନଙ୍କ ପଦବୀ ଗୁଡ଼ିକ ଥିଲା-୧ କାଜି-ଏ-ପରଗନା (ବିଚାରପତି), ୨. ଅମିଲ୍ - ଏ - ପରଗନା (ରାଜସ୍ୱ ଅଧିକାରୀ), ୩ କରକୁନ୍ (ଅମିନ୍‌ଙ୍କ ସହକାରୀ) ୪ ଅମିନ୍ ମୁନସିଫ୍ ଓକ୍‌ରେରି (ଜମିଜମା ବିବାଦ ବିଚାରକର୍ତ୍ତା) ୫ - କରକୁନ୍ (ରାଜସ୍ୱ କର୍ମଚାରୀ) ୬ - ଫୌଜଦାର ବା ସିକାଦାର (ଶାନ୍ତି ଶୃଙ୍ଖଳା ଦାୟିତ୍ୱରେ ଉଚ୍ଚକର୍ମକର୍ତ୍ତା, ୭- କୋଟୱାଲା (ପୋଲିସ) । ଏହି କର୍ମଚାରୀମାନଙ୍କ ମଧ୍ୟରୁ ମୁଖ୍ୟମାନେ ପ୍ରଗଣାର ସଦର ମହକୁମା ସିରାଇରେ ଅବସ୍ଥାନ କରୁଥିଲେ ।

ଏହି ସମୟରେ ଓଡ଼ିଶାରେ ମୋଗଲମାନଙ୍କ ସହିତ ଆଫଗାନ୍ (ପଠାଣ) ମାନଙ୍କର ସଂଘର୍ଷ ଲାଗିଥିଲା । କିନ୍ତୁ ୧୫୯୨ ଖ୍ରୀଷ୍ଟାବ୍ଦରେ ମୋଗଲ ସୁବେଦାର ରାଜା ମାନସିଂହ ଆଫଗାନମାନଙ୍କୁ ବିତାଡ଼ିତକରି ଓଡ଼ିଶାରେ ନିରଙ୍କୁଶ ମୋଗଲ ଶାସନ ପ୍ରତିଷ୍ଠାକରିଥିଲେ । ସେତିକିବେଳେ ଖୋର୍ଦ୍ଧା ଭୋଇବଂଶର ପ୍ରତିଷ୍ଠାତା ରାଜା ରାମଚନ୍ଦ୍ର ଦେବଙ୍କ ସହିତ ରାଜା ମାନସିଂହଙ୍କର ସଦ୍‌ଭାବ ଉପୁଜିଥିଲା ଏବଂ ରାଜା ମାନସିଂହଙ୍କ ସୁପାରିସ କ୍ରମେ ସମ୍ରାଟ୍ ଆକ୍‌ବର ରାମଚନ୍ଦ୍ରଦେବଙ୍କୁ ଖୋର୍ଦ୍ଧାର ରାଜାଭାବେ ସ୍ୱୀକୃତିଦେଲେ ।

ତା'ଫଳରେ ରାମଚନ୍ଦ୍ରଦେବ ୭୧ ଗଡ଼ ସଂଯୁକ୍ତ ଖୋର୍ଦ୍ଧା ରାଜ୍ୟ ସହିତ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ଏବଂ ସିରାଇ, ଲମ୍ବେଇ, ରାହାଙ୍ଗ ଓ ଚବିଶକୁଦ ପ୍ରଗଣା- ଜମିଦାରୀ ମାହାଲଗୁଡ଼ିକର ନିଷ୍କର ମାଲିକାନା ପାଇଲେ ।

ସଂପ୍ରତି ସିରାଇ ଗ୍ରାମରେ ପଡ଼ିରହିଥିବା ପରିତ୍ୟକ୍ତ 'ଉଆସଡିହ'ରେ କୌଣସି ଗଙ୍ଗବଂଶୀୟ ରାଜାଙ୍କର ଉଆସ ଥିଲା ବୋଲି ଅନୁମାନ କରାଯାଏ । ସିରାଇ ନିକଟରେ ଅବସ୍ଥିତ 'ରାଣୀପଡ଼ା' ଗ୍ରାମକୁ କୌଣସି ରାଣୀ ବସାଇଥିବା ମଧ ଅନୁମାନ କରାଯାଏ ।

---

*୨୦୪- ୩୬/୨୩*

ନାଏବ୍ ନାଜିମ ତକିଖାଁର କ୍ରମାଗତ ଲୁଣ୍ଠନ ଓ ଅତ୍ୟାଚାରର ଶିକାର ହୋଇ ଶେଷକୁ ୨ୟ ରାମଚନ୍ଦ୍ର ଦେବ ନିଜର ଆରାଧ ଜଗନ୍ନାଥଙ୍କୁ ମୁସଲମାନ ଆକ୍ରମଣରୁ ରକ୍ଷାକରିବା ଆଶାରେ ନିଜେ ମୁସଲମାନ ଧର୍ମ ଗ୍ରହଣକରିଥିଲେ । ତା'ଫଳରେ ପରବର୍ତ୍ତୀ ନାଏବ୍ ମୁର୍ଶିଦ୍ କୁଲିଖାଁ ରାମଚନ୍ଦ୍ରଦେବଙ୍କପ୍ରତି ବିଶେଷ ସହାନୁଭୂତିଶୀଳ ହୋଇ ତାଙ୍କୁ ନିଜର କନ୍ୟା ପ୍ରଦାନକରିଥିଲେ । କିନ୍ତୁ ବଙ୍ଗ ବିହାର ଓଡ଼ିଶାର ନାଜିମ ସରଫରାଜ୍ ଖାଁ ପୁଣି ଆକ୍ରମଣ ଚଳାଇ ରାମଚନ୍ଦ୍ର ଦେବଙ୍କୁ ବ୍ୟତିବ୍ୟସ୍ତ କରିବାରୁ ମୁର୍ଶିଦ୍ କୁଲିଖାଁ ଓଡ଼ିଶାରୁ ବଙ୍ଗନବାବଙ୍କର ପ୍ରତିପତ୍ତି ହଟାଇବା ଲକ୍ଷ୍ୟରେ ନାଗପୁରର ମରହଟ୍ଟା ଶାସକ ରଘୁଜୀ ଭୋଁସଲାଙ୍କ ସାହାଯ୍ୟ ଲୋଡ଼ି ତାଙ୍କୁ ଓଡ଼ିଶାକୁ ଡାକିଆଣିଲେ । ୧୭୫୧ ଖ୍ରୀଷ୍ଟାବ୍ଦରେ ବଙ୍ଗ ନବାବ ଆଲିବର୍ଦ୍ଦିଖାଁ ଓ ରଘୁଜୀ ଭୋଁସଲାଙ୍କ ମଧ୍ୟରେ ଚୁକ୍ତି ହୋଇ ଓଡ଼ିଶା ମରହଟ୍ଟା ଶାସନାଧୀନ ହେଲା ଓ ଖୋର୍ଦ୍ଧା ସମେତ ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳ ମରହଟ୍ଟାମାନଙ୍କ ଅଧୀନରେ କରଦ ରାଜ୍ୟ ହୋଇ ରହିଲା ।

ତା'ପରେ ଖୋର୍ଦ୍ଧାରାଜାଙ୍କର ଅନ୍ୟତମ ହସ୍ତମୁଦୀ ମାହାଲ ସିରାଇ ପ୍ରଗଣା କେଉଁ ପରିସ୍ଥିତିରେ ୧୭୬୦ ଖ୍ରୀଷ୍ଟାବ୍ଦରେ ମରହଟ୍ଟାଙ୍କ ହାତକୁ, ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜଙ୍କ ହାତକୁ ଏବଂ ୧୮୦୯ ଖ୍ରୀଷ୍ଟାବ୍ଦରେ ଲାଲା କୃଷ୍ଣଚନ୍ଦ୍ର ସିଂହଙ୍କ ହାତକୁ ଯାଇ ତାଙ୍କର ପାଇକପଡ଼ା ଜମିଦାରୀର ଅନ୍ତର୍ଭୁକ୍ତ ହୋଇଥିଲା ସେ ସମ୍ପର୍କରେ ଏହି ବହିର ପ୍ରଥମ ଭାଗର ଚତୁର୍ଥ ଓ ଷଷ୍ଠ ଅଧ୍ୟାୟରେ ବିସ୍ତୃତ ଆଲୋଚନା କରାଯାଇଛି ।

ପାଇକପଡ଼ା ଜମିଦାରୀକୁ ଲୋକେ 'ଲାଲାବାବୁ ଇଷ୍ଟେଟ୍' ବୋଲି ମଧ୍ୟ କହୁଥିଲେ । ଉଲ୍ଲେଖଯୋଗ୍ୟ ଯେ ଏଇ ଲାଲାବାବୁ ହିଁ ବକ୍ସି ଜଗବନ୍ଧୁଙ୍କ ନିଜସ୍ୱ ନିଷ୍କର ମାହାଲ ରୋଡ଼ଙ୍ଗକୁ ଜବରଦସ୍ତଭାବେ ରାହାଙ୍ଗ ଓଗେର ମାହାଲରେ ମିଶାଇ ନିଜ ମାଲିକାନାଭୁକ୍ତ କରିନେବା ଫଳରେ ୧୮୧୭ ଖ୍ରୀଷ୍ଟାବ୍ଦରେ ସଂଘଟିତ ଖୋର୍ଦ୍ଧା ପାଇକ ବିଦ୍ରୋହପାଇଁ ବୀଜ ବପନ କରିଥିଲେ ।

ସେହି ସମୟରେ କଣାସ ଗ୍ରାମର ମୁସଲମାନ ଓ ହରିଜନ ବସ୍ତିକୁ ଜମିଦାର କୃଷ୍ଣଚନ୍ଦ୍ରଙ୍କ ନାମରେ ନାମିତ କରାଯାଇ ବନ୍ଦୋବସ୍ତରେ 'କୃଷ୍ଣନଗର' ରଖାଗଲା ଏବଂ କୃଷ୍ଣନଗର ମୌଜାରେ ଅବସ୍ଥିତ ଐତିହାସିକ କଣାସ 'ଗୋଲା' ଉପରେ ପାଇକପଡ଼ା ଜମିଦାରଙ୍କ କଚେରି ଖୋଲାଗଲା । ତା'ପରେ ପରେ କୃଷ୍ଣଚନ୍ଦ୍ରଙ୍କ ନାମରେ ମଧ୍ୟ ପାଇକପଡ଼ା ଜମିଦାରୀରେ ସିରାଇ ପ୍ରଗଣାକୁ 'କୃଷ୍ଣନଗର ମାହାଲ' ନାମରେ ଏବଂ ଚବିଶକୁଦ ପ୍ରଗଣାକୁ 'କୃଷ୍ଣଚନ୍ଦର ମାହାଲ' ନାମରେ ନାମିତ କରାଗଲା ।[୧୦୬]

---

*୧୦୬- ୪୮/୫୫୨*

୧୮୧୭ ଖୋର୍ଦ୍ଧା ପାଇକ ବିଦ୍ରୋହରେ ବକ୍ସିଙ୍କର ଘନିଷ୍ଠ ସହଯୋଗୀ ଥିଲେ ଦେବାନ୍ କୃଷ୍ଣଚନ୍ଦ୍ର ଭ୍ରମରବର ରାଏ । ଦେବାନ୍ କୃଷ୍ଣଚନ୍ଦ୍ର ଖୋର୍ଦ୍ଧା ରାଜାଙ୍କର ଦେବାନ୍ ଥିଲେ ଏବଂ ପାଇକ ବିଦ୍ରୋହ ସମୟରେ ତାଙ୍କର ଆସନ ଥିଲା ସିରାଇ ସନ୍ନିକଟ କଣାସରେ । ବକ୍ସି ଜଗବନ୍ଧୁ ଓ ଦେବାନ୍ କୃଷ୍ଣଚନ୍ଦ୍ରଙ୍କୁ ଖୋର୍ଦ୍ଧା ୭୧ ଗଡ଼ର ଦଳବେହେରାମାନେ ସମର୍ଥନ କରିଥିଲେ ଏବଂ ସେମାନଙ୍କ ସହିତ ସାମିଲହୋଇ ଓଡ଼ିଶାର ପ୍ରାଚୀନତମ ସିରାଇଗଡ଼ର ଦଳବେହେରା ହନୁମାନସିଂହ କେବଳ ପାଇକ ବିଦ୍ରୋହରେ ଯୋଗ ଦେଇଥିଲେ ସେତିକି ନୁହେଁ, ତାଙ୍କର ଭାଇ କାଳିଆ ମାନସିଂହ ପାଇକ ମେଳିର ଜଣେ ଅଗ୍ରଣୀ ନେତା ଥିଲେ । କ୍ୟାପଟାନ୍ ଲି.ଫବ୍‌ରେ ଶେଷ ଦଫାରେ ପାଇକବିଦ୍ରୋହ ଦମନ କରିବାକୁ ଖୋର୍ଦ୍ଧାରେ ପହଞ୍ଚିଲାବେଳକୁ ବକ୍ସି ଜଗବନ୍ଧୁ ଓ ଦେବାନ୍ କୃଷ୍ଣଚନ୍ଦ୍ର ସିରାଇ, ରାହାଙ୍ଗ, ଲେମ୍ବେଇ, ଚବିଶକୁଦ ଓ ରୋଡ଼ଙ୍ଗ ଅଞ୍ଚଳର ପାଇକମାନଙ୍କୁ ସଂଗଠିତକରି ମୁକୁନ୍ଦଦେବଙ୍କୁ ଭେଟିବାକୁ ପୁରୀ ଅଭିମୁଖେ ଚାଲିଥିଲେ । ଐତିହାସିକ ଟୟନ୍‌ବୀଙ୍କ ବିବରଣୀ ଅନୁଯାୟୀ କ୍ୟାପଟାନ୍ ଲିଫାବ୍‌ରେ ୫୫୦ ଜଣ ବନ୍ଧୁକଧାରୀ ସୈନ୍ୟଙ୍କ ସହ ୧୮୧୭ ଖ୍ରୀଷ୍ଟାବ୍ଦ ଅପ୍ରେଲ ୧୬ ତାରିଖରେ ଖୋର୍ଦ୍ଧାରୁ ବାହାରି ବାଟରେ ବାଜପୁର ଓ କଦଳିବାଡ଼ି ପାଇକଗାଁ ଦୁଇଟିରେ ନିଆଁଲଗେଇ ସନ୍ଧ୍ୟାରେ ତାପଙ୍ଗରେ ପହଞ୍ଚିଲେ ଏବଂ ୧୭ ତାରିଖ ସକାଳୁ ତାପଙ୍ଗରୁ ବାହାରିଯାଇ କଣାସରେ ଦ୍ୱିପ୍ରହରେ ବଧାକଲେ; ପୁଣି ଉପରଓଳି କଣାସରୁ ବାହାରି ସନ୍ଧ୍ୟାରେ ଲୁଣାନଈ ପାରହୋଇ ନୂଆଗାଁରେ ଡେରାପକାଇଲେ । ୧୮ ତାରିଖ ସକାଳୁ ନୂଆଗାଁରୁ ବାହାରି ସୁକଳ ଗାଁଦେଇ ଦୋବନ୍ଧାଠାରେ ପହଞ୍ଚିଲା ବେଳକୁ ସେଠାରେ ହଜାର ହଜାର ସଂଖ୍ୟାରେ ପାଇକମାନେ ମେଳିହୋଇଥିବା ଦେଖି ଲିଫାବ୍‌ରେ ସେମାନଙ୍କ ଉପରକୁ ଆଖିବୁଜା ଗୁଳିଚଳାଇବାକୁ ସୈନ୍ୟମାନଙ୍କୁ ଆଦେଶ ଦେଲେ । ଫଳରେ ପୁରୁଣା କାଳିଆ ଟୋପିଦାର ବନ୍ଧୁକ, ଖଣ୍ଡା, ବର୍ଚ୍ଛା, ଭୁଜାଲି, ଠେଙ୍ଗା ଇତ୍ୟାଦି ଧରି ଲଢୁଥିବା ପାଇକମାନେ ଛିନ୍‌ଛତ୍ର ହୋଇଗଲେ । ଲି.ଫାବ୍‌ରେ ପୁରୀରେ ପହଞ୍ଚିଲାବେଳକୁ ବକ୍ସି ଜଗବନ୍ଧୁ ଚିଲିକାର ଦକ୍ଷିଣ ପନ୍ତାଦେଇ ବାଣପୁରକୁ ଚାଲିଗଲେ । କିନ୍ତୁ ଦେବାନ୍ କୃଷ୍ଣଚନ୍ଦ୍ର ଦଳେ ପାଇକଙ୍କ ସହିତ ଚିଲିକାର ଉତ୍ତର କୂଳେ କୂଳେ ଆସି ନିଜ ଆସ୍ଥାନ କଣାସରେ ପହଞ୍ଚିଗଲେ । କ୍ୟାପ୍ଟେନ୍ ଲି.ଫାବ୍‌ରେ ପାଇକ ବିଦ୍ରୋହକୁ ସାମୟିକଭାବେ ଦମନ କରି ମୁକୁନ୍ଦଦେବଙ୍କୁ ବନ୍ଦିକରି ନେଇଗଲାପରେ ମଧ ବକ୍ସି ଜଗବନ୍ଧୁ ଓ ଦେବାନ୍ କୃଷ୍ଣ ଚନ୍ଦ୍ର ସେମାନଙ୍କର କେତେକ ସହକର୍ମୀଙ୍କ ସହିତ ଲୁଚି ଲୁଚି ୧୮୧୭ ରୁ ୧୮୨୫ ପର୍ଯ୍ୟନ୍ତ ଦୀର୍ଘ ଆଠ ବର୍ଷକାଳ ପାଇକମାନଙ୍କ ମଧରେ ବିଦ୍ରୋହର ନିଆଁକୁ ସମ୍ପୂର୍ଣ୍ଣଭାବେ ଲିଭିବାକୁ ଦେଇ ନ ଥିଲେ । ସିରାଇଗଡ଼ ଦଳବେହେରାଙ୍କ ଭାଇ କାଳିଆ ମାନସିଂହ ମଧ ଦେୱାନ୍ କୃଷ୍ଣଚନ୍ଦ୍ରଙ୍କର ବିଶ୍ୱସ୍ତ ଅନୁଗାମୀଭାବେ ଏହି ଆଠ ବର୍ଷକାଳ ଲୁଚିଛପି ପାଇକମେଳିରେ ଯୋଗଦେଇଥିଲେ ।

୧୮୨୫ରେ ଫିରିଙ୍ଗି ସରକାରଙ୍କର ବକ୍ସିଙ୍କ ପ୍ରତି ସମ୍ମାନଜନକ ଘୋଷଣାନାମା ପରେ ବକ୍ସି ଆତ୍ମପ୍ରକାଶ କରିଥିଲେ । ୧୮୨୫ ମଇମାସ ଶେଷ କିମ୍ବା ଜୁନ୍ ମାସ ପ୍ରଥମ ସପ୍ତାହରେ ସିରାଇଗଡ଼ର କାଳିଆ ମାନସିଂହ ଲାଲସିଂ ଗଡ଼ର ଦଳବେହେରା ଗୌରାଙ୍ଗ ବୈରୀଶଲ ଓ ଆଉ ଛଅ ଜଣଙ୍କ ସହିତ ଖୋର୍ଦ୍ଧାର ମାଜିଷ୍ଟ୍ରେଟ ଉଇଲ୍‌କିନ୍‌ସନ୍‌ଙ୍କ କୋର୍ଟରେ ଏବଂ ୧୮୨୬ ଜାନୁୟାରୀରେ ଦେଓ୍ୱାନ୍ କୃଷ୍ଣଚନ୍ଦ୍ର ସେହି କୋର୍ଟରେ ଆତ୍ମପ୍ରକାଶକରି ସମ୍ମାନର ସହିତ ମାସିକ ଭତ୍ତା ପାଇଥିଲେ । ସୁତରାଂ ଖୋର୍ଦ୍ଧାଠାରୁ ପୁରୀ ପର୍ଯ୍ୟନ୍ତ ବ୍ୟାପୀ ଜଳୁଥିବା ପାଇକବିଦ୍ରୋହର ନିଆଁକୁ କ୍ୟାପ୍‌ଟାନ୍ ଲି.ଫାବ୍‌ରେ ଲିଭାଇବା ପରେ ମଧ ସିରାଇରେ ସେ ନିଆଁର ଧୂଆଁ ୧୮୨୫ ପର୍ଯ୍ୟନ୍ତ ଦୀର୍ଘ ଆଠ ବର୍ଷ କାଳ କୁହୁଳୁଥିଲା । ସେଇ ଧୂଆଁକୁ ପ୍ରଶମିତ କରିବା ଲକ୍ଷ୍ୟରେ ଧୂର୍ତ୍ତ ଜମିଦାର ଲାଲା କୃଷ୍ଣଚନ୍ଦ୍ର ଖାଉନ୍ଦ ଇଂରେଜଙ୍କଠାରୁ ଶିଖିଥିବା ଭେଦନୀତି ପ୍ରୟୋଗକରି ତାଙ୍କ ଜମିଦାରୀର କେତେକ ଛୋଟ ଛୋଟ ମାହାଲକୁ ସ୍ଥାନୀୟ ପ୍ରଭାବଶାଳୀ ବ୍ୟକ୍ତିମାନଙ୍କୁ ହସ୍ତାନ୍ତର କରିଦେଇ ସେମାନଙ୍କ ସମର୍ଥନକ୍ରମେ ନିଜ ଜମିଦାରୀ ଆସ୍ଥାନକୁ ସୁଦୃଢ଼କରିଥିଲେ । ରୋଡ଼ଙ୍ଗରେ କୌଣସି ନୌ-ବ୍ୟବସାୟ କରୁଥିବା ଜଗନ୍ନାଥ ରାୟ ନାମକ ଜଣେ ବ୍ୟକ୍ତି ଲାଲାଙ୍କଠାରୁ ଏକ ମାହାଲ କିଣିନେଇ ସିରାଇରେ ଜମିଦାରୀ ସିରସ୍ତା ଖୋଲିଥିଲେ । ଓଡ଼ିଶାରେ ଜମିଦାରୀ ଉଚ୍ଛେଦ ଆଇନ ଲାଗୁ ହେବା ବେଳକୁ ସିରାଇରେ ତିନି ଜଣ ଜମିଦାର ଥିଲେ । ଏବେ ସେମାନଙ୍କର ଜମିଦାରୀ ଆଉ ନାହିଁ, କିନ୍ତୁ ଦୁଇ ଜଣ ଜମିଦାରଙ୍କଦ୍ୱାରା ପ୍ରତିଷ୍ଠିତ ଦୁଇଟି ଠାକୁରବାଡ଼ି ଅଛି ।

ଉଲ୍ଲେଖଯୋଗ୍ୟ ଯେ ଐତିହାସିକ ସିରାଇଗଡ଼ର କାଳିଆ ମାନସିଂହ ଯେପରି ପାଇକବିଦ୍ରୋହରେ ଯୋଗଦେଇ ୧୮୧୭ରୁ ୧୮୨୫ ପର୍ଯ୍ୟନ୍ତ ଆଠ ବର୍ଷ କାଳ ବ୍ରିଟିଶ ଶାସନ ବିରୋଧରେ ଲଢ଼ିଥିଲେ, ସେଇ ମାଟିର କୃତୀ ସନ୍ତାନ ବିଶ୍ୱନାଥ ପରିଡ଼ା ୧୯୨୧ର ଅସହଯୋଗ ଆନ୍ଦୋଳନଠାରୁ ଆରମ୍ଭକରି ୧୯୩୦ର ଲବଣ ସତ୍ୟାଗ୍ରହ ଓ ୧୯୪୨ର ଭାରତ ଛାଡ଼ ଆନ୍ଦୋଳନ ପର୍ଯ୍ୟନ୍ତ ଭାରତମାତାର ମୁକ୍ତି ସଂଗ୍ରାମରେ ଯୋଗଦେଇ ବ୍ରିଟିଶ ଶାସନ ବିରୋଧରେ ଲଢ଼ି ଲଢ଼ି ନିଜର ସାରା ଜୀବନକୁ ମାତୃଭୂମିର ସେବାରେ ନିୟୋଜିତକରିଗଲେ ।



## ତୃତୀୟ ଅଧ୍ୟାୟ

# ସିରାଇ ସାତଶାସନ ଓ ଚନ୍ଦ୍ର-ଚୋର ମହାପାତ୍ର

ଐତିହାସିକମାନେ କଟକ ଓ ପୁରୀର ଶାସନଗୁଡ଼ିକ ସମ୍ପର୍କରେ ବିସ୍ତୃତ ବିବରଣୀ ଦେଇଥିଲେ ହେଁ, ସିରାଇ ସାତ-ଶାସନ ସମ୍ପର୍କରେ ଆଲୋକପାତ କରି ନାହାନ୍ତି । ସିରାଇ ଦଣ୍ଡପାଟ ତଥା ସିରାଇ ପ୍ରଗଣାର ଏ ସମୃଦ୍ଧ ଐତିହାସିକ ପୃଷ୍ଠଭୂମି ଉପରେ ଭୋଇବଂଶୀୟ ରାଜାମାନଙ୍କଦ୍ୱାରା ପ୍ରତିଷ୍ଠିତ ସିରାଇ ସାତ ଶାସନର ଇତିହାସ ଯେତିକି ଗୁରୁତ୍ୱପୂର୍ଣ୍ଣ, ଏହି ଶାସନ ପ୍ରତିଷ୍ଠା ସହିତ ସଂଶ୍ଳିଷ୍ଟ ରାଜଗୁରୁ ବଂଶର ଜନୈକ ଦାୟାଦ ଶ୍ରୀମୁକୁନ୍ଦପୁର ଶାସନନିବାସୀ ସାମନ୍ତ କୃଷ୍ଣଚନ୍ଦ୍ର ମହାପାତ୍ର (ଓଷଣା ସାଆନ୍ତ)ଙ୍କ ଦ୍ୱାରା ପ୍ରଦତ୍ତ ତଥ୍ୟାବଳୀ ସେତିକି ତାତ୍ପର୍ଯ୍ୟପୂର୍ଣ୍ଣ । ଅଧିକନ୍ତୁ ଶ୍ରୀ ମହାପାତ୍ରଙ୍କ ପାଖରେ ଥିବା ଦୁଇଟି ଐତିହାସିକ ସନନ୍ଦ ସମ୍ପର୍କୀୟ ତଥ୍ୟ ଐତିହାସିକ ଦୃଷ୍ଟିରୁ ବିଶେଷ ପ୍ରଣିଧାନଯୋଗ୍ୟ । ଶ୍ରୀ ମହାପାତ୍ରଙ୍କଠାରୁ ପ୍ରକାଶ ଯେ, କେତେ ବର୍ଷ ତଳେ ଜଣେ ଜର୍ମାନ ଗବେଷକ କୌଣସି ସୂତ୍ରରୁ ଏହି ସନନ୍ଦ ଦୁଇଟି ସମ୍ପର୍କରେ ସୂଚନାପାଇ ଆସି ତାଙ୍କ ଗ୍ରାମରେ ବଖରାଏ ଘରଭଡ଼ା ନେଇ ଜଣେ ସ୍ଥାନୀୟ ଭୃତ୍ୟର ସହାୟତାରେ ଦୁଇ ସପ୍ତାହରୁ ଅଧିକ କାଳ ରହି ସେହି ସନନ୍ଦ ଦୁଇଟିର ଫଟୋଚିତ୍ର ନେବା ସଙ୍ଗେ ସଙ୍ଗେ ବହୁ ବ୍ୟକ୍ତିଙ୍କଠାରୁ ଜନଶ୍ରୁତିରୁ ଓ ବନ୍ଦୋବସ୍ତ କାଗଜାତ ଇତ୍ୟାଦିରୁ ତଥ୍ୟ ସଂଗ୍ରହ କରିନେଇଥିଲେ ।

ପ୍ରତାପରୁଦ୍ରଦେବଙ୍କ ଅନ୍ତେ ତାଙ୍କର ତିନି ପୁତ୍ରଙ୍କ ମଧ୍ୟରୁ ବୀରଭଦ୍ର ରାଏ ବିଜୟନଗରର ରାଜା କୃଷ୍ଣଦେବ ରାଏଙ୍କ ଶଠତା ଓ ଅପମାନଜନକ ବ୍ୟବହାର ହେତୁ ଆତ୍ମହତ୍ୟାକଲେ । କାଳୁଆ ପ୍ରତାପ ଓ କଖାରୁଆ ପ୍ରତାପଙ୍କୁ ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧର ହତ୍ୟାକରି ନିଜେ ସିଂହାସନ ଆରୋହଣକରି ଭୋଇ (ମନ୍ତ୍ରୀ) ବଂଶ ଶାସନର ସୂତ୍ରପାତକଲେ । କିନ୍ତୁ ଗୋବିନ୍ଦ ବିଦ୍ୟାଧର ୧୫୦୯ ଖ୍ରୀଷ୍ଟାବ୍ଦରେ ବଙ୍ଗର ସୁଲତାନ ଓଡ଼ିଶା ଆକ୍ରମଣ କଲାବେଳେ ବିଶ୍ୱାସଘାତକତା କରି ଶତ୍ରୁକୁ ସାହାଯ୍ୟ କରିଥିବା ହେତୁ ଏବଂ ସେ ପ୍ରତାପରୁଦ୍ରଙ୍କର ଦୁଇଟି ପୁଅଙ୍କୁ ହତ୍ୟାକରି ଜୋରଜବରଦସ୍ତ ସିଂହାସନ ଅଧିକାର କରିଥିବାହେତୁ ପୁରୀର

ବ୍ରାହ୍ମଣ ପଣ୍ଡିତମାନେ ତାଙ୍କ ପ୍ରତି ସନ୍ତୁଷ୍ଟ ନ ଥିଲେ । ତାଙ୍କ ଅନ୍ତେ ତାଙ୍କ ପୁଅ ଚକ୍ରପ୍ରତାପ ରାଜା ହେବା ପରେ ବ୍ରାହ୍ମଣ ପଣ୍ଡିତମାନେ ତାଙ୍କ ପ୍ରତି ରାଜୋଚିତ ମାନ୍ୟତା ପ୍ରଦର୍ଶନ କଲେ ନାହିଁ । ତେଣୁ ସେ ବ୍ରାହ୍ମଣମାନଙ୍କୁ ଅବହେଳାକଲେ ଏବଂ ପୁରୁଷାନୁକ୍ରମେ ରାଜଦରବାରରେ ସମ୍ମାନିତ ହୋଇଆସୁଥିବା ରାଜଗୁରୁଙ୍କ ସ୍ଥାନରେ କାଶୀଧାମରୁ ବିଶ୍ୱନାଥାନନ୍ଦ ନାମକ ଜଣେ ବ୍ରାହ୍ମଣ ପଣ୍ଡିତଙ୍କୁ ଅଣାଇ ରାଜଗୁରୁ ଆସନରେ ବସାଇଲେ । ଏହା ଫଳରେ ପୁରୀର ବ୍ରାହ୍ମଣ ପଣ୍ଡିତମାନେ ଅଧିକ କ୍ଷୁବ୍ଧହୋଇ ବିଶ୍ୱନାଥାନନ୍ଦଙ୍କ ପ୍ରତି ଅସହିଷ୍ଣୁ ହୋଇପଡ଼ିଲେ । ବିଶ୍ୱନାଥାନନ୍ଦଙ୍କର ବଳଦେବାନନ୍ଦ ନାମରେ ଜଣେ ପୁତ୍ର ଅସାଧାରଣ ପଣ୍ଡିତ ଥିଲେ । ତାଙ୍କର ସ୍ତ୍ରୀ ଲକ୍ଷ୍ମୀଦେବୀ ମଧ୍ୟ ଅନୁରୂପ ପାଣ୍ଡିତ୍ୟର ଅଧିକାରିଣୀ ଥିଲେ । ବିଶ୍ୱନାଥାନନ୍ଦ ପୁଅ ଓ ବୋହୂ ଅର୍ଥାତ୍ ବଳଦେବାନନ୍ଦ ଓ ଲକ୍ଷ୍ମୀଦେବୀଙ୍କୁ ପୁରୀରେ ଛାଡ଼ିଦେଇ ନିଜେ କାଶୀଧାମକୁ ପ୍ରତ୍ୟାବର୍ତ୍ତନକଲେ । ବଳଦେବାନନ୍ଦ ରାଜଦରବାରରେ ତାଙ୍କ ପିତାଙ୍କ ସ୍ଥାନ ଅଧିକାର କରି ରାଜଗୁରୁ ଉପାଧି ପାଇଲେ । ଏହି ବଳଦେବାନନ୍ଦ ଜଣେ ବାକ୍‌ସିଦ୍ଧ ମନ୍ତ୍ରସାଧକ ଥିଲେ ଏବଂ ସେ ଯାହା କହୁଥିଲେ ତାହା ଘଟିଯାଉଥିଲା । ତାଙ୍କ ପାଣ୍ଡିତ୍ୟ ଓ ମନ୍ତ୍ରଶକ୍ତି ସମ୍ପର୍କରେ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଘଟଣା ସମ୍ବଳିତ ପ୍ରଚଳିତ ଜନଶ୍ରୁତି ଏହିପରି ।

ପ୍ରଥମ ଘଟଣା - ବଳଦେବାନନ୍ଦ ରାଜା ଚକ୍ରପ୍ରତାପ ଓ ଅନ୍ୟ ପାରିଷଦବର୍ଗଙ୍କ ସହିତ ଜଗନ୍ନାଥ ଦର୍ଶନକୁ ଯାଇଥିବା ସମୟରେ ରାଜା ଓ ଅନ୍ୟମାନେ ଜଗନ୍ନାଥଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରିଥିଲେହେଁ ସେ ଠିଆହୋଇ ଦୁଇହାତ ଯୋଡ଼ି କେବଳ ନମସ୍କାରକଲେ । ଏଥିରେ ବିସ୍ମିତ ହୋଇ ରାଜା ଏହାର କାରଣ ଜିଜ୍ଞାସା କରିବାରୁ ବଳଦେବାନନ୍ଦ କହିଲେ ଯେ, ଜଗନ୍ନାଥଙ୍କ ମୂର୍ତ୍ତି ପ୍ରତିଷ୍ଠା ସମୟରେ ମନ୍ତ୍ରପାଠରେ କିଛି ତ୍ରୁଟିବିଚ୍ୟୁତି ରହିଯାଇଥିବା ହେତୁ ମୂର୍ତ୍ତି ସଂସ୍କାରରେ କିଛି ବିଘ୍ନଦୋଷ ରହିଯାଇଥିବା ସେ ଧ୍ୟାନରେ ଜାଣିପାରିଛନ୍ତି । ସେ ନିଜେ ସଂସ୍କାରସିଦ୍ଧ ହୋଇ ଶ୍ରୀମନ୍ଦିରକୁ ଆସିଥିବାରୁ ଭୂମିରେ ମୁଣ୍ଡ ଲଗାଇ ପ୍ରଣିପାତକଲେ, ମୂର୍ତ୍ତି ପ୍ରତି କିଛି ବିଘ୍ନ ଆସିପାରେ ଏହି ଆଶଙ୍କାରେ ସେ ମୁଣ୍ଡିଆ ମାରୁ ନାହାନ୍ତି । ସ୍ୱୟଂ ଜଗନ୍ନାଥଙ୍କ ପ୍ରତି ରାଜଗୁରୁଙ୍କ ମୁହଁରେ ଏପରି ଅବମାନନା ଏବଂ ଆତ୍ମବଡ଼ିମା ବଖାଣ ଶୁଣି ଚକ୍ରପ୍ରତାପ କ୍ରୋଧାନ୍ୱିତ ହୋଇ ବଳଦେବାନନ୍ଦଙ୍କୁ କହିଲେ - ମୁଁ ଆଦେଶଦେଉଛି ତମେ ଜଗନ୍ନାଥଙ୍କୁ ମୁଣ୍ଡିଆ ମାର । ରାଜଗୁରୁ ତତ୍‌କ୍ଷଣାତ୍ ଭୂମି ଉପରେ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ସାଷ୍ଟାଙ୍ଗ ପ୍ରଣିପାତକଲେ । କିନ୍ତୁ ସଙ୍ଗେ ସଙ୍ଗେ ଜଗନ୍ନାଥଙ୍କ ମୂର୍ତ୍ତିରେ ଏକ ଫାଟ ଦେଖାଯିବାରୁ ବଳଦେବାନନ୍ଦଙ୍କ ଅସାଧାରଣ ଶକ୍ତିର ପରିଚୟପାଇ ରାଜାଙ୍କ ସମେତ ସମସ୍ତ ପାରିଷଦବର୍ଗ ତାଙ୍କପ୍ରତି ଗଭୀର ଭକ୍ତି ଓ ମାନ୍ୟତା ପ୍ରକାଶକଲେ । ଏହି ଘଟଣା ପରେ ପୁରୀର ବ୍ରାହ୍ମଣ ପଣ୍ଡିତମାନେ ବଳଦେବାନନ୍ଦଙ୍କ ପ୍ରତି ଅସହିଷ୍ଣୁ ବିରୋଧ ଭାବ ଛାଡ଼ି ତାଙ୍କର ସାନ୍ନିଧ ଲାଭପାଇଁ ଆଗ୍ରହୀ ହୋଇଉଠିଲେ । ଏହି ସୁଯୋଗରେ ବଳଦେବାନନ୍ଦ

ଚକ୍ରପ୍ରତାପଙ୍କ ସହିତ ପୁରୀର-ବ୍ରାହ୍ମଣ ପଣ୍ଡିତମାନଙ୍କର ମିଳାମିଶା କରାଇନେଇ ସେମାନଙ୍କ ସହାୟତାରେ ଜଗନ୍ନାଥଙ୍କର ନବକଳେବର କରାଇ ନେଇଥିଲେ ।

ଚକ୍ରପ୍ରତାପଙ୍କ ପରେ ତାଙ୍କ ପୁଅ ନରସିଂହ ରାୟ ଜେନାଙ୍କୁ ହତ୍ୟାକରି ଏବଂ ଅନ୍ୟ ଏକ ପୁଅ ରଘୁରାମ ଭଞ୍ଜ ଛୋଟରାଏଙ୍କୁ ମନ୍ତ୍ରୀ ଦନେଇ ବିଦ୍ୟାଧରଙ୍କ ସହିତ ବନ୍ଦିକରି ସେନାପତି ମୁକୁନ୍ଦ ହରିଚନ୍ଦନ ୧୫୫୯ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ରାଜା ହେଲେ ଏବଂ ୧୫୬୮ ଖ୍ରୀଷ୍ଟାବ୍ଦରେ ମୁକୁନ୍ଦଦେବ ସାରଙ୍ଗଗଡ଼ ରାଜାଙ୍କଦ୍ୱାରା ଯୁଦ୍ଧରେ ନିହତ ହେବା ପରେ ଦନେଇବିଦ୍ୟାଧରଙ୍କ ପୁଅ ରମେଇ ରାଉତରା ଓରଫ୍ ରାମଚନ୍ଦ୍ରଦେବ ନିଜକୁ ଓଡ଼ିଶାର ରାଜାଭାବେ ପ୍ରତିଷ୍ଠିତ କରାଇ ଖୋର୍ଦ୍ଧାରେ ନିଜର ରାଜଧାନୀ ସ୍ଥାପନକଲେ ।

## ବଳଦେବ ରାଜଗୁରୁ ମହାପାତ୍ର

ଚକ୍ରପ୍ରତାପଙ୍କ ମୃତ୍ୟୁ ପରେ ବଳଦେବାନନ୍ଦ ତାଙ୍କର ପୁରୀ ବାଲିସାହି ସ୍ଥିତ ବାସଭବନରେ ନିଜ ଜୀବନପ୍ରତି ପ୍ରତିବେଶୀ ବ୍ରାହ୍ମଣମାନଙ୍କ ବୈରତା ହେତୁ ବିପଦ ଆଶଙ୍କାକରି ପୁରୀରୁ ଆସି ବୀରନରସିଂହପୁର ଗ୍ରାମରେ କିଛିଦିନ ଅବସ୍ଥାନକଲେ । କିନ୍ତୁ ବୀରନରସିଂହପୁର ବାସିନ୍ଦା ବଚ୍ଛସ ସାମନ୍ତ ସମ୍ପ୍ରଦାୟର ବ୍ରାହ୍ମଣମାନେ ତାଙ୍କ ପ୍ରତି ଅସୂୟା ଭାବ ପୋଷଣକରିବାରୁ ସେ ସେଠାରୁ ଆସି ବିଶ୍ୱନାଥପୁର ମଙ୍ଗଳାଙ୍କ ପାଖରେ କିଛିଦିନ ରହିଲେ । ବୀରନରସିଂହପୁରରେ ଏଯାବତ୍ ବଳଦେବାନନ୍ଦଙ୍କ ଡ଼ିହ ଖଣ୍ଡିକ ତାଙ୍କର ଉତ୍ତରାଧିକାରୀମାନଙ୍କ ନାମରେ ଗଡ଼ିଆସୁଛି । ବଳଦେବାନନ୍ଦ ବିଶ୍ୱନାଥପୁର ମଙ୍ଗଳାଙ୍କ ପାଖେ ଅଳ୍ପଦିନ ରହିବା ପରେ ଖୋର୍ଦ୍ଧାର ରାଜା ରାମଚନ୍ଦ୍ର ଦେବ ୧୫୮୦-୯୦ ମଧ୍ୟରେ ତାଙ୍କୁ ସେଠାରୁ ଆଣି ବରପଦାଗଡ଼ ସଂଲଗ୍ନ ଉଷନା (ଓଷଣା) ଗ୍ରାମରେ ସ୍ଥାୟୀଭାବେ ରଖାଇଲେ । ବଳଦେବାନନ୍ଦଙ୍କ ଅସାଧାରଣ ପାଣ୍ଡିତ୍ୟ ଓ ମନ୍ତ୍ରଶକ୍ତି ସମ୍ପର୍କରେ ପୂର୍ବରୁ ସୂଚିତ ଦ୍ୱିତୀୟ ଘଟଣାଟି ଏହିଠାରେ ଘଟିଥିଲା ।

ଖୋର୍ଦ୍ଧାର ରାଜା ରାମଚନ୍ଦ୍ରଦେବ ବରପଦାଗଡ଼ରେ ସାମୟିକ ଅବସ୍ଥାନ କରୁଥିବା ସମୟରେ ଦିନେ ପ୍ରତ୍ୟୁଷରୁ ବଳଦେବାନନ୍ଦ ପୂଜା ହୋମାଦି ଶେଷ କରି ବରପଦାଗଡ଼କୁ ଯାଇ ରାମଚନ୍ଦ୍ରଦେବଙ୍କୁ ଆଶୀର୍ବାଦ କରିବାବେଳେ ତାଙ୍କ ପାଟିରୁ ଦୈବାତ୍ ଅମାବାସ୍ୟାତିଥୌ ବୋଲି ବାହାରିପଡ଼ିଲା । କିନ୍ତୁ ସେଦିନ ପୂର୍ଣ୍ଣମୀ ତିଥିରେ ଚନ୍ଦ୍ରଗ୍ରହଣ ଲାଗିବାର ଥିବାରୁ ରାଜାଙ୍କ ପାଖରେ ଥିବା କର୍ମଚାରୀମାନେ ଜୋରରେ ହସିପକାଇଲେ । ନିଜେ ରାମଚନ୍ଦ୍ରଦେବ ମଧ୍ୟ ତାଚ୍ଛଲ୍ୟ କରି କହିଲେ- କ'ଣ ଚନ୍ଦ୍ରଗ୍ରହଣ ହେତୁ ପୂର୍ଣ୍ଣମୀଟା ଅମାବାସ୍ୟା ହୋଇଯିବ ନାଁ କ'ଣ ? ଏଥିରେ ବଳଦେବାନନ୍ଦ ଅପମାନିତ ବୋଧକରି ମଧ୍ୟ ବିଚଳିତ ନ ହୋଇ କହିଲେ- ''ଆଜି ସନ୍ଧ୍ୟାରେ ମହାରାଜ ତାଙ୍କ ପ୍ରଶ୍ନର ଉତ୍ତର ପାଇବେ ।'' ତା'ପରେ ବଳଦେବାନନ୍ଦ

ନିଜର ଘରକୁ ଚାଲିଆସି ଗୋଟିଏ କୋଠରିର ଭିତରପାଖରୁ ଦ୍ୱାରା ବନ୍ଦକରି ମନ୍ତ୍ରପୂଜା କରିବସିଲେ । ସୂର୍ଯ୍ୟାସ୍ତ ପରେ ବହୁ ସମୟ ଧରି ଚନ୍ଦ୍ରୋଦୟ ନ ଦେଖି ରାମଚନ୍ଦ୍ରଦେବ ପାରିଷଦବର୍ଗଙ୍କ ସହିତ ବଳଦେବାନନ୍ଦଙ୍କ ଦ୍ୱାରଦେଶରେ ପହଞ୍ଚି ଅଳିନ୍ଦ ଫାଙ୍କରେ ରୁଦ୍ଧ କୋଠରିଟି ଭିତରକୁ ଚାହିଁ ଦେଖିଲେ ଶୁଭ୍ର ଚନ୍ଦ୍ରାଲୋକପୂର୍ଣ୍ଣ କୋଠରିଟି ଭିତରେ ବଳଦେବାନନ୍ଦ ନିଶ୍ଚଳଭାବେ ଧ୍ୟାନରେ ବସିଛନ୍ତି । ରାଜଗୁରୁଙ୍କର ଏପରି ଅସାଧାରଣ ମନ୍ତ୍ରଶକ୍ତିର ପ୍ରମାଣ ପାଇ ରାମଚନ୍ଦ୍ରଦେବ ଆନନ୍ଦବିହ୍ୱଳ ହୋଇ ରାଜଗୁରୁଙ୍କ ଜୟଧ୍ୱନି କରି ତାଳିମାରିଲେ ଏବଂ ଡାକିଲେ "ରାଜଗୁରୁ ମହାଶୟ ! ଆପଣଙ୍କ ଅସାଧାରଣ ମନ୍ତ୍ରଶକ୍ତି ବଳରେ ପୂର୍ଣ୍ଣିମା ତିଥିରେ ଆକାଶରୁ ଚନ୍ଦ୍ର ଅଦୃଶ୍ୟ ହୋଇଯାଇଛନ୍ତି । ଆପଣ ଧନ୍ୟ, ଆପଣଙ୍କୁ ରାଜଗୁରୁଭାବେ ପାଇ ମୁଁ ମଧ୍ୟ ଧନ୍ୟହୋଇଛି । ଏଥର ଧ୍ୟାନ ଭାଙ୍ଗି ଦ୍ୱାର ଖୋଲି ଆସନ୍ତୁ ।"

## ଇଚ୍ଛାପୁର ଶାସନ

ବଳଦେବାନନ୍ଦ ଧ୍ୟାନରୁ ଉଠି ବାହାରକୁ ଆସିବାମାତ୍ରେ ଆକାଶରେ ଯଥାସ୍ଥାନରେ ପୂର୍ଣ୍ଣଚନ୍ଦ୍ର ଦୃଶ୍ୟହେଲେ ଏବଂ ଯଥାସମୟରେ ଗ୍ରହଣ ଲାଗିଲା । ସେହି ଗ୍ରହଣ ସମୟରେ ରାମଚନ୍ଦ୍ରଦେବ ବଳଦେବାନନ୍ଦଙ୍କୁ ବଳଦେବ ରାଜଗୁରୁ ମହାପାତ୍ର ଉପାଧି ଦେଇ ସବଳଙ୍ଗ ଗ୍ରାମରେ ୧୨୦ ବାଟି ଭୂମି ଦାନକରି ତାଙ୍କ ଇଚ୍ଛାମତେ ପୂର୍ଣ୍ଣମୀ ତିଥିରେ ଚନ୍ଦ୍ରୋଦୟ ଅଦୃଶ୍ୟ ହୋଇଯାଇଥିବାରୁ 'ଇଚ୍ଛାପୁର ଶାସନ' ପ୍ରତିଷ୍ଠାକରିଥିଲେ । ସିରାଇ ସାତଶାସନର ଏହା ଥିଲା ୧ମ ଶାସନ । ଏହି ଶାସନ ପ୍ରତିଷ୍ଠା ସମ୍ପର୍କୀୟ ମୂଳ ସନନ୍ଦଟି ମିଳି ନ ଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଇଚ୍ଛାପୁର ଶାସନର ୧୨୦ ବାଟି ଭୂମିକୁ ବରପଦାଗଡ଼ର ପାଇକମାନେ ପାଇକ ଜାୟଗିରି ବୋଲି ଦାବିକରିବାରୁ ରାଜଦରବାର ପକ୍ଷରୁ ସେହି ଦାବିକୁ ପ୍ରତ୍ୟାଖ୍ୟାନ କରାଯାଇ ଏହି ୧୨୦ ବାଟି ଇଚ୍ଛାପୁର ଶାସନ ଚନ୍ଦ୍ରଗ୍ରହଣ ସମୟରେ ବଳଦେବ ରାଜଗୁରୁ ମହାପାତ୍ରଙ୍କୁ ଦାନକରାଯାଇଥିଲା ବୋଲି ନିର୍ଦ୍ଦେଶନାମା ଜାରିକରାଯାଇଥିଲା । ସନନ୍ଦରେ ସାତଧାଡ଼ି ପାର୍ଶୀଭାଷାରେ ଲେଖାଯାଇଥିବା ନିର୍ଦ୍ଦେଶନାମା ତଳେ ଓଡ଼ିଆ ଭାଷାରେ ପୁଣି ସେହି ନିର୍ଦ୍ଦେଶନାମା ଦିଆଯାଇଛି ।

## ସନନ୍ଦପାଠ

"ବରପଦାଗଡ଼ ଶିଠିକରଣ ଦଳବେହେରା କଉଡ଼ିଭାଗିଆଙ୍କୁ ମଧ୍ୟ ଚିଟାଉ - ବଳଦେବ ରାଜଗୁରୁ ମହାପାତ୍ରଙ୍କୁ ଯେ ଚନ୍ଦ୍ରଗ୍ରହଣ ସମୟରେ ଇଚ୍ଛାପୁର ଶାସନ ନିମନ୍ତେ ସବଳଙ୍ଗ ଗ୍ରାମ ଆସିବା ଓ ଚକଡ଼ା ବିସାସଏ ବା ୧୨୦ଟି ଦାନ ହୋଇ ଦିଆଯାଇଅଛି । ଏଥିରେ ପାଇକଙ୍କର ଜାଗେରି ଜମି ଅଛି ବୋଲି ଓଜର କରୁଅଛନ୍ତି । ଏବେ ଏ ପାଇକକୁ ଏଗଡ଼ ଅନ୍ୟ ମଉଜା ନିବାସି ଭୂମି ଖଞ୍ଜି ଦେଇ ଏ ଶାସନ ସର୍ବାଙ୍କ୍ରା ଓ ଚକଡ଼ା ଏ ଶାସନ

ବ୍ରାହ୍ମଣଙ୍କୁ ଯାବଚନ୍ଦ୍ରାର୍କେ ଭୋଗ କରାଇବ, ଏଥିକି ଟଙ୍କି ଭିଆଣେ ମାପିକେ ସାତସ କା ୭୧୧ ହାଣକୁ ନଦୀ ସୀମା ବନ୍ଧ ମାଟି ତଳେ କା ୧୦୧୨ ହାଣ ଯାଇ ବାକୀ କଉଡ଼ି ବଡ଼ଦାନ ଶାସନ ସମସ୍ୟା ଏ ଦେଉଥିବେ । ଅଧିକ ତଲବ ନ କରିବ ୫୧ ଅଙ୍କ ମିନ ଦି ୧୫ ନ ଇତି ।

### ପାର୍ଶ୍ୱ ଦସ୍ତଖତ

ଭୋଇ ବଂଶରେ କେବଳ ବୀରକେଶରୀଦେବ (୧ମ)ଙ୍କ ବ୍ୟତୀତ ଅନ୍ୟ କୌଣସି ରାଜା ୫୧ ଅଙ୍କ ଯାଏଁ ରାଜୁତି କରି ନଥିବାରୁ ଏହା ବୀରକେଶରୀ ଦେବ (୧ମ)ଙ୍କ ୫୧ ଅଙ୍କ ଅର୍ଥାତ୍ ୧୭୭୭ ମସିହାରେ ଲେଖାଯାଇଥିଲା ।*

ପଣ୍ଡିତପ୍ରବର ବଳଦେବ ରାଜଗୁରୁ ମହାପାତ୍ରଙ୍କ ସ୍ତ୍ରୀ ଲକ୍ଷ୍ମୀଦେବୀ ମଧ ସୁପଣ୍ଡିତା ଥିଲେ । ସ୍ୱାମୀଙ୍କ ମୃତ୍ୟୁ ପରେ ତାଙ୍କର ଦୁଇଟି ନାବାଳକ ପୁତ୍ର ଗଦାଧର ଓ ଗଣେଶ୍ୱରଙ୍କ ମଙ୍ଗଳକାମନାକରି ସେ କାଶୀବିଶ୍ୱନାଥଙ୍କୁ ମନାସି ବାର ବର୍ଷପାଇଁ ମୃତ୍ତିକାଶଙ୍କର ପୂଜା ଆରମ୍ଭକଲେ । ଦୁଇ ପୁଅଙ୍କ ବ୍ରତୋପନୟନ ଓ ବିଦ୍ୟାଶିକ୍ଷା ନିମନ୍ତେ ଜଣେ ଉପଯୁକ୍ତ ବ୍ରାହ୍ମଣ ପଣ୍ଡିତଙ୍କ ସନ୍ଧାନ ପାଇବାପାଇଁ ସେ ଶିବଙ୍କର ଶରଣାପନ୍ନହେଲେ । ଦିନେ ହଠାତ୍ ଜଣେ ଶୀର୍ଣ୍ଣକାୟ ବୃଦ୍ଧ ଭିକ୍ଷାଶୀ ବ୍ରାହ୍ମଣ ଅକସ୍ମାତ୍ ତାଙ୍କ ଦ୍ୱାର ସମ୍ମୁଖରେ ପହଞ୍ଚି ଅଚେତ ହୋଇ ପଡ଼ିଗଲେ । ଲକ୍ଷ୍ମୀଦେବୀ ଦୁଇ ପୁଅଙ୍କ ସହାୟତାରେ ବୃଦ୍ଧଙ୍କ ସେବାଶୁଶ୍ରୁଷା କରି ତାଙ୍କୁ ସଚେତ କରାଇଲେ ଏବଂ ସେ ଜଣେ ଅସାଧାରଣ ପଣ୍ଡିତ ବୋଲି ପରେ ତାଙ୍କ କଥାଭାଷାରୁ ଜାଣିପାରି ତାଙ୍କରିଦ୍ୱାରା ଦୁଇ ପୁଅଙ୍କ ବ୍ରତୋପନୟନ ଓ ଶିକ୍ଷାଦାନ କରାଇବା ଲାଗି ତାଙ୍କୁ ଅନୁରୋଧକଲେ । ବୃଦ୍ଧ ଅନୁରୋଧ ରକ୍ଷାକରି ଏକ ସ୍ୱତନ୍ତ୍ର କୋଠରିରେ ଅବସ୍ଥାନକରି ପିଲା ଦୁହିଁଙ୍କୁ ବିଦ୍ୟା ଶିକ୍ଷା ଦେଲେ ଏବଂ ଯେଉଁପରି ଅକସ୍ମାତ୍ ଆବିର୍ଭୂତ ହୋଇଥିଲେ ସେହିପରି ଦିନେ ପ୍ରତ୍ୟୁଷରୁ ଅକସ୍ମାତ୍ ଅନ୍ତର୍ହିତ ହୋଇଗଲେ । ସେତେବେଳକୁ ଲକ୍ଷ୍ମୀଦେବୀଙ୍କର ମୃତ୍ତିକାଶଙ୍କର ପୂଜାର ବାର ବର୍ଷ ପୂରିଯାଇଥିଲା । ପୂଜା ଉଦ୍‌ଯାପନ ଦିବସରେ ଲକ୍ଷ୍ମୀଦେବୀ ତାଙ୍କ ଦ୍ୱାର ସମ୍ମୁଖରେ ଅଚାନକ ଏକ ବିଶାଳ ବୃଷଭ ଆସି ଠିଆହୋଇଥିବାର ଦେଖି ପୂଜା ନୈବେଦ୍ୟତକ ନେଇ ବୃଷଭ ସମ୍ମୁଖରେ ରଖିଦେଲେ । ବୃଷଭଟି ନୈବେଦ୍ୟତକ ନିଃଶେଷକରି ସେଠାରୁ ନିଷ୍କ୍ରାନ୍ତ ହୋଇଯିବା ପରେ ଲକ୍ଷ୍ମୀଦେବୀଙ୍କର ଦୃଢ଼ ବିଶ୍ୱାସ ହେଲା ଯେ, ସ୍ୱୟଂ ଭଗବାନ ଶଙ୍କର ଆସି ତାଙ୍କ ପୁଅ ଦୁହିଁଙ୍କୁ ବିଦ୍ୟା ଦାନକରି ଯାଇଛନ୍ତି ଏବଂ ତାଙ୍କର ମୃତ୍ତିକା ଶଙ୍କର ପୂଜାର ନୈବେଦ୍ୟ ମଧ ଗ୍ରହଣକରିଛନ୍ତି ।

* (ବରପଦାଗଡ଼ ଅଧ୍ୟାୟରେ ବଳଦେବରାଜଗୁରୁଙ୍କ ସମ୍ପର୍କୀୟ ଟିପ୍ପଣୀ ଦ୍ରଷ୍ଟବ୍ୟ)

## ଗଦାଧର ରାଜଗୁରୁ ମହାପାତ୍ର

ଗଦାଧର ପିତାଙ୍କ ପରି ଅସାଧାରଣ ପାଣ୍ଡିତ୍ୟ ଲାଭକରି ପ୍ରତ୍ୟହ ଶିବ ମନ୍ଦିରରେ ମନ୍ତ୍ର ସାଧନା କରୁଥିଲେ । ଥରେ ଖୋର୍ଦ୍ଧାର ରାଜା ୧ମ ରାମଚନ୍ଦ୍ର ଦେବଙ୍କ ପୁଅ ଯୁବରାଜ ପୁରୁଷୋତ୍ତମ ବରପଦାଗଡ଼ ପରିଭ୍ରମଣରେ ଆସି ସେଠାରେ ଅବସ୍ଥାନ କରୁଥିବା ସମୟରେ ନିକଟସ୍ଥ କ୍ଷୁଦ୍ର ଜଙ୍ଗଲ ଭିତରେ ମୃଗ ଶାବକଟିଏ ଦେଖି ତା' ଉପରକୁ ଶର ନିକ୍ଷେପକଲେ । ମୃଗ ଶାବକଟି ଆହତ ହୋଇ ପ୍ରାଣବିକଳରେ ପଳାଇଯାଇ ଓଷଣା ଗ୍ରାମମୁଣ୍ଡ ଶିବମନ୍ଦିର ସମ୍ମୁଖରେ ମୁମୂର୍ଷୁ ଅବସ୍ଥାରେ ପଡ଼ିଗଲା । ତା' ଦେହରୁ ପ୍ରଚୁର ରକ୍ତସ୍ରାବ ହେଉଥିଲା । ଦୈବାତ୍ ଠିକ୍ ସେତିକିବେଳକୁ ଗଦାଧର ମନ୍ତ୍ରପୂଜା ସାରି ଶିବମନ୍ଦିର ଭିତରୁ ବାହାରିଆସୁଥିଲେ । ସେ ରକ୍ତାକ୍ତ ମୃଗ ଶାବକଟିକୁ ଏପରି ଅବସ୍ଥାରେ ଦେଖିବା ମାତ୍ରେ ''ଆଜି ସଂକ୍ରାନ୍ତି ପରା ଦିନରେ କୋଉ ପାଷଣ୍ଡ ଏପରି ନୃଶଂସଭାବେ ମୃଗ ଶାବକଟିକୁ ହତ୍ୟାକଲା' ବୋଲି କହି ଉଚ୍ଚ କଣ୍ଠରେ ନାନାଦି ଭର୍ତ୍ସନାକଲେ । ସେତେବେଳକୁ ଶିକାରର ଅନୁଧାବନ କରି ଯୁବରାଜ ପୁରୁଷୋତ୍ତମ ସେଠାରେ ଯାଇ ପହଞ୍ଚିଯାଇଥିଲେ । ଗଦାଧର ପଣ୍ଡିତଙ୍କ ମୁହଁରୁ ଏପରି ଭର୍ତ୍ସନା ଶୁଣି ସେ କ୍ରୋଧ ଜର୍ଜରିତ ହୋଇଉଠିଲେ ଏବଂ ଗଦାଧର ପଣ୍ଡିତଙ୍କର ଶିରଚ୍ଛେଦକରି ଉଚିତ ପ୍ରତିଶୋଧ ନେବା ନିମନ୍ତେ ସେ ମନେ ମନେ ପ୍ରତିଜ୍ଞାକରି ବରପଦା ଗଡ଼କୁ ଆସି ଗଡ଼ନାୟକଙ୍କୁ ନିଜର ପ୍ରତିଜ୍ଞା ପୂରଣ ନିମନ୍ତେ ପରାମର୍ଶ ମାଗିଲେ । କିନ୍ତୁ ରାଜାନୁଗ୍ରହପ୍ରାପ୍ତ ଜଣେ ବ୍ରାହ୍ମଣ ପଣ୍ଡିତଙ୍କୁ ଶାସ୍ତିଦେବା ଅଧିକାର କେବଳ ରାଜାଙ୍କର ବୋଲି କହି ଗଡ଼ନାୟକ ତାଙ୍କୁ ଖୋର୍ଦ୍ଧା ଯାଇ ରାଜାଙ୍କୁ ତାଙ୍କର ପ୍ରତିଜ୍ଞା କଥା ଜଣାଇବାପାଇଁ ପରାମର୍ଶଦେଲେ । ସେତେବେଳେ ରାମଚନ୍ଦ୍ରଦେବ ପୁରୀରେ ଥିଲେ । ଯୁବରାଜ ଖୋର୍ଦ୍ଧା ଯାଇ ମନ୍ତ୍ରୀଙ୍କୁ ସମସ୍ତ ବୃତ୍ତାନ୍ତ କହିବାରୁ ମନ୍ତ୍ରୀ ପୁରୀକୁ ସ୍ୱତନ୍ତ୍ର ଦୂତ ପଠାଇ ରାମଚନ୍ଦ୍ର ଦେବଙ୍କୁ ସମସ୍ତ ବୃତ୍ତାନ୍ତ ଅବଗତ କରାଇଲେ । ରାମଚନ୍ଦ୍ରଦେବ ଖୋର୍ଦ୍ଧା ଆସି ବରପଦା ଗଡ଼ନାୟକଙ୍କୁ ଚିଟାଉକଲେ ଓଷଣାର ଗଦାଧର ପଣ୍ଡିତଙ୍କୁ ଧରି ଆସି ଦେଖାକରିବାକୁ । ଗଦାଧର ପଣ୍ଡିତଙ୍କୁ ବରପଦା ଗଡ଼ନାୟକ ରାଜାଦେଶ ଜଣାଇ ତାଙ୍କୁ ସଙ୍ଗରେ ନେଇ ଯାଇ ଖୋର୍ଦ୍ଧା ରାଜବାଟିରେ ପହଞ୍ଚିଲେ । କିନ୍ତୁ ଦରବାର କକ୍ଷ ଭିତରକୁ ପ୍ରବେଶ କରିବା ପୂର୍ବରୁ ଗଦାଧର ପଣ୍ଡିତେ ପାହାଚ ଉଠୁଥିବା ସମୟରେ ହଠାତ୍ ଯୁବରାଜ ଦୌଡ଼ିଆସି ତାଙ୍କ ବେକମୁଣ୍ଡାରେ ଶାଣିତ ଖଡ଼୍‌ଗ ପ୍ରହାରକଲେ । ଆଶ୍ଚର୍ଯ୍ୟର କଥା ଯେ, ଗଦାଧର ପଣ୍ଡିତଙ୍କ ବେକ ଛିଡ଼ିବା ତ ଦୂରର କଥା, ବେକମୁଣ୍ଡାରେ ଶାଣିତ ଖଡ଼୍‌ଗ ପ୍ରହାରର ସାମାନ୍ୟ ଚିହ୍ନ ଟିକିଏ ନ ହୋଇ ଖଡ଼୍‌ଗଟି ଦୁଇ ଗଡ଼ ହୋଇ ଭାଙ୍ଗିଗଲା । ଦରବାର କକ୍ଷ ଭିତରେ ଥାଇ ରାମଚନ୍ଦ୍ରଦେବ ଏହି ଦୃଶ୍ୟ ଦେଖିପାରିଥିଲେ । ସେ ସଙ୍ଗେ ସଙ୍ଗେ ଦୌଡ଼ିଆସି ଗଦାଧର ପଣ୍ଡିତଙ୍କ ପାଦତଳେ ପଡ଼ି କ୍ଷମାଭିକ୍ଷା କଲେ । କିନ୍ତୁ ମନ୍ତ୍ରୀ ତତ୍‌କ୍ଷଣାତ୍ ଇସ୍ତଫାପତ୍ର ଲେଖିଆଣି

ରାଜାଙ୍କ ହାତକୁ ବଢ଼ାଇ ଦେଇ କହିଲେ ଯେ, ଯେଉଁ ରାଜ୍ୟରେ ସ୍ୱୟଂ ମହାରାଜାଙ୍କଦ୍ୱାରା ଆହୂତ ଜଣେ ବ୍ରାହ୍ମଣ ପଣ୍ଡିତଙ୍କୁ ତାଙ୍କରି ସମ୍ମୁଖରେ ଯୁବରାଜ ହତ୍ୟା କରିବାପାଇଁ କୁଣ୍ଠାବୋଧ କରନ୍ତି ନାହିଁ, ସେ ରାଜ୍ୟରେ ସେ ମନ୍ତ୍ରୀ ହୋଇ ରହିବାକୁ ଇଚ୍ଛା କରନ୍ତି ନାହିଁ। ସ୍ୱୟଂ ରାମଚନ୍ଦ୍ର ଦେବ ମଧ ଯୁବରାଜଙ୍କୁ ଗଦାଧର ପଣ୍ଡିତଙ୍କ ପାଦତଳେ ପଡ଼ି କ୍ଷମା ଭିକ୍ଷାପାଇଁ ନିର୍ଦ୍ଦେଶ ଦେବା ସଙ୍ଗେ ସଙ୍ଗେ ରାଜ୍ୟର କିଛି ଅଂଶ ଗଦାଧର ପଣ୍ଡିତଙ୍କୁ ଦାନକରିବାର ଇଚ୍ଛା ପ୍ରକାଶକରି ଯୁବରାଜଙ୍କୁ କ୍ଷମାପ୍ରଦାନପାଇଁ ପ୍ରାର୍ଥନାକଲେ। ଗଦାଧର କ୍ରନ୍ଦନରତ ଯୁବରାଜଙ୍କୁ ପାଦତଳୁ ଟେକିନେଇ କ୍ଷମା ପ୍ରଦାନ କରିବା ସଙ୍ଗେ ସଙ୍ଗେ ଏହି 'କ୍ଷମାପ୍ରଦାନ'ପାଇଁ ସେ ରାଜାଙ୍କଠାରୁ କୌଣସି ପ୍ରତିଦାନ ଗ୍ରହଣକରି କ୍ଷମାପ୍ରଦାନର ପବିତ୍ରତାକୁ ନଷ୍ଟ ହେବାକୁ ଦେବେ ନାହିଁ ବୋଲି କହି ତାଙ୍କ ଜୀବଦ୍ଦଶାରେ ରାଜାଙ୍କଠାରୁ ସେ କୌଣସି ପ୍ରକାର ରାଜ୍ୟଦାନ, ଗ୍ରାମଦାନ ବା ଭୂମିଦାନ ଗ୍ରହଣ କରିବେ ନାହିଁ ବୋଲି ପ୍ରତିଜ୍ଞା କଲେ। ଏହା ଶକାବ୍ଦ ୧୫୧୨ ବା ୧୫୯୦ ଖ୍ରୀଷ୍ଟାବ୍ଦର ଘଟଣାବୋଲି ସାମନ୍ତ ହରିହର ମହାପାତ୍ରଙ୍କ ଦ୍ୱାରା ପ୍ରଦତ୍ତ ତଥ୍ୟରୁ ପ୍ରକାଶ।

କିନ୍ତୁ ଏହି ଘଟଣା ପରେ ଗଦାଧର ରାଜଗୁରୁ ମହାପାତ୍ରଙ୍କର ଖ୍ୟାତି ଓ ସମ୍ମାନ ରାଜଦରବାରରେ ତଥା ରାଜ୍ୟରେ ବିଶେଷ ବଢ଼ିଯାଇଥିଲା ଏବଂ ସେ ପୁରୁଷାନୁକ୍ରମେ ଖୋର୍ଦ୍ଧା ରାଜଦରବାରରେ ରାଜଗୁରୁ ପଦବୀର ଅଧିକାରୀ ହେବାର ସୁଯୋଗ ଲାଭକରିଥିଲେ। ଗଦାଧର ରାଜଗୁରୁ ମହାପାତ୍ରଙ୍କ ଅନୁରୋଧକ୍ରମେ ତାଙ୍କ ଭାଇ ଗଣେଶ୍ୱର ପଟ୍ଟଯୋଷୀ ଓ ଅନ୍ୟ ଜଣେ ପଣ୍ଡିତଙ୍କ ନାମରେ ବରପଦାଗଡ଼ ନିକଟରେ ରାମଚନ୍ଦ୍ରଦେବ ଦୁଇଟି ଗ୍ରାମ ଦାନକରି ଯଥାକ୍ରମେ ପଟ୍ଟଯୋଷୀପୁର ଓ ରାୟଗୁରୁପୁର ଶାସନ ପ୍ରତିଷ୍ଠାକରାଇଥିଲେ। ପଟ୍ଟଯୋଷୀପୁର ଓ ରାୟଗୁରୁପୁର ଶାସନ ଦୁଇଟିର ମୋଟ ଦାନ ଜମିର ପରିମାଣ ଯଥାକ୍ରମେ ୫୩୩ ଟି ୮ ମାଣ ଓ ୪୮ ବାଟି ୧୪ ମାଣ ୨୧ ଗୁଣ୍ଠ ୧୫ ବିଶ୍ୱା।

ଗଦାଧର ରାଜଗୁରୁ ମହାପାତ୍ରଙ୍କ ମୃତ୍ୟୁ ପରେ ତାଙ୍କ ପୁଅ ମାର୍କଣ୍ଡ ରାଜଗୁରୁ ପଦରେ ଅଧିଷ୍ଠିତ ହୋଇଥିଲେ। ମାର୍କଣ୍ଡଙ୍କ ଜନ୍ମ ଶକାବ୍ଦ ୧୫୧୩(୧୫୯୧ଖ୍ରୀଷ୍ଟାବ୍ଦ) ଏବଂ ମୃତ୍ୟୁ ଶକାବ୍ଦ ୧୫୯୮ (୧୬୭୬ ଖ୍ରୀଷ୍ଟାବ୍ଦ)ରେ ହୋଇଥିଲା। ତାଙ୍କ ସମୟରେ ୧୫୭୫ ଶକାବ୍ଦ ବା ୧୬୫୩ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧା ଭୋଇବଂଶର ପଞ୍ଚମ ରାଜା ମୁକୁନ୍ଦଦେବ-(୧) ଓଷଣା ଗ୍ରାମକୁ ତାଙ୍କ ନାମରେ ଦାନକରି ଶ୍ରୀମୁକୁନ୍ଦପୁର ଶାସନ ପ୍ରତିଷ୍ଠାକରିଥିଲେ ବୋଲି ଶ୍ରୀମୁକୁନ୍ଦପୁର ଶାସନ ନିବାସୀ ୮୩ବର୍ଷ ବୟସ୍କ ସଂସ୍କୃତ ପଣ୍ଡିତ ସାମନ୍ତ ହରିହର ମହାପାତ୍ରଙ୍କ ପୁରୁଣା ଟିପାଖାତାରେ ଉଲ୍ଲେଖ ଅଛି ଏବଂ ଏହାକୁ ସେ ତାଙ୍କର କିଶୋର ବୟସରେ ତାଳପତ୍ର ଭଉଁରିଆରୁ ଟିପିରଖିଥିଲେ ବୋଲି କହୁଛନ୍ତି। କିନ୍ତୁ ମୁକୁନ୍ଦଦେବ (୧) ୧୬୫୭

ଖ୍ରୀଷ୍ଟାବ୍ଦରୁ ୧୬୮୮ ଖ୍ରୀଷ୍ଟାବ୍ଦଯାଏଁ ରାଜତ୍ୱ କରିଥିବା ହେତୁ ଶ୍ରୀମୁକୁନ୍ଦପୁର ଶାସନ ପ୍ରତିଷ୍ଠା ସମୟ ନିଶ୍ଚିତଭାବେ ୧୬୫୭ ଖ୍ରୀଷ୍ଟାବ୍ଦ ପୂର୍ବରୁ ନୁହେଁ । ଶ୍ରୀମୁକୁନ୍ଦପୁର ଶାସନରେ ମୋଟ ଦାନ ଜମିର ପରିମାଣ ୧୨୪ ବାଟି ୧୫ ମାଣ ବୋଲି ସନନ୍ଦରେ ଉଲ୍ଲେଖଅଛି ।

ମୁକୁନ୍ଦଦେବ-(୧)ଙ୍କ ମୃତ୍ୟୁ ବେଳକୁ ତାଙ୍କ ପୁଅ ଯୁବରାଜ ଦିବ୍ୟସିଂହ ରାୟ ବରପଦାଗଡ଼ରେ ଥିଲେ । ବରପଦାଗଡ଼ରୁ ରଥିପୁରଗଡ଼କୁ ଯାଇ ସେ ଭୋଇ ବଂଶର ଷଷ୍ଠ ରାଜା ଦିବ୍ୟସିଂହଦେବ-(୧)ଭାବେ ଅଭିଷିକ୍ତ ହେଲେ । 'ଗଜପତି ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ତାଙ୍କ ପୁଅ ଦିବ୍ୟସିଂହ ରାୟଙ୍କୁ ଦିଆନ୍ ପରମାନନ୍ଦ ପଟ୍ଟନାୟକଙ୍କ ପୁଅ ରାମଚନ୍ଦ୍ର ପଟ୍ଟନାୟକ ବରପଦାଗଡ଼ରୁ ରଥିପୁରଗଡ଼କୁ ଆଣି ରଥିପୁର କଟକେ ବିଜେକରାଇ ରାତ୍ର ୫ଘଡ଼ିବେଳେ ଅଭିଷେକ କରାଇଲେ' ଏବଂ 'ଦିବ୍ୟସିଂହଦେବଙ୍କ ୩୧ଅଙ୍କ ବୃଷ ୩୦ଦିନ ଜ୍ୟେଷ୍ଠମାସ ଗୁରୁବାର ୨୫।୮।୧୭୧୩ ଚନ୍ଦ୍ରଗ୍ରହଣ ସମୟରେ ଦିବ୍ୟସିଂହ ସାମନ୍ତରାୟ ମହାପାତ୍ର ଦିବ୍ୟସିଂହପୁର ଶାସନରେ କେତେକ ଜମି ମହାଦେବଙ୍କ ସେବା ପୂଜା ଓ ବ୍ରାହ୍ମଣ ଭୋଜନ ନିମିତ୍ତ ଦୁଇଜଣ ଗୋସାଇଁଙ୍କୁ ଦାନକରିଥିଲେ'[୨୦୭] ।

ଏଥିରୁ ଏହା ସ୍ପଷ୍ଟଭାବେ ସୂଚିତ ହେଉଛି ଯେ, ଦିବ୍ୟସିଂହଦେବ-(୧) ୧୭୧୩ ଖ୍ରୀଷ୍ଟାବ୍ଦ ପୂର୍ବରୁ ବରପଦାଗଡ଼ ନିକଟରେ ଦିବ୍ୟସିଂହପୁର ଶାସନ ପ୍ରତିଷ୍ଠା କରିସାରିଥିଲେ ଏବଂ ୨୫।୮।୧୭୧୩ରେ ସେହି ଶାସନନିବାସୀ ଦିବ୍ୟସିଂହ ସାମନ୍ତରାୟ ମହାପାତ୍ର ନାମଧାରୀ ଜନୈକ ବ୍ୟକ୍ତି ଆଉ ଦୁଇ ଜଣ ବ୍ରାହ୍ମଣଙ୍କୁ ମହାଦେବଙ୍କ ସେବା ପୂଜା ଓ ବ୍ରାହ୍ମଣ ଭୋଜନପାଇଁ କିଛି ଜମି ଦାନକରିଥିଲେ । ତେବେ ସନନ୍ଦରେ ଦିବ୍ୟସିଂହପୁର ଶାସନରେ ମୋଟ ଦାନ ଜମି ୬୬ ବାଟି ୩ ମାଣ ଥିବାର ଉଲ୍ଲେଖ ଅଛି ।

ବରପଦାଗଡ଼ର ଅଳ୍ପ ଦୂରରେ ଅବସ୍ଥିତ ତ୍ରିଲୋଚନପୁର ଶାସନନିବାସୀ ଗୋଦାବରୀଶ ମହାପାତ୍ର ଓଗେର ବ୍ରାହ୍ମଣମାନଙ୍କ ତରଫରୁ ୧୯୬୮ ମସିହା ଜୁଲାଇ ମାସ ୨୬ତାରିଖରେ ପୁରୀ ସବ୍‌ଜଜ୍ ଅଦାଲତରେ କୌଣସି ଏକ ମାମଲା ସଂକ୍ରାନ୍ତରେ ଦର୍ଶାଯାଇଥିଲା ଯେ ତାଙ୍କ ପୂର୍ବପୁରୁଷ ପ୍ରସିଦ୍ଧ କବିରାଜ ତ୍ରିଲୋଚନ ଖାଡ଼ଙ୍ଗା ମହାପାତ୍ର ଖୋର୍ଦ୍ଧା ରାଜାଙ୍କର ରାଜବୈଦ୍ୟ ଥାଇ ରାଜାନୁଗ୍ରହ ଲାଭକରିଥିବାରୁ ମୁକୁନ୍ଦଦେବ ତାଙ୍କ ନାମରେ ୧୫୨୦ମାଣ ଜମି ଦାନ କରି ତ୍ରିଲୋଚନପୁର ଶାସନ ପ୍ରତିଷ୍ଠାକରିଥିଲେ । ସେମାନେ କେବଳ ଜନଶ୍ରୁତିକୁ ଭିତ୍ତିକରି ଏହା ଲେଖିଥିଲେ । କିନ୍ତୁ ତ୍ରିଲୋଚନପୁର ଶାସନ କେଉଁ ରାଜାଙ୍କ ସମୟରେ ପ୍ରତିଷ୍ଠିତ ହୋଇଥିଲା, ତହିଁରେ କୌଣସି ପ୍ରାମାଣିକ ତଥ୍ୟ ନାହିଁ; ଯଦିଓ ତ୍ରିଲୋଚନ ନାମଧାରୀ ଜଣେ ରାଜବୈଦ୍ୟଙ୍କ ନାମରେ ଏହା ଖଞ୍ଜା ଯାଇଥିଲା ବୋଲି ଜନଶ୍ରୁତି ପ୍ରଚଳିତ ଅଛି । ସନନ୍ଦରେ ତ୍ରିଲୋଚନପୁର ଶାସନରେ ମୋଟ ଦାନ ଜମିର

---

୨୦୭- ୩/୧୫୬

ପରିମାଣ ୬୪ ବାଟି ୧୬ ମାଣ ୧୨ ଗୁଣ୍ଠ ୮ ବିଶ୍ୱା (ଅର୍ଥାତ୍ ୧୨୯୬ ମାଣ ୨ପା) ଥିବାର ଉଲ୍ଲେଖ ଥିଲେ ହେଁ ମାମଲାଦାରମାନେ ଭୁଲକ୍ରମେ ଏହା ୧୫୨୦ ମାଣ ବୋଲି ଦର୍ଶାଇଛନ୍ତି ।

ସର୍ବଶେଷରେ ଚର୍ଚ୍ଚିତ ଦୁଇଟିଯାକ ସନନ୍ଦର ଦାତା ବୀରକେଶରୀଦେବ-(୧) ତାଙ୍କ ରାଜତ୍ୱକାଳରେ ବୀରକେଶରୀପୁର ଶାସନ ପ୍ରତିଷ୍ଠାକରି ସିରାଇ ସାତଶାସନର ପ୍ରତିଷ୍ଠା ଚୂଡ଼ାନ୍ତକରିଥିଲେ । ବୀରକେଶରୀପୁର ଶାସନରେ ମୋଟ ଦାନ ଜମି ପରିମାଣ ୭୭ ବାଟି ୯ ମାଣ ବୋଲି ଉଲ୍ଲେଖ କରାଯାଇଛି ।

ବୀରକେଶରୀ ଦେବ-(୧) ୧୭୩୬ ଖ୍ରୀଷ୍ଟାବ୍ଦରୁ ୧୭୯୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱକରିଥିଲେ । ତାଙ୍କ ରାଜତ୍ୱର ୫୧ ଓ ୫୨ ଅଙ୍କ ଅର୍ଥାତ୍ ୧୭୭୭ ଓ ୧୭୭୮ ଖ୍ରୀଷ୍ଟାବ୍ଦରେ ଚର୍ଚ୍ଚିତ ଦୁଇଟିଯାକ ସନନ୍ଦ ଲେଖାଯାଇଥିଲା । କିନ୍ତୁ ୧ମ ସନନ୍ଦରେ ଇଚ୍ଛାପୁର ଶାସନରେ ଦାନକରାଯାଇଥିବା ଭୂମି କେବଳ ସବଳଙ୍ଗ ଗ୍ରାମର ୧୨୦ ବାଟି ସମ୍ପର୍କରେ ଉଲ୍ଲେଖ ଥିଲେ ହେଁ ୨ୟ ସନନ୍ଦଟିରେ ଇଚ୍ଛାପୁର ଶାସନରେ ସବଳଙ୍ଗ ଗ୍ରାମ ୧୨୦ବାଟି ସହିତ ଟଣମଣ ଗ୍ରାମ ୧୮ବାଟି ୧୮ ମାଣ, ସାହସପୁର ଗ୍ରାମରୁ ୨୪ ବାଟି, ନୂଆଗାଁରୁ ୬ ବାଟି, ବରପଦାଗଡ଼ ତଳୁ ୧ ବାଟି ଏବଂ ବଡ଼ାଲ ଗ୍ରାମରୁ ୧ ବାଟି - ଏପରି ମୋଟ ୧୭୦ ବାଟି ୧୯ ମାଣର ବିବରଣ ଦିଆଯାଇଛି । ସିରାଇ ସାତ ଶାସନରେ ସର୍ବମୋଟ ଦାନ ଜମିର ପରିମାଣ ୬୦୬ ବାଟି ୫ ମାଣ ୯ ଗୁଣ୍ଠ ୭ ବିଶ୍ୱାପାଇଁ ସର୍ବମୋଟ ଟଙ୍କାରାଜସ୍ୱ ଦେୟ ପରିମାଣ ସେତେବେଳର କଉଡ଼ି ହିସାବରେ ୪୪୬୬ କାହାଣ ୭ ପଣ ଅର୍ଥାତ୍ ୫୭,୧୭,୦୪୦ କଡ଼ା (ଗୋଟା) କଉଡ଼ି ବୋଲି ସନନ୍ଦରେ ଉଲ୍ଲେଖ ରହିଛି ।

ସନନ୍ଦ ଦୁଇଟିରେ ଲେଖା ସମୟ ବ୍ୟବଧାନ ୫୧ ଅଙ୍କ ମୀନ ୧୫ ଦିନରୁ ୫୨ ଅଙ୍କ ଦିନ ପର୍ଯ୍ୟନ୍ତ ପ୍ରାୟ ୧୦ ମାସ ରହିଥିବା ବେଳେ ସନନ୍ଦ ଦୁଇଟିଯାକ ଗୋଟିଏ ହାତରେ ଲେଖାହୋଇଥିବା ସ୍ପଷ୍ଟ ଜଣାପଡୁଛି । ଦୁଇଟିଯାକ ସନନ୍ଦର ପଛପାଖେ ମଧ୍ୟ ମୋହର ଚିହ୍ନ ସହିତ ପାର୍ଶୀ ଓ ଓଡ଼ିଆରେ କୌଣସି ରାଜକର୍ମଚାରୀଙ୍କର ଦସ୍ତଖତ ଥିଲାପରି ଜଣାପଡୁଛି ।

## ୨ୟ ସନନ୍ଦର ପାଠ

ପାଞ୍ଜିଆ ଚିନ୍ତାମଣି ବିଦ୍ୟାଧର ମହାପାତ୍ରଙ୍କୁ ମଧ୍ୟ ଚିଟାଉ । ସିରାଇ ସାତଶାସନ ମଧ୍ୟରେ ଶ୍ରୀ ମୁକୁନ୍ଦପୁର ଶାସନ ଗୋ୧ଟା ବା ୧୦୫ଟୀ । ଏ ଶାସନରେ ମୂଳ କଲା ବରପଦାଗଡ଼ତଳରୁ ବା୧୫।୧୫ କୋକୀନ୍ଧା ଦୁଇବା୨ଟୀ ବଡ଼ାଲୋ ଦୁଇ ବା୨ଟି ଗାଏ ବା ୧୨୪।୧୫। ଦିବ୍ୟସିଂହପୁର ଶାସନ ଗୋ୧ଟା ବା ୫୯ଟୀ ମାଣ ୧୫ଣ । ଏ ଶାସନରେ ମୂଳକଲା ବରପଦାଗଡ଼ ତଳୁ ବା ବା୬ଟୀ ୮ମାଣ ବା୬୬ଟୀ୩ । ରାଏଗୁରୁପୁର ଶାସନ

ଗୋ୧ଟା ବା୩୬।୧୬।୧୮୳ ଏ ଶାସନରେ ମୂଳକଲା ବରପଦାଗଡ଼ ତଳୁ ବା୧୧।୧୮।୩୳ ଗାଏ ବା ୪୮।୧୪।୨୧୳ ପାଟଯୋଷୀପୁର ଶାସନ ଗୋ୧ଟା ବା୩୧ଟୀ । ଏ ଶାସନରେ ମୂଳକଲା ମନ୍ଧାରବସ୍ତ ବା ୧୯।୧୦ ବରପଦାଗଡ଼ ତଳରୁ ବା ୨।୧୮ଗାଏ ବା ୫୩।୮ ତ୍ରିଲୋଚନପୁର ଶାସନ ଗୋ୧।ଟା ବା ୧୭।୧୫।୧୨୳ ବରପଦାଗଡ଼ ତଳରୁ ବା ୧୪ଟୀ ନରୀନ୍ଦ୍ରପୁର ବା ୦।୧୧ଗାଏ ବା ୬୪।୧୬।୧୨୳ ବୀରକେଶରୀପୁର ଶାସନ ଗୋ୧ଟା ବା୭୦ଟୀ ଏ ଶାସନରେ ମୂଳକଲା ବରପଦାଗଡ଼ ତଳରୁ ବା ୭।୫।୧୨୳ ଗୁଣ୍ଠୁଣି ମା୩।୧୨୳ ଗାଏ ବା ୭୭।୯। ଇଚ୍ଛାପୁର ଶାସନ ଗୋ।ଟ ବା୧୨୦ଟୀ ଟଣମଣ ଗ୍ରାମ ଗୋ।ଟା ବା ୧୮।୧୮ ସାହସପୁର ବା୮୭।୧୦ସ୍ଥଧର ବା ୨୪ଟୀ ଏ ଗାଁତଳେ ମୂଳକଲା ନୂଆ ଗାଁ ବା ୬ଟୀ ବରପଦା ଗତଳରୁ ବା୧ଟୀ ଏବଡ଼ାଲୋ ସ୍ଥଧରୁ ବା ୧।୧ଗାଏ ବା ୩୨।୧ ଏ ରୂପେ ଏତେ ପଦରେ ସାଧ ଅସାଧ ମଧ ଭୂମି ବା ୬୦୬।୫୯ ଛସଛବାଟୀ ପାଞ୍ଚମାଣ ନଗୁଣ୍ଡ ଛବିଶ୍ୱା ସିରାଇ ସାତଶାସନ ସମସ୍ତ ମହାଜନମାନେ ପରମ୍ପରା ଦାନ ତଳେ ଅମଳ କରି ସଦାମତ ମାଫିକେ ଚାରିହଜାର ଚାରିଶ କା ୪୪୬୬ ଛସଠି କାହାଣ ସାତପଣ ଟଙ୍କୀ ଦେଇ ଆସୁଅଛନ୍ତି । ତୁମ୍ଭେ କି ନିମନ୍ତେ ଅଧିକ ତଲବ କରିଅଛ । ଏବେ ଏହି ମାଫିକେନେବ । ଏ ଶାସନ ସମସ୍ତ ମାହାଯନେ ଏହି ଚାରିହଜାର ଚାରିସ ଛସଠି କାହାଣ ସାତପଣ କା୪୪୬୬ କଉଡ଼ୀ ଦେଇ ଏ ଭୂମିକୁ ଯାବତ୍ ଚନ୍ଦ୍ରାର୍କେ ଅମଳ କରିବେ ଅଧିକ ନ ଦେବେ । ଅ୫୨ଙ୍କ ମକର ଦି୮ନର ଆଜ୍ଞା ।

❑ ❑ ❑

## ଚତୁର୍ଥ ଅଧ୍ୟାୟ

# ଆଉ ଦୁଇଟି ଶାସନ ଓ ଗୋଟିଏ ଶିଳାଲିପି

### ତ୍ରିଲୋଚନପୁର ଶାସନ

ଓଡ଼ିଶାର ମୋଗଲ ରାଜତ୍ୱ କାଳରୁ ବ୍ରିଟିଶ ରାଜତ୍ୱ ପର୍ଯ୍ୟନ୍ତ ପ୍ରାୟ ଚାରିଶହ ବର୍ଷଧରି ପ୍ରଚଳିତ ହୋଇଆସିଥିବା ସିରାଇ ପ୍ରଗଣାର ଅଧିକାଂଶ ଅଞ୍ଚଳକୁ ନେଇ ଗଠିତ ଆଧୁନିକ କଣାସ ବ୍ଲକ ମଧ୍ୟରେ, ଖୋର୍ଦ୍ଧା ଭୋଇବଂଶର ରାଜାମାନଙ୍କ ଦ୍ୱାରା ସିରାଇ-ସାତଶାସନ ପ୍ରତିଷ୍ଠିତ ହୋଇଥିଲା । ଏହି ସାତଗୋଟି ଶାସନ ହେଉଛି - ଶ୍ରୀମୁକୁନ୍ଦପୁର, ଦିବ୍ୟସିଂହପୁର, ରାୟଗୁରୁପୁର, ପଞ୍ଚଯୋଶୀପୁର, ଇଚ୍ଛାପୁର, ବୀରକେଶରୀପୁର ଓ ମୈତ୍ର ତ୍ରିଲୋଚନପୁର । ଏ ସମ୍ପର୍କରେ ପୂର୍ବରୁ ଆଲୋଚନା କରାଯାଇଛି । କିନ୍ତୁ ଏହି ସାତଶାସନ ବାହାରେ ଆଉ ଦୁଇଗୋଟି ଶାସନ ଅଛି, ଯାହାର ଉତ୍ପତ୍ତି ସମ୍ବନ୍ଧରେ ସଠିକ୍ ତଥ୍ୟ ମିଳୁନାହିଁ । ତେବେ ଶାସନ ଦୁଇଟିର ଅନ୍ୟାନ୍ୟ ଶାସନ ସହିତ ସାମଞ୍ଜସ୍ୟ ଥିବା ଦୃଷ୍ଟିରୁ ସେ ସମ୍ପର୍କରେ ସମ୍ୟକ୍ ଆଲୋକପାତର ଆବଶ୍ୟକତା ରହିଛି । ସେ ଦୁଇଟି ଶାସନର ନାମ ତ୍ରିଲୋଚନପୁର ଓ ଚନ୍ଦ୍ରମା ପାଟପୁର ।

ସିରାଇ ସାତଶାସନ ଅନ୍ତର୍ଭୁକ୍ତ ମୈତ୍ର-ତିଲୋଚନପୁର ଶାସନ ଏକ କ୍ଷୁଦ୍ର ଗ୍ରାମ । କିନ୍ତୁ କଣାସଠାରୁ ଚାରି ମାଇଲ ଉତ୍ତରକୁ କଣାସ-ଡେଲାଙ୍ଗ ରାସ୍ତା ପାର୍ଶ୍ୱରେ ଅବସ୍ଥିତ ତ୍ରିଲୋଚନପୁର ଶାସନ ଗ୍ରାମଟି ଏକ ପ୍ରଥମ ଶ୍ରେଣୀୟ ଶାସନ ଗ୍ରାମ ପରି ପ୍ରଶସ୍ତ । ପୂର୍ବ-ପଶ୍ଚିମ ହୋଇ ଅବସ୍ଥିତ ଏହି ଗ୍ରାମର ଦାଣ୍ଡ ସୁପ୍ରଶସ୍ତ ଏବଂ ସୁଦୀର୍ଘ । ପ୍ରାୟ ଷାଠିଏ ଫୁଟ ଓସାର ବିଶିଷ୍ଟ ଗ୍ରାମଦାଣ୍ଡର ଦୁଇ ପାର୍ଶ୍ୱରେ ଉଚ୍ଚପିଣ୍ଡା ଓ ଉଚ୍ଚ ପାହାଚ ଶୋଭିତ ଏହି ବ୍ରାହ୍ମଣ ବସ୍ତିଟି ଶ୍ରୀ ମୁକୁନ୍ଦପୁର ଶାସନର ଅନୁରୂପ । ଶ୍ରୀ ମୁକୁନ୍ଦପୁର ପରି ତ୍ରିଲୋଚନପୁରର ପୂର୍ବ ମୁଣ୍ଡକୁ ଲାଗି ଏକ ସଂକୀର୍ଣ୍ଣ ଦାଣ୍ଡବିଶିଷ୍ଟ ଅଣବ୍ରାହ୍ମଣ ବସ୍ତି ଓ ପଶ୍ଚିମ ମୁଣ୍ଡରେ ଦେବାଳୟ ଗୋପୀନାଥଦେବ ବିଷ୍ଣୁମନ୍ଦିର ଏବଂ କପିଳେଶ୍ୱରଦେବ ଶିବମନ୍ଦିର । ଗ୍ରାମଟିରେ ପ୍ରାୟ ଦେଢ଼ଶହ ବ୍ରାହ୍ମଣ ପରିବାର ବାସକରନ୍ତି । ସେମାନଙ୍କ ମଧ୍ୟରେ ତ୍ରିପାଠୀ ଓ ଦାଶ ସଂଜ୍ଞାଧାରୀଙ୍କ ସଂଖ୍ୟା ଅଧିକ ଥିବାବେଳେ କେତେକ 'ରଥ' ଏବଂ ଅନ୍ୟ କେତୋଟି

ପରିବାର 'ମିଶ୍ର' ସଂଜ୍ଞାଧାରୀ । ଏହି 'ମିଶ୍ର'ମାନେ ମୂଳଶାସନର ଅଧିବାସୀ ନ ଥିଲେ ଏବଂ ପରେ ବୀରନରସିଂହପୁର ଶାସନରୁ ଆସିଥିଲେ । ତ୍ରିପାଠୀଙ୍କ ଗୋତ୍ର ଭରଦ୍ଵାଜ, ଦାଶଙ୍କ ଗୋତ୍ର ପରାଶର ଏବଂ ରଥଙ୍କ ଗୋତ୍ର ଆତ୍ରେୟ ।

ଏହି ଶାସନର ଉତ୍ପତ୍ତି ସମ୍ବନ୍ଧରେ କେବଳ ଏତିକି ଜନଶ୍ରୁତି ଅଛି ଯେ, ତ୍ରିଲୋଚନ ଭୋଁସଲା ନାମକ ଜନୈକ ଉଚ୍ଚପଦାଧିକାରୀ ରାଜପ୍ରତିନିଧିଙ୍କ ନାମରେ ଏହି ଶାସନ ପ୍ରତିଷ୍ଠିତ ହୋଇଥିଲା । ତ୍ରିଲୋଚନ ଭୋଁସଲାଙ୍କର ସଠିକ ପରିଚୟ ଏଯାବତ୍ କୌଣସି ସୂତ୍ରରୁ ମିଳି ନାହିଁ । ବିଶିଷ୍ଟ ଐତିହାସିକ ଡ. ଭବାନୀଚରଣ ରାୟ ତାଙ୍କର 'ଓଡ଼ିଶା ଅଣ୍ଡର ଦି ମରାଠାସ୍' ପୁସ୍ତକରେ ଲେଖିଛନ୍ତି ଯେ ଓଡ଼ିଶାରେ ମରହଟ୍ଟାମାନଙ୍କ ଶାସନ ପୂର୍ବରୁ ମୋଗଲ ରାଜତ୍ୱ କାଳରେ ମୋଗଲ ସୁବାଦାରମାନେ ବାରମ୍ବାର ହିନ୍ଦୁ ମନ୍ଦିର, ବିଶେଷତଃ ଜଗନ୍ନାଥ ମନ୍ଦିର ଉପରେ ଆକ୍ରମଣ ଓ ଲୁଣ୍ଠନ ଚଳାଇ ହିନ୍ଦୁଧର୍ମପ୍ରତି ଅବମାନନା ପ୍ରଦର୍ଶନ କରିଥିଲେ । ତେଣୁ ମରହଟ୍ଟାମାନେ ହିନ୍ଦୁମାନଙ୍କର ପ୍ରଧାନ ତୀର୍ଥକ୍ଷେତ୍ର ଜଗନ୍ନାଥ ମନ୍ଦିରର ସୁରକ୍ଷା ତଥା ଉନ୍ନତି ଦିଗରେ ବିଶେଷ ଧ୍ୟାନଦେଉଥିଲେ । ସେତେବେଳେ ନାଗପୁର ରାଜା ଭୋଁସଲାଙ୍କ ନିର୍ଦ୍ଦେଶରେ ଶ୍ରୀଜଗନ୍ନାଥ ମନ୍ଦିରର ଉନ୍ନତିପାଇଁ ସ୍ୱତନ୍ତ୍ର ଧ୍ୟାନ ଦିଆଯାଇ ମଧ୍ୟପ୍ରଦେଶ, ବନାରସ, ରାଜପୁତନା ଓ ବଙ୍ଗପ୍ରଦେଶରୁ ଜଗନ୍ନାଥ ଦର୍ଶନପାଇଁ ଯାତ୍ରୀମାନଙ୍କୁ ଉତ୍ସାହିତ କରାଯାଉଥିଲା । ସେଥିପାଇଁ ବ୍ରାହ୍ମଣମାନଙ୍କୁ ମଧ୍ୟ ଭୂମ୍ୟାଦି ଦାନକରାଯାଉଥିଲା । ବ୍ରହ୍ମଚାରୀ ଗୋସାଇଁ ନାମକ ମରହଟ୍ଟା ଗୁରୁ ସୁନାର ଲକ୍ଷ୍ମୀମୂର୍ତ୍ତି ଓ ରୁପାର ନାରାୟଣ ମୂର୍ତ୍ତି ନିର୍ମାଣକରାଇ ଜଗନ୍ନାଥ ମନ୍ଦିରରେ ରଖାଇଥିଲେ । ସୁତରାଂ ସେହି ସମୟରେ ତ୍ରିଲୋଚନ ଭୋଁସଲା ନାମକ କୌଣସି ରାଜପ୍ରତିନିଧି ଅଥବା ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ଉଦ୍ଦେଶ୍ୟରେ ଆସିଥିବା ରାଜବଂଶୀୟ ବ୍ୟକ୍ତିଙ୍କ ନାମରେ ତ୍ରିଲୋଚନପୁର ଶାସନ ପ୍ରତିଷ୍ଠିତ ହୋଇଥିବା ଅନୁମାନକରାଯାଏ ।

ଉଲ୍ଲେଖଯୋଗ୍ୟ ଯେ, ଏହି ଗ୍ରାମର ଅଧିକାଂଶ ପରିବାରଙ୍କର ଏ ଯାବତ୍ ମଧ୍ୟପ୍ରଦେଶ (ଛତିଶଗଡ଼) ଅଞ୍ଚଳରେ ପୁରୁଷାନୁକ୍ରମିକ ଯାତ୍ରୀ ବ୍ୟବସାୟ ଚଳି ଆସୁଛି । ଏମାନେ ପ୍ରତିବର୍ଷ ଗ୍ରାମରୁ ଦଳ ଦଳ ହୋଇ ଯାଇ ଛତିଶଗଡ଼ ଅଞ୍ଚଳରେ ମାସ ମାସ ଧରି ଗାଁକୁ ଗାଁ ବୁଲି ବୁଲି ଜଗନ୍ନାଥଙ୍କର ବିଭିନ୍ନ ଯାତ୍ରାଉତ୍ସବ ତଥା ସାଧାରଣ ସମୟରେ ତୀର୍ଥଯାତ୍ରୀମାନଙ୍କୁ ସାଙ୍ଗରେ ଧରି ଆସନ୍ତି । ଏହି କାର୍ଯ୍ୟକୁ ଏମାନେ ପୁରୁଷାନୁକ୍ରମେ ମରହଟ୍ଟା ଭୋଁସଲାଙ୍କ ରାଜତ୍ୱକାଳରୁ ନିଜର ବୃତ୍ତିରୂପେ ନିର୍ବାହ କରି ଆସୁଛନ୍ତି । ପୁରୀଜିଲ୍ଲାର କେତେକ ମୁଖ୍ୟ ଶାସନ ଗ୍ରାମ ପରି ତ୍ରିଲୋଚନପୁର ଶାସନରେ ମଧ୍ୟ ଶୀତଳ ଷଷ୍ଠୀ ପର୍ବ ମହାଡମ୍ବରରେ ପାଳନ କରାଯାଏ ।

ପୁରୀଜିଲ୍ଲାର ଅନ୍ୟତମ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଓ ପ୍ରବୀଣ ସାମ୍ବାଦିକ ସତ୍ୟବାଦୀ ତ୍ରିପାଠୀଙ୍କ ଜନ୍ମସ୍ଥାନ ଏହି ତ୍ରିଲୋଚନପୁର । ସେ ପଣ୍ଡିତ ଗୋପବନ୍ଧୁ

ଦାଶଙ୍କଦ୍ୱାରା ଅନୁପ୍ରାଣିତ ହୋଇ ସରକାରୀ ଚାକିରି ଛାଡ଼ି ସତ୍ୟବାଦୀ ବନବିଦ୍ୟାଳୟରେ ଶିକ୍ଷକତା କରିଥିଲେ । ୧୯୨୧ ଅସହଯୋଗ ଆନ୍ଦୋଳନଠାରୁ ଆରମ୍ଭକରି ୧୯୩୦ ଲବଣ ସତ୍ୟାଗ୍ରହ ସହିତ ୧୯୪୨ ଭାରତଛାଡ଼ ଆନ୍ଦୋଳନ ପର୍ଯ୍ୟନ୍ତ ଭାରତର ସ୍ୱାଧୀନତା ସଂଗ୍ରାମର ତିନୋଟିଯାକ ପର୍ଯ୍ୟାୟରେ ଯୋଗଦେଇ ବହୁବାର କାରାବରଣ କରିଥିଲେ । ପୁରୀରେ 'ସମାଜ' କାଗଜ ପ୍ରତିଷ୍ଠାର ପ୍ରାରମ୍ଭିକ ପର୍ଯ୍ୟାୟରେ ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ସେ କିଛିଦିନ ଉକ୍ତ କାଗଜର ସମ୍ପାଦନାରେ ସହାୟତା କରିଥିଲେ ଏବଂ ପରବର୍ତ୍ତୀ କାଳରେ ପୁରୀରେ ସପରିବାର ଅବସ୍ଥାନ କରି ସାମ୍ବାଦିକଭାବେ ଜୀବନ ବିତାଇଥିଲେ । ପୁରୀ ଜିଲ୍ଲାବୋର୍ଡ଼ର ସଭ୍ୟ ଥିବାବେଳେ ୧୯୨୬ରେ ସେ କଣାସରେ ଡାକ୍ତରଖାନା ପ୍ରତିଷ୍ଠା କରିଥିଲେ ଏବଂ କଣାସ ଉଚ୍ଚ ପ୍ରାଥମିକ ବିଦ୍ୟାଳୟକୁ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ପରିଣତ କରିବାପାଇଁ ୧୯୨୮ରୁ ୧୯୩୩ ପର୍ଯ୍ୟନ୍ତ ପାଞ୍ଚ ବର୍ଷକାଳ ବହୁ ଉଦ୍ୟମ କରିଥିଲେ । କିନ୍ତୁ ତାଙ୍କ ସ୍ମୃତିରକ୍ଷାପାଇଁ ଏ ଯାଏ କଣାସ, ତ୍ରିଲୋଚନପୁର ଅଥବା ପୁରୀ ସହରରେ କିଛି କରାଯାଇ ନାହିଁ ।

## ଚନ୍ଦ୍ରମାପାଟପୁର ଶାସନ

ନିରାକାରପୁର ରେଳ ଷ୍ଟେସନରୁ ମାତ୍ର ଦୁଇ କିଲୋମିଟର ଦକ୍ଷିଣ-ପୂର୍ବକୁ କଣାସ ବ୍ଲକର ଦେଇପୁର ପଞ୍ଚାୟତରେ ଚନ୍ଦ୍ରମାପାଟପୁର ନାମରେ ଆଉ ଏକ ଶାସନ ଗ୍ରାମ ଅଛି । ଏହି ଶାସନର ଉତ୍ପତ୍ତି ସମ୍ବନ୍ଧରେ ମଧ୍ୟ କୌଣସି ସଠିକ ତଥ୍ୟ ମିଳି ନାହିଁ । ଏକ କ୍ଷୁଦ୍ର ବ୍ରାହ୍ମଣ ବସ୍ତି ହେଲେ ମଧ୍ୟ ଏକ ଶାସନଗ୍ରାମ, ଏଥିରେ ସନ୍ଦେହ ନାହିଁ । କିନ୍ତୁ 'ଚନ୍ଦ୍ରମା' କେଉଁ ରାଜାଙ୍କର ପାଟରାଣୀ ଥିଲେ - ଯାହାଙ୍କ ନାମରେ 'ଚନ୍ଦ୍ରମା ପାଟପୁର' ପ୍ରତିଷ୍ଠିତ ହୋଇଥିଲା, ସେ ସମ୍ପର୍କିତ ତଥ୍ୟ ଆବିଷ୍କୃତ ହୋଇ ନ ଥିବାରୁ ଏହି ଶାସନ ଗ୍ରାମଟି ଉପରେ ଏଯାବତ୍ ଐତିହାସିକମାନଙ୍କର ଦୃଷ୍ଟି ପଡ଼ି ନାହିଁ । ଏହି ଗ୍ରାମର ଅନତିଦୂରରେ ପୂର୍ବଦିଗକୁ ଆଉ ଏକ କ୍ଷୁଦ୍ର ଶାସନଗ୍ରାମ 'ଲଳିତା ପାଟପୁର' ଅବସ୍ଥିତ । ଖୋର୍ଦ୍ଧା ଭୋଇ ବଂଶର ରାଜା ୨ୟ ରାମଚନ୍ଦ୍ରଦେବ ଜଣେ ଯବନୀ କନ୍ୟା (ମୁର୍ସିଦ୍ କୁଲିଖାଁଙ୍କ କନ୍ୟା)କୁ ତୃତୀୟା ପତ୍ନୀଭାବେ ଗ୍ରହଣକରିବାରୁ ତାଙ୍କର ପ୍ରଥମା ପତ୍ନୀ କଳାବତୀ (ଅନ୍ୟନାମ ଚିତ୍ରକଳା) ତାଙ୍କୁ ପରିତ୍ୟାଗ କରିବା ପରେ ଦ୍ୱିତୀୟା ପତ୍ନୀ ଲଳିତା ନିଜକୁ ପାଟରାଣୀରୂପେ ପରିଚିତ କରାଇ ନିଜ ନାମରେ ଏହି ଶାସନ ପ୍ରତିଷ୍ଠା କରିଥିଲେ । ଏହି ଶାସନର ବିଷ୍ଣୁମନ୍ଦିର ସମ୍ମୁଖଭାଗରେ ଥିବା ଏକ ଶିଳାଲେଖରୁ ଜଣାଯାଏ ଯେ, ଲଳିତାଙ୍କ ପୁଅ ବୀରକେଶରୀଦେବ (୧୯୩୬ - ୧୬୯୩)ଙ୍କ ୩୯ ଅଙ୍କ, ଅର୍ଥାତ୍ ୧୭୬୭ ଖ୍ରୀ.ରେ ଉକ୍ତ ମନ୍ଦିର ନିର୍ମିତ ହୋଇଥିଲା । କିନ୍ତୁ ଲଳିତାପାଟପୁର ଶାସନ ସିରାଇ ପ୍ରଗଣା ଅନ୍ତର୍ଭୁକ୍ତ ନୁହେଁ । ସିରାଇ ପ୍ରଗଣାର ପଶ୍ଚିମ ସୀମାନ୍ତକୁ ଲାଗି ଖୋର୍ଦ୍ଧା ଖାସମାହାଲରେ ଏହା ଅବସ୍ଥିତ ।

## ଚନ୍ଦ୍ରମାପାଟପୁର ଶିଳାଲିପି

ଚନ୍ଦ୍ରମାପାଟପୁର ଦକ୍ଷିଣକୁ ଲାଗିଥିବା ମୁଗପଦର ନାମକ କ୍ଷୁଦ୍ର ବସ୍ତିର ପଶ୍ଚିମ ମୁଣ୍ଡରେ ଗୋଟିଏ ଛୋଟ ଠାକୁରାଣୀ ମଣ୍ଡପ ଆଗରେ ଏକ ବୀରଶିଳା ମାଟି ଉପରେ ପୋତା ହୋଇ ରହିଛି । ଏହି ଶିଳାର ସମ୍ମୁଖ ମଧ୍ୟ ଭାଗରେ କୌଣସି ଗଜାରୋହୀ ସେନାପତି ଅଥବା ରାଜାଙ୍କ ମୂର୍ତ୍ତି, ତଳଭାଗରେ ଯୁଦ୍ଧରତ ଅଶ୍ୱାରୋହୀ ଏବଂ ପଦାତିକ



ଚନ୍ଦ୍ରମାପାଟପୁର ଶିଳାଲିପି

ସୈନ୍ୟସାମନ୍ତଙ୍କ ମୂର୍ତ୍ତିମାନ ଖୋଦିତହୋଇଛି । ଶିଳାଟିର ଉପର ଭାଗରେ ତିନି ଧାଡ଼ି ପ୍ରୋଟୋନାଗରୀ ଲିପି ମଧ ଖୋଦିତହୋଇଛି । କିନ୍ତୁ ଶହ ଶହ ବର୍ଷ ଧରି ଖୋଲା ଆକାଶ ତଳେ ଖରା, ବର୍ଷା ଓ ପବନର ଧ୍ୱଂସକାରୀ ପ୍ରଭାବରେ କେତେ ଗୋଟି ଅକ୍ଷର ଅସ୍ପଷ୍ଟ ହୋଇଯାଇଥିବାରୁ ଶିଳାଲେଖଟିର ସଠିକ ଅଧ୍ୟୟନ ଏଯାବତ୍ ସମ୍ଭବପର ହୋଇପାରି ନାହିଁ । ଓଡ଼ିଶାର ସ୍ୱନାମଧନ୍ୟ ପୁରାତତ୍ତ୍ୱଲିପିଗବେଷକ ଡ. ସତ୍ୟନାରାୟଣ ରାଜଗୁରୁ ଏବଂ ଓଡ଼ିଶା ସଂଗ୍ରହାଳୟର ଉପାଧକ୍ଷା ଡ. ସ୍ନିଗ୍ଧା ତ୍ରିପାଠୀ ଏହି ଶିଳାଲେଖ ଖ୍ରୀଷ୍ଟୀୟ ୧୧ଶ ଶତାବ୍ଦୀର (୧ମ ପାଦ) ହୋଇପାରେ ବୋଲି ମତ ପ୍ରକାଶ କରିଛନ୍ତି ।

ଶିଳାଲିପିଟିକୁ ଡ. ସ୍ନିଗ୍ଧା ତ୍ରିପାଠୀ ଏହିପରି ପାଠକରିଛନ୍ତି :-

ଓଁ ରାଣକ ଶ୍ରୀ ପ୍ରହାସଃ
ବଦ୍ଧାମ୍ ଦଳ ସନ୍ନିପାତାୟାଂନି
ହସ୍ତି ଭାଗପତି ଯସ୍ୟଧୁମୋରାହୁ

ଡଃ ତ୍ରିପାଠୀଙ୍କ ମତରେ, ଲେଖ- ଶିଳାଟି ଆୟତାକାର ଥିଲା । ପରବର୍ତ୍ତୀ କାଳରେ କେହି ଏହି ଉପରଭାଗକୁ ଗୋଲେଇ କରି କାଟି ଦେବା ଫଳରେ ସମ୍ଭବତଃ ଡାହାଣ ପାଖ ଦ୍ୱିତୀୟ ଓ ତୃତୀୟ ଧାଡ଼ିରୁ କେତୋଟି ଅକ୍ଷର କଟିଯାଇଛି, ଯାହାଫଳରେ ଲେଖଟିର ନିର୍ଦ୍ଦିଷ୍ଟ ଅର୍ଥ ପ୍ରକାଶ ପାଉ ନାହିଁ ।

ଶିଳାଲେଖଟିକୁ ଡଃ ସତ୍ୟନାରାୟଣ ରାଜଗୁରୁ ଏହିପରି ପାଠକରିଛନ୍ତି-

ଓଁ ଶ୍ରୀ ରାଣକ ଶୀୟ ଦାସଃ
ବ୍ରହ୍ମବଳ ସନ୍ନିପାତାୟାନିଂ
ହରି ଭାଗବତି ଯସା ଧର୍ମୋରାହେ
କିମ୍ବା ଧର୍ମାଚାର...

ଏହା ଏକ ଯୁଦ୍ଧର ଚିତ୍ର ଏବଂ ମୋଟାମୋଟିଭାବେ ଏ ଶିଳାଲେଖରୁ ଏତିକି ଜଣାପଡୁଛି ଯେ ହସ୍ତୀ ଭାଗପତି ଅର୍ଥାତ୍ ଗଜାରୋହୀ ସେନାର ମୁଖ୍ୟ ରାଣକ (ସାମରିକ ଉପାଧି) ଶ୍ରୀ ପ୍ରହାସ (ଶ୍ରୀୟ ଦାସ) ନାମକ ସେହି ଗଜାରୋହୀ ବୀର ଯୁଦ୍ଧରେ ବହୁ ଶତ୍ରୁ ସୈନ୍ୟଙ୍କୁ ନିପାତକରିଥିଲେ । ସେ ଯୁଦ୍ଧରେ ଧୂମକେତୁ ରାହୁ ସଦୃଶ ଥିଲେ କିମ୍ବା ଧର୍ମାଚାରୀ ଥିଲେ ।

ଉଲ୍ଲେଖଯୋଗ୍ୟ ଯେ, ଡଃ ରାଜଗୁରୁ ଚନ୍ଦ୍ରମାପାଟପୁର ସନ୍ନିକଟ ନିରାକାରପୁରରୁ ପ୍ରାପ୍ତ ତାମ୍ରଶାସନର ଯେଉଁ ଲିପି ଉଦ୍ଧାରକରିଛନ୍ତି ତା' ସହିତ ଉକ୍ତ ଶିଳାଲେଖର ଅର୍ଥଗତ ସମ୍ପର୍କ ଥିଲା ପରି ମନେହେଉଛି । ଡ. ରାଜଗୁରୁ ତାଙ୍କର "Inscriptions of Orissa" Vol. IIର ୧୯୭ ପୃଷ୍ଠାରେ ଲେଖିଛନ୍ତି ଯେ, କଳିଙ୍ଗନଗର ରାଜା ଭୂପେନ୍ଦ୍ର ବର୍ମାଙ୍କ ପୁତ୍ର ଦେବେନ୍ଦ୍ର ବର୍ମା ରାଜରାଜ ଦେବଙ୍କ ସମୟରେ ତାଙ୍କର ଉପପ୍ରଧାନ ରାଜପ୍ରତିନିଧି ଉଦୟ ଖେଦି ବ୍ରାହ୍ମଣମାନଙ୍କୁ ମହେନ୍ଦ୍ର ଭୋଗ ଜିଲ୍ଲାର ପାଗଦାଖେଦି ଗ୍ରାମ ଦାନକରିଥିଲେ । ଏହି ତାମ୍ର ଶାସନରେ କୌଣସି ସମ୍ୱସର

ଦିଆଯାଇ ନାହିଁ । କେବଳ ମହାବିଷୁବ ସଂକ୍ରାନ୍ତିରେ ଗ୍ରାମଦାନ କରାଯାଇଥିଲା ବୋଲି ଉଲ୍ଲେଖ ଅଛି । ଡ. ହରେକୃଷ୍ଣ ମହତାବ 'ଓଡ଼ିଶା ଇତିହାସ'ର ୧୩୬ ପୃଷ୍ଠାରେ ଲେଖିଛନ୍ତି, ଦେବେନ୍ଦ୍ର ବର୍ମା ରାଜରାଜ ଦେବ ଖ୍ରୀ. ୧୦୭୦ ପର୍ଯ୍ୟନ୍ତ ଗଙ୍ଗବଂଶର ରାଜା ଥିଲେ । ରାଜରାଜଙ୍କର ବନପତି ନାମଧେୟ ଜଣେ ବିଚକ୍ଷଣ ମନ୍ତ୍ରୀ ଓ ସେନାପତି ଥିଲେ । ଏହାଙ୍କ ପିତା ଆତ୍ରେୟ ଗୋତ୍ରୀୟ ବ୍ରାହ୍ମଣ ଓ ନାମ ଗୋକର୍ଣ୍ଣ । ୧୦୭୫ରେ ଉତ୍କୀର୍ଣ୍ଣ ଶିଳାଲିପିରୁ ଜଣାଯାଏ ଯେ ବନପତି ବଙ୍ଗ, ଖିମିଡ଼ି, କୋଶଳ, ଗିଡ୍ରିଶିଙ୍ଗ ଓ ଓଡ୍ରଦେଶ ଜୟକରିଥିଲେ ।

ସୁତରାଂ ଓଡ୍ରଦେଶ ଜୟ ସମୟରେ ଦେବେନ୍ଦ୍ର ବର୍ମାଙ୍କ ପ୍ରଧାନମନ୍ତ୍ରୀ ବନପତି ଥିବାବେଳେ ଉପପ୍ରଧାନମନ୍ତ୍ରୀ ଉଦୟ ଖେଦି ଥିବା ଅନୁମାନ କରାଯାଏ ଏବଂ ଚନ୍ଦ୍ରମାପାଟପୁର ଶିଳାଲିପି ମଧ୍ୟ ଉକ୍ତ ତାମ୍ରଶାସନ ଲେଖାର କିଛି କାଳ ପୂର୍ବରୁ ଉତ୍କୀର୍ଣ୍ଣ ହୋଇଥିବା ସମ୍ଭବପର । ପ୍ରକାଶଯୋଗ୍ୟ ଯେ ମୃଗପଦରଠାରେ ଯେଉଁପରି ଗୋଟିଏ ବୀରଶିଳା ଉପରେ ଏ ଲିପି ଖୋଦିତହୋଇଛି, ସେହିପରି ଅସଂଖ୍ୟ ବୀରଶିଳା ନିରାକାରପୁର ଆଖପାଖ ଦେଇପୁର ପଞ୍ଚାୟତର ବିଭିନ୍ନ ସ୍ଥାନରେ ଦେଖିବାକୁ ମିଳୁଛି, ଏପରିକି ଗହିର ମଝିରେ ମଧ୍ୟ ବୀରଶିଳାଟିଏ ମୁସ୍ତକିଲ ଚାନ୍ଦା ଅଥବା କୌଣସି ସୀମା ଚିହ୍ନଟ ପଥରଭାବେ ବ୍ୟବହୃତ କରାଯାଇଛି । ସେହିପରି ଚନ୍ଦ୍ରମାପାଟପୁରରୁ ମାତ୍ର ତିନିଚାରି କିଲୋମିଟର ଦକ୍ଷିଣକୁ ଗଡ଼ ଖାରଦ ମୌଜାରେ ମାଳିସାହିଠାରେ ପ୍ରାୟ ୨୭ ଗୋଟି ବୀରଶିଳାକୁ ଗୋଟିଏ ସ୍ଥାନରେ ଗୋଲାକାରରେ ସଜାଇରଖି ଠାକୁରାଣୀଭାବେ ପୂଜା କରାଯାଉଛି । କିନ୍ତୁ ଏହି ବୀରଶିଳାଗୁଡ଼ିକର ପ୍ରତ୍ୟେକଟିରେ କେବଳ ଅଶ୍ୱାରୋହୀ ଓ ପଦାତିକ ସୈନ୍ୟମାନେ ବିଭିନ୍ନ ଅସ୍ତ୍ରଶସ୍ତ୍ର ଧରି ଯୁଦ୍ଧକରୁଥିବା ଚିତ୍ର ଖୋଦିତ ହୋଇଛି । ଚନ୍ଦ୍ରମାପାଟପୁର ବୀରଶିଳା ବ୍ୟତୀତ ଅନ୍ୟ କୌଣସି ଗୋଟିଏ ହେଲେ ବୀରଶିଳାରେ ଗଜାରୋହୀ ବୀର ଚିତ୍ର ଅଥବା କୌଣସି ଲେଖା ଖୋଦିତ ହୋଇ ନ ଥିବା ଦୃଷ୍ଟିରୁ ଅନୁମାନ କରାଯାଏ ଯେ, ଚନ୍ଦ୍ରମାପାଟପୁର ବୀରଶିଳାରେ ଖୋଦିତ ଗଜାରୋହୀ ଚିତ୍ର ନିଶ୍ଚିତଭାବେ କୌଣସି ରାଜା କିମ୍ବା ସେନାପତି ବା ମନ୍ତ୍ରୀଙ୍କର ଏବଂ ଇତସ୍ତତଃ ପଡ଼ିଥିବା ଅନ୍ୟ ବୀରଶିଳାରେ ଖୋଦିତ ଚିତ୍ର ସବୁ ତାଙ୍କ ନେତୃତ୍ୱରେ ପରିଚାଳିତ ଅଶ୍ୱାରୋହୀ ତଥା ପଦାତିକ ସୈନ୍ୟସାମନ୍ତଙ୍କର । କଣାସ ବ୍ଲକର ଚିତ୍ରଲୋଚନପୁର ଶାସନ ନିକଟବର୍ତ୍ତୀ ତିପୁରୀ ଗ୍ରାମ ପାଖରେ ଏହିପରି ବହୁତଗୁଡ଼ିଏ ବୀରଶୀଳା ଇତସ୍ତତଃ ପଡ଼ିରହିଛି । ଏଇସବୁ ଏକାଦଶ ଶତାବ୍ଦୀର ସେହି କଳିଙ୍ଗାଧିପତି ଦେବେନ୍ଦ୍ର ବର୍ମାଙ୍କ ସେନାପତି ବନପତିଙ୍କର ଓଡ୍ରଦେଶ ବିଜୟ ବେଳର ଚିତ୍ର ବୋଲି ପ୍ରମାଣକରିବାପାଇଁ ଅଧିକ ଗବେଷଣାର ଆବଶ୍ୟକତା ରହିଛି । କିନ୍ତୁ ଏକାଦଶ ଶତାବ୍ଦୀ ବେଳକୁ ଚିଲିକା ହ୍ରଦ ଉପକଣ୍ଠରେ ଏହି ଅଞ୍ଚଳକୁ ଓଡ୍ରଦେଶ କୁହାଯାଉଥିଲା ଏବଂ ଏ ଅଞ୍ଚଳବାସୀମାନେ ବୀର ଓ ଲଢୁଆ ସୈନ୍ୟ ଥିଲେ ବୋଲି କୁହାଯାଇପାରେ ।

❑ ❑ ❑

## ପଞ୍ଚମ ଅଧ୍ୟାୟ

# ସତ୍ୟଭାମା ପାଟପୁରରୁ ସତ୍ୟଭାମାପୁର

ସ୍ୱର୍ଗତ ଚକ୍ରଧର ମହାପାତ୍ରଙ୍କ ପ୍ରଣୀତ 'ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ'ର ୨୫୩ ପୃଷ୍ଠାରେ କୁହାଯାଇଛି ଯେ ଖୋର୍ଦ୍ଧା ଭୋଇବଂଶର ରାଜା ହରେକୃଷ୍ଣ ଦେବଙ୍କ ରାଣୀଙ୍କ ନାମରେ ପ୍ରତିଷ୍ଠିତ 'ସତ୍ୟଭାମା ପାଟପୁର' ନାମକ ଶାସନ ସିରାଇ ପ୍ରଗନ୍ନାରେ ଅଛି। ପୁଣି ସେହି ବହିର ପ୍ରଥମରୁ 'ଇତିହାସ ବର୍ଣ୍ଣିତ ସ୍ଥାନ' ତାଲିକାରେ ସତ୍ୟଭାମାପାଟପୁର ବାଲିଅନ୍ତା ଥାନାରେ ଅବସ୍ଥିତ ଥିବା ଦର୍ଶାଯାଇଛି। ସିରାଇ ପ୍ରଗନ୍ନାର ବାସିନ୍ଦାଭାବେ ସେହି ପ୍ରଗନ୍ନାରେ ଏପରି ଗ୍ରାମ ନ ଥିବା ଲେଖକକୁ ଜଣାଥିଲା ଏବଂ ବାଲିଅନ୍ତା ଥାନାରେ ଥିବା ସତ୍ୟଭାମାପୁର ସତ୍ୟଭାମା ପାଟପୁର ନୁହେଁ - ଏହା ମଧ୍ୟ ଜଣାଥିଲା। ବହୁ ଶ୍ରମ ସ୍ୱୀକାରପୂର୍ବକ ଅବିଭକ୍ତ ପୁରୀଜିଲ୍ଲାର ସମସ୍ତ ରାଜସ୍ୱ ଗ୍ରାମଗୁଡ଼ିକର ତାଲିକା ଜନଗଣନା ବିଭାଗଦ୍ୱାରା ପ୍ରକାଶିତ ଗ୍ରାମଗୁଡ଼ିକର ତାଲିକା ଏବଂ ଜିଲ୍ଲା ନିର୍ବାଚନ ବିଭାଗଦ୍ୱାରା ପ୍ରକାଶିତ ଭୋଟକେନ୍ଦ୍ର ସଂଲଗ୍ନ ଗ୍ରାମଗୁଡ଼ିକର ତାଲିକା ସବୁ ଗୋଟି ଗୋଟି କରି ଖୋଜି ମଧ୍ୟ 'ସତ୍ୟଭାମାପାଟପୁର' ନାମରେ ଗ୍ରାମଟିଏ ମିଳିଲା ନାହିଁ। ପୁଣି ସନ୍ଦେହମୋଚନପାଇଁ ବାଲିଅନ୍ତା ଥାନା ସତ୍ୟଭାମାପୁରକୁ ଯାଇ ବୁଝିବାରେ ଜଣାଗଲା ଯେ, ତାହା ହରେକୃଷ୍ଣ ଦେବଙ୍କ ରାଣୀଙ୍କ ନାମରେ ପ୍ରତିଷ୍ଠିତ ଶାସନ ନୁହେଁ।

ଏହାପରେ ପୁରୀ ଜିଲ୍ଲାରେ କାହିଁହେଲେ ସତ୍ୟଭାମାପାଟପୁର ନାମରେ ଗ୍ରାମଟିଏ ନାହିଁ, ଏପରି ଲେଖିଦେବାରୁ ତାହା 'ପ୍ରଜାତନ୍ତ୍ର ସାପ୍ତାହିକୀ' ୧୯୯୫ ଡିସେମ୍ବର ୩୧ ସଂଖ୍ୟାରେ ପ୍ରକାଶପାଇଲା। କିନ୍ତୁ ତା'ପରେ ଜଣେ ଉତ୍ସାହୀ ଯୁବପାଠକଙ୍କଠାରୁ ଖଣ୍ଡିଏ ଚିଠି ମିଳିଲା - ଯହିଁରୁ ଜଣାଗଲା ଯେ, ଲେମ୍ବାଇ ପ୍ରଗନ୍ନାରେ ଡେଲାଙ୍ଗ ବ୍ଲକ୍ ଅଧୀନ ଗୁଆଳିପଡ଼ା ପଞ୍ଚାୟତରେ ସତ୍ୟଭାମାପାଟପୁର ଶାସନ ଗ୍ରାମ ଅଛି। ସେ ଗ୍ରାମରେ ଯାଇ ପହଞ୍ଚିବାରେ ଜଣାଗଲା ଯେ ସେହି ଗ୍ରାମଟି ଗୁଆଳିପଡ଼ା ମୌଜାର ଏକ ପଡ଼ା (ହାମଲେଟ) ହୋଇଥିବାରୁ ସରକାରୀ ଗ୍ରାମ ତାଲିକାରେ ତା'ର ନାମ ନାହିଁ। କିନ୍ତୁ ପଡ଼ାଗ୍ରାମଗୁଡ଼ିକର ନାମ ଭୋଟରତାଲିକାରେ ଥାଏ, ଅଥଚ ଏ ପଡ଼ାଗ୍ରାମର ନାମ ସଂପୃକ୍ତ ଭୋଟର ତାଲିକାରେ ବି ନାହିଁ। ପୁଣି ଲୋକମୁଖରେ ଏହା ମଧ୍ୟ ସତ୍ୟଭାମାଙ୍କୁ ହରାଇ କେବଳ 'ପାଟପୁର' ନାମରେ ପରିଚିତହେଉଛି।

ଏକ ସୁପ୍ରତିଷ୍ଠିତ ଐତିହାସିକ ଶାସନ ଗ୍ରାମର ଗୁରୁତ୍ୱ କେଉଁ ପରିସ୍ଥିତିରେ ଏପରିଭାବେ ହ୍ରାସପାଇ କାଳକ୍ରମେ ବିସ୍ମୃତପ୍ରାୟ ଅବସ୍ଥାରେ ପହଞ୍ଚିଚି, ତାହା ଜାଣି ନ ହେଲେ ମଧ ଗାଁଟିର ମଝିରେ ମଝିରେ ଥିବା କେତେକ ପରିତ୍ୟକ୍ତ ମେଲା ଡିହରୁ ଜାଣିହେଉଛି ଯେ ଅନେକ ପରିବାର ଏ ଗାଁ ଛାଡ଼ି ଅନ୍ୟତ୍ର ଚାଲିଯାଇଛନ୍ତି । ପୂର୍ବରୁ ପଶ୍ଚିମକୁ ଲମ୍ବିଥିବା ସୁଦୀର୍ଘ ଗ୍ରାମଦାଣ୍ଡର ଦୁଇ ପାଖରେ ବହୁ ପରିତ୍ୟକ୍ତ ମେଲାଡିହ ସହ ଅଳ୍ପ ସଂଖ୍ୟକ ଘରକୁ ନେଇ ଏହି ଐତିହାସିକ ଗ୍ରାମଟି ରାଜାନୁଗ୍ରହ ଅଭାବରୁ ନିଜର ପୂର୍ବ ପ୍ରତିଷ୍ଠା ହରାଇବସିଛି ବୋଲି ବୃଦ୍ଧ ଗ୍ରାମବାସୀମାନଙ୍କର ମତ । ତା'ସତ୍ତ୍ୱେ ରାଜପ୍ରତିଷ୍ଠିତ ଠାକୁର ଶ୍ରୀ ଗୋପୀନାଥ ଦେବ, ଶ୍ରୀ ବାଲୁଙ୍କେଶ୍ୱର ଦେବ ଓ ଶ୍ରୀ ଦୁର୍ଗାଙ୍କ ପ୍ରାଚୀନ ମନ୍ଦିରଗୁଡ଼ିକ ଏ ଗ୍ରାମର ଐତିହାସିକ ସ୍ମୃତି ବହନକରି ରହିଛନ୍ତି ଏବଂ ପୂର୍ବପ୍ରଚଳିତ ପ୍ରଥାରେ ଏବେ ମଧ ଗ୍ରାମବାସୀମାନେ ଶୀତଳ ଷଷ୍ଠୀ ଓ ଦୁର୍ଗୋତ୍ସବ ଭଳି ଶାସନୀ ପର୍ବଗୁଡ଼ିକୁ ଆଡ଼ମ୍ବର ସହକାରେ ପାଳନକରୁଛନ୍ତି ବୋଲି କହନ୍ତି । ଗ୍ରାମରୁ କୌଣସି ପ୍ରାଚୀନ ତାଳପତ୍ର ପୋଥି ଅଥବା ସନନ୍ଦ ଇତ୍ୟାଦି ମିଳୁ ନ ଥିବାରୁ ଏ ଗ୍ରାମ ସମ୍ପର୍କରେ ଅଧିକ ତଥ୍ୟ ସଂଗ୍ରହ ସମ୍ଭବପର ହୋଇପାରି ନାହିଁ ।

ଅତ୍ୟନ୍ତ କୌତୂହଳ ଏବଂ ଆନନ୍ଦର ବିଷୟ ଯେ, ଆଳୁ ଖୋଳୁ ଖୋଳୁ ମହାଦେବ ବାହାରିଲା ପରି ରାଜା ହରେକୃଷ୍ଣ ଦେବଙ୍କ ରାଣୀ ସତ୍ୟଭାମାଙ୍କ ନାମରେ ପ୍ରତିଷ୍ଠିତ ଗ୍ରାମଟିକୁ ଖୋଜୁ ଖୋଜୁ ଭଗବାନ ଶ୍ରୀକୃଷ୍ଣଙ୍କ ପତ୍ନୀ ସତ୍ୟଭାମା ଠାକୁରାଣୀଙ୍କ ନାମରେ ପ୍ରତିଷ୍ଠିତ ଗ୍ରାମଟିଏ ମିଳିଗଲା । ଭୁବନେଶ୍ୱରରୁ ଉତ୍ତରାଛକ ଓ ବାଳକାଟି ବାଟଦେଇ ପ୍ରାୟ ଅଠର କିଲୋମିଟର ବାଟ ବୁଲି କୁଆଖାଇ ନଦୀର ପୂର୍ବ କୂଳରେ ଅବସ୍ଥିତ ଏହି ଗ୍ରାମକୁ ଯିବାକୁ ପଡ଼ିଥିଲା । ଏବେ କିନ୍ତୁ ଟଙ୍କପାଣିଠାରେ କୁଆଖାଇ ନଦୀରେ ଅସ୍ଥାୟୀ ଖରାଦିନିଆ ରାସ୍ତା ଖୋଲିଯାଇଥିବାରୁ ଟଙ୍କପାଣି ରାସ୍ତାଦେଇ ଏହି ଗ୍ରାମର ଦୂରତ୍ୱ ଭୁବନେଶ୍ୱରଠାରୁ ମାତ୍ର ଚାରି ବା ପାଞ୍ଚ କିଲୋମିଟର ହେବ । ଟଙ୍କପାଣିଠାରେ କୁଆଖାଇ ଉପରେ ସ୍ଥାୟୀ ସେତୁଟିଏ ମଧ ନିର୍ମାଣାଧୀନ ।

ସତ୍ୟଭାମାପୁର ଗାଁଟି ବିଶେଷ ବଡ଼ ନୁହେଁ । ଅଙ୍କାବଙ୍କା ହୋଇ ଅବସ୍ଥିତ ଦୁଇ ତିନୋଟି ସାହିରେ ଶହେରୁ କିଛି ଅଧିକ ପରିବାର ବାସକରନ୍ତି । ଗାଁଟିର ଅବସ୍ଥିତିରୁ ହିଁ ଏହା ଏକ ଶାସନ ନୁହେଁ ବୋଲି ଜାଣିହୁଏ । କିନ୍ତୁ କୁଆଖାଇ ନଦୀ କୂଳରେ ଏବଂ ପୁରୁଣା ଜଗନ୍ନାଥ ସଡ଼କ କଡ଼ରେ ଅବସ୍ଥିତ ଥିବାରୁ ସେକାଳରେ ଉଭୟ ଜଳପଥ ଓ ସ୍ଥଳପଥର ସଂଯୋଗ ଥିବା ଦୃଷ୍ଟିରୁ ଗାଁଟିର ଗୁରୁତ୍ୱ ଖୁବ୍ ବୃଦ୍ଧି ପାଇଥିଲା । ଜଗନ୍ନାଥ ସଡ଼କ ଉଭୟ ବନ୍ୟା ପ୍ରତିରୋଧକ ନଦୀବନ୍ଧ ଏବଂ ସଡ଼କ ରାସ୍ତା ରୂପେ ବ୍ୟବହୃତ ହେଉଥିଲା, ଏବେ ବି ହେଉଛି । ସୁତରାଂ, ଏ ରାସ୍ତା ଅପ୍ରଶସ୍ତ, କିନ୍ତୁ ଖୁବ୍ ଉଚ୍ଚ । ସେକାଳରେ ତୀର୍ଥଯାତ୍ରୀମାନଙ୍କପାଇଁ ଜଗନ୍ନାଥ ସଡ଼କ କଡ଼ରେ ଖୋଳାଯାଇଥିବା ପୁରୁଣା କୂଅମାନ ଏବେ ବି ଦୃଶ୍ୟମାନ । ସତ୍ୟଭାମାପୁରର ବାସିନ୍ଦାମାନଙ୍କ ମଧ୍ୟରୁ ଅଧିକାଂଶ ଦାସଉପାଧିଧାରୀ କରଣ । ଗାଁର ପ୍ରାଥମିକ ସ୍କୁଲ ବହୁ ପୁରୁଣା । ମାଇନର ସ୍କୁଲ ହେବାର ଅଠେଇଶ ବର୍ଷ ପୂରିଗଲାଣି । କିନ୍ତୁ ଗାଁର ନାଁ କାହିଁକି

ସତ୍ୟଭାମାପୁର ହୋଇଛି, ଏ ପ୍ରଶ୍ନର ଉତ୍ତର ଦୁଇଟି ସ୍କୁଲର ଦୁଇ ଜଣ ଶିକ୍ଷକଙ୍କଠାରୁ ମିଳିଲା ନାହିଁ; ମିଳିଲା ଗାଁର ଜଣେ ପ୍ରୌଢ଼-ବ୍ୟକ୍ତିଙ୍କଠାରୁ । ସତ୍ୟଭାମା ଠାକୁରାଣୀଙ୍କ ନାଆଁରେ ସତ୍ୟଭାମାପୁର ହୋଇଛି ଏବଂ ସେସମ୍ପର୍କରେ ସବିଶେଷ ତଥ୍ୟ ସୁରେନ୍ଦ୍ରନାଥ ଦାସଙ୍କଠାରୁ ମିଳିପାରିବ ବୋଲି ସେ କହିଥିଲେ ।

ସୁରେନ୍ଦ୍ର ନାଥ ଦାସ ଜଣେ ଅବସରପ୍ରାପ୍ତ ସରକାରୀ କର୍ମଚାରୀ ଏବଂ ସେ ଗାଁର ଜଣେ ପ୍ରତିଷ୍ଠିତ ବ୍ୟକ୍ତି । ଗୋପୀନାଥଦେବଙ୍କ ମନ୍ଦିର ତାଙ୍କ ବଂଶର ଏକ ସୁନ୍ଦର କୀର୍ତ୍ତି । ସେ କହିଲେ - ଗାଁର ଦକ୍ଷିଣ ଦିଗରେ ସତ୍ୟଭାମା ଠାକୁରାଣୀ ଗାଁ ପ୍ରତିଷ୍ଠା କାଳରୁ ଅଛନ୍ତି । କିନ୍ତୁ କେବେ କିଏ ସତ୍ୟଭାମା ଠାକୁରାଣୀଙ୍କୁ ପ୍ରତିଷ୍ଠାକରି ଏ ଗାଁର ନାଆଁ ସତ୍ୟଭାମାପୁର ରଖିଥିଲେ , ସେ ସମ୍ପର୍କରେ କୌଣସି ତଥ୍ୟ ମିଳୁ ନାହିଁ । ସତ୍ୟଭାମା ଠାକୁରାଣୀଙ୍କ ସେବାପୂଜାପାଇଁ ଅଳ୍ପ କିଛି ଜମି (ପ୍ରାୟ ଦୁଇ ଏକର) ତାଙ୍କ ବିଜେସ୍ଥଳୀକୁ ଲାଗି ସେଇ କାଳରୁ ଖଞ୍ଜା ଅଛି । ପୂର୍ବେ ଠାକୁରାଣୀଙ୍କ ପାଖେ ଆମିଷ ଭୋଗକରାଯାଉଥିଲା, ବଳି ଦିଆଯାଉଥିଲା । କିନ୍ତୁ ଶ୍ରୀଚୈତନ୍ୟଦେବ ଏ ଠାକୁରାଣୀଙ୍କୁ ଭଗବାନ ଶ୍ରୀକୃଷ୍ଣଙ୍କ ପତ୍ନୀ ସତ୍ୟଭାମା ରୂପେ ଚିହ୍ନିତ କରିବା ପରଠାରୁ ତାଙ୍କ ପାଖରେ ଆମିଷ ନିଷିଦ୍ଧହେଲା । ଶ୍ରୀ ଚୈତନ୍ୟଦେବ ୧୫୧୦ ଖ୍ରୀ. ଫାଲଗୁନ ମାସରେ ଏହି ବାଟ ଦେଇ ଜଗନ୍ନାଥ ସଡ଼କରେ ଶ୍ରୀକ୍ଷେତ୍ର ଯାତ୍ରାକରିଥିଲେ । ସେ ସମ୍ପର୍କରେ ପ୍ରମାଣ ଦର୍ଶାଇବାକୁ ଯାଇ ଶ୍ରୀମତୀ ଶାନ୍ତିଲତା କରଙ୍କ 'ଦକ୍ଷିଣ ଓଡ଼ିଶା ଓ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପଦଯାତ୍ରା' ଶୀର୍ଷକ ଏକ ଲେଖା ଦେଖାଇଥିଲେ । ତହିଁରେ ଲେଖା ଅଛି ଶ୍ରୀଚୈତନ୍ୟ 'ଖ୍ରୀ. ୧୫୧୦ ମାଘମାସ ଶୁକ୍ଳପକ୍ଷରେ କାଟୋୟାର କେଶବ ଭାରତୀଙ୍କଠାରୁ ସନ୍ନ୍ୟାସ ଗ୍ରହଣକରି ଶାନ୍ତିପୁରଦେଇ ପୁରୀ ଅଭିମୁଖେ ଯାତ୍ରା କରିଥିଲେ । ସେତେବେଳେ ଓଡ଼ିଶାର ସୀମା ହୁଗୁଳିଠାରୁ କାବେରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ତେଣୁ ଶାନ୍ତିପୁରରୁ ଗଙ୍ଗା ତୀରେ ତୀରେ ଛତ୍ରଭୋଗ ଆସି ସେଠାରୁ ନୌକାଯୋଗେ ଗଙ୍ଗା ପାରହୋଇ ପ୍ରୟାଗଘାଟ ନାମକ ଘାଟରେ ଓଡ଼ିଶାରେ ଅବତରଣ କରିଥିଲେ । ପ୍ରୟାଗ ଘାଟରୁ କ୍ରମେ ତମଲୁକ, ନାରାୟଣଗଡ଼, ମୟନାଗଡ଼, ଦାନ୍ତନ୍ ଦେଇ ବାରାସତୀଠାରେ ସୁବର୍ଣ୍ଣରେଖାରେ ସ୍ନାନକରି ଲକ୍ଷ୍ମଣନାଥ ଦେଇ ଜଳେଶ୍ୱରରେ ଶିବଦର୍ଶନ କରିଥିଲେ । ଜଳେଶ୍ୱରରୁ ଅମର୍ଦ୍ଦା, ବସ୍ତା ବା ବଂଶଦା ହୋଇ ରେମୁଣାରେ କ୍ଷୀରଚୋରା ଗୋପୀନାଥଙ୍କୁ ଦର୍ଶନକରିଥିଲେ । ସେଠାରୁ ନୀଳଗିରି, ସୋରୋ, ଭଦ୍ରକ, ଯାଜପୁର, ଚୌଦ୍ୱାରବାଟେ କଟକରେ ପହଞ୍ଚି ସାକ୍ଷୀଗୋପାଳ ଦର୍ଶନକରି ସେଠାରୁ ସତ୍ୟଭାମାପୁର ହୋଇ ଭୁବନେଶ୍ୱରରେ ଲିଙ୍ଗରାଜ ଓ ଚନ୍ଦନପୁରରେ କପୋତେଶ୍ୱର ଦର୍ଶନକରି ଅଠରନଳା ଦେଇ ଫାଲଗୁନ ମାସରେ ପୁରୀରେ ପହଞ୍ଚିଥିଲେ ।'

ଶ୍ରୀଚୈତନ୍ୟଙ୍କର ପ୍ରଧାନ ଶିଷ୍ୟ ଶ୍ରୀ ରୂପଗୋସ୍ୱାମୀ ଶ୍ରୀକ୍ଷେତ୍ର ଯିବା ବାଟରେ ଏହିଠାରେ ଗୋଟିଏ ରାତ୍ରି ବିଶ୍ରାମକରି ସତ୍ୟଭାମା ଠାକୁରାଣୀଙ୍କଦ୍ୱାରା ସ୍ୱପ୍ନାଦିଷ୍ଟହୋଇ 'ବିଦଗ୍ଧମାଧବ' ଓ 'ଲଳିତମାଧବ' ଶୀର୍ଷକ ଦୁଇଟି ପୃଥକ କୃଷ୍ଣଲୀଳା ନାଟକ

ରଚନାକରିଥିବାର ସୂଚନା ଧର୍ମଗ୍ରନ୍ଥ ଷ୍ଟୋର କର୍ତ୍ତୃକ ଓଡ଼ିଆଲିପିରେ ପ୍ରକାଶିତ ଶ୍ରୀଚୈତନ୍ୟ ଚରିତାମୃତ ପୁସ୍ତକର ୭୦୯ ରୁ ୭୧୭ ପୃଷ୍ଠା ମଧ୍ୟରେ ଏହିପରି ଦିଆଯାଇଛି -

ବୃନ୍ଦାବନରେ ଶ୍ରୀରୂପଗୋସ୍ୱାମୀ କୃଷ୍ଣଲୀଳା ନାଟକ ରଚନା କରିବାକୁ ସଙ୍କଳ୍ପ କରି ସେହିଠାରେ ହିଁ ନାଟକ ଲେଖା ଆରମ୍ଭକରିଥିଲେ । ସେଠାରୁ ଶ୍ରୀଚୈତନ୍ୟ ପୁରୀକ୍ଷେତ୍ରକୁ ଯାତ୍ରା କରିବା ସମ୍ବାଦ ଶ୍ରୀରୂପ ଗୋସ୍ୱାମୀ ଗୌଡ଼ଦେଶରେ ଦେବାକୁ ଆସିଲେ । କିନ୍ତୁ ତାଙ୍କର ସହଯାତ୍ରୀ ଅନୁପମଙ୍କର ଗଙ୍ଗାପ୍ରାପ୍ତି ହେବାରୁ ଶ୍ରୀରୂପ ଗୋସ୍ୱାମୀ ଯାଇ ଶ୍ରୀଚୈତନ୍ୟଙ୍କ ଶ୍ରୀକ୍ଷେତ୍ର ଯାତ୍ରାରେ ଯୋଗଦେବାରେ ବିଳମ୍ବ ଘଟିଲା । ସୁତରାଂ ଶ୍ରୀଚୈତନ୍ୟ ସଦଳବଳ ଶ୍ରୀକ୍ଷେତ୍ରରେ ପହଞ୍ଚିବା ପରେ ତାଙ୍କ ପଛରେ ଯାତ୍ରାକରୁଥିବା ଶ୍ରରୂପଗୋସ୍ୱାମୀ ତାଙ୍କ ସହ ମିଳିତ ହେବାପାଇଁ ଉଦ୍‌ବିଗ୍ନ ହୋଇପଡ଼ିଲେ ଏବଂ ସେହି ସମୟରେ ଗୋଟିଏ ରାତ୍ରିରେ ସେ ସତ୍ୟଭାମାପୁର ଗ୍ରାମର ଠାକୁରାଣୀଙ୍କ ପାଖରେ ବିଶ୍ରାମ କରୁଥିବାବେଳେ ସତ୍ୟଭାମା ଠାକୁରାଣୀ ତାଙ୍କୁ ଏକ ଦିବ୍ୟନାରୀ ବେଶରେ ସ୍ୱପ୍ନାଦେଶକଲେ ଶ୍ରୀକୃଷ୍ଣଙ୍କର ବୃନ୍ଦାବନଲୀଳା ଓ ପୁରଲୀଳାକୁ ପୃଥକ୍ କରି ଦୁଇଗୋଟି ନାଟକ ରଚନାକରିବାକୁ ।

ଶ୍ରୀ ସତ୍ୟଭାମା ଠାକୁରାଣୀ କୃଷ୍ଣଲୀଳାକୁ ଯେଉଁପରି ରଚନାକରିବାକୁ ଶ୍ରୀରୂପ ଗୋସ୍ୱାମୀଙ୍କୁ ସ୍ୱପ୍ନାଦେଶ ଦେଇଥିଲେ, ରୂପଗୋସ୍ୱାମୀଙ୍କ ଭାବନାରେ ତାହା ହିଁ ଥିଲା ଶ୍ରୀଚୈତନ୍ୟଙ୍କ ଅନ୍ତର୍ଭାବନାର ପ୍ରତିଫଳନ ମାତ୍ର । ରୂପ ଗୋସ୍ୱାମୀ ଶ୍ଳୋକଟିଏ ଲେଖି ତାଳପତ୍ର ଖେଦାକୁ ଚାଳରେ ଖୋସି ସମୁଦ୍ର ସ୍ନାନପାଇଁ ଯାଉଥିବା ସମୟରେ ଶ୍ରୀଚୈତନ୍ୟ ଆସି ଚାଳରୁ ତାଳପତ୍ର ଖେଦାଟି ପଢ଼ିଲେ ଏବଂ ତାହା ତାଙ୍କର ନିଜର ଭାବଧାରା ଜାଣି ବିସ୍ମୟାନନ୍ଦରେ ଅଭିଭୂତ ହୋଇଗଲେ ।

କଥିତ ଅଛି- ଏହା ପରେ ଶ୍ରୀଚୈତନ୍ୟ ରୂପଗୋସ୍ୱାମୀଙ୍କଠାରୁ ସତ୍ୟଭାମା ଠାକୁରାଣୀଙ୍କ ସ୍ୱପ୍ନାଦେଶ ବୃତ୍ତାନ୍ତ ଜାଣିବାକୁ ପାଇଲେ ଏବଂ ଠାକୁରାଣୀଙ୍କ ଦର୍ଶନପାଇଁ ନିଜେ ସଦଳବଳ ଶ୍ରୀକ୍ଷେତ୍ରରୁ ସତ୍ୟଭାମାପୁର ଉଦ୍ଦେଶ୍ୟରେ ଯାତ୍ରାକଲେ । ଅଗଣିତ ଭକ୍ତଗଣଙ୍କ ଗହଣରେ ସଂକୀର୍ତ୍ତନ କରି କରି ଶ୍ରୀଚୈତନ୍ୟ ସତ୍ୟଭାମାପୁରରେ ପହଞ୍ଚିଲାବେଳକୁ ସତ୍ୟଭାମା ଠାକୁରାଣୀଙ୍କ ପବିତ୍ରପୀଠ ସହସ୍ର ଭକ୍ତଙ୍କ ସମାବେଶରେ ଲୋକାରଣ୍ୟ ହୋଇଗଲା । ଶ୍ରୀ ଚୈତନ୍ୟ ସତ୍ୟଭାମା ଠାକରାଣୀଙ୍କୁ ଭଗବାନ ଶ୍ରୀକୃଷ୍ଣଙ୍କ ସହଧର୍ମିଣୀ ଜାଣି ଭାବାବେଗରେ ତନ୍ମୟ ହୋଇଗଲେ ଏବଂ ହରିବୋଲ ହୁଳହୁଳି ଧ୍ୱନିରେ କୃଷ୍ଣଲୀଳା କୀର୍ତ୍ତନ କରି କରି ସେହି ପୁଣ୍ୟପୀଠରେ ଭକ୍ତିରସର ବନ୍ୟା ଛୁଟାଇଦେଲେ । ସେହିଦିନଠାରୁ ଅଦ୍ୟାବଧି ଶ୍ରୀଚୈତନ୍ୟଙ୍କର ଶୁଭାଗମନର ସ୍ମାରକୀ ରୂପେ ପ୍ରତି ବର୍ଷ ସତ୍ୟଭାମା ଠାକୁରାଣୀଙ୍କ ପୀଠରେ ଦୋଳୋତ୍ସବ ମେଳା ଅନୁଷ୍ଠିତ ହୋଇଆସୁଛି ।



# ଷଷ୍ଠ ଅଧ୍ୟାୟ

# କଣାସ ତାମ୍ରଶାସନ ଓ ଖଇରାତି ମଠ

ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର କଣାସ ତାମ୍ରପତ୍ର ସନନ୍ଦଟି ଆବିଷ୍କୃତ ହେବାରେ ଓଡ଼ିଶା ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ଉନ୍ମୋଚିତହେଲା । କିନ୍ତୁ ଏହି ତାମ୍ରଶାସନ ସମ୍ପର୍କିତ ବହୁ ଗୁରୁତ୍ୱପୂର୍ଣ୍ଣ ଐତିହାସିକ ତଥ୍ୟ ବିସ୍ମୃତିର ଅନ୍ଧକାର ଗର୍ଭରେ ହଜିଯାଇଛି । ସେହି ଦୃଷ୍ଟିରୁ ଏହି ତାମ୍ରଶାସନ ସମ୍ବନ୍ଧରେ ବିସ୍ତୃତ ଭାବରେ ଆଲୋଚନା, ଅନୁସନ୍ଧାନ ଓ ଗବେଷଣା କରିବାର ଐତିହାସିକ ଆବଶ୍ୟକତା ରହିଛି ।

କଣାସ ମଠରେ ଗୋଟିଏ ତାମ୍ରପତ୍ର ସନନ୍ଦ ଥିବାର କୌଣସି ସୂତ୍ରରୁ ଖବରପାଇ ୧୯୪୮ ମସିହାରେ ପଣ୍ଡିତ ସଦାଶିବ ରଥଶର୍ମା ଦିନେ ଡେଲାଙ୍ଗ ଷ୍ଟେସନରୁ ଏଗାର ମାଇଲ ବାଟ ଚାଲି ଚାଲି ଆସି କଣାସରେ ପହଞ୍ଚିଲେ ଏବଂ କଣାସ ମଠ ମହନ୍ତଙ୍କ ସହ ତାଙ୍କର ପରିଚୟ ନ ଥିବାରୁ ସନନ୍ଦଟି ଦେଖିବାଲାଗି ମୋର ସହାୟତା ଲୋଡ଼ିଲେ । ମୁଁ ପଣ୍ଡିତଙ୍କୁ ସଙ୍ଗରେ ନେଇ ମହନ୍ତ ହରେକୃଷ୍ଣ ଦାସଙ୍କ ସହିତ ପରିଚିତ କରାଇବା ପରେ ମହନ୍ତ ସନନ୍ଦଟି ଦେଖାଇଥିଲେ । କିନ୍ତୁ ସନନ୍ଦର ଲିପି ଆଦୌ ପଢ଼ିହେଉ ନ ଥିବାରୁ ପଣ୍ଡିତ ରଥଶର୍ମା ମୋ ମାର୍ଫତରେ ସନନ୍ଦଟି ନେଇ ଡ. ସତ୍ୟନାରାୟଣ ରାଜଗୁରୁ ଓ ଡକ୍ଟର ଡି.ସି. ସରକାରଙ୍କଦ୍ୱାରା ପାଠକରାଇଥିଲେ । ଡ. ରାଜଗୁରୁ ତାଙ୍କ "Inscriptions of Orissa" ପୁସ୍ତକରେ କଣାସ ତାମ୍ରଶାସନର ଫଟୋ, ବିଷୟବସ୍ତୁ ଓ ତହିଁର ଇଂରାଜୀ ଅନୁବାଦ ସହିତ ସମସ୍ତ ତଥ୍ୟ ପ୍ରକାଶକରିଛନ୍ତି । ପରେ ପୁଣି ସେ ଏହି ତଥ୍ୟକୁ ଓଡ଼ିଆରେ ତାଙ୍କ ରଚିତ 'ଓଡ଼ିଶାର ଇତିହାସ' ପୁସ୍ତକରେ ମଧ୍ୟ ପ୍ରକାଶକରିଛନ୍ତି ।

କଣାସ ତାମ୍ରଶାସନ ତଥ୍ୟ ଅନୁଯାୟୀ ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀ ବେଳକୁ କଳିଙ୍ଗକୁ ତୋଷଳୀ କୁହାଯାଉଥିଲା ଏବଂ ଏହା ୧୮ଭାଗରେ ବିଭକ୍ତ ହୋଇ 'ଅଷ୍ଟାଦଶ ତୋଷଳୀ' ନାମରେ ଅଭିହିତ ଥିଲା । ଦକ୍ଷିଣ ତୋଷଳୀ ଅନ୍ତର୍ଗତ ସତିନ୍ଦା ବିଷୟ (ଜିଲ୍ଲା)ର ତଡିଛ ପତ୍ତନରୁ ଗୁପ୍ତାବ୍ଦ ୨୮୦ ଫାଲଗୁନ୍ ୧୦ ଦିନ ଏହି ତାମ୍ରପତ୍ର ସନନ୍ଦ ଘୋଷଣାନାମାରେ ଅଷ୍ଟାଦଶ ତୋଷଳୀର ଶାସକ ଲୋକ ବିଗ୍ରହଙ୍କଦ୍ୱାରା ମଣିନାଗେଶ୍ୱର ଭଟ୍ଟାରକଙ୍କ ପୂଜା ଉଦ୍ଦେଶ୍ୟରେ ମୈତ୍ରାୟଣ ବ୍ରାହ୍ମଣ ସଂପ୍ରଦାୟର ପୂଜକମାନଙ୍କୁ 'ଉର୍ଦ୍ଧ୍ୱଶୃଙ୍ଗ' ନାମକ ଏକ ଗ୍ରାମ ଦାନ କରାଯାଇଥିଲା । ଏହି ସନନ୍ଦଟି 'ଶାଳୀ' କୂଳରେ ସୂର୍ଯ୍ୟ ଦିକ୍ଷିତଙ୍କ ଦ୍ୱାରା ଲିପିବଦ୍ଧ କରାଯାଇଥିଲା ।

ଡ. ହରେକୃଷ୍ଣ ମହତାବଙ୍କ (ଓଡ଼ିଶା ଇତିହାସ) ମତରେ ମଗଧର ରାଜା ସମୁଦ୍ରଗୁପ୍ତ ୩୪୨/୪୩ ଖ୍ରୀଷ୍ଟାବ୍ଦରେ କୋଶଳର ରାଜା ମହେନ୍ଦ୍ରଙ୍କୁ ଜୟକରି ଓଡ଼ିଶାର କେତେକ ଅଞ୍ଚଳ ଅଧିକାର କରିଥିଲେ । ପ୍ରୟାଗ ସ୍ତମ୍ଭଲିପିରୁ ଜଣାଯାଏ ସମୁଦ୍ରଗୁପ୍ତ ମହାକାନ୍ତାର, କୁରାଳ, ପିଷ୍ଟପୁର, ଏରଣ୍ଡଶିଳା, ଦେବରାଷ୍ଟ୍ର ଆଦି କଳିଙ୍ଗର କ୍ଷୁଦ୍ର କ୍ଷୁଦ୍ର ରାଜ୍ୟ ଜୟକରିଥିଲେ । ତାପରେ କିଛି କାଳପାଇଁ ଓଡ଼ିଶା ଗୁପ୍ତ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ସୁମଣ୍ଡଳ ତାମ୍ରଶାସନରେ ଗୁପ୍ତାବ୍ଦ ୨୫୦ ଏବଂ କଣାସ ତାମ୍ରଶାସନରେ ଗୁପ୍ତାବ୍ଦ ୨୮୦ ଉତ୍‌କୀର୍ଣ୍ଣ ହୋଇଥିବାରୁ ଭଟ୍ଟ ମହାସାମନ୍ତ ଉପାଧିଧାରୀ ଲୋକବିଗ୍ରହ ଗୁପ୍ତରାଜାଙ୍କ ଅଧୀନସ୍ଥ ଅଷ୍ଟାଦଶ ତୋଷଳୀର ସାମନ୍ତରାଜା ବା ଶାସକ ହୋଇଥିବା ଅନୁମାନ କରାଯାଏ, ଯଦିଓ ସେ ସମୟରେ ଗୁପ୍ତବଂଶର କେଉଁ ରାଜା ରାଜତ୍ୱ କରୁଥିଲେ ତାହା ଜଣାଯାଇ ନାହିଁ । ଗୁପ୍ତାବ୍ଦ ୨୮୦ ବେଳକୁ ଖ୍ରୀଷ୍ଟାବ୍ଦ ୬୦୦ ହୋଇଥିଲା ।

ଓଡ଼ିଶା ସରକାରଙ୍କ ତରଫରୁ ଶ୍ରୀ ନୀଳମଣି ସେନାପତି ଓ ଶ୍ରୀ ଦୁର୍ଗାଚରଣ କୁଅଁରଙ୍କ ସମ୍ପାଦନାରେ ପ୍ରକାଶିତ ପୁରୀଜିଲ୍ଲା ଗେଜେଟିଅର୍‌ରେ କଣାସ ତାମ୍ରଶାସନ ତଥ୍ୟ ଭିତ୍ତିରେ ଉଲ୍ଲେଖ କରାଯାଇଛି ଯେ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଉତ୍ତର କଳିଙ୍ଗ (ଆଧୁନିକ ପୁରୀ ଓ ଗଞ୍ଜାମ ଜିଲ୍ଲାର ଅଂଶବିଶେଷ)ରେ ବିଗ୍ରହମାନେ କ୍ଷମତାଶାଳୀ ହୋଇଉଠିଥିଲେ । ୫୭୦ ଖ୍ରୀଷ୍ଟାବ୍ଦ ବେଳକୁ ପୃଥିବୀ ବିଗ୍ରହ ରାଜତ୍ୱ କରୁଥିଲେ । ... କଣାସ ତାମ୍ରଶାସନ ଅନୁଯାୟୀ ବିଗ୍ରହ ବଂଶର ରାଜା ଲୋକବିଗ୍ରହଙ୍କ ରାଜତ୍ୱ ବେଳକୁ ତାଙ୍କ ରାଜ୍ୟ ଦକ୍ଷିଣ ତୋଷଳୀ ନାମରେ ଅଭିହିତ ହୋଇଥିଲା ।

କଣାସ ତାମ୍ରଶାସନରୁ ଏହି ଗୁରୁତ୍ୱପୂର୍ଣ୍ଣ ଐତିହାସିକ ତଥ୍ୟ ଆବିଷ୍କୃତ ହୋଇଥିଲେ ହେଁ ତତ୍‌ସମ୍ବନ୍ଧୀୟ ଆନୁସଂଗିକ ତଥ୍ୟ ବା ଘଟଣାଗୁଡ଼ିକ ସମ୍ପର୍କରେ ଏ ଅବଧି କୌଣସି ସ୍ତରରେ ଆଲୋଚନା କରାଯାଇ ନାହିଁ ; ଯଦିଓ ଆଧୁନିକ ନାମ ସହିତ ସମାଞ୍ଜସ୍ୟ ହେତୁ କେବଳ ଅନୁମାନ କରି ଡ.ସତ୍ୟନାରାୟଣ ରାଜଗୁରୁ 'ଊର୍ଦ୍ଧ୍ୱଶୃଙ୍ଗ'କୁ ଓଳସିଂହ, 'ତିତିଛପତନ'କୁ ତେଇଶିପୁର ଓ 'ଶାଳୀ'କୁ ଶାଳିଆ ନଦୀଭାବେ ଗ୍ରହଣକରିଥିବାବେଳେ ଦକ୍ଷିଣ ଓଡ଼ିଶାର ନାଗାବଳୀ ଓ ଉତ୍ତର ଓଡ଼ିଶାର ସୁବର୍ଣ୍ଣରେଖା ନଦୀ ମୁହାଣରେ ମଣିନାଗେଶ୍ୱର ମୂର୍ତ୍ତି ଥିବାର ଦର୍ଶାଇଛନ୍ତି । ତାମ୍ରପତ୍ର ବର୍ଣ୍ଣିତ ଊର୍ଦ୍ଧ୍ୱଶୃଙ୍ଗ ଗ୍ରାମକୁ ଆଧୁନିକ ଓଳସିଂହ ବୋଲି କହିବା ସପକ୍ଷରେ କିଛି ପ୍ରାମାଣିକ ତଥ୍ୟ ମିଳୁଛି । ଶାଳିଆ ନଦୀର ଉପତ୍ୟକା ଅଞ୍ଚଳ ରଣପୁର ପ୍ରାନ୍ତରେ ଓଳସିଂହ ଅବସ୍ଥିତ ଥିବାରୁ 'ଶାଳୀ'କୁ ଶାଳିଆ କୁହାଯାଇପାରେ । କିନ୍ତୁ ସତିଦା ବିଷୟ (ଜିଲ୍ଲା) ଅନ୍ତର୍ଗତ ତତିଛପତନରୁ ଅଷ୍ଟାଦଶ ତୋଷଳୀର ଶାସକ ତାମ୍ରପତ୍ର ସନନ୍ଦଟି ଘୋଷଣାକରିଥିବା ଦୃଷ୍ଟିରୁ ତତିଛପତନ ଜିଲ୍ଲାର ରାଜଧାନୀ ଅଥବା ଏକ ରାଜକୀୟ ଆସ୍ଥାନ ହୋଇଥିବବୋଲି ଅନୁମାନ କରିବା ସ୍ୱାଭାବିକ । ପୁଣି ଆଧୁନିକ ତେଇଶିପୁର ଗ୍ରାମଟି ଓଳସିଂହଠାରୁ ଦୂରରେ ଓ ପୁରୀଜିଲ୍ଲାର ପୂର୍ବପ୍ରାନ୍ତରେ ଅବସ୍ଥିତ । ତେଣୁ ତତିଛପତନକୁ ତେଇଶିପୁର କହିବାର କୌଣସି ଯଥାର୍ଥତା ଥିଲା ପରି ମନେ ହେଉ ନାହିଁ । ସେହିପରି ନାଗାବଳୀ ଓ ସୁବର୍ଣ୍ଣରେଖା ନଦୀ ମଧ୍ୟ ଓଳସିଂହଠାରୁ କାହିଁ କେତେ ଦୂରରେ । ଅନ୍ୟପକ୍ଷରେ ଯେଉଁ ଦେବତାଙ୍କ ଉଦ୍ଦେଶ୍ୟରେ ଊର୍ଦ୍ଧ୍ୱଶୃଙ୍ଗ ଗ୍ରାମ ଦାନକରାଯାଇଥିଲା ସେ ଦେବତାଙ୍କ

ଆସ୍ଥାନ ଉର୍ଦ୍ଧ୍ୱଶୃଙ୍ଗ ଗ୍ରାମର ସମୀପବର୍ତ୍ତୀ ହୋଇଥିବ ବୋଲି ଅନୁମାନ କରିବା ସ୍ୱାଭାବିକ । ତେଣୁ 'ମଣିନାଗେଶ୍ୱର'ଙ୍କ ସନ୍ଧାନରେ ସୁଦୂର ସୁବର୍ଣ୍ଣରେଖା ବା ନାଗାବଳୀର ମୁହାଣ ପର୍ଯ୍ୟନ୍ତ ନ ଯାଇ ଓଳସିଂହ ଗ୍ରାମଠାରୁ ଅଳ୍ପଦୂରରେ ଅବସ୍ଥିତ ରଣପୁରଗଡ଼ ସଂଲଗ୍ନ ପାହାଡ଼ ଉପରେ ପ୍ରତିଷ୍ଠିତ 'ମଣିନାଗ'ଙ୍କ ସମ୍ପର୍କରେ ସବିଶେଷ ତଥ୍ୟ ସଂଗ୍ରହ କରାଯିବା ଆବଶ୍ୟକ । 'ଉର୍ଦ୍ଧ୍ୱଶୃଙ୍ଗ' ଗ୍ରାମ ଓ 'ମଣିନାଗେଶ୍ୱର' ଦେବତା ସମ୍ପର୍କରେ ଯେତିକି ପ୍ରାମାଣିକ ତଥ୍ୟ ମିଳୁଛି ସେହି ପରିପ୍ରେକ୍ଷୀରେ ଏକ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତରେ ଉପନୀତ ହେବାର ଆବଶ୍ୟକତା ରହିଛି ।

ଡ. ସତ୍ୟନାରାୟଣ ରାଜଗୁରୁ ତାଙ୍କର 'ଓଡ଼ିଶାର ଇତିହାସ' ପୁସ୍ତକର ୧୮୭ ପୃଷ୍ଠାରେ ନାଗବଂଶର ଇତିହାସ କ୍ରମରେ ଲେଖିଛନ୍ତି - 'ନାଗଜାତୀୟ ରାଜାମାନେ ପ୍ରଥମେ ମଣିନାଗଙ୍କ ଆରାଧନା କରୁଥିଲେ । ତେଣୁ ଓଡ଼ିଶାର ବିଭିନ୍ନ ସ୍ଥାନରେ ନାଗ-ବିଗ୍ରହ ପରିଦୃଷ୍ଟ ହୁଏ । କାଳକ୍ରମେ ନାଗମାନଙ୍କ ଆରାଧିତ ମଣିନାଗଙ୍କୁ ଶୈବ ଓ ଶାକ୍ତଧର୍ମାବଲମ୍ବୀ ଉନ୍ନତ ସଂପ୍ରଦାୟ ମଣିନାଗେଶ୍ୱର ତଥା ମଣିନାଗ ଦେବୀ ରୂପେ ଆରାଧନା କରିବାକୁ ଲାଗିଲେ । ପୁରୀ ଜିଲ୍ଲା ରଣପୁରଠାରେ ଯେଉଁ ମଣିନାଗ ପର୍ବତ ବିଦ୍ୟମାନ ସେଥିର ଶିଖରଦେଶରେ ମଣିନାଗ ଦେବୀ ପ୍ରତିଷ୍ଠିତା । କିନ୍ତୁ ଏହି ମଣିନାଗ ଦେବୀ ଯେ କଣାସ ତାମ୍ରଶାସନର ମଣିନାଗେଶ୍ୱର ହୋଇପାରନ୍ତି - ଏ ସମ୍ଭାବନା ସମ୍ପର୍କରେ ଶ୍ରୀ ରାଜଗୁରୁ କୌଣସି ସୂଚନା ଦେଇ ନାହାନ୍ତି ।

ତାମ୍ରପତ୍ରରେ କ'ଣ ଲେଖାଥିଲା ତାହା କଣାସ ମଠର ମହନ୍ତମାନଙ୍କୁ ଜଣା ନ ଥିଲେ ମଧ୍ୟ ତାମ୍ରପତ୍ରଟି ଠାକୁରଙ୍କ ସମ୍ପତ୍ତି ସମ୍ପର୍କୀୟ ସନନ୍ଦ ବୋଲି ସେମାନଙ୍କ ମଧ୍ୟରେ ପୁରୁଷାନୁକ୍ରମେ ଏକ ଧାରଣା ଗଡ଼ିଆସୁଥିବାର ମୁଁ ମହନ୍ତ ହରେକୃଷ୍ଣ ଦାସଙ୍କଠାରୁ ଶୁଣିଛି । ହରେକୃଷ୍ଣ ଦାସ ଥିଲେ କଣାସ ମଠର ଦ୍ୱାଦଶ ମହନ୍ତ । ତାଙ୍କ ପୂର୍ବରୁ ଯେଉଁ ଏଗାର ଜଣ ମହନ୍ତ ହୋଇଥିଲେ ସେମାନଙ୍କ ନାମ କ୍ରମାନ୍ୱୟରେ ରଘୁନାଥ, କେଶବ, ଦାମୋଦର, ରାମକୃଷ୍ଣ, ଗୋବିନ୍ଦ ଚରଣ (କ) କୃଷ୍ଣଚରଣ, ପରମାନନ୍ଦ, ହରେକୃଷ୍ଣ (କ), ମାଧବ, ପଦ୍ମଚରଣ ଓ ଗୋବିନ୍ଦଚରଣ (ଖ) । କଣାସ ମଠର ପ୍ରତିଷ୍ଠାତା ପ୍ରଥମ ମହନ୍ତ ରଘୁନାଥ ଦାସ ମହନ୍ତ ହେବା ପୂର୍ବରୁ ରଘୁନାଥ ଭୋଳ ନାମରେ ପରିଚିତ ଥିଲେ ଏବଂ ତାଙ୍କର ପୈତୃକ ବାସସ୍ଥାନ ଥିଲା ଓଳସିଂହ ସନ୍ନିକଟ ତମଣଭୂଇଁ ଗ୍ରାମରେ । କଣାସ ମଠ ପ୍ରତିଷ୍ଠିତ ହୋଇଥିଲା ଗଜପତି ରାଜା ପ୍ରତାପରୁଦ୍ର ଦେବଙ୍କ ସମୟରେ, ଯେତେବେଳେ ଚୈତନ୍ୟଦେବଙ୍କଠାରୁ ବୈଷ୍ଣବଧର୍ମ ଗ୍ରହଣକରି ପ୍ରତାପରୁଦ୍ର ଏବଂ ରାୟ ରାମାନନ୍ଦ ପ୍ରଭୃତି ତାଙ୍କର ରାଜକର୍ମଚାରୀମାନେ ଓଡ଼ିଶାର ଗ୍ରାମେ ଗ୍ରାମେ ଭିନ୍ନ ଭିନ୍ନ ନାମରେ ରାଧାକୃଷ୍ଣ ମୂର୍ତ୍ତି ଓ ମଠମନ୍ଦିରାଦି ସ୍ଥାପନକରି ଘରେ ଘରେ ବୈଷ୍ଣବଧର୍ମର ପ୍ରସାରପାଇଁ ପ୍ରଜାମାନଙ୍କୁ ପ୍ରୋତ୍ସାହନ ଦେଇଥିଲେ । କଣାସ ମଠରେ ପୂଜିତ ହେଉଥିବା ଦେବବିଗ୍ରହ ରାଧାକାନ୍ତଦେବ, ଗୋପୀନାଥଦେବ, ଗିରିଧାରୀଦେବ ଓ ନୃସିଂହଦେବଙ୍କ ମଧ୍ୟରେ ରାଧାକାନ୍ତଦେବ ହିଁ ପ୍ରଧାନ ଆରାଧ୍ୟ ଦେବତା- ଯାହାଙ୍କୁ ମହନ୍ତ ରଘୁନାଥ ଦାସ ଅଥବା ପୁରୀ ରାଧାକାନ୍ତ ମଠାଧୀଶ ପ୍ରଥମରୁ ପ୍ରତିଷ୍ଠା କରିଥିଲେ । ଅନ୍ୟ ମୂର୍ତ୍ତିଗୁଡ଼ିକ ପରବର୍ତ୍ତୀ ମହନ୍ତମାନଙ୍କ ସମୟରେ ପ୍ରତିଷ୍ଠିତ ହୋଇଛନ୍ତି । ମହନ୍ତ ହରେକୃଷ୍ଣ ଦାସଙ୍କ ସମୟରେ କଣାସମଠର ସର୍ବମୋଟ ଭୂସମ୍ପତ୍ତିର ପରିମାଣ ଥିଲା

୧୦୮୮ ଏକର । ତନ୍ମଧ୍ୟରୁ କେବଳ ରାଧାକାନ୍ତ ଦେବଙ୍କ ନାମରେ ଏ ୫୩୨.୨୮୦ ଓ ମହନ୍ତଙ୍କ ନାମରେ ଏ ୧୮୯.୮୫୯ ଜମି ଥିଲା ଏବଂ ଏହିସବୁ ଜମିରୁ ଅଧିକାଂଶ ଥିଲା ଓଳସିଂହ ଓ ତାର ଆଖାପାଖ ତମଣଭୂଇଁ, ଦେଉଳି, ଗୟାବନ୍ଧ, ପରିଛଳ, ଓଗାଳପୁର, ଛଣଗିରି ଇତ୍ୟାଦି ଗ୍ରାମମାନଙ୍କରେ ।

ଓଳସିଂହଠାରୁ ପଶ୍ଚିମକୁ ଅଳ୍ପଦୂରରେ ରଣପୁରଗଡ଼ ସଂଲଗ୍ନ ପାହାଡ଼ ଉପରେ ପ୍ରସିଦ୍ଧ ମଣିନାଗ ଠାକୁରାଣୀଙ୍କ ମନ୍ଦିର ଅଛି । କିନ୍ତୁ ସେ ମନ୍ଦିର ଭିତରେ କୌଣସି ମୂର୍ତ୍ତି ଦେଖିବାକୁ ମିଳେ ନାହିଁ । ଠାକୁରାଣୀଙ୍କ ଆସ୍ଥାନ ଉପରେ ଏକ ମୋଟା ଲୁହାପଟା ଢଙ୍କା ହୋଇଛି । ସେହି ଲୁହାପଟା ଉପରେ ସିନ୍ଦୂର ଲେସି ହୋଇ ହୋଇ ସିନ୍ଦୂରର ଛୋଟ କୁଦଟିଏ ସୃଷ୍ଟିହୋଇଛି । ତାକୁ ହିଁ ମଣିନାଗ ଠାକୁରାଣୀଭାବେ ପୂଜାକରାଯାଉଛି । ଲୁହାପଟା ଢାଙ୍କୁଣୀ ତଳେ ନାଗମୂର୍ତ୍ତି ଥିବା ବିଶ୍ୱାସକରାଯାଏ । ଐତିହାସିକମାନଙ୍କ ମତରେ 'ଶକ୍' ଜାତିର ଏକ ଶାଖା ରୂପେ ବିବେଚିତ ନାଗବଂଶୀମାନେ ନାଗସାପକୁ ପୂଜାକରୁଥିଲେ । ସିକନ୍ଦର (ଆଲେକଜାଣ୍ଡାର)ଙ୍କ ଭାରତ ଅଭିଯାନ ସମୟରେ ତକ୍ଷଶିଳାର ନାଗବଂଶୀୟ ରାଜା ତାଙ୍କୁ ପଞ୍ଜାବର ପୁରୁରାଜାଙ୍କ ବିରୋଧରେ ସାହାଯ୍ୟ କରିଥିଲେ । ତକ୍ଷଶିଳାର ରାଜପୁରରେ ବଡ଼ ବଡ଼ ସାପମାନେ ପାଳିତ ହୋଇ ପୂଜାପାଉଥଲେ ବୋଲି ଆଲେକଜାଣ୍ଡାରଙ୍କ ସହଗାମୀମାନେ ବର୍ଣ୍ଣନା କରିଯାଇଛନ୍ତି ।[୧୦୮] ଡ. ସତ୍ୟନାରାୟଣ ରାଜଗୁରୁ ତାଙ୍କ ଲିଖିତ ଇତିହାସରେ କହିଛନ୍ତି ଯେ, ନାଗବଂଶୀୟ ରାଜାମାନେ ପୂଜାକରୁଥିବା 'ମଣିନାଗ'ଙ୍କ ନାଗବିଗ୍ରହସବୁ କାଳକ୍ରମେ ମଣିନାଗ ଦେବୀ ରୂପେ ପୂଜାପାଇଲେ । ତେଣୁ ନାଗରାଜାଙ୍କଦ୍ୱାରା ମଣିନାଗ ପର୍ବତ ଉପରେ ପ୍ରତିଷ୍ଠିତ ନାଗବିଗ୍ରହକୁ କାଳକ୍ରମେ ଲୁହାଢାଙ୍କୁଣୀରେ ଘୋଡ଼େଇଦିଆଯାଇ ଏଠି ମଣିନାଗ ଦେବୀ ପୂଜାର ବ୍ୟବସ୍ଥା କରାଯାଇଥିବା ସମ୍ଭବପର । ସୁତରାଂ ସନନ୍ଦ ଲିଖିତ ମଣିନାଗେଶ୍ୱରଙ୍କୁ ଆଧୁନିକ ମଣିନାଗ ଠାକୁରାଣୀଭାବେ ଗ୍ରହଣ କରାଯାଇପାରେ । ଅନୁମିତହୁଏ - ତାମ୍ରପତ୍ରରେ 'ମଣିନାଗେଶ୍ୱରୀ ଭଟ୍ଟାରିକା'ଙ୍କ ନାମ ଉତ୍କୀର୍ଣ୍ଣ ହୋଇଥିଲା; କିନ୍ତୁ ଶହ ଶହ ବର୍ଷର କ୍ଷୟକାରୀ ପ୍ରଭାବରେ ସନନ୍ଦଟିର ଲିପି ଘଷରାହୋଇ କାଳକ୍ରମେ ଭଟ୍ଟାରିକା ଭଟ୍ଟାରକ ହୋଇଯାଇଛି ।

କଣାସ ତାମ୍ରପତ୍ର ସନନ୍ଦ ଲେଖାହେବାର ପ୍ରାୟ ୬୦୦ ବର୍ଷ ପୂର୍ବେ ଅର୍ଥାତ୍ ସମ୍ବତ୍ ୭ ବା ଖ୍ରୀଷ୍ଟପୂର୍ବ ୫୦ ଅବ୍ଦରେ ଲେଖାଯାଇଥିବା ଓଳସିଂହ ତାମ୍ର ଶାସନରେ ଭାନୁବର୍ଦ୍ଧନ ନାମକ ରାଜା ବା ଶାସକ 'ଅମ୍ବିକା ମଣିନାଗେଶ୍ୱର ଭଟ୍ଟାରକ'ଙ୍କ ନିମନ୍ତେ 'କୁମ୍ଭାରକ୍ ସୁନ୍ଖଲାକ୍' ନାମକ ଗ୍ରାମ ଦାନକରିଥିଲେ; ଏବଂ ଏ ଦାନ ମଧ୍ୟ ସେଇ ମୈତ୍ରାୟଣ ବ୍ରହ୍ମଣ ସମ୍ପ୍ରଦାୟର ପୂଜକମାନଙ୍କୁ କରାଯାଇଥିଲା । ପ୍ରଥମ ସନନ୍ଦଟିରେ ଉତ୍କୀର୍ଣ୍ଣ ଉର୍ଦ୍ଧ୍ୱଶୃଙ୍ଗ ଗ୍ରାମକୁ ଆଧୁନିକ ଓଳସିଂହ ବୋଲି ତଥ୍ୟଭିତ୍ତିକ ପ୍ରମାଣ ସହ ଚିହ୍ନଟ କରାଯାଉଥିବାବେଳେ ଦ୍ୱିତୀୟ ସନନ୍ଦଟି ଓଳସିଂହ ଗ୍ରାମରୁ ମିଳିଥିବାରୁ ଦ୍ୱିତୀୟ ସନନ୍ଦରେ ଦାନକରାଯାଇଥିବା କୁମ୍ଭାରକ ସୁନଖଲାକା

---

*୨୦୮- ୨୨/୪୧୯୨-୯୬*

ଗ୍ରାମ ଦୁଇଟିକୁ ରଣପୁର ନିକଟବର୍ତ୍ତୀ କୁମ୍ଭାରଖାଲ ଓ ସୁନାଖଳା ବୋଲି ଚିହ୍ନିତ ହୋଇଥିବାରୁ ଏବଂ ଦୁଇଟିଯାକ ସନନ୍ଦରେ ଦାନଗ୍ରହୀତା ବ୍ରାହ୍ମଣ ପୂଜକମାନେ ଏକ (ମୈତ୍ରାୟଣ) ସଂପ୍ରଦାୟର ହୋଇଥିବାରୁ ଉଭୟ ସନନ୍ଦର ମଣିନାଗେଶ୍ୱର ଭଟ୍ଟାରକ ଯେ ଏକ ଓ ଅଭିନ୍ନ ଏହା ନିଃସନ୍ଦେହରେ କୁହାଯାଇପାରେ । କିନ୍ତୁ ଓଳସିଂହ ସନନ୍ଦରେ 'ଅମ୍ବିକା ମଣିନାଗେଶ୍ୱର'ଙ୍କ ନାମୋଲ୍ଲଖ ଥିବାରୁ ତାହା ନିଶ୍ଚିତଭାବେ ଅମ୍ବିକା ମଣିନାଗେଶ୍ୱରୀ ଏବଂ ସେହି ହେତୁରୁ କଣାସ ତାମ୍ରଶାସନରେ ମଧ୍ୟ 'ମଣିନାଗେଶ୍ୱରୀ ଭଟ୍ଟାରିକା' ଲେଖା ହୋଇଥିଲାବୋଲି ବୁଝିବାକୁହେବ ।

ଡଃ ରାଜଗୁରୁ ନିଜେ ମଧ୍ୟ ସନ୍ଦେହରେ ପଡ଼ି ତାଙ୍କର 'ଓଡ଼ିଶା ଇତିହାସ' ପୁସ୍ତକରେ ଲେଖିଛନ୍ତି - 'ଶ୍ରୀ ଲୋକବିଗ୍ରହଙ୍କ ତାମ୍ରଶାସନରୁ ପ୍ରମାଣିତ ହୁଏ ଯେ ମଣିନାଗେଶ୍ୱର (ଶିବ ବା ଦେବୀ)ଙ୍କୁ ମଧ୍ୟ ସେମାନେ ଉପାସନା କରୁଥିଲେ । ଉଭୟ କଣାସ ଓ ଓଳସିଂହ ସନନ୍ଦ ସମ୍ପର୍କରେ ଡ. ରାଜଗୁରୁ ସ୍ୱୀକାର କରିଛନ୍ତି ଯେ ତାମ୍ରପତ୍ରରେ ଖୋଦିତ ଲିପି ଘଷରା ହୋଇ ଅସ୍ପଷ୍ଟ ହୋଇଯାଇଥିବାରୁ ଭଲଭାବେ ପଢ଼ିହେଉ ନାହିଁ, ଯାହା ଫଳରେ ତାଙ୍କର ଓ ଡ. ଡି.ସି. ସରକାରଙ୍କ ତର୍ଜମା ଭିତରେ ବହୁ ଅମେଳ ରହୁଛି । ତେଣୁ ତାମ୍ରପତ୍ରରେ ଖୋଦିତ ଲିପି 'ମଣିନାଗେଶ୍ୱରୀ ଭଟ୍ଟାରିକା'ରୁ ଦୀର୍ଘଈକାର ଓ ହ୍ରସ୍ୱଇକାର ମାତ୍ରା ଦୁଇଟି ଲିଭିଯାଇଥିବା ସମ୍ଭବପର ।

ଭାରତବର୍ଷର ସ୍ୱାଧୀନତା ପ୍ରାପ୍ତି ପରେ ବହୁବିଧ ଭୂସଂସ୍କାର ଆଇନର ପ୍ରବର୍ତ୍ତନ ଫଳରେ ମଠ ମନ୍ଦିର ଓ ଠାକୁରଠାକୁରାଣୀମାନଙ୍କ ନାମରେ ଥିବା ଭୂସମ୍ପତ୍ତି ସବୁ ପ୍ରାୟ ଚାଷୀମାନଙ୍କ ହାତକୁ ଚାଲିଗଲା । କିନ୍ତୁ ତା ପୂର୍ବରୁ ଏସବୁ ସମ୍ପତ୍ତି ଅକ୍ଷୁଣ୍ଣ ଥିଲା । ଲୋକେ ଧର୍ମଭୀରୁ ଥିବାରୁ ଦେବସ୍ୱ ଅପହରଣ କଲେ କୁଳବୁଡ଼ିଯିବ ବୋଲି ଭୟକରୁଥିଲେ । ଆମେ ଇତିହାସର ଯେତେ ପଛକୁ ଚାହିଁବା ସମାଜରେ ଏ ଧର୍ମଭୀରୁତା ସେତେ ଅଧିକ ଥିବାର ଜାଣିବା । ତେଣୁ ସପ୍ତମ ଶତାବ୍ଦୀରେ ତାମ୍ରପତ୍ର ସନନ୍ଦଦ୍ୱାରା ଦେବଆରାଧନା ଉଦ୍ଦେଶ୍ୟରେ ଉତ୍ସର୍ଗ କରାଯାଇଥିବା ଭୂସମ୍ପତ୍ତି ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ 'ଦେବସ୍ୱ'ଭାବେ ଅକ୍ଷୁଣ୍ଣ ରହିଥିବା ବିଶ୍ୱାସଯୋଗ୍ୟ । କିନ୍ତୁ ତାମ୍ରପତ୍ରରେ ବ୍ୟବହୃତ ପ୍ରାଚୀନ ଲିପି ପରବର୍ତ୍ତୀ କାଳ ଲ କେହି ପଢ଼ି ନ ପାରିବା ହେତୁ, ଅଥବା ମଣିନାଗେଶ୍ୱରୀ ସ୍ଥାନରେ ମଣିନାଗେଶ୍ୱର ପଢ଼ି ନିକଟବର୍ତ୍ତୀ କୌଣସି ସ୍ଥାନରେ ଏପରି ଦେବତାଙ୍କ ସନ୍ଧାନ ନପାଇବା ହେତୁ, ସନନ୍ଦ ସମ୍ପର୍କୀୟ ଭୂସମ୍ପତ୍ତି କେଉଁ ଠାକୁରଙ୍କର ତାହା ନିର୍ଦ୍ଧାରଣ କରିନପାରି ସନନ୍ଦଧାରୀମାନେ ଏହି ସମ୍ପତ୍ତିର ଆୟକୁ ଧର୍ମବିଶ୍ୱାସମତେ ସାଧୁ, ସନ୍ଥ, ସନ୍ନ୍ୟାସୀଙ୍କ ଉଦ୍ଦେଶ୍ୟରେ ଖଇରାତି କରିଦେଉଥିଲେ । ଷୋଡ଼ଶ ଶତାବ୍ଦୀ ଆରମ୍ଭବେଳକୁ ତାମ୍ରପତ୍ର ସନନ୍ଦଟି ଡମଣଭୂଇଁ ଗ୍ରାମର ରଘୁନାଥ ଭୋଳଙ୍କ ଅଧିକାରରେ ଥିବାରୁ ସେ ମଧ୍ୟ ପୂର୍ବପ୍ରଚଳିତ ପ୍ରଥା ଅନୁସରଣକରି ଉକ୍ତ ସମ୍ପତ୍ତିର ଆୟକୁ ସାଧୁ ସନ୍ନ୍ୟାସୀମାନଙ୍କ ଉଦ୍ଦେଶ୍ୟରେ ଖଇରାତି କରିଦେଉଥିଲେ । କିନ୍ତୁ ଯେତେବେଳେ ଚୈତନ୍ୟଦେବଙ୍କଦ୍ୱାରା ରାଜା ପ୍ରତାପରୁଦ୍ର ଦେବଙ୍କ ପ୍ରୋତ୍ସାହନରେ ସାରା ଓଡ଼ିଶାରେ ବୈଷ୍ଣବଧର୍ମର ପ୍ଳାବନ ସୃଷ୍ଟିହେଲା ସେତେବେଳେ ସମ୍ଭବତଃ ରଘୁନାଥ ଭୋଳ ସେହି ଧର୍ମରେ ଅନୁପ୍ରାଣିତ ହୋଇ ପୁରୀ ରାଧାକାନ୍ତମଠର ଗୋସ୍ୱାମୀଙ୍କ ଶିଷ୍ୟତ୍ୱ ଗ୍ରହଣକରିଥିବାରୁ ରାଧାକାନ୍ତ ମଠଗୋସ୍ୱାମୀ କଣାସରେ ନିଜ ଅନୁଷ୍ଠାନର ଏକ ଶାଖା ମଠ ପ୍ରତିଷ୍ଠାକରି ରଘୁନାଥ

ଭୋଳଙ୍କୁ ସେହି ମଠର ପ୍ରଥମ ମହନ୍ତଭାବେ ଗାଦିନସୀନ କରାଇଥିଲେ । କାରଣ ଏବେ ମଧ୍ୟ ପୁରୀ ରାଧାକାନ୍ତମଠକୁ କଣାସମଠର 'ଗୁରୁଗାଦି' ବୋଲି କୁହାଯାଏ ଏବଂ କଣାସ ମଠର ଜଣେ ମହନ୍ତ ମରିଗଲେ ତାଙ୍କ ଉତ୍ତରାଧିକାରୀଙ୍କ ମୁଣ୍ଡରେ ଶାଢ଼ିବାନ୍ଧି ପୁରୀ ରାଧାକାନ୍ତମଠର ମହନ୍ତ ତାଙ୍କୁ ନୂତନ ମହନ୍ତଭାବେ ଗାଦିନସୀନ କରାଇବା ବିଧି ପ୍ରଚଳିତଅଛି ।

ରଘୁନାଥ ଭୋଳ କଣାସଠାରେ ମହନ୍ତଭାବେ ଗାଦିନସୀନ ହେବା ପରେ ତାଙ୍କ ଅଧିକାରରେ ଥିବା ତାମ୍ରପତ୍ର ସନନ୍ଦରୁ ଖଇରାତି ସମ୍ପତ୍ତିକୁ ସେ କଣାସ ମଠର ସମ୍ପତ୍ତିର ପରିସରଭୁକ୍ତ କରିବା, ତହିଁର ରକ୍ଷଣାବେକ୍ଷଣ ଓ ବୁଝାସୁଝା ନିମନ୍ତେ ଡମଣଭୂଇଁ ଓ ବଣିଆଟାଙ୍ଗୀରେ କଣାସ ମଠର ଶାଖା ଓ ଖମାର ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଡମଣଭୂଇଁରୁ ତାଙ୍କର କେତେକ ସମ୍ପର୍କୀୟ ଲୋକଙ୍କୁ କଣାସ ମଠର ଖମାରୀ ମାପୁଣୀ, ଟହଲିଆ ଓଗେର କାର୍ଯ୍ୟରେ ନିଯୁକ୍ତକରିଥିଲେ । ଡମଣଭୂଇଁ ଗ୍ରାମର ସେଇ 'ଭୋଳ' ଉପାଧିଧାରୀମାନଙ୍କ ବଂଶଧରମାନେ ମହନ୍ତ ହରେକୃଷ୍ଣ ଦାସଙ୍କ ପରବର୍ତ୍ତୀ ମହନ୍ତ ବନମାଳୀ ଦାସଙ୍କ ମୃତ୍ୟୁ ପର୍ଯ୍ୟନ୍ତ କଣାସ ମଠର ସେହିସବୁ କାର୍ଯ୍ୟ ତୁଲାଉଥିଲେ । ମହନ୍ତ ହରେକୃଷ୍ଣ ଦାସଙ୍କ ପର୍ଯ୍ୟନ୍ତ କଣାସ ମଠକୁ 'ଅଭ୍ୟାଗତି ମଠ' ବା 'ଖଇରାତିମଠ' ବୋଲି କୁହାଯାଉଥିଲା । ଯଦିଓ କାର୍ଯ୍ୟତଃ ଖଇରାତି ପ୍ରଥା କ୍ରମେ ଲୋପ ପାଇ ଆସୁଥିଲା; କିନ୍ତୁ ତାଙ୍କ ଗୁରୁ ଗୋବିନ୍ଦ ଚରଣ ଦାସଙ୍କ ପର୍ଯ୍ୟନ୍ତ କଣାସ ମଠ ଖଇରାତି ମଠ ହିସାବରେ ଖ୍ୟାତି ଲାଭ କରିଥିଲା ।

ସେତେବେଳେ ଜଗନ୍ନାଥ ଦର୍ଶନପାଇଁ ପୁରୀ ଆସୁଥିବା ଏବଂ ଦର୍ଶନ ପରେ ଫେରୁଥିବା ସାଧୁମାନେ, ବିଶେଷତଃ ନାଗାସନ୍ନ୍ୟାସୀମାନେ କଣାସ ମଠରେ ବଧାକରୁଥିଲେ । ନାଗାସନ୍ନ୍ୟାସୀମାନେ ପ୍ରାୟତଃ ଶରୀରରେ ଭସ୍ମ ବୋଳିହୋଇ ଉଲଗ୍ନ ଥାନ୍ତି କିମ୍ବା ସାମାନ୍ୟ କୌପିନ ପିନ୍ଧିଥାନ୍ତି । 'ନାଗ' ଶବ୍ଦର ଆଉ ଏକ ଅର୍ଥ ହାତୀ । ପ୍ରତି ବର୍ଷ ଶହ ଶହ ନାଗା ସନ୍ନ୍ୟାସୀ ହାତୀମାନଙ୍କ ଉପରେ ଚଢ଼ି ତୀର୍ଥଯାତ୍ରାରେ ଆସୁଥିଲେ ଏବଂ ତାଙ୍କର ଇଚ୍ଛାମତେ ସପ୍ତାହ ସପ୍ତାହ, ମାସ ମାସ ଧରି କଣାସ ମଠରେ ଆସ୍ଥାନ ଜମାଇ ରହୁଥିଲେ । ସେମାନଙ୍କ ପ୍ରତି କଣାସମଠ ମହନ୍ତଙ୍କର ଯେତିକି ଭକ୍ତି ସେତିକି ଭୟ ଥିଲା । ତେଣୁ ସେମାନଙ୍କର ଆତିଥ୍ୟରେ ଯେପରି ସାମାନ୍ୟ ବ୍ୟତିକ୍ରମ ନ ଘଟେ ସେଥିପ୍ରତି ମହନ୍ତମାନେ ସଜାଗରହୁଥିଲେ । ସେମାନେ ଗୋଟିଏ ମାସ ରହିଗଲେ ମଠର ଛଅ ମାସର ଆୟ ନିଃଶେଷ ହୋଇଯାଉଥିଲା ବୋଲି ଏ ଲେଖକ ମହନ୍ତ ହରେକୃଷ୍ଣ ଦାସଙ୍କ ମୁହଁରୁ ଶୁଣିଛି । ନାଗା ସନ୍ନ୍ୟାସୀମାନଙ୍କ ବ୍ୟତୀତ ପ୍ରତିଦିନ ବହୁ ଅତିଥି ଅଭ୍ୟାଗତ କଣାସ ମଠକୁ ଆସୁଥିଲେ ଏବଂ ଠାକୁରଙ୍କ ଧୂପବଢ଼ିଲାବେଳକୁ ମଠରେ ଯିଏ ପହଞ୍ଚୁଥିଲେ ସେ ପଙ୍ଗତରେ ବସୁଥିଲେ । ଶତାବ୍ଦୀ ଶତାବ୍ଦୀ ଧରି 'ମଣିନାଗ'ଙ୍କ ସମ୍ପତ୍ତିର ଆୟକୁ 'ନାଗା' ସନ୍ନ୍ୟାସୀମାନଙ୍କ ଉଦ୍ଦେଶ୍ୟରେ ଖଇରାତି କରାଯାଇ ଆସୁଥିବା ପ୍ରଥାର ଅନ୍ତିମ ପର୍ଯ୍ୟାୟ ମାତ୍ର ଅଳ୍ପ କାଳପାଇଁ କଣାସ ମଠରେ ମହନ୍ତ ହରେକୃଷ୍ଣ ଦାସଙ୍କ ସମୟରେ ଦେଖିବାକୁ ମିଳିଥିଲା ।

❑ ❑ ❑

# Kanas Plate of Sri Lokavigraha

| | | | |
|---|---|---|---|
| 1. | Donor...... | Sri Lokavigraha | |
| 2. | Title....... | Bhatta Mahasamanta and<br>Ashtadasa - Toshaladhipati | |
| 3. | Place of Issue.. | Taticchapattana. | |
| 4. | Date..... | Gupta year 280. | |
| 5. | Officers.... | (1) Suryadikshita | (Lekhaka) |
| | | (2) Bhavanaga | (Visvasika) |
| | | (3) Sudra... | (Vishayapati) |
| | | (4) Sudrapaka | (Vrhadbhogika) |
| | | (5) Nagadatta | (Karanika) |
| | | (6) Kascha | (Durga-Pati) |
| 6. | Topography... | (1) Dakshina - Toshali | |
| | | (2) Svasida - Vishaya (Dt.) | |
| | | (3) Urdhvasringa (Village) | |
| 7. | Donee... | Sri Maninagesvara Bhattaraka<br>(deity) and the Brahmana students<br>who belonged to Maitrayaniya Section | |
| 8. | Authority | Edited by Sri Satyanarayana Rajaguru<br>in the Journal of Kalinga Historical<br>Research Society, Vol.II, PP261-66 ff.<br>Re-edited by Dr. D.C. Sirkar in E.I.<br>XXVII, p. 331. | |
| Remarks | | The reading of Sri S.N. Rajaguru differs<br>from that of Dr. D.C. Sirkar in many places.<br>It is due to illegibility of the letters. | |

Notes : This copperplate grant was discovered from the village of Kanas in the Puri District in possession of Sri Harekrishna Das Babaji of the temple of the above village. Pandit Sadasive Ratha Sarma of Puri secured the plate and gave it to Sri Satyanaranayana Rajaguru in 1948 for decipherment, who edited the same in J.K. H.R.S Vol. III, pp. 261-66 ff. It was re-edited by Dr. D.C. Sircar in E.I. XXVII, p. 331 ff.

# English Translation of the text of Kanas Copper Plate

"Om, Hail : In the country , encircled by the girdle of waves of the four oceans (and) consisted of islands, castles (and cities (there lived) Bhatta Maha Samanta Sri Lokavigraha (Who is) the worshipper of the supreme divine of the divines and who is the lord of eithteen Toshalis - declares, in the Gupta-era 280, from (the town of) Taticcha-pattana (situated in the District of )Satida Bishaya in Dakshina - Toshali (or the Southern-Toshali), (and) in the presence of the friendly lords of Svasida - Vishaya, that:-

Know ye; the present and future Mahasamantas, Maharajas, Kumaras, Amatyas, (and) the servants (Parikaras) of the lord of Svasida - Vishaya after having worshipped the victorious Boar (the god incarnated), we proclaim that in order to enhance our "Dharma# the village (named) Urdhva-Sringa, attached to the District (Satida Vishaya), whose boundaries have already been fixed up, is granted by us, at the sacred feet of 'Parama Daivatadhidaivata', for the puropse of providing Bali, Charu (and) Satra of sri Maninagesvara Bhattaraka * the (Deity) in favour of the Brahmana students, belonged to fifferent gotras (of the Maitrayana Section), on the 10th day of (the month of )Phalguna, in samvat 280.

Having known this from this copperplate, incised today, those who observe "Dharma# (the religious code), should obey this (order) accordingly.

This is written by Surya Dikshita (at) the banks of the Sali(river?) before the officer (named): Nagadatta, the Karanika (Registrar) and the two Durga-patis (the Fort Commanders).

(After this follow two usal benedictory and imprecatory verses quoted from the 'Manava-Dharmasastra)

Sri S.N. Rajaguru identifies the modern Teispur village of the puri District with Taticcha-pattana, Olasinga with Urdhvasringa and the Salia river with sali of the inscrption.

## English Translation of the text of Olsing Copper Plate

"Om Hail, Sri Bhanuvardhana (whose designation is) Mahapratihara (and) Maharaja's Mahasamanta, (Who is) the son (Or descendant) of ANDHAMUNI, (who is) a great believer in gods (paramadaivata) (and) a devote worshipper at the feet of parama Bhattaraka is well.

The Future and the present Mahasamantas, the Maharaja's, the Rajaputras, the Kumaras, the Amatyas, the Uparikas, Dandava(pa) sikas, the Sthanantarikas and the other Chata, Bhatta and Adhikaranas, who assembled in the Vishaya (named) Uddamaloka, are being honoured.

We granted a village named Kumvarka Sunkhalaka, attached to this Vishaya (District) of.. lam Kshetra, in Favour of Ambika Maninagesvara Bhattaraka,, in order to increase (our) merit (Dharmma) through the feet of Sri param Vattaraka (the god) as long as the existance of the moon and the sun, by (issuing this) copperplate, (it has been) ordered for the sake of our 'Dharmma-gaurava' (religious glory) that the Brahmanas (who are) the students of the Maitrarayana (Section) (are to) maintain the charter of copperplate without any sort of obstruction whatsoever caused by any of their cast - people to it,

(The grant is made in) Samvat 7, on the 24th day of the bright fortnight of Asvina ? (or Ashadha ?)

## Olasing Plate of Bhanuvardhana.

| | | | |
|---|---|---|---|
| 1. | Donor | | Bhanuvardhana. |
| 2. | Title | | Mahapratihara, Maharaja-Mahasamanta |
| 3. | Place of issue...? | | |
| 4. | Date | | Samvat (1 Or 7) A ( Ashadha or Asvina), Su. Di 24. |
| 5. | Officers | (1 | Mahasandhi vigrahika - Govinda |
| | | (2) | Pedapala, - Pratishthita |
| | | (3) | Engraver- Sivanandana |
| 6. | Topography | (1) | Uddamaloka Vishaya (Dt.) |
| | | (2) | Sunkhalak a (Village) |
| 7. | Donee | (1) | The Brahmana Students of the Maitrayaniya (Ṣakha) |
| | | (2) | Maninagesvara Bhattaraka (the deity) |
| 8. | Authority | | Edited by Sri Satyanarayan Rajaguru in J.K. H.R.S. Vol II, p. 31-46. Re-edited by Dr. D.C. Sircar in E. I.XXVIII, P. 331 |
| 9. | Remarks | | There is a lot of difference between the readings of Sri S.N. Rajaguru and Dr. D.C. Sircar. |



## ସପ୍ତମ ଅଧ୍ୟାୟ

# ଐତିହ୍ୟ ଓ ସଂହତିର କ୍ଷେତ୍ର କୁଞ୍ଜେଶ୍ୱରୀପୀଠ କୃଷ୍ଣନଗର

ଦୟାନଦୀ ପୂର୍ବପାର୍ଶ୍ୱରେ କଟଣୀ -ପୁରୀ ରେଳରାସ୍ତାର କଣାସରୋଡ଼ ରେଳଷ୍ଟେସନ୍‌ଠାରୁ ଦକ୍ଷିଣକୁ ମାତ୍ର ବାର କିଲୋମିଟର ଦୂରରେ କଣାସ ଗାଁ । ଉତ୍ତର-ଦକ୍ଷିଣ ହୋଇ ଅବସ୍ଥିତ ଥିବା ଏହି ଗାଁର ଉତ୍ତରମୁଣ୍ଡରେ କୁଞ୍ଜେଶ୍ୱରୀ ଠାକୁରାଣୀ ମନ୍ଦିର, ଦକ୍ଷିଣମୁଣ୍ଡରେ ସାନମଠ ଏବଂ ଗାଁ ମଝିରେ ବଡ଼ମଠ ଯାହା ସାଧାରଣତଃ କଣାସ ମଠ ନାମରେ ପରିଚିତ । ସିରାଇ ଗ୍ରାମଠାରୁ ମାତ୍ର ଏକ ମାଇଲ୍ ବ୍ୟବଧାନରେ ଅବସ୍ଥିତ ଥିଲେହେଁ ଏହି ଗାଁ ପ୍ରାଚୀନ ସିରାଇ ଦଣ୍ଡପାଟର ସିରାଇ ବିସି ଅଥବା ପରବର୍ତ୍ତୀ କାଳରେ ସିରାଇ ପ୍ରଗଣାର ଅନ୍ତର୍ଭୁକ୍ତ ନ ଥିଲା । ଏହି ଗାଁ ଥିଲା ପ୍ରାଚୀନ ପରଙ୍ଗ ଦଣ୍ଡପାଟର ବଳଭଦ୍ରପ୍ରସାଦ ଖଣ୍ଡର ଏବଂ ପରବର୍ତ୍ତୀ କାଳର ଖୋର୍ଦ୍ଧା ଖାସ୍‌ମାହାଲ ଅଧୀନ ବଳଭଦ୍ରପୁର ଜିଲ୍ଲାର ଏକ ପ୍ରାଚୀନ ରାଜସ୍ୱ ଗ୍ରାମ । କିନ୍ତୁ ଏହି ଗ୍ରାମର ଏକ ଅଂଶ ରୂପେ କୁଞ୍ଜେଶ୍ୱରୀ ଠାକୁରାଣୀଙ୍କଠାରୁ ପଶ୍ଚିମକୁ ଦୟାନଦୀ ବନ୍ଧକୂଲାଗି ରହିଥିବା କ୍ଷୁଦ୍ର ବସ୍ତିଟିକୁ ୧୮୦୯ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧା ଖାସମାହାଲରୁ କାଢ଼ିନିଆଯାଇ ପାଇକପଡ଼ା ଜମିଦାରୀ ମାହାଲର ସିରାଇପ୍ରଗଣାଭୁକ୍ତ କରାଯାଇଥିଲା । ସେହିଦିନଠାରୁ ଏହି କ୍ଷୁଦ୍ର ବସତିଟି କୃଷ୍ଣନଗର ନାମରେ ପରିଚିତ ହେଉଛି ।

କିମ୍ବଦନ୍ତୀ ଅଛି ଯେ, କୁଞ୍ଜେଶ୍ୱରୀ ଠାକୁରାଣୀ ବହୁକାଳରୁ ବଳଭଦ୍ରପୁରଗଡ଼ର ଅଧିଷ୍ଠାତ୍ରୀ ଦେବୀ ରୂପେ ପୂଜାପାଉଥିଲେ ୧୮୧୭ ଖ୍ରୀ.ରେ ଖୋର୍ଦ୍ଧା ପାଇକବିଦ୍ରୋହ ସମୟରେ ରାଜା ଗଡ଼ ତ୍ୟାଗ କରିବା ପୂର୍ବରୁ କୁଞ୍ଜେଶ୍ୱରୀ ଠାକୁରାଣୀଙ୍କ ସ୍ୱପ୍ନାଦେଶମତେ ତାଙ୍କୁ ଗଡ଼ରୁ ସ୍ଥାନାନ୍ତରିତ କରିନେଇ କଣାସ ଗାଁ ମୁଣ୍ଡର କୃଷ୍ଣନଗର ବସ୍ତିଭିତରେ ରଖାଇଥିଲେ ।

ଲେଖକ ୧୯୩୬ରୁ ୩୮ ମସିହାଯାଏଁ କଣାସ ଉଚ୍ଚପ୍ରାଥମିକ ବିଦ୍ୟାଳୟର ଛାତ୍ରଥିବା ସମୟରେ ''କଣାସଗ୍ରାମର ଇତିବୃତ୍ତି'' ଶୀର୍ଷକ ଏକ ଲେଖା ସେହି ବିଦ୍ୟାଳୟର କାନ୍ଥରେ ଟଙ୍ଗା ହୋଇଥିଲା । ସେଥିରେ ଲେଖା ହୋଇଥିଲା ଯେ- ଗଡ଼ବଳଭଦ୍ରପୁରର

ଅଧିଷ୍ଠାତ୍ରୀ କୁଞ୍ଜେଶ୍ୱରୀ ଠାକୁରାଣୀ ୧୮୧୭ ଖୋର୍ଦ୍ଧା ପାଇକ- ବିଦ୍ରୋହ ସମୟରେ ରଜାଙ୍କୁ ଉକ୍ତ ଗଡ଼ ଛାଡ଼ି ଶ୍ରୀକ୍ଷେତ୍ରକୁ ଚାଲିଯିବାପାଇଁ ସ୍ୱପ୍ନାଦେଶ ଦେଲେ ଏବଂ ରଜାଙ୍କ ପ୍ରାର୍ଥନାମତେ ସ୍ୱୟଂ ଠାକୁରାଣୀ ମଧ ରଜାଙ୍କ ପଛେ ପଛେ ଶ୍ରୀକ୍ଷେତ୍ର ଯାତ୍ରା କରିବେ ବୋଲି ପ୍ରତିଶ୍ରୁତି ଦେଇ କହିଲେ ଯେ ରଜା ପଛରୁ ତାଙ୍କ ପାଦର ଘୁଙ୍ଗୁର ଶବ୍ଦ ଶୁଣିପାରିବେ, କିନ୍ତୁ ତାଙ୍କୁ ଦେଖିବାକୁ କଦାପି ପଛକୁ ଚାହିଁବେ ନାହିଁ, ଚାହିଁଲେ ସେ ଆଉ ଆଗକୁ ଯାଇପାରିବେ ନାହିଁ । ଠାକୁରାଣୀଙ୍କ ନିର୍ଦ୍ଦେଶମତେ ପରଦିନ ପ୍ରଭାତରୁ ରଜା ଗଡ଼ରୁ ବାହାରି ଶ୍ରୀକ୍ଷେତ୍ର ଉଦ୍ଦେଶ୍ୟରେ ଯାତ୍ରାକରିବାବେଳେ ତାଙ୍କ ପଛେ ପଛେ ଯାଉଥିବା ଠାକୁରାଣୀଙ୍କ ପାଦର ଘୁଙ୍ଗୁର ଶବ୍ଦ ଶୁଣିପାରୁଥିଲେ । କିନ୍ତୁ ଦୋକନ୍ଦାଠାରେ ଦୟା ନଈ ପାରହୋଇ ଅଳ୍ପବାଟ ଗଲାପରେ ବାଟରେ ବହୁତ ବାଲି ପଡ଼ିବା କାରଣରୁ ଆଉ ଠାକୁରାଣୀଙ୍କ ଘୁଙ୍ଗୁର ଶବ୍ଦ ଶୁଣାଗଲା ନାହିଁ । ଠାକୁରାଣୀଙ୍କ ପାଦର ଘୁଙ୍ଗୁର ଶବ୍ଦ ଶୁଣି ଶୁଣି ଅତ୍ୟନ୍ତ ଭକ୍ତିବିହ୍ୱଳ ହୋଇ ଚାଲୁଥିବା ରଜା ହଠାତ୍ ଘୁଙ୍ଗୁର ଶବ୍ଦ ଶୁଣା ନ ଯିବାର କାରଣ ବୁଝି ନ ପାରି ପଛକୁ ଚାହିଁଦେବା ମାତ୍ରେ ଠାକୁରାଣୀ ସେହିଠାରେ ପଥରମୂର୍ତ୍ତି ରୂପରେ ରହିଗଲେ । ରଜା ନିଜର ଭୁଲପାଇଁ ଅନୁତାପ କରିବା ସଙ୍ଗେ ସଙ୍ଗେ ସେହିଠାରେ ଠାକୁରାଣୀଙ୍କପାଇଁ ମନ୍ଦିର ନିର୍ମାଣ କରାଇ ଜଣେ ବିଶ୍ୱସ୍ତ ସେବକ ମାର୍ଫତରେ ଜମି ଖଞ୍ଜିଦେଲେ । ସେହି ବିଶ୍ୱସ୍ତ ସେବକଟି କଣା ଥିଲା । କୁଞ୍ଜେଶ୍ୱରୀ ଠାକୁରାଣୀ କଣା ସେବକ ସହିତ ସେଠାରେ ରହିବାରୁ ସେ ସ୍ଥାନର ନାମ 'କଣାସହ'ରୁ କାଳକ୍ରମେ କଣାସ ହେଲା ।

କିନ୍ତୁ ପରେ ଜଣାଗଲା ଯେ ସେତେବେଳେ ପ୍ରତ୍ୟେକ ଗ୍ରାମର ପ୍ରାଥମିକ ବିଦ୍ୟାଳୟ କାଳରେ ସେହି ଗ୍ରାମର ନାମକରଣ ସମ୍ପର୍କରେ କିମ୍ବଦନ୍ତୀ ଲେଖି ଝୁଲାଇବାପାଇଁ ସ୍କୁଲର ପ୍ରଧାନ ଶିକ୍ଷକମାନଙ୍କୁ ବିଭାଗୀୟ ପରିଦର୍ଶକଙ୍କର ନିର୍ଦ୍ଦେଶ ଥିବାହେତୁ କୁଞ୍ଜେଶ୍ୱରୀ ଠାକୁରାଣୀଙ୍କର ବଳଭଦ୍ରପୁରଗଡ଼ରୁ କଣାସ ଯାତ୍ରା ସମ୍ପର୍କରେ ପ୍ରଚଳିତ ମୂଳ କିମ୍ବଦନ୍ତୀ ସହିତ ବହୁଳ ପ୍ରଚାରିତ ସାକ୍ଷିଗୋପାଳଙ୍କର ବୃନ୍ଦାବନରୁ ବିଦ୍ୟାନଗର ଯାତ୍ରା ସମ୍ପର୍କରେ ପ୍ରଚଳିତ କିମ୍ବଦନ୍ତୀର କଥାବସ୍ତୁକୁ ଆଂଶିକ ଯୋଡ଼ି କଣାସ ଉଚ୍ଚପ୍ରାଥମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ମହାଶୟ ଉପରୋକ୍ତ ଲେଖାଟି ପ୍ରସ୍ତୁତ କରିଥିଲେ । କିନ୍ତୁ ମୂଳ କିମ୍ବଦନ୍ତୀଟି ତତ୍କାଳୀନ ଐତିହାସିକ ଘଟଣାର ପୃଷ୍ଠପୋଷକତାହେତୁ ବିଶ୍ୱାସଯୋଗ୍ୟ ମନେହୁଏ ।

ଉଲ୍ଲେଖଯୋଗ୍ୟ ଯେ ୧୮୧୭ ପାଇକ ବିଦ୍ରୋହ ସମୟରେ ଖୋର୍ଦ୍ଧା ପାଇକ ବିଦ୍ରୋହର ଅନ୍ୟତମ ନେତା ଦେୱାନ୍ କୃଷ୍ଣଚନ୍ଦ୍ର ଭ୍ରମରବରରାୟ ବଳଭଦ୍ରପୁର ଦୁର୍ଗରେ କିଛିଦିନ ଆତ୍ମଗୋପନ କରି ରହିଥିଲେ, କିନ୍ତୁ ଇଂରେଜଙ୍କ ପ୍ରଭାବ ବିସ୍ତାରହେତୁ ସେଠାରେ ଅଧିକ କାଳ ରହିବା ନିରାପଦ ନ ଥିବା ଜାଣି ଗଡ଼ର ଅଧିଷ୍ଠାତ୍ରୀ ଦେବୀ କୁଞ୍ଜେଶ୍ୱରୀ ଠାକୁରାଣୀଙ୍କ ସ୍ୱପ୍ନାଦେଶ ମତେ ଗଡ଼ ପରିତ୍ୟାଗ କରିବା ପୂର୍ବରୁ କୁଞ୍ଜେଶ୍ୱରୀଙ୍କୁ ଦୋକନ୍ଦାରେ ଅବସ୍ଥାନ କରୁଥିବା ଗଡ଼ର ଦଳବେହେରାଙ୍କ ସହାୟତାରେ ଗଡ଼ରୁ ସ୍ଥାନାନ୍ତରିତ କରିନେଇ କୃଷ୍ଣନଗରରେ ରଖାଇଥିଲେ ବୋଲି ବିଶ୍ୱାସ କରାଯାଏ ।

ଗଡ଼ବଳଭଦ୍ରପୁର ଅପେକ୍ଷା କୃଷ୍ଣନଗରକୁ କୁଞ୍ଜେଶ୍ୱରୀ ଠାକୁରାଣୀଙ୍କପାଇଁ କିପରି ଓ କାହିଁକି ଅଧିକ ନିରାପଦ ମନେକରାଯାଇଥିଲା, ତହିଁର କାରଣସ୍ୱରୂପ କୁହାଯାଇପାରେ ଯେ, ସେତେବେଳେ ଇଂରେଜମାନଙ୍କୁ ମ୍ଲେଚ୍ଛ ବୋଲି କୁହାଯାଉଥିଲା ଏବଂ ସେମାନେ ଛୁଇଁଦେଲେ ହିନ୍ଦୁଦେବାଦେବୀ ଅପବିତ୍ର ହୋଇଯିବେ ବୋଲି ଦୃଢ଼ ଧାରଣା ଥିଲା। ପାଇକବିଦ୍ରୋହ ପୂର୍ବରୁ ୧୮୦୪ ଖ୍ରୀ.ଅ.ରେ ଇରେଜମାନେ ଖୋର୍ଦ୍ଧା ଗଡ଼ ଆକ୍ରମଣ କରିବା ବେଳେ ତୋପ ମୁହଁରେ ଗୋରକ୍ତ ଗୋଳାଇଦେଇଥିବାରୁ ଗଡ଼ରକ୍ଷା କରୁଥିବା ବରୁଣେଇ ଠାକୁରାଣୀ ଆଡ଼ହୋଇଗଲେ, ତେଣୁ ଗଡ଼ର ପତନ ହେଲା ବୋଲି ଲୋକଙ୍କ ମନରେ ଧାରଣା ସୃଷ୍ଟିହୋଇଥିଲା। ପାଇକବିଦ୍ରୋହ ପରେ ମଧ୍ୟ ୧୮୨୭ ଖ୍ରୀଷ୍ଟାବ୍ଦରେ ତାପଙ୍ଗ ଯୁଦ୍ଧରେ ଇଂରେଜମାନେ ଗୋରକ୍ତ ବା ଗୋଚର୍ବି ଗୋଳାଯାଇଥିବା ଗୁଳି ବ୍ୟବହାର କରିବା ହେତୁ ତାପଙ୍ଗ ଗଡ଼କୁ ରକ୍ଷାକରୁଥିବା ହସ୍ତେଶ୍ୱରୀ ଠାକୁରାଣୀ ଆଡ଼ହୋଇଗଲେ, ତେଣୁ ତାପଙ୍ଗ ଗଡ଼ର ପତନହେଲା ବୋଲି କବି ମଧୁସୂଦନ ବିପ୍ର 'ଫିରିଙ୍ଗି କଳିଭାରତ'ରେ ବର୍ଣ୍ଣନା କରିଛନ୍ତି। ୧୮୧୭ ଖୋର୍ଦ୍ଧାର ଇଲାକା ଇରେଜଙ୍କ ଖାସ୍‌ମାହାଲ ହୋଇଯିବାରୁ 'କିଲ୍ଲେ ଖୋର୍ଦ୍ଧା ଢିଲ୍ଲେ ବଳଭଦ୍ରପୁର' ଗଡ଼ର ଅଧିଷ୍ଠାତ୍ରୀ କୁଞ୍ଜେଶ୍ୱରୀ ଠାକୁରାଣୀ ସେହି କାରଣରୁ ଇଂରେଜ ଅଧିକୃତ ଗଡ଼ରୁ କୃଷ୍ଣନଗରକୁ ସ୍ଥାନାନ୍ତର କରାଯାଇଥିବା ବିଶ୍ୱାସଯୋଗ୍ୟ। ଗଡ଼ବଳଭଦ୍ରପୁର ଦଳବେହେରାଙ୍କ ଆସ୍ଥାନ ଦୋକନ୍ଦା ଗ୍ରାମ ସଂଲଗ୍ନ କୃଷ୍ଣନଗର ବସ୍ତିଟି ଆଠ ବର୍ଷ ପୂର୍ବରୁ ଖୋର୍ଦ୍ଧା ଇଲାକାରୁ ବିଛିନ୍ନହୋଇ ପାଇକପଡ଼ା ଜମିଦାରୀ ଇଲାକାଭୁକ୍ତ ହୋଇସାରିଥିଲା। ତେଣୁ କୃଷ୍ଣନଗରକୁ ଇଂରେଜଙ୍କ ପ୍ରତ୍ୟକ୍ଷ ପ୍ରଭାବରୁ ମୁକ୍ତ ଏବଂ କୁଞ୍ଜେଶ୍ୱରୀଙ୍କପାଇଁ ଅଧିକ ନିରାପଦ ମନେକରାଯାଇଥିଲା। ଦେଓ୍ୱାନ୍ କୃଷ୍ଣଚନ୍ଦ୍ର ଭ୍ରମରବର ରାୟ ଖୋର୍ଦ୍ଧା ରାଜ୍ୟର ମନ୍ତ୍ରୀ ଥିଲେ ଏବଂ ଗଡ଼ ବଳଭଦ୍ରପୁରରେ ଅବସ୍ଥାନ କରୁଥିବା ହେତୁ ତାଙ୍କୁ ସ୍ଥାନୀୟ ଲୋକେ ସମ୍ଭବତଃ ରାଜା ବୋଲି କହୁଥିଲେ। ସେହି ହେତୁରୁ ପାଇକବିଦ୍ରୋହ ସମୟରେ ରାଜା ଗଡ଼ବଳଭଦ୍ରପୁର ଛାଡ଼ି ଚାଲିଗଲେ ବୋଲି କିମ୍ବଦନ୍ତୀ ଅଛି। ସେହିଦିନଠାରୁ କୁଞ୍ଜେଶ୍ୱରୀ ଠାକୁରାଣୀ କୃଷ୍ଣନଗରରେ ଅବସ୍ଥାନ କରୁଛନ୍ତି ଏବଂ ତାଙ୍କର ସେବା ପୂଜାପାଇଁ ୭ ବାଟି ୧୧ ମାଣ (୬୦ ଏକର) ଜମି ଖଞ୍ଜାରହିଛି। ମାଳୀ, ସେବକ, ପୂଜାରୀ ମଧ୍ୟ ଖଞ୍ଜାଅଛନ୍ତି।

କୁଞ୍ଜେଶ୍ୱରୀ ଠାକୁରାଣୀଙ୍କ ସବୁଠାରୁ ବଡ଼ ପର୍ବ ଦଶହରା ଆଶ୍ୱିନ ଶୁକ୍ଳ ପଞ୍ଚମୀ ଠାରୁ ଆରମ୍ଭହୁଏ। କୁଞ୍ଜେଶ୍ୱରୀଙ୍କ କାଠିଯାତ ହିଁ ଏହି ପର୍ବର ପ୍ରଧାନ ଆକର୍ଷଣ। ଷୋହଳ ହାତ ଲମ୍ବ ଏକ ନୂଆ ସଳଖ ବାଉଁଶର ତଳପାଖରୁ ଚାରି ହାତ ଛାଡ଼ି ବିଭିନ୍ନ ରଙ୍ଗବେରଙ୍ଗର ଶାଢ଼ିକୁ କୁଣ୍ଡକରି ଉପରକୁ ଉପର ବାଉଁଶର ଚାରିପାଖେ ଘେରାଇ ଅଗ୍ରଭାଗପର୍ଯ୍ୟନ୍ତ ବେଢ଼ଣକରାଯାଏ। ଅଗ୍ରଭାଗରେ ଏକ ପିତଳ କଳସ ଖଞ୍ଜାଯାଏ। ଏହାକୁ କାଠି କୁହାଯାଏ। ଏଥିରେ ଶହ ଶହ ଶାଢ଼ି ବେଢ଼ଣ କରାଯାଉଥିବା ହେତୁ ଏହାର

ଓଜନ ବହୁତ ବଢ଼ିଯାଏ । ଚାରି ପାଞ୍ଚଜଣ ବଳୁଆ ଭେଣ୍ଡିଆ ଏହାକୁ ସଳଖି ଧରି ଦ୍ୱାର ଦ୍ୱାର ବୁଲାଇ ଭୋଗଖୁଆନ୍ତି । ଏ କାଠିକୁ ସଳଖି ଧରି ତଳୁ ଉପରକୁ ଓ ଉପରୁ ତଳକୁ ଝାଙ୍କ ଦେଇ ଝାଡିଲେ ବା ନଚାଇଲେ ବେଢ଼ଣ ଶାଢ଼ିଗୁଡ଼ିକର ତଳପାଖ କୁଞ୍ଚ ଖୋଲିଯାଇ ଥରକୁଥର ଛତା ଆକୃତିରେ ମେଲି ଯିବା ବେଳେ ଖୁବ୍ ଚମତ୍କାର ଦିଶେ । ଏହିପରି ଭାବେ କାଠିକୁ ନଚାଇବାପାଇଁ ଠାଏ ଠାଏ ଭେଣ୍ଡିଆମାନଙ୍କ ମଧ୍ୟରେ ପ୍ରତିଯୋଗିତା ଲାଗିଯାଏ । ନାନା ପ୍ରକାର ବାଜା ଓ ରୋଷଣିର ସଲଟଣ ସହିତ କୁଞ୍ଜେଶ୍ୱରୀଙ୍କ ଚଳନ୍ତି ପ୍ରତିମାଭାବେ ଏହି କାଠି ପଞ୍ଚମୀଠାରୁ ଅଷ୍ଟମୀ ପର୍ଯ୍ୟନ୍ତ କଣାସ ଓ ଆଖପାଖ ଗାଁ ମାନଙ୍କରେ ବୁଲି ଭୋଗଖାଆନ୍ତି । ଅଷ୍ଟମୀ ରାତିରେ କୁଞ୍ଜେଶ୍ୱରୀଙ୍କ ପୀଠରେ ଲୋକେ ମାନସିକ କରି ଆଣିଥିବା ଛେଳି, ମେଣ୍ଢାମାନଙ୍କୁ ବଳିପକାନ୍ତି । ମା' କୁଞ୍ଜେଶ୍ୱରୀ ପୀଠରେ ଏହି ନିନ୍ଦନୀୟ ପଶୁବଳି ପ୍ରଥାକୁ ବନ୍ଦକରିବାପାଇଁ ସ୍ଥାନୀୟ ଲୋକଙ୍କ ଉଦ୍ୟମ ଫଳପ୍ରଦ ହୋଇପାରି ନ ଥିଲେ ହେଁ ବଳିପ୍ରଥା ବିରୋଧରେ ସର୍ବତ୍ର କ୍ରମେ ଅଧିକ ଲୋକମତ ପ୍ରକାଶପାଉଥିବାରୁ ନିକଟ ଭବିଷ୍ୟତରେ କୁଞ୍ଜେଶ୍ୱରୀଙ୍କ ପୀଠରେ ବଳିପ୍ରଥା ବନ୍ଦହୋଇଯିବ ବୋଲି ବିଶ୍ୱାସ କରାଯାଏ । ଦଶହରା ରାତିରେ ବାଜା ରୋଶଣି ସଲଟଣ ସହିତ କୁଞ୍ଜେଶ୍ୱରୀଙ୍କ କାଠିକୁ ଦଶହରା ପଦାକୁ ନିଆଯାଇ ସେଠାରେ ରାତିତମାମ ଗୀତ, ନାଚ ସଂକୀର୍ତ୍ତନାଦି ସହିତ ଦଶହରା ଉତ୍ସବ ପାଳନକରାଯାଏ । ଆଗକାଳରେ ଏପରି ପ୍ରଥା ଥିଲା ଯେ, କୁଞ୍ଜେଶ୍ୱରୀଙ୍କ କାଠିକୁ ଦଶହରା ପଦାରେ ଥିବା ସ୍ୱତନ୍ତ୍ର ପୂଜାବେଦି ଉପରେ ସ୍ଥାପନା କରିଯିବା ପରେ କଣାସ ବଡ଼ମଠର ମହନ୍ତ ସବାରିରେ ବସି ମହାଆଡ଼ମ୍ବର ସହିତ ଶୋଭାଯାତ୍ରାରେ ଯାଇ ଦଶହରା ପଦାରେ ପ୍ରଥମେ କାଠିପୂଜା କଲାପରେ ସଂକୀର୍ତ୍ତନ ଇତ୍ୟାଦି କରାଯାଉଥିଲା । ମହନ୍ତ ହରେକୃଷ୍ଣ ଦାସଙ୍କ ପର୍ଯ୍ୟନ୍ତ ଏହି ପ୍ରଥା ଥିଲା ।

କୁଞ୍ଜେଶ୍ୱରୀଙ୍କ ମନ୍ଦିରଠାରୁ ପଶ୍ଚିମକୁ ଦୟାନଦୀ ବନ୍ଧଯାଏଁ ଲମ୍ୱିଥିବା ବସ୍ତିଟିର ନାମ କୃଷ୍ଣନଗର । କୃଷ୍ଣନଗର ପଶ୍ଚିମ ସୀମାନ୍ତରେ ଇତିହାସ ପ୍ରସିଦ୍ଧ 'ଗୋଲା' ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ସମୃଦ୍ଧି ଯୁଗରେ ସୁନାବ୍ୟା ଦୟା ନଦୀକୂଳରେ ଏକ ପ୍ରଧାନ ବାଣିଜ୍ୟ ପେଣ୍ଠ ଥିଲା । ଗଙ୍ଗବଂଶ ଓ ସୂର୍ଯ୍ୟବଂଶ ରାଜତ୍ୱ କାଳରେ ଯେତେବେଳେ ସିରାଇ ଦଣ୍ଡପାଟର ସଦର ମହକୁମା ସିରାଇଠାରେ ରାଜା ଉଆସ ଥିଲା, ସେତେବେଳେ ସମ୍ଭବତଃ ଏହି ବାଣିଜ୍ୟ ପେଣ୍ଠ 'ଗୋଲା' ଉପରେ ରାଜକୀୟ ନିୟନ୍ତ୍ରଣ ଜାରିରଖିବା ନିମନ୍ତେ ଗୋଲା ନିକଟରେ ରାଜକର୍ମଚାରୀମାନଙ୍କର ଆସ୍ଥାନ ଥିଲା । ଗଙ୍ଗବଂଶର ଚତୁର୍ଥ ରାଜା ମଦନ ମହାଦେବ (ଶକାବ୍ଦ ୧୦୪୭- ୧୦୫୨ ବା ଖ୍ରୀଷ୍ଟାବ୍ଦ ୧୧୨୫-୧୧୩୦) 'ସିରାଇ ଦଣ୍ଡପାଟ ସହଜପାରିଗ୍ରାମ କଟକ କରିଥିଲେ' ବୋଲି ମାଦଳାପାଞ୍ଜିରେ ଲେଖାହୋଇଛି । ଦୟାନଦୀଦ୍ୱାରା ପ୍ରତିବର୍ଷ ବନ୍ୟା ପ୍ଲାବିତ ହେଉଥିବା ଚିଲିକା ହ୍ରଦର ତଟବର୍ତ୍ତୀ ଇଲାକାରେ

ସର୍ବାପେକ୍ଷା ଉଚ୍ଚ ଓ ନିରାପଦ ସ୍ଥାନ ଥିଲା କଣାସ ଗୋଲା । ତେଣୁ ଗୋଲାକୁ ଲାଗି ସେତେବେଳେ ଆଉ କିଛି ପ୍ରଶାସନିକ କାର୍ଯ୍ୟାଳୟ ଥିବା ବିଶ୍ୱାସ କରାଯାଏ । ସୁତରାଂ ରାଜକର୍ମଚାରୀମାନଙ୍କୁ ଦୈନନ୍ଦିନ ପ୍ରଶାସନିକ ତଥା ସାମାଜିକ ସେବାକାର୍ଯ୍ୟରେ ସହାୟତା କରୁଥିବା ସେମାନଙ୍କ ଉପରେ ନିର୍ଭରଶୀଳ ପରିବାରଗୁଡ଼ିକ ଏହିଠାରେ ବସବାସକରି ରହିଥିବା ସ୍ୱାଭାବିକ ମନେହୁଏ । ସେହି କାରଣରୁ 'ଗୋଲା'ଠାରୁ କୁଞ୍ଜେଶ୍ୱରୀଙ୍କ ପର୍ଯ୍ୟନ୍ତ ସମସ୍ତ ବସ୍ତିଟିରେ କେବଳ ଧୋବା, ହାଡ଼ି, ତାମ୍ବୋଲୀ ପ୍ରଭୃତି ହରିଜନମାନଙ୍କ ବାସଗୃହ ଥିଲା । ମୋଗଲ ରାଜତ୍ୱ କାଳରେ ପୁଣି ମୁସଲମାନ ପରିବାରଗୁଡ଼ିକ ଆସି ସେମାନଙ୍କ ସହିତ ମିଶି ବସବାସକଲେ । ସମଗ୍ର ବସ୍ତିଟି କେବଳ ହରିଜନ ଆଉ ମୁସଲମାନ୍‌ମାନଙ୍କୁ ନେଇ ଗଢ଼ିଉଠିଥିଲା ।

ସେହି ବସ୍ତି ଭିତରେ ବିଲମାଳକୁ ଲାଗି ପୁରୁଣା ଯୁଗର ପୁଷ୍କରିଣୀଟିଏ । ସେଥିପାଇଁ ତାକୁ ସମ୍ଭବତଃ 'ବିଳସାଗର' କିମ୍ବା 'ବଳେଇସାଗର' କୁହାଯାଉଥିଲା । (ବଳେଇ ମାନେ ଛୋଟ) । ଏବେ ଲୋକମୁଖରେ ସେ ହୋଇଯାଇଛି 'ବିଲେଇସାଗର' ସେ ଯୁଗରେ ଯେଉଁଠି ରାଜକର୍ମଚାରୀମାନେ ଅଧିକ ସଂଖ୍ୟାରେ ରହୁଥିଲେ ତା'ପାଖରେ ଗଣିକାମାନଙ୍କ ଆବାସ ଥିଲା ; ଏଠି ବି ଥିଲା । ଇଂରେଜମାନେ ଓଡ଼ିଶା ଅଧିକାର କରିବା ପର୍ଯ୍ୟନ୍ତ ଏ ବସ୍ତିଟିର ସ୍ୱତନ୍ତ୍ର ସତ୍ତା ନ ଥିଲା କିମ୍ବା ସ୍ୱତନ୍ତ୍ର ନାମକରଣ ହୋଇ ନ ଥିଲା । ଏହା ଖୋର୍ଦ୍ଧା ଖାସମାହାଲ ଇଲାକାଭୁକ୍ତ କଣାସ ଗ୍ରାମର ଅଂଶବିଶେଷ ହୋଇ ରହିଥିଲା । ଓଡ଼ିଶାରେ ଇଂରେଜ ରାଜତ୍ୱ ପ୍ରତିଷ୍ଠିତ ହେବାର ମାତ୍ର ଛଅ ବର୍ଷ ପରେ ୧୮୦୯ ଖ୍ରୀଷ୍ଟାବ୍ଦରେ କରାଯାଇଥିବା ଜମିଜମା ବନ୍ଦୋବସ୍ତରେ କୁଞ୍ଜେଶ୍ୱରୀଠାରୁ ଗୋଲା ପର୍ଯ୍ୟନ୍ତ ଲାଗିଥିବା କେବଳ ଏହି କ୍ଷୁଦ୍ର ବସ୍ତିଟିକୁ କଣାସ ଗାଁରୁ କାଗଜପତ୍ରରେ ପୃଥକ୍ କରାଯାଇ ଖୋର୍ଦ୍ଧା ଇଲାକାରୁ କାଢ଼ିନିଆଯାଇ ସିରାଇ ପ୍ରଗଣା ଅନ୍ତର୍ଭୁକ୍ତ କରାଗଲା ଏବଂ ୧୮୧୦ରେ କଲିକତାର ପାଇକପଡ଼ା ନିବାସୀ ଲାଲା କୃଷ୍ଣଚନ୍ଦ୍ର ସିଂହ କାରସାଦି କରି ଇଂରେଜଙ୍କଠାରୁ ପୁରୁଷୋତ୍ତମ, ସିରାଇ, ରାହାଙ୍ଗ ଓ ଚବିଶକୁଦ ପ୍ରଗଣାଗୁଡ଼ିକ କିଣିନେଇ ପାଇକପଡ଼ା ଜମିଦାରୀ ସୃଷ୍ଟି କରିବା ପରେ ତାଙ୍କରି ନାମାନୁସାରେ ଏ ବସ୍ତିଟିର ନାମ 'କୃଷ୍ଣନଗର' କରାଯାଇଥିଲା । ଉଲ୍ଲେଖଯୋଗ୍ୟ ଯେ, ଏହାର ଚାରିପାଖରେ କଣାସ, ଦୋକନ୍ଦା, ସହନା ଇତ୍ୟାଦି ଖୋର୍ଦ୍ଧା ଖାସ୍‌ମାହାଲ ଇଲାକା ବେଢ଼ିରହିଥିଲେ ହେଁ ଏହି କ୍ଷୁଦ୍ର ବସ୍ତିଟିକୁ ପାଇକପଡ଼ା ଜମିଦାରୀର ସମଗ୍ର ସିରାଇ ପ୍ରଗଣା ଇଲାକାର ସଦର ମହକୁମାରେ ପରିଣତ କରାଯାଇ 'କୃଷ୍ଣନଗର ମାହାଲ' ବା 'କୃଷ୍ଣନଗର ତାଲୁକା' ସୃଷ୍ଟିକରାଗଲା ।

'ଗୋଲା' ଏକ ପ୍ରଧାନ ବାଣିଜ୍ୟ ପେଣ୍ଠ ଥିବାରୁ ଏବଂ କୃଷ୍ଣନଗର ବସ୍ତିର ହରିଜନ ଏବଂ ମୁସଲମାନ ବାସିନ୍ଦାମାନଙ୍କୁ ଜମିଦାରୀ ରାଜସ୍ୱ ଆଦାୟ, ପରଓ୍ୱାନା ଜାରି

ଓ ରକ୍ଷଣାବେକ୍ଷଣ ଇତ୍ୟାଦି କାର୍ଯ୍ୟରେ ଉପଯୋଗ କରିବାର ସୁଯୋଗ ଥିବାରୁ ଯେ ହଠାତ୍ ଏହି କ୍ଷୁଦ୍ର ବସ୍ତିଟି ଉପରେ କୁଚକ୍ରୀ କୃଷ୍ଣଚନ୍ଦ୍ରଙ୍କ ଲୋଲୁପ ଦୃଷ୍ଟି ପଡ଼ିଥିଲା, ଏହା ସହଜରେ ଅନୁମେୟ । ତେବେ ସେ ଯାହା ହେଉ, ଏକ ବାଣିଜ୍ୟ ପେଣ୍ଠ ଭାବେ ପ୍ରସିଦ୍ଧି ଲାଭକରିଥିବା ଗୋଲା ସେହିଦିନଠାରୁ ପାଇକପଡ଼ା ଜମିଦାରୀର କୃଷ୍ଣନଗର ତାଲୁକାର ମୁଖ୍ୟକେନ୍ଦ୍ରରେ ପରିଣତହେଲା । କିନ୍ତୁ ସେହିଦିନଠାରୁ କୃଷ୍ଣନଗରକୁ କେବଳ କାଗଜପତ୍ରରେ କଣାସ ଗ୍ରାମରୁ ପୃଥକ୍ କରିଦିଆଗଲା ସିନା, ଯୁଗ ଯୁଗ ଧରି କଣାସ ଗ୍ରାମର ସାମାଜିକ ଚଳଣିରେ ପ୍ରତିଷ୍ଠିତ ଐକ୍ୟ ଓ ସଂହତି ପ୍ରତି ଏହି କୃତ୍ରିମ ପୃଥକୀକରଣ କୌଣସି ପ୍ରତିବନ୍ଧକ ସୃଷ୍ଟି କରିପାରିଲା ନାହିଁ । ଏବେ ମଧ୍ୟ କୃଷ୍ଣନଗର ନାମଟି ଚଳଣିରେ ଲୋକମୁଖରେ ପଶିପାରି ନାହିଁ ଏବଂ ସାଧାରଣ ଲୋକେ ଉଭୟ କଣାସ ଓ କୃଷ୍ଣନଗରକୁ କେବଳ କଣାସ ବୋଲି ବୁଝନ୍ତି । ବସ୍ତୁତଃ ଏ ଦୁଇଟି ଗାଁକୁ ଏକତ୍ର ସଂଯୋଗ କରୁଥିବା ସ୍ୱୟଂ କୁଞ୍ଜେଶ୍ୱରୀ ଠାକୁରାଣୀ ହିଁ ଦୁଇଟି ଗାଁକୁ ଗୋଟିଏ ନାଁରେ ନାମିତ ଓ ଚିହ୍ନିତ କରାଇବାରେ ମୁଖ୍ୟ ଭୂମିକା ଗ୍ରହଣ କରି ଆସିଛନ୍ତି । ସବୁଠୁ ବଳି ଉଲ୍ଲେଖ୍ୟଯୋଗ୍ୟ ଘଟଣା ଏହି ଯେ, କୁଞ୍ଜେଶ୍ୱରୀ ଠାକୁରାଣୀଙ୍କ ମନ୍ଦିର ପାଖକୁ ଲାଗି କେବଳ ମୁସଲମାନ ପରିବାରଗୁଡ଼ିକଙ୍କ ବାସଗୃହ ରହିଛି । ଅର୍ଥାତ୍ ଯୁଗଯୁଗ ଧରି ରହିଥିବା ମୁସଲମାନ ପରିବାରଗୁଡ଼ିକର ବାସଗୃହ ସଂଲଗ୍ନ ସ୍ଥାନରେ ହିଁ ଆଜିକୁ ୧୭୭ ବର୍ଷ ପୂର୍ବେ ୧୮୧୭ରେ କୁଞ୍ଜେଶ୍ୱରୀ ଠାକୁରାଣୀଙ୍କୁ ପ୍ରତିଷ୍ଠା କରାଯାଇଛି । ବସ୍ତୁତଃ ଏହି ମୁସଲମାନ ପରିବାରଗୁଡ଼ିକ ତଦ୍‌ବଧିକେବଳ କୁଞ୍ଜେଶ୍ୱରୀ ଠାକୁରାଣୀଙ୍କ ପ୍ରତି ସେମାନଙ୍କର ହୃଦୟଗତ ମାନ୍ୟତା ପ୍ରଦର୍ଶନ କରି ଆସି ନାହାନ୍ତି, ନିଜର ଧର୍ମଗତ ନୀତିନିୟମର ନିୟନ୍ତ୍ରଣ ମଧ୍ୟରେ ଆବଦ୍ଧ ଥାଇ ମଧ୍ୟ ସେମାନେ ସାମାଜିକ ଓ ଦୈନନ୍ଦିନ ବ୍ୟବହାରିକ ଚଳଣି ଭିତିରେ ଠାକୁରାଣୀଙ୍କ ଯାନିଯାତ୍ରା ପର୍ବପର୍ବାଣିମାନଙ୍କରେ ଯଥାସମ୍ଭବ ସହଯୋଗ କରିଥାଆନ୍ତି । ସେମାନେ ମାଆ କୁଞ୍ଜେଶ୍ୱରୀଙ୍କୁ ନିଜର ପାରିବାରିକ ଓ ସାମାଜିକ ଚଳଣି ସହିତ ଏପରି ମିଶାଇନେଇଛନ୍ତି ଯେ, ବେଳେ ବେଳେ ଆପଦ ବିପଦରୁ ଉଦ୍ଧାର ପାଇବାପାଇଁ ମାଆ କୁଞ୍ଜେଶ୍ୱରୀଙ୍କୁ ସ୍ମରଣ କରିଥାଆନ୍ତି । ସାହାବାଜ୍ ଖାଁ ବୁଢ଼ା କୁଞ୍ଜେଶ୍ୱରୀଙ୍କ ନାଁ ଶୁଣିବା ମାତ୍ରେ 'ମାଆ' ବୋଲି କହି ଦୁଇ ହାତ ଯୋଡ଼ି ମୁଣ୍ଡରେ ଲଗାଉଥିଲେ । ମା' କୁଞ୍ଜେଶ୍ୱରୀଙ୍କ ସିନ୍ଦୂର ମୁଣ୍ଡରେ ଓ ବେକରେ ଲଗାଇ ମାଆଙ୍କ ଉଦ୍ଦେଶ୍ୟରେ ଦୁଇହାତ ଯୋଡ଼ି ପ୍ରଣାମଜଣାଇ ରାଜୁ ଖାଁ ପାଇକଖେଳ ପ୍ରଦର୍ଶନନିମନ୍ତେ ପାଳି ଉପରକୁ ଯାଉଥିଲା । ଏରଫାନ୍ ମହମ୍ମଦ, ଯିଏ କେବଳ ବଡ଼ମଠକୁ ଛାଡ଼ିଦେଲେ କଣାସ ଗାଁରେ ସବୁଠୁଁ ବଡ଼ ଧନୀ ଥିଲା ଏବଂ ଧର୍ମାଚରଣ ପ୍ରତି ବିଶେଷ ଧ୍ୟାନ ଦେଉ ନ ଥିଲା, ସେ ତ ଦୁଇହଳ ବଳଦଙ୍କୁ ନିଜ ହାତରେ ଆହାର ଖୁଆଇ ଦେବାଯାଏଁ ନିଜେ ଖାଉ ନ ଥିଲା ଏବଂ ବଳଦ ଦେହରେ ଅକସ୍ମାତ୍ ଗୋଡ଼ ବାଜିଗଲେ ହିନ୍ଦୁଙ୍କ ପରି ବଳଦ

ଦେହରେ ହାତ ମାରି ନେଇ ମୁଣ୍ଡରେ ଲଗାଉଥିଲା । ଧର୍ମଧାରଣାରେ କୃଷ୍ଣନଗରର ମୁସଲମାନ ଭାଇଭଉଣୀମାନେ ଯେତେ ଦୂରରେ ଥିଲେ ମଧ୍ୟ କୁଞ୍ଜେଶ୍ୱରୀଙ୍କର ଅତି ନିକଟରେ ।

କୁଞ୍ଜେଶ୍ୱରୀ ମନ୍ଦିରଠାରୁ ମାତ୍ର ଶହେଗଜ ଦୂରରେ ମୁସଲମାନମାନଙ୍କର ଛୋଟ ମସ୍‌ଜିଦ୍‌ଟିଏ ରହିଛି । ମସ୍‌ଜିଦ୍ ଭିତରୁ 'ଆଲ୍ଲା ହୋ ଆକ୍‌ବର' ଧ୍ୱନି ଶୁଭୁଛି, କୁଞ୍ଜେଶ୍ୱରୀ ମନ୍ଦିର ଭିତରୁ ଘଣ୍ଟି ଘଣ୍ଟ କାହାଳି ଧ୍ୱନି ଶୁଭୁଛି ଏବଂ ଏ ଦୁଇଟି ଯାକ ଧ୍ୱନି ଉଭୟ ହିନ୍ଦୁ ଆଉ ମୁସଲମାନ ଭାଇଭଉଣୀମାନଙ୍କ ହୃଦୟ ଭିତରେ ପ୍ରତିଧ୍ୱନିତ ହୋଇ ସତେ ଯେପରି ଆଉ ଏକ ନୈସର୍ଗିକ ଧ୍ୱନିର ତରଙ୍ଗ ସୃଷ୍ଟିକରୁଛି । ତାହାହେଉଛି - ଦୁଇଟି ହୃଦୟ ଭିତରେ ଯୁଗ ଯୁଗ ଧରି ପ୍ରତିଷ୍ଠିତ ହୋଇଆସିଥିବା ସାମାଜିକ ଚଳଣିରେ ଏକତା ବନ୍ଧନର ଏକତାନ୍ ଧ୍ୱନି । ହୃଦୟ ସହିତ ହୃଦୟର ମିଳନ ଭିତ୍ତିରେ ସଖ୍ୟ ଆଉ ସୌହାର୍ଦ୍ଧ୍ୟର ସ୍ୱତଃସ୍ଫୂର୍ତ୍ତ ସଂହତିର ସମତାନ ଧ୍ୱନି । ହିନ୍ଦୁ ଆଉ ମୁସଲମାନ ଭାଇମାନଙ୍କ ମଧ୍ୟରେ ଏପରି ସୌହାର୍ଦ୍ଧ୍ୟ, ଏପରି ସହାବସ୍ଥାନଭିତ୍ତିକ ସଖ୍ୟଭାବର ବିରଳ ଦୃଷ୍ଟାନ୍ତ ନେଇ ମାଆ କୁଞ୍ଜେଶ୍ୱରୀପୀଠ ନିଶ୍ଚିତଭାବେ କଣାସ-କୃଷ୍ଣନଗରକୁ ସମୃଦ୍ଧକରିଛି, ଏହା ଅନସ୍ୱୀକାର୍ଯ୍ୟ ।

ଆଗରୁ କୁହାଯାଇଛି, କଣାସରେ ବଡ଼ ଓ ସାନ ଦୁଇଟି ମଠ ରହିଛି । ବଡ଼ମଠର ଏକ ସୁଦୃଢ଼ ଓ ପ୍ରାଚୀନ ଐତିହାସିକ ଭିତ୍ତିଭୂମି ରହିଛି । ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱକାଳରେ ଖ୍ରୀଷ୍ଟୀୟ ୧୬ଶ ଶତାବ୍ଦୀରେ ସ୍ଥାପିତ ଏହି ମଠର ପ୍ରତିଷ୍ଠାତା ଥିଲେ ଶ୍ରୀ ଚୈତନ୍ୟଦେବଙ୍କର ଜଣେ ପ୍ରମୁଖ ଅନୁଗାମୀ ଗୋସ୍ୱାମୀ ରଘୁନାଥ ଦାସ । ଏ ମଠର ୧୦୮୮ ଏକର ଭୂ ସମ୍ପତ୍ତି ଥିଲା, କିନ୍ତୁ ଏବେ ଆଉ କିଛି ଅଳ୍ପ ରହିଛି । ଏ ମଠର ଦ୍ୱାଦଶ ମହନ୍ତ ସ୍ୱର୍ଗତ ହରେକୃଷ୍ଣ ଦାସଙ୍କ ସମୟରେ ୧୯୪୮ ମସିହାରେ ଓଡ଼ିଶାରେ ହିନ୍ଦୁ ଦେବୋତ୍ତର କମିଶନର ଏହି ମଠକୁ ସର୍ବସାଧାରଣ ମଠ ବୋଲି ଘୋଷଣାକରିବାରୁ ମହନ୍ତ ହରେକୃଷ୍ଣ ଦାସ ଏହା ତାଙ୍କର ଘରୋଇ ମଠ ବୋଲି ଦାବିକରି ପୁରୀ ସବ୍‌ଜଜ ଇଜଲାସ୍‌ରେ ୧୯୪୮-୪୯ର ୯୫/୨୩/୯୬ ନମ୍ବର ଅପିଲ ମୋକଦ୍ଦମା ଦାଏର୍ କରିଥିଲେ । କିନ୍ତୁ ସବ୍‌ଜଜ୍ ଏହି ଅପିଲକୁ ଖାରଜ୍ କରିଦେଇଥିଲେ । ସେବେଠାରୁ ଏ ମଠର ମହନ୍ତ ଦେବୋତ୍ତର କମିଶନରଙ୍କ ନିୟନ୍ତ୍ରଣାଧୀନ ହେରିଡ଼େଟରୀ ଟ୍ରଷ୍ଟି ଭାବେ ମଠ ପରିଚାଳନା କରୁଛନ୍ତି ।

କଣାସ ସାନମଠର ବିଶେଷ କିଛି ଐତିହାସିକ ଗୁରୁତ୍ୱ ନ ଥିଲେ ମଧ୍ୟ ଏହି ମଠର ଦ୍ୱିତୀୟ ମହନ୍ତ ଯୋଗସିଦ୍ଧ ସାଧୁ ପ୍ରେମଦାସଙ୍କୁ ନେଇ ଏହି ମଠ ବିଶେଷ ପ୍ରସିଦ୍ଧି ଲାଭକରିଥିଲା । କୁମ୍ଭଜାନୀ ନାମକ ଜଣେ ଧନୀ ବ୍ୟକ୍ତି ପ୍ରାୟ ୧୬୦ ବର୍ଷ ପୂର୍ବେ ଏଠାରେ 'ରାହାସ ରସିକ' ନାମରେ ଏକ ଦେବବିଗ୍ରହ ପ୍ରତିଷ୍ଠା କରି ଜଣେ ବାବାଜିଙ୍କ ମାର୍ଫତରେ

ଠାକୁରଙ୍କ ନାମରେ ୬୨ ଏକର ଜମି ଖଞ୍ଜିଦେଇଥିଲେ । ସୁତରାଂ କଣାସ ଗ୍ରାମର ଉତ୍ତର ମୁଣ୍ଡରେ କୁଞ୍ଜେଶ୍ୱରୀ ଠାକୁରାଣୀ ଏବଂ ଦକ୍ଷିଣ ମୁଣ୍ଡରେ 'ରାହାସରସିକ'ଙ୍କର ପ୍ରତିଷ୍ଠା ପ୍ରାୟ ସମସାମୟିକ ଥିଲା । କିଛି କାଳ ପରେ 'ରାହାସରସିକ'ଙ୍କର ପୂଜକ ବାବାଜି, ପୁରୀ ପାପୁଡ଼ିଆ ମଠର ମହନ୍ତ ରାମଚନ୍ଦ୍ର ଦାସଙ୍କୁ ସମ୍ପତ୍ତି ସହିତ ଠାକୁରଙ୍କୁ ହସ୍ତାନ୍ତର କରିଦେଲେ । ପାପୁଡ଼ିଆ ମଠ ମହନ୍ତ କିଛିକାଳ ଏହାକୁ ଏକ ଶାଖା ମଠ ଭାବେ ଚଳାଇବା ପରେ ପୁଣି ଏକ ସ୍ୱତନ୍ତ୍ର ମଠର ମର୍ଯ୍ୟାଦା ଦେଇ ନିଜର ଶିଷ୍ୟ ପ୍ରେମଦାସଙ୍କୁ ମହନ୍ତ ଗାଦିରେ ଗାଦିନସୀନ କରିଥିଲେ । ପ୍ରେମଦାସ ମହନ୍ତ ହେବା ପରେ ଲକ୍ଷ୍ମୀନାରାୟଣ, ରାମ, ଲକ୍ଷ୍ମଣ, ସୀତା ଏବଂ ହନୁମାନ ବିଗ୍ରହ ବସାଇ ପୂଜା କଲେ । ଏବେ କେବଳ ଠାକୁରଙ୍କ ବିଜେସ୍ଥଳୀ ଏ୪-୪୮ (ଚାରିଏକର ଅଠଚାଳିଶ ଡେସିମିଲ) 'ରାହାସରସିକ'ଙ୍କ ନାମରେ ଏବଂ ଅବଶିଷ୍ଟ ସମ୍ପତ୍ତି ଲକ୍ଷ୍ମୀନାରାୟଣଙ୍କ ନାମରେ ଅଛି । ମହନ୍ତ ପ୍ରେମଦାସ ତାଙ୍କ ଜୀବଦ୍ଦଶାରେ କଟକ, ଭୁବନେଶ୍ୱର, ମଳିପଡ଼ା ଓ ମୋଟାଗ୍ରାମରେ ନିଜର ଶାଖା ମଠମାନ ପ୍ରତିଷ୍ଠା କରିଥିଲେ । ତା.୧୧।୧।୧୯୮୨ ତାରିଖରେ ପ୍ରେମଦାସଙ୍କର ଦେହାନ୍ତ ବେଳକୁ ତାଙ୍କୁ କୁଆଡ଼େ ୧୪୦ ବର୍ଷ ବୟସ ହୋଇଥିଲା ଏବଂ ସେ ବାର ଗୋଟି କୁମ୍ଭମେଳା ଦେଖିଥିଲେ ବୋଲି କହୁଥିଲେ । କୁହାଯାଏ ଯେ ଥରେ ଏକ କୁମ୍ଭମେଳା ସମୟରେ ଅକସ୍ମାତ ନଦୀରେ ଖୁବ୍ ଉଚ୍ଚ ଢେଉ ଆସିବାରୁ ନଦୀ ଭିତରେ ଥିବା ସାଧୁ ସନ୍ଥ ଓ ଭକ୍ତମାନେ ଉପରକୁ ପଳାଇଯାଇଥିଲେ । କିନ୍ତୁ ପ୍ରେମଦାସ ଧ୍ୟାନମଗ୍ନ ଥିବାବେଳେ ଢେଉ ଆସିଯିବାରୁ ସେ ଉପରକୁ ଉଠି ଆସି ପାରି ନ ଥିଲେ । ତାଙ୍କର ସାଥୀ ସାଧୁମାନେ କୂଳଉପରେ ପ୍ରେମଦାସଙ୍କୁ ନ ଦେଖିବାରୁ ନଦୀ ଭିତରେ ତାଙ୍କର ସଲିଳସମାଧି ହୋଇଗଲା ବା ସେ ବୁଡ଼ିମଲେ ବୋଲି ଧରିନେଲେ । କିନ୍ତୁ କେତେ ସମୟ ପରେ ଢେଉ ଛାଡ଼ିଯିବାରୁ ଦେଖାଗଲା ଯେ ପ୍ରେମଦାସ ଗଭୀର ଧ୍ୟାନମଗ୍ନ ଅଛନ୍ତି ଏବଂ ତାଙ୍କର ଦେହରେ ପାଣି ଲାଗିବାର ଚିହ୍ନ ନାହିଁ । ଏହାପରେ ପ୍ରେମଦାସଙ୍କର ବେଶ୍ ସୁଖ୍ୟାତି ବଢ଼ିଯାଇଥିଲା ଏବଂ ସେ କେତେ ବର୍ଷପାଇଁ ଭାରତ ସାଧୁସମାଜର ସଭାପତିଭାବେ ମନୋନୀତ ହୋଇଥିଲେ ।

ସେ ଯାହାହେଉ, ମହନ୍ତ ପ୍ରେମଦାସ ଜଣେ ଅସାଧାରଣ ଯୋଗ ସାଧକ ଥିଲେ । ସେ ପ୍ରତ୍ୟହ ଅଗ୍ନିକୁଣ୍ଡ ପାଖରେ ବସି ଅନେକ ସମୟ ଧ୍ୟାନମଗ୍ନ ହେଉଥିଲେ । ମାତ୍ର ସାଢ଼େଚାରିଫୁଟ ଉଚ୍ଚ ବାଙ୍ଗରା ମଣିଷଟିଏ । ପତଳା ଶରୀରରେ ହାଡ଼ ଗଣିହୋଇଯାଏ । ମୁଣ୍ଡରେ ଛତା ଆକୃତିର ବିରାଟ ଜଟାବୋଝ । ଅଣ୍ଟାରେ ବେଙ୍କାଏ ମୋଟ ଦଉଡ଼ି ଡୋର । ଛାତିରେ ହାତକଟଟି ମୋଟାର ତୁଳସୀମାଳି । ଅଥଚ ସେଇଥିରେ ସେ ଡଗଡଗ ହୋଇ କ୍ଷିପ୍ର ଗତିରେ ଚାଲୁଥିଲେ । ସେ ଚାଲିଲାବେଳେ ତାଙ୍କ ସାଥୀଲୋକଙ୍କୁ ଦୌଡ଼ିବାକୁ ପଡୁଥିଲା । ସାଧୁସନ୍ଥଙ୍କ ମେଳରେ ସେ ସାରା ଭାରତବର୍ଷ ବହୁବାର ବୁଲି ପ୍ରାୟ ସବୁ ତୀର୍ଥ ପର୍ଯ୍ୟଟନ

କରିଥିଲେ । ସେ ମଧ୍ୟ ଅସାଧାରଣ ଆଧ୍ୟାତ୍ମିକ ଯୋଗଶକ୍ତିର ଅଧିକାରୀ ଥିଲେ । ସେହି କାରଣରୁ ବହୁଲୋକ ରୋଗ ଓ ବିପତ୍ତିରୁ ରକ୍ଷା ପାଇବାପାଇଁ ତାଙ୍କର ଆଶୀର୍ବାଦ ଭିକ୍ଷାକରୁଥିଲେ । ସେ ଟିକିଏ ଫୁଙ୍କିଦେଲେ ଅଥବା ଆଙ୍ଗୁଠିରେ ଫୁଟ୍‌କି ମାରି ଝାଡ଼ିଦେଲେ ଶିଶୁମାନେ ରୋଗମୁକ୍ତ ହୋଇଯାଉଥିଲେ । ଏହିପରି ଅଲୌକିକ ଯୋଗଶକ୍ତିର ଅଧିକାରୀ ଥିବାରୁ ତାଙ୍କର ଓଡ଼ିଶା ଏବଂ ଓଡ଼ିଶା ବାହାରେ ବହୁ ଶିଷ୍ୟ ଥିଲେ । ଓଡ଼ିଶାର ନୟାଗଡ଼, ଖଣ୍ଡପଡ଼ା, ଦଶପଲ୍ଲା, ନରସିଂହପୁର ଆଦି ବହୁ ଗଡ଼ଜାତ ରାଜ୍ୟର ରାଜା ଓ ରାଣୀମାନେ ମଧ୍ୟ ତାଙ୍କର ଶିଷ୍ୟତ୍ୱ ଗ୍ରହଣକରିଥିଲେ । କିନ୍ତୁ ଏପରି ଜଣେ ଭାରତ ପ୍ରସିଦ୍ଧ ସାଧୁ ଶତାଧିକ ବର୍ଷ ଧରି ସ୍ୱଦେହରେ କଣାସରେ ଅବସ୍ଥାନକରୁଥିଲେ, ଏହା ହୁଏତ ଅନେକଙ୍କୁ ଅଗୋଚରଥିଲା । ତା'ର କାରଣ ଏହି ଯେ, ମହନ୍ତ ପ୍ରେମଦାସ ଅତ୍ୟନ୍ତ ସରଳ, ନିରାଡ଼ମ୍ବର ଏବଂ ଆତ୍ମପ୍ରଚାର ବିମୁଖଥିଲେ । ନିଜ ସମ୍ପର୍କରେ ସେ ପ୍ରାୟତଃ କିଛି କହୁ ନ ଥିଲେ ଏବଂ ନିଜର ଅସାଧାରଣ ଯୋଗଶକ୍ତିକୁ ସେ ପ୍ରଚାରଧର୍ମୀ ନ କରାଇ ଯଥା ସମ୍ଭବ ନିଜ ଭିତରେ ହିଁ ଆବଦ୍ଧ କରି ରଖିଥିଲେ । ଏପରି ଜଣେ ମହାତ୍ମାଙ୍କର ଶତାଧିକ ବର୍ଷ ଧରି କଣାସରେ ଅବସ୍ଥାନ ହେତୁ କଣାସ ଅଞ୍ଚଳ ଯେ ଧନ୍ୟ ହୋଇଛି, ଏଥିରେ ସନ୍ଦେହ ନାହିଁ ।



## ପରିଶିଷ୍ଟ-୧

# ବାଣପୁରବିଦ୍ରୋହ ବା ପଞ୍ଚୁଆଫଟୁରି

୧୮୧୭ ଖୋର୍ଦ୍ଧା ପାଇକବିଦ୍ରୋହର ପ୍ରଥମ ଅଗ୍ନିସ୍ଫୁଲିଙ୍ଗ ଦେଖା ଦେଇଥିଲା ଖୋର୍ଦ୍ଧାରାଜ୍ୟର ଦକ୍ଷିଣସୀମାନ୍ତ ବାଣପୁରରେ । ଇଂରେଜମାନେ ୧୮୦୩ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ଅଧିକାର କରିବାର ପ୍ରାୟ ଚାଳିଶ ବର୍ଷପୂର୍ବରୁ ଗଞ୍ଜାମଜିଲ୍ଲା ଇଂରେଜ ଶାସନାଧୀନ ହୋଇସାରିଥିଲା । ଗଞ୍ଜାମଜିଲ୍ଲାର ଘୁମୁସର ରାଜବଂଶର 'ଭଞ୍ଜ' ରାଜାମାନେ ବିଦେଶୀ ଇଂରେଜଶାସନକୁ ସହଜରେ ଗ୍ରହଣ କରିପାରୁ ନ ଥିଲେ । ସେହି ରାଜ୍ୟର କନ୍ଧ ପ୍ରଜାମାନେ ମଧ୍ୟ ରାଜାଙ୍କପ୍ରତି ଆନୁଗତ୍ୟ ଅତୁଟ ରଖିଥିବାରୁ ମଧ୍ୟେ ମଧ୍ୟେ ଇଂରେଜ ଶାସନ ବିରୋଧରେ ବିଦ୍ରୋହ କରୁଥିଲେ ଏବଂ ମେଳିବାନ୍ଧି ବାଣପୁର ସୀମାନ୍ତ ଗାଁ ମାନଙ୍କରେ ଲୁଟ୍‌ତରାଜ୍, ହତ୍ୟା, ଗୃହଦାହ ଇତ୍ୟାଦି ଅରାଜକତା ସୃଷ୍ଟି କରୁଥିଲେ । ଇଂରେଜମାନେ ୧୮୦୪ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧାରାଜ୍ୟ ଅଧିକାର କଲାପରେ ଖୋର୍ଦ୍ଧାର ପାଇକ, ପାଇକ ସର୍ଦ୍ଦାର ଓ ଦଳବେହେରାମାନଙ୍କ ଜାଗିରି ଉଚ୍ଛେଦକରି ସେମାନଙ୍କୁ ଯେଉଁଭଳି ଅକଥନୀୟ ଆର୍ଥିକ ଦୁର୍ଗତି ଓ ନିର୍ଯାତନା ଭିତରକୁ ଠେଲିଦେଲେ ସେଥିପାଇଁ ସେମାନଙ୍କଭିତରେ ଇଂରେଜ ଶାସନପ୍ରତି ଅସନ୍ତୋଷର ନିଆଁ କୁହୁଳୁଥିଲା । ଖୋର୍ଦ୍ଧା ରାଜ୍ୟର ସେନାପତି ବକ୍ସି ଜଗବନ୍ଧୁବିଦ୍ୟାଧର ଓ ଦେୱାନ୍ କୃଷ୍ଣଚନ୍ଦ୍ର ଭ୍ରମରବରରାୟ ଇଂରେଜ ସରକାରଙ୍କର ଜଘନ୍ୟ ଷଡ଼ଯନ୍ତ୍ରର ଶିକାରହୋଇ ସର୍ବସ୍ୱାନ୍ତ ହୋଇଯିବାଫଳରେ ଶୃଙ୍ଖଳାବଦ୍ଧ ଡୋକିଲା ଶାର୍ଦ୍ଦୂଳଙ୍କପରି ସୁବିଧା ପାଇଲେ ଶୃଙ୍ଖଳ ଛିଣ୍ଡାଇ ଇଂରେଜ ଶାସନ ଉପରକୁ ଲମ୍ଫପ୍ରଦାନପାଇଁ ଭିଡ଼ିଓଟାରି ହେଉଥିଲେ । ସେତିକିବେଳେ ବାଣପୁର ସୀମାନ୍ତ ଘୁମୁସର ରାଜ୍ୟର ଚାରିଶହ କନ୍ଧ ମେଳିବାନ୍ଧି ବାଣପୁର ସୀମାନ୍ତଅଞ୍ଚଳର ଗାଁଗୁଡ଼ିକ ଉପରେ ଅଚାନକ ଚଢ଼ାଉକରି ଲୁଟତରାଜ ଓ ଗୃହଦାହ ଭଳି ଅରାଜକ ପରିସ୍ଥିତି ସୃଷ୍ଟି କରିଦେଲେ । ବାଣପୁର ଅଞ୍ଚଳର ପାଇକ, ପାଇକ ସର୍ଦ୍ଦାର ଓ ଦଳବେହେରାମାନେ ମାତ୍ର ୧୪ ବର୍ଷର ଇଂରେଜ ଶାସନରେ

ସେମାନଙ୍କର ପୁରୁଷାନୁକ୍ରମିକ ନିଷ୍କର ଜାଗିରି ସହିତ ସର୍ବସ୍ୱ ହରାଇ ଇଂରେଜ ଶାସନରୁ ମୁକୁଳିବାପାଇଁ ରାହା ଖୋଜୁଥିଲେ; ତେଣୁ ସେମାନେ ଘୁମୁସର କନ୍ଧମାନଙ୍କ ମେଳିରେ ସାମିଲ ହୋଇଗଲେ ଏବଂ ବାଣପୁରରେ ଅଚାନକ ବିପ୍ଳବର ଝଡ଼ ସୃଷ୍ଟି କରିଦେଲେ । ସେ ଝଡ଼ରେ ଇଂରେଜ ଶାସନର ଲୌହଶୃଙ୍ଖଳ ଛିଣ୍ଡି ଛିନଛତ୍ର ହୋଇଗଲା । ଛାତି ଉପରେ ମାଡ଼ି ବସିଥିବା ଦୁଃଶାସନର ଦୁଃସହମୁଷ୍ଟି ପ୍ରହାରରୁ ନିଜକୁ ମୁକୁଳାଇବାକୁ ଛାଟିପିଟି ହେଉଥିବା ଭୀମର ଦେହରେ ଶ୍ରୀକୃଷ୍ଣଙ୍କ ପାଞ୍ଚଜନ୍ୟନିଃସୃତ ଶତଶୃଙ୍ଗ ଧ୍ୱନି ଶତସିଂହର ବଳ ସଞ୍ଚାର କଲାଭଳି ଅତ୍ୟାଚାରୀ ବ୍ରିଟିଶ ଶାସନତଳେ ଚାପିହୋଇ ଅଣନିଃଶ୍ୱାସୀ ହୋଇ ପଡ଼ିଥିବା ବକ୍ସି ଜଗବନ୍ଧୁ ଓ ଦେବାନ କୃଷ୍ଣଚନ୍ଦ୍ରଙ୍କପାଇଁ ବାଣପୁର ବିପ୍ଳବର ଧ୍ୱନି ଶତସିଂହର ବଳ ଆଣିଦେଲା । ସେ ଦୁହେଁ ତତ୍‌କ୍ଷଣାତ୍ ପରିସ୍ଥିତିର ପୂର୍ଣ୍ଣ ସୁଯୋଗନେଇ ସେହି ବିପ୍ଳବର ନେତୃତ୍ୱ ନେଲେ । ସେଇ ବାଣପୁରରେ ହିଁ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପରିଚାଳିତ ଐତିହାସିକ ପାଇକବିଦ୍ରୋହର ପ୍ରଥମ ଅଗ୍ନିକଣା ପ୍ରଚଣ୍ଡ ବନାଗ୍ନି ରୂପଧରି ଦାଉଦାଉହୋଇ ଜଳିଉଠିଲା । ବିଦ୍ରୋହୀମାନଙ୍କଦ୍ୱାରା ବାଣପୁର ଖଜଣା-ଖାନାରୁ ୧୫୦୦୦/- ଟଙ୍କା ଲୁଟି ହୋଇଗଲା । ବାଣପୁରରେ ଥାନା ସମେତ ସମସ୍ତ ସରକାରୀ କୋଠାବାଡ଼ି ଭସ୍ମୀଭୂତ ହୋଇଗଲା । ଚାହୁଁ ଚାହୁଁ ଛତ୍ରଗଡ଼ଠାରୁ ଦାରୁଠେଙ୍ଗ ପର୍ଯ୍ୟନ୍ତ ଏବଂ ପାଞ୍ଚଗଡ଼ଠାରୁ ପୁରୁଷୋତ୍ତମ କ୍ଷେତ୍ର ପର୍ଯ୍ୟନ୍ତ ସମସ୍ତ ଖୋର୍ଦ୍ଧାରାଜ୍ୟକୁ ବିଦ୍ରୋହ ଭୟଙ୍କର ବେଗରେ ବ୍ୟାପିଗଲା । କଟକର କୁଜଙ୍ଗରେ ମଧ୍ୟ ବିଦ୍ରୋହର ନିଆଁ ଜଳିଉଠିଲା । ଖୋର୍ଦ୍ଧା, ପିପିଲି, ପୁରୀ ସବୁଠାରେ ବିଦ୍ରୋହୀମାନେ ଆସ୍ଥାନ ଜମାଇ ଇଂରେଜମାନଙ୍କୁ ଘଉଡ଼ାଇ-ଦେଲେ, ସରକାରୀ କୋଠାବାଡ଼ି ପୋଡ଼ିଦେଲେ, ଖଜଣାଖାନା ଲୁଟିନେଲେ । ବିଦ୍ରୋହ ଦମନ କରିବାକୁ କଟକରୁ କଲେକ୍ଟର ଇମ୍ପି ସାହେବ ସୈନ୍ୟବଳ ସହ ଆସି ଗଙ୍ଗପଡ଼ା-ଠାରେ ବିଦ୍ରୋହୀମାନଙ୍କ ଆକ୍ରମଣର ସମ୍ମୁଖୀନ ହୋଇ ନ ପାରି କଟକ ଫେରିଗଲେ । ବିଦ୍ରୋହୀମାନେ ଗଙ୍ଗପଡ଼ାଠାରେ ଅପ୍ରେଲ ୩ ତାରିଖରେ କ୍ୟାପ୍ଟେନ୍ ଫେରିସ୍‌ଙ୍କୁ ହତ୍ୟାକଲେ । ତା'ପରେ ଇଂରେଜ ସରକାର ଅତି କଠୋର ପନ୍ଥାରେ ବିଦ୍ରୋହକୁ ଦମନ କଲେ । ଅପ୍ରେଲ ୧୮ ତାରିଖରେ କ୍ୟାପ୍ଟେନ୍ ଲି.ଫାବ୍ରେ ଦୋବନ୍ଧାଠାରେ ଘାଟୀ କରିଥିବା ହଜାର ହଜାର ପାଇକଙ୍କ ଉପରେ ୫୫୦ ଜଣ ବନ୍ଧୁକଧାରୀ ସୈନ୍ୟଙ୍କ ଦ୍ୱାରା ଆଖିବୁଜା ଗୁଳି ଚଳାଇବା ଫଳରେ କେତେ ମଲେ, କେତେ ଦରମରାହେଲେ, କେତେ ଖଣ୍ଡିଆ ଖାବରା ହୋଇ ଅକାମୀ ହୋଇପଡ଼ିଲେ ତା'ର ହିସାବ କେହି ରଖି ନାହାନ୍ତି । ୧୮୧୭ ଅପ୍ରେଲ ମାସ ୨୦ ତାରିଖରେ ଫାବ୍ରେ ପୁରୀ ବାଲିସାହି ନଅରରୁ ମୁକୁନ୍ଦଦେବଙ୍କୁ ବନ୍ଦିକରି ନେଲେ । ଖୋର୍ଦ୍ଧା ପାଇକ ବିଦ୍ରୋହରେ ଭାଗନେଇଥିବା ପାଇକ ସର୍ଦ୍ଦାରମାନଙ୍କ ମଧ୍ୟରୁ ୯ ଜଣଙ୍କୁ ୧୪ ବର୍ଷ ସଶ୍ରମ କାରାଦଣ୍ଡ, ୧୦୩ ଜଣଙ୍କୁ ଦ୍ୱୀପାନ୍ତର ଦଣ୍ଡ, ୨୫ ଜଣଙ୍କୁ ମେଦିନୀପୁରରେ ନିର୍ବାସନ କାରାଦଣ୍ଡ ଓ ଆଉ ୪ ଜଣଙ୍କୁ ଯାବଜ୍ଜୀବନ ସଶ୍ରମ କାରାଦଣ୍ଡ

ଦିଆଯାଇଥିଲା । କିନ୍ତୁ ଯେଉଁମାନେ ବ୍ରିଟିଶସୈନ୍ୟଙ୍କ ଗୁଳିମାଡ଼ରେ ପ୍ରାଣ ହରାଇଥିଲେ ବା ଯେଉଁମାନଙ୍କୁ ରାଜଦ୍ରୋହ ଅପରାଧରେ ପ୍ରାଣଦଣ୍ଡ ଦିଆଯାଇଥିଲା ସେମାନଙ୍କର ସଠିକ୍ ସଂଖ୍ୟା ନାହିଁ ।

ପାଇକବିଦ୍ରୋହ ପ୍ରଶମିତ ହେବାପରେ ଦୀର୍ଘ ଆଠ ବର୍ଷକାଳ ବକ୍ସିଙ୍କ ଆତ୍ମଗୋପନ ଫଳରେ ଯେଉଁ ପରିସ୍ଥିତିରେ ଇଂରେଜ ସରକାର ୧୮୨୫ରେ ବକ୍ସିଙ୍କ ବ୍ୟକ୍ତିତ୍ୱ ଓ ପ୍ରତିଷ୍ଠାପ୍ରତି ସମ୍ମାନ ଜଣାଇ ତାଙ୍କୁ କଟକରେ ଥଇଥାନ କରି ରଖାଇଥିଲେ ସେ ସମ୍ପର୍କରେ ୧ମ ଭାଗ ୫ମ ଅଧ୍ୟାୟରେ ବିସ୍ତୃତ ଆଲୋଚନା କରାଯାଇଛି ।

୧୮୨୯ ଖ୍ରୀଷ୍ଟାବ୍ଦ ଜାନୁଆରୀ ୨୪ ତାରିଖରେ କଟକରେ ବକ୍ସିଙ୍କର ମୃତ୍ୟୁ ହେଲା । ତାପରେ ଇଂରେଜ ସରକାର ବକ୍ସିଙ୍କ ରୋଡ଼ଙ୍ଗ ଜମିଦାରୀକୁ ତାଙ୍କ ପୁଅ ଗୋପୀନାଥ ବିଦ୍ୟାଧରଙ୍କୁ ଫେରାଇଦେଲେ ଓ ଗୋପୀନାଥ ଆସି ରୋଡଙ୍ଗଗଡ଼ରେ ରହିଲେ ।

କିନ୍ତୁ ବକ୍ସିଙ୍କ ମୃତ୍ୟୁପରେ ମଧ୍ୟ ଖୋର୍ଦ୍ଧାର ପାଇକ ସର୍ଦ୍ଦାରମାନେ ମଝିରେ ମଝିରେ ଇଂରେଜଶାସନ ବିରୋଧରେ ବିଦ୍ରୋହ କରୁଥିଲେ । ୧୮୨୭ରେ ତାପଙ୍ଗଗଡ଼ର ଦଳବେହେରା ମାଧବଚନ୍ଦ୍ର ରାଉତରାୟଙ୍କ ବିଦ୍ରୋହ ଫଳରେ ଇଂରେଜ ସୈନ୍ୟଙ୍କୁ ତାଙ୍କ ସହିତ ଯୁଦ୍ଧ କରିବାକୁ ପଡ଼ିଥିଲା । ସେହି ସମୟରେ ମଧ୍ୟ ମାଣତ୍ରୀଗଡ଼ର ଦଳବେହେରା ବିଦ୍ରୋହ କରି ଇଂରେଜ ସରକାରଙ୍କ ଦ୍ୱାରା ନଅ ବର୍ଷକାଳ ବନ୍ଦି ହୋଇଥିଲେ । ସେହିପରି ୧୮୧୭ ପାଇକବିଦ୍ରୋହର ଦୀର୍ଘ ୧୯ ବର୍ଷପରେ ୧୮୩୬ ଖ୍ରୀଷ୍ଟାବ୍ଦରେ ପୁଣିଥରେ ବାଣପୁରରେ ଅରାଙ୍ଗଗଡ଼ର ଦଳବେହେରା କୃତ୍ତିବାସ ପାଟସାହାଣୀ ଇଂରେଜ ସରକାର ବିରୋଧରେ ବିଦ୍ରୋହ ସୃଷ୍ଟିକରି ତିନି ଦିନପାଇଁ ବାଣପୁରକୁ ଇଂରେଜ ଶାସନରୁ ମୁକ୍ତକରି ବାଣପୁରର ସ୍ୱାଧୀନତା ଘୋଷଣା କରିଥିଲେ ।

ସ୍ୱର୍ଗତ ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ତାଙ୍କର 'ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଇତିହାସ' ଶୀର୍ଷକ ପୁସ୍ତକରେ ବାଣପୁର ବିଦ୍ରୋହ ବା ପଞ୍ଚୁଆଫତୁରି ସମ୍ପର୍କରେ ବିସ୍ତୃତ ବିବରଣୀ ପ୍ରଦାନ କରିଛନ୍ତି । ରୋଡଙ୍ଗଗଡ଼ର ପଞ୍ଚାନନ ନାୟକ (ଡାକ ନାମ ପଞ୍ଚୁଆ) ତିନି ଦିନ ବ୍ୟାପୀ ବିଦ୍ରୋହ ସମୟରେ ବାଣପୁରର ରାଜା ହୋଇଥିବାରୁ ସେ ବିଦ୍ରୋହକୁ ଲୋକେ 'ପଞ୍ଚୁଆ ଫତୁରି' ଆଖ୍ୟା ଦେଇଥିଲେ ।

ବାଣପୁରର ମଧୁ ବିଶୋଇ ଖୋର୍ଦ୍ଧା ପାଇକବିଦ୍ରୋହରେ ବକ୍ସିଙ୍କର ଜଣେ ସହଯୋଗୀ ବିଦ୍ରୋହୀ ଥିଲେ ଏବଂ ୧୮୨୫ରେ ବକ୍ସିଙ୍କ ଆତ୍ମପ୍ରକାଶ ପରେ ସେ ମଧ୍ୟ ଆତ୍ମପ୍ରକାଶକରି ଆସି ନିଜ ଗ୍ରାମରେ ରହିଥିଲେ । ତାଙ୍କର ଦୁଇ ପୁଅ ଲୋଚନ ବିଶୋଇ, ଶିବ ବିଶୋଇ ଓ ଅରାଙ୍ଗ ଦଳବେହେରା ଶ୍ୟାମସୁନ୍ଦର ପାଟସାହାଣୀଙ୍କ ପୁଅ କୃତ୍ତିବାସ ପାଟସାହାଣୀ, 'ପଞ୍ଚୁଆଫତୁରି'ର ମୁଖ୍ୟ ନାୟକ ଥିଲେ । ୧୮୩୬ ଜୁନ୍‌ମାସ ୧ ତାରିଖରେ ଅରାଙ୍ଗରେ

କୃତ୍ତିବାସ ପାଟସାହାଣୀ, ଲୋଚନ ବିଶୋଇ, ଶିବ ବିଶୋଇ, ପଞ୍ଚାନନ ନାୟକ, ସାଧୁ ଜାନି, ଦୀନା ଜାନି ପ୍ରଭୃତି ବିଦ୍ରୋହୀ ନେତାମାନେ ଏକ ବୈଠକରେ ମିଳିତ ହୋଇ ବାଣପୁରକୁ ଇଂରେଜ ଶାସନରୁ ମୁକ୍ତ କରିବାକୁ ସିଦ୍ଧାନ୍ତ ନେଲେ ଏବଂ ସେହି ବୈଠକରେ ରୋଡଙ୍ଗ ବକ୍ସିଙ୍କ ଅନୁରୂପେ ପଞ୍ଚାନନ ନାୟକଙ୍କୁ ବିଦ୍ରୋହର ନେତା ରୂପେ ମନୋନୀତ କରାଗଲା । ସେହି ବୈଠକରେ ହିଁ ବାଣପୁରକୁ ସ୍ୱାଧୀନ ରାଜ୍ୟ ଏବଂ ପଞ୍ଚାନନଙ୍କୁ ବାଣପୁରର ରାଜା 'ଶରଣସିଂହ' ବୋଲି ଘୋଷଣା କରାଗଲା । କୃତ୍ତିବାସ ପାଟସାହାଣୀ ରାଜା ଶରଣସିଂହଙ୍କର ପ୍ରଧାନମନ୍ତ୍ରୀ ତଥା ସେନାପତି ହେଲେ ଏବଂ ପ୍ରବଳ ଆନନ୍ଦ ଓ ଉନ୍ମାଦନା ଭିତରେ ରାଜା ଓ ସେନାପତିଙ୍କର ଶାଢ଼ୀବନ୍ଧା ଉତ୍ସବ ସମାହିତ ହେଲା ।

ଜୁନ୍ ୪ ତାରିଖ ରାତିରେ ରାଜା ଶରଣସିଂହ, ସେନାପତି କୃତ୍ତିବାସ ପାଟସାହାଣୀ ଓ ସର୍ଦ୍ଦାର ଲୋଚନ ବିଶୋଇ ତାଙ୍କର କନ୍ଧ ପାଇକଫୌଜଧରି ଅରାଙ୍ଗରୁ ବାଣପୁର ଅଭିଯାନ ଆରମ୍ଭକଲେ । ସେମାନଙ୍କ ସହିତ ଆଖାପାଖ ଗାଁର ପାଇକ ଓ ଦଳବେହେରାମାନେ ମଧ୍ୟ ବିପୁଳ ଉତ୍ସାହ ଉଦ୍ଦୀପନାରସହିତ ଯୋଗଦେଲେ । ଶହ ଶହ ବିଦ୍ରୋହୀ ପାହାନ୍ତାବେଳକୁ ବାଣପୁର ନିକଟରେ ରୁଣ୍ଡ ହେଲେ । ୫ ତାରିଖ ରବିବାର ସକାଳୁ ବିଦ୍ରୋହୀମାନେ ହଜାର ହଜାର ସଂଖ୍ୟାରେ ମେଳିହୋଇ ବାଣପୁର ସହରରେ ପଶିଲେ, ସରକାରୀ ପକ୍ଷ ଲୋକଙ୍କ ଘର ପୋଡ଼ି ଲୁଟପାଟ କଲେ । ଏମାନଙ୍କ ସଂଖ୍ୟା ବହୁତ ଥିବାରୁ ଥାନା ପୋଲିସ ଓ ସରକାରୀ ଲୋକେ ବାଣପୁର ଛାଡ଼ି ବରକୁଳକୁ ପଳାଇଲେ । ବିଦ୍ରୋହୀମାନେ ଖଜଣାଖାନା ଲୁଟିକଲେ, ଥାନା ଓ ଲୁଣ ଫାଣ୍ଡିରେ ନିଆଁ ଲଗାଇଦେଲେ । ସହରର ଧନୀ ବ୍ୟବସାୟୀମାନଙ୍କ ଘରେ ପଶି ଲୁଟପାଟ କଲେ । ବିଦ୍ରୋହୀମମାନଙ୍କ ମଧ୍ୟରୁ କେତେକ ଦଳବାନ୍ଧି ନିକଟସ୍ଥ ଗ୍ରାମମାନଙ୍କରେ ମଧ୍ୟ ଲୁଟପାଟ କଲେ । ଦିପହରବେଳକୁ ବାଣପୁରରେ ସମ୍ପୂର୍ଣ୍ଣ ଅରଜକତା ସୃଷ୍ଟିକରି ଯାଇ ଭେଟେସ୍ୱରଠାରେ ରୁଣ୍ଡହେଲେ । ସେହିଠାରୁ ରାଜା ଶରଣସିଂହ ବାଣପୁର ଅଞ୍ଚଳର ସବୁ ଦଳେଇ ଦଳବେହେରାମାନଙ୍କ ନାଁରେ ପରୱାନା ପଠାଇ ସେମାନେ ନିଜ ନିଜ ପାଇକ ବାହିନୀ ସହ ରସଦ ଇତ୍ୟାଦି ପଠାନ୍ତୁ ବୋଲି ହୁକୁମନାମା ଜାରିକଲେ । ପ୍ରଧାନ ପ୍ରଧାନ ଲୋକଙ୍କଠାରୁ ମଧ୍ୟ ଅସ୍ତ୍ରଶସ୍ତ୍ର ଏବଂ ଗୋଳାବାରୁଦ ସଂଗ୍ରହପାଇଁ ମାଗଣ ଆଦାୟ କରାଗଲା । ରାଜା ଶରଣସିଂହଙ୍କୁ ପାଲିଙ୍କିରେ ଏବଂ ସେନାପତି କୃତ୍ତିବାସ ପାଟସାହାଣୀଙ୍କୁ ଘୋଡ଼ାରେ ବସାଇ ବିଦ୍ରୋହୀମାନେ ଗାଁ ଗାଁ ବୁଲି ମାଗଣ ଆଦାୟ କଲେ ।

ସୋମବାର ଦିପ୍ରହରବେଳକୁ ବିଦ୍ରୋହୀମାନେ ବରକୁଳ ଅଭିଯାନରେ ବାହାରିଲେ । ଏ ଖବର ପାଇ ବରକୁଳରେ ଆଶ୍ରୟ ନେଇଥିବା ପୋଲିସ୍ ଓ ସରକାରୀ କର୍ମଚାରୀମାନେ ସନ୍ଧ୍ୟା ପୂର୍ବରୁ ବରକୁଳ ଛାଡ଼ି ପଳେଇଲେ । ବିଦ୍ରୋହୀମାନେ ବରକୁଳ ଆଖପାଖ କେତୋଟି ଗାଁରେ ପଶି ସୋମବାର ରାତିରେ ଲୁଟପାଟ ଚଳାଇଲେ ।

ବିଦ୍ରୋହୀମାନଙ୍କ ଦ୍ୱାରା ସଙ୍ଗଠିତ ଅରାଜକତାହେତୁ ସାଧାରଣ ଲୋକେ ଅତ୍ୟନ୍ତ ଭୀତତ୍ରସ୍ତ ଓ ଆତଙ୍କିତ ହୋଇପଡ଼ିଥିଲେ; ବିଶେଷତଃ ଧନୀ ଜମିଦାରମାନେ ନିଜ ନିଜର ଧନ ଜୀବନକୁ ନିରାପଦ ନ ମଣି ବିଦ୍ରୋହୀମାନଙ୍କୁ ଧରାଇଦେବାପାଇଁ ଏକ କୌଶଳ କଲେ। ସେମାନେ ରାଜା ଶରଣସିଂହଙ୍କୁ ପ୍ରସ୍ତାବ ଦେଲେ ଯେ ରାଜା ଯଦି ଟାଙ୍ଗିଥାନା ଆକ୍ରମଣ ଉଦ୍ଦେଶ୍ୟରେ ପାଇକମାନଙ୍କ ସହ ଭୀମପୁରଠାରେ ପହଞ୍ଚିବେ ତା ହେଲେ ସବୁ ଧନୀ ଜମିଦାରମାନେ ସେଠାରେ ରାଜାଙ୍କୁ ସମ୍ବର୍ଦ୍ଧନା ଜଣାଇ ପ୍ରଚୁର ଅସ୍ତ୍ରଶସ୍ତ୍ର ଗୋଳା ବାରୁଦ ଯୋଗାଇଦେବେ। ଏଥିରେ ଉତ୍ସାହିତ ହୋଇ ବିଦ୍ରୋହୀମାନେ ଭୀମପୁରଠାରେ ରୁଣ୍ଡହୋଇ ପଂକ୍ତିଭୋଜନ କରୁଥିବାବେଳେ ବିଦ୍ରୋହ-ବିରୋଧୀ ଲୋକେ ସେମାନଙ୍କ ଅସ୍ତ୍ର ଶସ୍ତ୍ର ସବୁ ଲୁଚାଇ ନେଇଗଲେ ଏବଂ ଖାଇବା ପତ୍ର ପାଖରେ ବିଦ୍ରୋହୀ ନେତାମାନଙ୍କୁ ବାନ୍ଧି ପକାଇ ସରକାରୀ ଫଉଜ ହାତରେ ଦେଇଦେଲେ। ନେତାମାନେ ବନ୍ଧାହୋଇ ଯିବାରୁ ସେମାନଙ୍କ ଅନୁଗାମୀମାନେ କିଏ କୁଆଡ଼େ ପଳେଇଯାଇ ଜଙ୍ଗଲରେ ଲୁଚିଲେ।

କିନ୍ତୁ ବାଣପୁରର ଜଣେ ବିଶିଷ୍ଟ ସମାଜସେବୀ ୧୯୬୧ରେ ନିର୍ବାଚିତ ବାଣପୁର ବ୍ଲକ୍‌ର ପ୍ରଥମ ଚେୟାରମ୍ୟାନ୍ ଓ ପରେ ପୁରୀ ଜିଲ୍ଲାପରିଷଦର ଭାଇସ୍‌ଚେୟାରମ୍ୟାନ୍ ସ୍ୱର୍ଗତ ପରଶୁରାମ ହରିଚନ୍ଦନ, ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ପୂର୍ବରୁ 'କୃତ୍ତିବାସ ପାଟଶାଣୀ' ଶୀର୍ଷକ ଏକ ଐତିହାସିକ କିମ୍ବଦନ୍ତୀମୂଳକ ନିବନ୍ଧ ଲେଖିଥିଲେ ଓ ତାହା ୧୯୪୮ ମସିହାରେ 'ଝଙ୍କାର' ମାସିକ ପତ୍ରିକାର ପ୍ରଥମ ବର୍ଷ ୧୨ଶ ସଂଖ୍ୟାରେ ପ୍ରକାଶିତ ହୋଇଥିଲା। ସେହି ନିବନ୍ଧରେ କୃତ୍ତିବାସ ପାଟଶାଣୀଙ୍କୁ ତାଙ୍କ ଶଶୁର ଭୀମପୁର ଦଳବେହେରା ବାସୁଦେବ ନରେନ୍ଦ୍ର ସିଂହ ବ୍ରିଟିଶ ହାତରେ ଧରାଇ ଦେଇଥିଲେ ବୋଲି ସେ ଲେଖିଛନ୍ତି। କୃତ୍ତିବାସ ପାଟଶାଣୀଙ୍କର ଅନ୍ୟତମ ପ୍ରଧାନ ସହଯୋଗୀ ବିଦ୍ରୋହୀ ନେତା ଲୋଚନ ବିଶୋଇ ସମ୍ପର୍କରେ ସେ ଲେଖିଛନ୍ତି 'କନ୍ଧସର୍ଦ୍ଦାର ଲୋଚନା ଏବଂ ବାଣପୁର ଓ ଘୁମୁଷରର ଦୁର୍ଦ୍ଧର୍ଷ କନ୍ଧ ପାଇକବାହିନୀ ଯୁଦ୍ଧରେ ଯୋଗଦେଲେ। ଏଇ କନ୍ଧସର୍ଦ୍ଦାର ଲୋଚନାର ବିଶ୍ୱସ୍ତତା ଇତିହାସରେ ଦୁର୍ଲଭ। ଦେହରେ ତାର ହାତୀର ବଳ, ଛାତିରେ ସିଂହର ସାହସ, ଧନୁର୍ବିଦ୍ୟାରେ ସେ ଅସାମାନ୍ୟ ଲଘୁହସ୍ତତା ଅର୍ଜନ କରିଥିଲା। ଏହାଛଡ଼ା ସେ ଗୁଣିବିଦ୍ୟାରେ ବଡ଼ ଧୁରନ୍ଧର ଥିଲା ବୋଲି କଥିତ ଅଛି। ଗୁଣିବଳରେ ସେ ନିଜେ ବଡ଼ ଅକାଟ ଥିଲା ଓ କୃତ୍ତିବାସଙ୍କୁ ଅକାଟ କରିଥିଲା। ଅର୍ଥାତ୍ ଅସ୍ତ୍ର ଶସ୍ତ୍ର ସେମାନଙ୍କ ଦେହରେ ଭୁକୁ ନ ଥିଲା। ବାଣପୁରର ରାଜଧାନୀ ଦୁର୍ଭେଦ୍ୟ ବଙ୍କାଡ଼ ଭଗ୍ନ-ଗରିଦୁର୍ଗ, ଗଡ଼ ନୀଳାଦ୍ରି ପ୍ରସାଦ ଓ ନିଜଗଡ଼ ଅରାଙ୍ଗର ଦୁର୍ଗମ ନିବିଡ଼ ଅରଣ୍ୟ-ପରିବେଷ୍ଟିତ ପର୍ବତ ଖୋଲମାନଙ୍କରେ, ବିପ୍ଳବୀ-ଶିବିର ସ୍ଥାପନକରାଗଲା। ବହୁତ ବିଦ୍ରୋହୀ ପାଇକ ଆସି ରୁଣ୍ଡ ହେଲେ। ଅସ୍ତ୍ରଶସ୍ତ୍ର ବୋଇଲେ ଧନୁଶର, ଢାଲ, ତଲୁଆର, ବର୍ଚ୍ଛା, କଟାରୀ ଓଡ଼ିଆ ନଳୀ ଓ ଗୁଳିବାରୁଦ ସଂଗୃହୀତ ହୋଇ ରଖାଗଲା। ଅରାଙ୍ଗ ନିକଟରେ ଗୋଟିଏ ପାହାଡ଼କୁ

ଏବେ ଭଣ୍ଡାରପାହାଡ଼ ବୋଲି କହନ୍ତି । ସେଇ ପାହାଡ଼ ଗର୍ଭସ୍ଥ ଗଭୀର ଅନ୍ଧକାରମୟ ଗୁହା ଭିତରେ କୃତ୍ତିବାସଙ୍କ ଅସ୍ତ୍ରାଗାର ଥିଲା । ସେଇ ସମୟରେ ପଞ୍ଚୁଆ ନାମକ ରୋଡ଼ଙ୍ଗର ଗୋଟିଏ ଗଉଡ଼ ବଳଦ କିଣିବାପାଇଁ ବାଣପୁର ଆସିଥିଲା । କୃତ୍ତିବାସ ପାଟଶାଣୀ ତାକୁ ରୋଡ଼ଙ୍ଗର ବକ୍ସି ବେଶରେ ସଜାଇ ନିଜ ପାଖରେ ରଖି ପରେ ବାଣପୁର ବିଦ୍ରୋହର ନେତା ଆସନରେ ବସାଇ ତିନିଦିନପାଇଁ ତାକୁ ବାଣପୁରର ରଜା କରିଦେଇଥିଲେ ଏବଂ ପାଲିଙ୍କିରେ ବସାଇ ଗାଁ ଗାଁ ବୁଲାଇ ପ୍ରଚାର କଲେ ଯେ ବକ୍ସି ମହାରାଜା ଫିରିଙ୍ଗିକୁ ନିକାଲି ନିଜେ ଏହି ରାଜ୍ୟ ଦଖଲ କରିଛନ୍ତି ।

କୃତ୍ତିବାସ ପାଟଶାଣୀଙ୍କୁ ଯିଏ ଧରାଇଦେବ ସରକାର ତାକୁ ଆଠବାଟି ଦଶମାଣ ଜମି ନିଷ୍କର ଜାଗିରି ଦେବେ ବୋଲି ଘୋଷଣା କରିବାପରେ କୃତ୍ତିବାସଙ୍କ ଶଶୁର ଭୀମପୁରର ଦଳ ବେହେରା ବାସୁଦେବ ନରେନ୍ଦ୍ର ସିଂହ ଆଠବାଟି ଦଶମାଣ ନିଷ୍କର ଜାଗିରି ପାଇବା ଲୋଭରେ ନିଜର ଜ୍ୱାଇଁପ୍ରତି ଚରମ ବିଶ୍ୱାସଘାତକତାକରି କିପରି ତାଙ୍କୁ ନିଜ ଘରକୁ ଠା'ରେ ବସିବାପାଇଁ ନିମନ୍ତ୍ରଣକରି ବ୍ରିଟିଶ ହାତରେ ଧରାଇ ଦେଇଥିଲେ ସେ ସମ୍ପର୍କରେ ଶ୍ରୀ ହରିଚନ୍ଦନଙ୍କ ପ୍ରବନ୍ଧରେ କୃତ୍ତିବାସଙ୍କ ଦାମ୍ପତ୍ୟ ଜୀବନ ସମ୍ପର୍କରେ ମଧ୍ୟ ସମ୍ୟକ୍ ସୂଚନା ମିଳେ ।

''ଏକଥା ସମସ୍ତେ ଭାବିବା ସ୍ୱାଭାବିକ ଯେ, କୃତ୍ତିବାସଙ୍କର ସ୍ତ୍ରୀଙ୍କର ଚରିତ୍ର ତାଙ୍କ ପିତାଙ୍କ ଚରିତ୍ରର ଅନୁରୂପ ହୋଇଥିବାରୁ, ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ମତଭେଦ ହେଲା । ଫଳରେ ସ୍ତ୍ରୀ ତାଙ୍କର ସ୍ୱାମୀଗୃହ ତ୍ୟାଗକରି ପିତୃଗୃହକୁ ଚାଲି ଆସିଥିଲେ । କିନ୍ତୁ ତାହା ନୁହେଁ । ସେ ବାସୁଦେବଙ୍କ ପରି ରାକ୍ଷସର ସନ୍ତାନ ହେଲେ ମଧ, ବଡ଼ ସଚ୍ଚରିତ୍ରା ନାରୀ ଥିଲେ । ସେ ବଡ଼ କୋମଳ ହୃଦୟା ଥିଲେ, ସେ ସାଧ୍ୱୀ ଓ ଏକାନ୍ତ ପତିପ୍ରାଣା ଥିଲେ । ମାତ୍ର ତାଙ୍କର ଦୋଷ ଏତିକି ଯେ, ଧୈର୍ଯ୍ୟ ଓ ସାହାସ ତାଙ୍କର ମୋଟେ ନ ଥିଲା । ଏଇଠାରେ କୃତ୍ତିବାସଙ୍କ ସହିତ ତାଙ୍କର ପାର୍ଥକ୍ୟ । ସ୍ୱାମୀଙ୍କ ଭବିଷ୍ୟତ ବିପଦ ଆଶଙ୍କାରେ ସେ ମ୍ରିୟମାଣ ହୋଇ ପଡ଼ିଥିଲେ । କୃତ୍ତିବାସ ଯେତେବେଳେ ବିପ୍ଳବପାଇଁ ପାଗଳ ହୋଇଉଠନ୍ତି, ସେ ପ୍ରାଣପଣେ ଲାଗି ତାଙ୍କୁ ସେ ପଥରୁ ନିବର୍ତ୍ତାଇବାକୁ ଚେଷ୍ଟା କଲେ, ମାତ୍ର ଫଳ କିଛି ହେଲା ନାହିଁ । ପାଗଳାମି ମୁଣ୍ଡରେ ଢୁକିଲା ଦିନୁ ଦିନେହେଲେ କୃତ୍ତିବାସ ଥୟ ହୋଇ ଘରେ ରହନ୍ତି ନାହିଁ । ନିଶାରାତିରେ ମେଘ ଅନ୍ଧାର ଦୁର୍ଦ୍ଦିନରେ କୁଆଡେ ଉଠି ପଳାନ୍ତି । ଯାଆନ୍ତି ତ ମାସ ମାସ କାଳ ତାଙ୍କର ଆଉ ପତା ମିଳେ ନାହିଁ । ସ୍ତ୍ରୀ ତାଙ୍କର ଘରେ ଏକାକୀ ପଡ଼ିରହି କାନ୍ଦି କାନ୍ଦି ଦିନ କାଟୁ ଥାଆନ୍ତି । ଥରେ କେତେ ଦିନ ପରେ କୃତ୍ତିବାସ ଘରକୁ ଫେରିଛନ୍ତି, ସାଧାରାଣ ସ୍ତ୍ରୀସୁଲଭ ଅଭିମାନମିଶା କଟୁକ୍ତି ସ୍ତ୍ରୀଠାରୁ ତାଙ୍କୁ ଶୁଣିବାକୁ ପଡ଼େ । ତାଙ୍କ ମନ ଟିକିଏ ତିକ୍ତ ହୋଇ ଆସିଲା ବେଳକୁ, ସ୍ତ୍ରୀ ତାଙ୍କ ବାପାଙ୍କ ଉପଦେଶ କହି ବସିଲେ ଯେ ତାଙ୍କର ଏ ଦଇବିଛଡ଼ା ଆଚରଣ ବିଷୟ ଶୁଣି, ତାଙ୍କ ବାପା ଭାରି ବିରକ୍ତ

ହେଉଛନ୍ତି ଓ ଆଉ ଏପରି ଜଳନ୍ତା ନିଆଁ ଭିତରକୁ ପଶିବାକୁ ବାରମ୍ବାର ମନା କରୁଛନ୍ତି । କୃତିବାସ ଶ୍ୱଶୁରଙ୍କ ନାଆଁ ଶୁଣିଲା ମାତ୍ରେ କ୍ରୋଧରେ ଜ୍ଞାନଶୂନ୍ୟ ହୋଇପଡ଼ିଲେ ଏବଂ ସ୍ତ୍ରୀ ଓ ଶ୍ୱଶୁର ଉଭୟଙ୍କୁ ଅତି କଟୁ ଅସହ୍ୟ ଭାଷାରେ ଭର୍ତ୍ସନା କଲେ । ଦାରୁଣ ଅଭିମାନରେ ସେଇଦିନ ସ୍ତ୍ରୀ ପିତୃଗୃହକୁ ଚାଲିଗଲେ । କୃତିବାସ ମଧ ସେଇଦିନୁ ଘର ଛାଡ଼ିଲେ ଯେ ଆଉ ଘର ମୁହାଁ ହୋଇ ନାହାନ୍ତି ।''

କୃତିବାସଙ୍କର ଶ୍ୱଶୁର ବାସୁଦେବ ନରେନ୍ଦ୍ର ସିଂହ ଇଂରେଜଙ୍କର ପରମ ଭକ୍ତ ଥିଲେ । ବାସୁଦେବଙ୍କ ଦିନରାତି ଏକମାତ୍ର ଚିନ୍ତା ହେଲା, କି ଉପାୟରେ କୃତିବାସଙ୍କୁ ଧରାଇଦେବେ ।

''ଏବେ ହନ୍ତୁଆଡ଼ଠାରେ, ଟିକିରେଇ ଠାକୁରାଣୀଙ୍କ ମନ୍ଦିରରେ ଯେଉଁ ଅପୂର୍ବ ଲାବଣ୍ୟମୟୀ, ସୂକ୍ଷ୍ମ ଚାରୁକଳା ବିମଣ୍ଡିତ ବିଶାଳ ଉଗ୍ରତାରା ମୂର୍ତ୍ତି ଦର୍ଶକ ମନରେ ଭୟ ଭକ୍ତି ଓ ବିସ୍ମୟର ସଞ୍ଚାରକରେ, ସେ ହେଉଛନ୍ତି ବଙ୍କାଡ଼ଗଡ଼ର ଅଧିଷ୍ଠାତ୍ରୀ ଦେବୀ । ଆଗେ ଗଡ଼ ଥିଲାବେଳେ ସେ ବଙ୍କାଡ଼ ଗଡ଼ରେ ଅବସ୍ଥାନ କରି, ବାଣପୁରର ସୁପ୍ରସିଦ୍ଧ 'ହରି ଚନ୍ଦନ' ରାଜବଂଶ ଦ୍ୱାରା ପୂଜିତା ହେଉଥିଲେ । ଗଡ଼ ଭାଙ୍ଗିଯିବା ପରେ ସେଠାରେ ଦେବୀଙ୍କର ସେବାପୂଜା ହୋଇ ନ ପାରିବାରୁ, ସେ ହନ୍ତୁଆଡ଼କୁ ସ୍ଥାନାନ୍ତରିତା ହୋଇଥିଲେ । ଏଇ ଠାକୁରାଣୀଙ୍କୁ ଦର୍ଶନ କରିବା କୃତିବାସଙ୍କର ଗୋଟିଏ ନିତ୍ୟ ନୈମିତ୍ତିକ କାର୍ଯ୍ୟ । ସେ ସେତେବେଳକୁ ଫେରାର ଆସାମୀ । ତାଙ୍କୁ ସବୁ ଆଡ଼େ ଖୋଜା ଲାଗିଚି । ତଥାପି ପ୍ରତିଦିନ ପାହାନ୍ତିଆରୁ ସେ ଏକାକୀ ଭୀଷଣ ବନପଥ ଦେଇ ଆସନ୍ତି ଏବଂ ଠାକୁରାଣୀଙ୍କୁ ଦର୍ଶନ କରି ଫେରିଯାଆନ୍ତି । ଏକଥା ବାସୁଦେବଙ୍କୁ ଅଗୋଚର ନ ଥିଲା । ଏହା ନିକଟରେ ଚକାଦେବଙ୍କ ମଣ୍ଡପରେ ବାସୁଦେବଙ୍କ କଚିରୀ ବସେ, ଖଜଣା ଅସୁଲ ହୁଏ । ନିର୍ଦ୍ଦିଷ୍ଟ ଯୋଜନା ଅନୁସାରେ ବାସୁଦେବ ସେଇଠାରେ ଦେଖାକରି ଜୋଇଁଙ୍କୁ ପାଲରେ ପକାଇବାକୁ ଚେଷ୍ଟାକଲେ । ପ୍ରଥମ କେତେଥର ସାକ୍ଷାତ କେବଳ ଆଖିରୁ କପଟ ଲୁହ ଗଡ଼ାଇ ଦୁଃଖ ପ୍ରକାଶ କରିବାରେ କଟିଲା । କ୍ରମେ ଧୂର୍ତ୍ତ ବାସୁଦେବ ଜୋଇଁଙ୍କ ଭାବଭଙ୍ଗୀ ଲକ୍ଷ୍ୟକରି ଆସ୍ତେ ଆସ୍ତେ ମାୟାଜାଲ ବିସ୍ତାର କଲେ । ଜୋଇଁଙ୍କ ଆଗରେ ଅସରାଏ କାନ୍ଦିପକାନ୍ତି ଝିଅର ଦୁଃଖ ବର୍ଣ୍ଣନା କରନ୍ତି ।

''ସ୍ତ୍ରୀ ପିତ୍ରାଳୟରେ ଅବସ୍ଥାନ କରୁଥିଲେ । ବିପ୍ଳବୀ କୃତିବାସ ଫେରାର ଥାଇ ସାମୟିକ ତାଙ୍କୁ ଦେଖିବାକୁ ମନେ କରୁଥିଲେ । ଏକଥା ଜାଣିପାରି ବାସୁଦେବ ଝିଅକୁ ଟିକିଏ ଦର୍ଶନ ଦେଇଆସିବାକୁ କୃତିବାସଙ୍କୁ ଅନୁରୋଧ କଲେ । ପ୍ରଥମେ ପ୍ରଥମେ କୃତିବାସ ସେ ଅନୁରୋଧ ନମ୍ରତାର ସହିତ ପ୍ରତ୍ୟାଖ୍ୟାନ କରୁଥିଲେ, କିନ୍ତୁ ସେ ଦମ୍ଭ ବେଶୀ ଦିନ ରହିଲା ନାହିଁ । ପ୍ରାଣପ୍ରିୟା ପତ୍ନୀପାଇଁ ହୃଦୟ କୋଣରେ ଯେଉଁ ଦୁର୍ବଳ ସ୍ଥାନ ଟିକିକ ଥିଲା, ସେଇ

ଆଘାତ ଲାଗି ତାଙ୍କୁ ବଡ଼ ବିଚଳିତ କଲା । ବାସୁଦେବ ତାଙ୍କ ହଟଚମଟ ବିଦ୍ୟାରେ ଆଉପଦେ ଅଗ୍ରସର ହେଲେ । ଜନୈକା ପରିଚାରିକା ସାହାଯ୍ୟରେ ଜୀବନ୍ନତା ଝିଅ ହାତରୁ କୃତ୍ତିବାସଙ୍କ ଦର୍ଶନ ପ୍ରାର୍ଥନା କରି ପତ୍ରଖଣ୍ଡିଏ ଅଣାଇ, ସେଇ ପରିଚାରିକା ଦ୍ୱାରା ସେ ଖଣ୍ଡି ସେଇ ମନ୍ଦିର ଠାରେ କୃତ୍ତିବାସଙ୍କୁ ଦିଆଇଦେଲେ । ପତ୍ର ପଢ଼ି କୃତ୍ତିବାସ ଆଉ ଥୟ ଧରି ପାରିଲେ ନାହିଁ । ତାଙ୍କ ଧୈର୍ଯ୍ୟ ଭାଙ୍ଗିପଡ଼ିଲା । ବିନାଦ୍ୱିଧାରେ ସେ ନିମନ୍ତ୍ରଣ ଗ୍ରହଣ କଲେ ।

''ସେ ଦିନ ମୁହଁ ସଞ୍ଜରେ କୃତ୍ତିବାସ କାହାକୁ କିଛି ନ କହି ବଣ ଭିତରୁ ବହିର୍ଭ୍ରାନ୍ତ ହେଲେ । ହନ୍ତୁଆତଠାରେ ଶ୍ୱଶୁରଙ୍କ ସଙ୍ଗେ ଦେଖାହେଲା ଓ ସାଙ୍ଗ ହୋଇ ତାଙ୍କ ଘରକୁ ଗଲେ । ଜୋଇଁପାଇଁ ଗୋଟିଏ ଘର ଆଗରୁ ସୁସଜ୍ଜିତ ଥିଲା; ସେଇଘରେ ତାଙ୍କୁ ସ୍ଥାନ ଦିଆଗଲା । କୃତ୍ତିବାସ ସେ ଘରେ ବସି ପ୍ରତି ମୂହୂର୍ତ୍ତରେ ପ୍ରିୟାର ଆଗମନ ଅପେକ୍ଷା କରୁଥାଆନ୍ତି । ମାତ୍ର କାହିଁ ପ୍ରିୟା ! ସ୍ତ୍ରୀ ତାଙ୍କର ସେତେବେଳକୁ ସେଠାରେ ନାହାନ୍ତି । ପିତୃଗୃହ ଆବହାଓ୍ୱା ତାଙ୍କୁ ବିଷତୁଲ୍ୟ ଦୁର୍ବିସହ ବୋଧ ହେବାରୁ, ସେ ପିତାଙ୍କ ଅଜ୍ଞାତରେ ସ୍ୱାମୀଗୃହକୁ ପଳାଇ ଯାଇଥିଲେ ଏବଂ ସେଇଠି ରୋଗଶଯ୍ୟାରେ ପଡ଼ିଥିଲେ । ଏ ସମ୍ବାଦ କୃତ୍ତିବାସଙ୍କୁ ଜଣା ନ ଥିଲା । ଚିଠି ଯେ ବାସୁଦେବ ଚାଲାକି କରି ସେଇଠାରୁ ଲେଖାଇ ଆଣିଛନ୍ତି, ସେ କଥା କୃତ୍ତିବାସ ଅବା ଜାଣିବେ କିପରି ? ବାସୁଦେବ ମଝିରେ ମଝିରେ ଆସି ଜୋଇଁଙ୍କ ପାଖରେ ବସି ଟିକିଏ ମଧୁରାଳାପ କରୁଥାନ୍ତି, ପୁଣି ସେଠାରୁ ଉଠି ଚାଲି ଯାଉଥାଆନ୍ତି । ଶ୍ୱଶୁର ନିଜେ ଉପସ୍ଥିତ ହୋଇ ଠା ବିଜେ ହେବାପାଇଁ ଯେତେବେଳେ ଅନୁରୋଧ କଲେ, କୃତ୍ତିବାସ ଥା ଥା ମା ମା ହୋଇ ଆସନ ଉପରକୁ ଗଲେ, କିନ୍ତୁ ସେତେବେଳ ପର୍ଯ୍ୟନ୍ତ ସ୍ତ୍ରୀଙ୍କୁ ନ ଦେଖି ନାନା ଅଶୁଭ ଆଶଙ୍କାରେ ପ୍ରାଣ ତାଙ୍କର ଆନ୍ଦୋଳିତ ହେଉଥାଏ ଏବଂ କାହାକୁ ପଚାରିବେ ବୋଲି ଖୋଜି ହେଉଥାଆନ୍ତି । ବାସୁଦେବ ତାଙ୍କର ଏ ଭାବ ଭଙ୍ଗୀ ଲକ୍ଷ୍ୟକରି, ପ୍ରକାରାନ୍ତରେ ଜଣାଇଦେଲେ ଯେ, ସେ ଦୁର୍ବଳତା ହେତୁରୁ ଆସି ନ ପାରି ଭିତର ଖୁଆଡ଼ରେ ଅଛି । ଠା ବଢ଼ିଲେ ସେ ଆଡ଼େ ବୁଲିଯିବାକୁ ହେବ । କୃତ୍ତିବାସ ଆଶ୍ୱସ୍ତ ହୋଇ ଖାଇବସିଲେ । ତାଙ୍କ ଅଭ୍ୟାସ ମତେ ବାମ ଜାନୁତଳେ ଢାଲ ଓ ଦକ୍ଷିଣ ଜାନୁ ଉପରେ ତଲୁଆର ରଖିଥାନ୍ତି । ତାଙ୍କୁ ଏଣେ ଖାଇବାକୁ ବସେଇ ଦେଇ ବାସୁଦେବ ତେଣେ ପୋଲିସକୁ ଖବର ଦେଇ ଦେଲେ । ପୋଲିସ ଆସି ଆଗରୁ ଛପି ରହିଗଲେଣି । ସେମାନେ କୃତ୍ତିବାସଙ୍କୁ ଭାତଥାଳୀ ଉପରେ ବନ୍ଦି କରିବାପାଇଁ ପୂର୍ବରୁ ତାଙ୍କ ଢାଲ ତଲୁଆର କୁଠି ରଖିଛନ୍ତି ବୋଲି ବାସୁଦେବଙ୍କୁ ପଚାରିଲେ । ମାତ୍ର ବାସୁଦେବ ଯେତେବେଳେ କହିଲେ ଯେ, ତାଙ୍କ ଅଭ୍ୟାସ ଅନୁସାରେ ଜାନୁ ଉପରେ ରଖିଛନ୍ତି, ପୋଲିସଙ୍କ ପାଦ ପଛକୁ ହଟିଲା । ସେମାନେ କହିଲେ, 'ଯେତେବେଳ ଯାଏ, ତାଙ୍କ ହାତରେ ତଲୁଆର ଅଛି, କାହାର ସାହସ ମୁହଁକୁ ଯିବ ? ସେ ସେଇ ସଙ୍ଖୁଡ଼ି ହାତରେ ସବୁଯାକ ପୋଲିସ ଫଉଜକୁ ହାଣିଦେବେ । ତମେ ଯେବେ କୌଶଳ କରି ତାଙ୍କ ହାତରୁ ତଲୁଆର କାଢ଼ି ନେଇ ପାରିବ, ତେବେ ଆମେ ଯିବୁ, ନଚେତ ନାହିଁ । ବାସୁଦେବ ପୁଣି ଜୋଇଁଙ୍କ ଠା ପାଖକୁ ଗଲେ । ସେ ନିଶ୍ଚିନ୍ତ ମନରେ ବସି ଖାଉଛନ୍ତି । ସେଠାରେ ଯାଇ ଚାକର ବାକରଙ୍କ ଉପରେ ପରସ୍ତେ ଝାଡ଼ି

ହୋଇ କହିଲେ ସବୁ ବେଅକଲ ଲୋକଗୁଡ଼ା ! ଠା'ରେ ବସିଛନ୍ତି, ତଲୁଆରଟା ଜାନୁ ଉପରେ ଅଛି । ଭୋଜନ ବେଳେ ହତିଆର ହାତରେ ରହିବା ଗୋଟାଏ ନିହାତି ଅଲକ୍ଷଣା କଥା । ତମକୁ ସବୁ ଦିଶିଲା ନାଇଁ । ଠା ବଢ଼ିଲାଉତ୍ତାରେ ଧରିଥାଆନ୍ତେ । ଛିଃ ! କାଇଁ ବାବୁ ଦବଟି ମୁଁ ତଲୁଆରଟା ନେଇ ଝିଅଘରେ ରଖିଦେଇଥାଏ । ଏହାକହି ବାସୁଦେବ ତଲୁଆରଟି ନେଇଗଲେ । କୃତ୍ତିବାସ ଅନିଚ୍ଛାସତ୍ତ୍ୱେ ଶ୍ୱଶୁରଙ୍କ ମୋହବତରେ କିଛି କହିପାରିଲେ ନାହିଁ । ଠିକ୍ ପର ମୁହୂର୍ତ୍ତରେ ଯେତେବେଳେ ପୋଲିସ ଫଉଜ ଆସି ଘେରାଉ କଲେ, ସେତେବେଳେ ଆଉ କୃତ୍ତିବାସଙ୍କର ବୁଝିବାକୁ ବାକି ରହିଲା ନାହିଁ ବାସୁଦେବର ମାୟାଜାଲ, କିନ୍ତୁ କରନ୍ତି କ'ଣ ? ଶତ୍ରୁ ଗୃହରେ ଏକାକୀ, ପୁଣି ନିରସ୍ତ୍ର । ତଥାପି ବାହୁ ଆନ୍ଦୋଳନ କରି ଅନେକ ସିପାହିଙ୍କୁ ଭୂମିଶାୟୀ କରି ପଳାଇବାକୁ ଚେଷ୍ଟା କଲେ । ମାତ୍ର ସେମାନଙ୍କ ସଂଖ୍ୟା ଅଧ... । ଘଣ୍ଟାଏ ଖଣ୍ଡେ ଧସ୍ତାଧସ୍ତି ପରେ ପୁଲିସମାନେ କୃତ୍ତିବାସଙ୍କୁ ବାନ୍ଧି ପକାଇଲେ ।''

x x x

ବାଣପୁର ବିଦ୍ରୋହରେ ଅଭିଯୁକ୍ତ ଆସାମୀମାନଙ୍କ ବିଚାର ଅଦାଲତରେ ୯ ମାସଧରି ଚାଲିବାପରେ ୨୫।୩।୧୮୩୭ ତାରିଖରେ କଟକର କମିସନର ଫୋର୍ଟ ଉଇଲିଅମ୍‌ସ୍ଥିତ ବ୍ରିଟିଶ ସରକାରଙ୍କ ବିଚାର ବିଭାଗ ଶାସନ ସଚିବଙ୍କ ନିକଟକୁ ପଠାଇଥିବା ୬୧୦ ନମ୍ବର ଚିଠିମୁତାବକ ନିମ୍ନଲିଖିତମତେ ସେମାନଙ୍କ ପ୍ରତି ଦଣ୍ଡବିଧାନ କରାଯାଇଥିଲା:

୧. ଶରଣସିଂହ, କୃତ୍ତିବାସ ପାଟସାହାଣୀ, ଶିବୁନାୟକ ଓ ପାଦୁକୀ (ପିଣ୍ଡାକୀ) ୪ ଜଣଙ୍କୁ ଯାବଜ୍ଜୀବନ ଦ୍ୱିପାନ୍ତର ଦଣ୍ଡ ।
୨. ଜଳଧର ନାୟକ ଓ ଅନ୍ୟ ୨୨ ଜଣଙ୍କୁ ୫ ବର୍ଷ ସଶ୍ରମ କାରାଦଣ୍ଡ (ବେଡ଼ିସହିତ)
୩. ଶୁକଦେବ ଦାସ ଓ ଅନ୍ୟ ୩୭ ଜଣଙ୍କୁ ୪ ବର୍ଷ ସଶ୍ରମ କାରାଦଣ୍ଡ (ବେଡ଼ି କିମ୍ବା ତା ବଦଳରେ ଟ ୨୫ ଜରିମାନା ସହିତ)
୪. ନାଲୁ ସାଉ(?) ଓ ଅନ୍ୟ ୧୪ ଜଣଙ୍କୁ ୩ ବର୍ଷ ସଶ୍ରମ କାରାଦଣ୍ଡ (ବେଡ଼ି କିମ୍ବା ତା ବଦଳରେ ଟ ୨୦ ଜରିମାନା ସହିତ)

ଉଲ୍ଲେଖ ଯୋଗ୍ୟ ଯେ କୃତ୍ତିବାସ ପାଟସାହାଣୀଙ୍କର ପ୍ରଧାନ ସହଯୋଗୀ ଲୋଚନ ବିଶୋଇଙ୍କ ନାମ ଏହି ଦଣ୍ଡାଦେଶ ତାଲିକାରେ ନାହିଁ; କାରଣ ସେ ଗିରଫ ହେବା ପରେ ପରେ ପୋଲିସ୍ ହାତରୁ ଖସିଯାଇଥିଲେ ବୋଲି କମିସନରଙ୍କର ୬।୭।୧୮୩୬ ତାରିଖର ୯୦୨ ନମ୍ବର ପତ୍ରରୁ ଜଣାଯାଏ :

"The unfortunate escape of Lochan Bisooee from custody while we were at Banpoor compelled us to alter some of the arrangements mentioned in my letter above alluded to.

Lochan Bisooee is a Kund exercising considerable influence among that tribe, his father was for many years a proclaimed rebel and he appears to have been one of the chief instigators of and actors in the late out-break.

The morning after his escape all the Kunds, inhabitants of Arang took to the mountains and in consequence gave up the intention of establishing a Post in Arang."

ବିଦ୍ରୋହୀମାନେ କିପରିଭାବେ ବାଣପୁରରେ ବିପ୍ଳବ ସୃଷ୍ଟି କରିଥିଲେ ସେ ସମ୍ପର୍କରେ ବିସ୍ତୃତ ବିବରଣୀଦେଇ କମିସନର ଗଭର୍ଣ୍ଣରଙ୍କ ଅବଗତି ନିମନ୍ତେ ପଠାଇଥିବା ତାଙ୍କର ୨୦।୬।୧୮୩୬ ତାରିଖର ୮୨୪ ନମ୍ବର ପତ୍ରରୁ ପାଠକମାନଙ୍କ ଅବଗତି ନିମନ୍ତେ ଅଳ୍ପାଂଶ ଉଦ୍ଧାର କରାଗଲା :

"After the Sepoy Gaurd and Police had been driven from Banpoor the plunder of that place and the villages in the neighbourhood was continued for three days."

x x x

"A Raja was set up, a man by the name of Surun Sing in whose name orders for supplies money etc were issued and many rich and respectable people attended him."

ପୁନଶ୍ଚ ୨୭।୬।୧୮୩୬ ତାରିଖର ୮୩୪ ନମ୍ବର ପତ୍ରରେ କମିସନର ଲେଖିଥିବା ଦୀର୍ଘ ବିବରଣୀରେ ବିଦ୍ରୋହର ଉଦ୍ଦେଶ୍ୟ ସମ୍ପର୍କରେ ଲେଖିଛନ୍ତି:

"A vast number of persons and several of the Dulbeheras were actively engaged incredible as it may appear, the separation of the Banpoor Territories from the British Dominion was the project entertained by the chief movers in the disturbance."

ଉକ୍ତ ପତ୍ରରେ କମିସନର ଏକଥା ମଧ୍ୟ ଲେଖିଛନ୍ତି ଯେ ଶରଣସିଂହକୁ ନାଁକୁ ମାତ୍ର ରାଜା କରାଯାଇଥିଲା । ଯଦି ବିଦ୍ରୋହ ସଫଳ ହୋଇଥାଆନ୍ତା ଗଞ୍ଜାମର ଶେରଗଡ଼ରେ ଥିବା ରାମ ହରିଚନ୍ଦନ ନାମକ ବକ୍ସି ଜଗବନ୍ଧୁଙ୍କର ଜଣେ ଔରସଜାତ ପୁତ୍ର କିମ୍ବା ଅନ୍ୟ କୌଣସି ଜଣେ ବିଶିଷ୍ଟ ପ୍ରଭାବଶାଳୀ ବ୍ୟକ୍ତିଙ୍କୁ ବିଦ୍ରୋହୀମାନେ ରାଜା କରାଇ ଥାଆନ୍ତେ ।

"I stongly suspect the Raja they set up was intended to play the chief character only till it was seen how the enterprize would be received in the northern parts of Banpoor and Khoordah to be succeeded in the event of success by a natural son of the late rebel Jugbundoo Buxsee by name Ram Hurrechundun Who has been for some time at sherghur in the Madras Territory or some other person of influence."

ରୋଡ଼ଙ୍ଗଗଡ଼ରେ ବକ୍ସି ଜଗବନ୍ଧୁଙ୍କର ଏକମାତ୍ର ଜନ୍ମିତପୁତ୍ର ଗୋପୀନାଥ ବିଦ୍ୟାଧର ଥିଲେ ବୋଲି ଆଗରୁ ଜଣାଥିଲା । ବକ୍ସିଙ୍କ ସହିତ ବୈବାହିକ ସମ୍ପର୍କଥିବା ଶେରଗଡ଼ ରାଜ ପରିବାରରେ ରାମହରିଚନ୍ଦନ ନାମରେ ତାଙ୍କର ଆଉ ଜଣେ ଔରସଜାତ ପୁତ୍ରଥିଲେ ବୋଲି କମିସନରଙ୍କର ଉପରୋକ୍ତ ପତ୍ରରୁ ପ୍ରମାଣିତ ହୁଏ ।

❑ ❑ ❑

ପରିଶିଷ୍ଟ - 9

# /Copy/

# Petition of the Raja of Khoorda Sheweth

That your petitioner, in confirmity to the custom of his ancestors and to prove himself deserving of the favour of the Honourable Company, has been always on amicable terms with the Magistrae at Gangam, and according to the dictates of friendship, your petitioner's Vakeel resided with the above gentleman and in return his, resided with your petitioner. When your petitioner's father died, your petitioner was very young, and on this account the Rajgooroo having been appointed Mookhtar for directing the affairs of the Country, placed your petitioner on the Musnud. During the Mookhtarship of the Rajgooroo, your petitioner except the name, had not any of the power of the Raja at this time the English forces attacked the fort of Cuttack and Colonel Harcourt, W.John Melville and the Magistrate at Ganjam, having summoned your petitioner's Vakeel, acquainted him that they had intention of taking the city of Cuttack, and directed him to request his master to withdraw himself from the Marathas, and afford a clear passage to the English. The above Vakeel, in confirmity to the orders of the above gentlemen, made known these circumstances to your petitioner. Immediately on hearning this your petitioner being greatly rejoiced, sent to the above Vakeel to represent, that the Marathas had by voilence and force of arm wrested from your petitioner Sri Purusotum, and other places, altogether four Mahals; and that on this account, your petitioner being desirious of meeting with the favour of the company, prayed night and day, that the country might fall under the dominion of the company, and that then your petitioner would have justice due to him. Agreeably to your petitioner's wishes, the Kanoongoh of the Company advanced. Your petitioner was in hopes that according to the heriditary custom, your petitioner would have the above Mahals granted to him. To the represetations of the Vakeel, the

above gentlemen observed with kindness that the four Mahals and a Lack of rupees in cash, should be given to your petitioner, provided that your petitioner should form no alliance with the marathas. In consequence of hearing this, your petitioner afforded them a safe passage and colonel Haracourt with a large army advanced and gained possession of the fort of Cuttack. During these circumstances your petitioners Vakeel was with the above gentlemen - after this the Rajgooroo went to Cuttack, and having had an audience, laid a petition requesting, according to promise, the delivery of the Mahals. Colonel Hourcourt in answer observed that not a span of land should be given up and that from the lack of rupees a part should be given then and the remainder at some future time. God Knows how much money was given to the Rajgooroo, your petitioner knows not. That which he did receive he expended on the pay of the troops in his service. He then returned from Cuttack and said to your petitioner "I at first warned you from forming an alliance with the commander of the Company's troops, and from affording him a safe passage. Now Colonel Harcourt has not given up the Mahals and has also intentions of taking from you what heriditary country remains in your possession. During this Colonel Harcourt sent the Kanoongoh, Suddar, Mahashai to draw up a quirarnama and agreeably to his wishes your petitioner signed the quirarnama with the knowledge of the Rajgooroo and told the Rajgooroo to dismiss the troops in his service, for that your petitioner had determined to discharge the obligations of a well wisher, and subject to the Company and that by this means, your petitioner would become fortunate and prosperous. Having heard the substance of your petitioner's speech the Rajgooroo was displeased and told the troops to receive their pay from your petitioner, accordingly they violently demanded their pay and deprived your petitoner of food and clothing for two or three days. Under these circumstances your petitioner told them that he had not retained them in his service, but that the Rajgooroo had, and desired them to demand their pay from him. The Rajgooroo was enraged at this and by way of procuring money for their pay, led the troops into those Mahals which the Marathas had by force taken up possession of and attacked and plundered them. In these Mahals, the troops of the Rajgooroo fought and skirmished with the company's forces, who were stationed there. Benig informed of this Colonel Harcourt attacked the fort of Khoordah, on which account your petitioner determined to have a conference with him. Hearing this the Rajgooroo returned from the Mahals and consulted to confine your petitioner in prison and fight the company's army. Your petitioner having been made acquainted with this, abandoned the fort and took the road

into the Junguls. At length the affairs of the unskilful and imprudent Rajgooroo were ruined and he was put to flight. Colonel Harcourt having taken the fort, plundered the whole of your petitioner's property and possessions. After this the Ryots of the Country, who had been much harrassed by the tyranny of the Rajgooroo, seizing the opportunity caused him to be confined and sent to Clolonel Harcourt. Colonel Harcourt asked him whether he had caused these disturbances of his own accord or at the instigation of the Raja, your petitoner. He answered that the Raja was a child and that what had been done had been done by himself. After this your petitioner sent his vakeel with intent to request an audience of Colonel Harcourt, who detained the Vakeel a prisoner. Your petitioner then sent his Dewan for the same purpose, who was also detained a prisoner. Having no remedy your petitioner sent Fateh Mahamud, a Jamadar a servant of the Company and ambassador to Mr. Betun to procure an audience of Colonel Harcourt.

He, by the order of Colonel Harcourt, came himself to your petitioner and comforted and encouraged him. In spite of this, Colonel Harcourt, not deigning your petitoner an audience, imprisoned him in the fort of Cuttack. Now being a prisoner at Midnapore, Your Petitioner passes his time in great distress, and his family being also in confinement in the city of Cuttack are in great trouble. The men who had acted us Mookhatars, in not having attended to the orders of your humble petitioner, were deserving of punishment from the company. They have met with the due punishment of their deeds. Your petitioner is innocent and with the name of Raja, had no power no influence, in the direction of the country, although your petitioner attended the commander of the company's forces, he is confined, and suffers much distress. The whole age is acquainted with the justice of the company and until now the British Government has never deprived a Zemindar of his Estate, without his being guilty of some offence. Your petitioner therefore prays that a copy of this petition may be laid before the Governor General, and that your petitioner being found deserving of compassion, may be freed from prison. May you order this and may the sun of your prosperity shine bright."

Ordered that a Copy and translation of this petition be forwarded to the Secretary to Government in the Judicial Department.

Sd/

❑ ❑ ❑

ପରିଶିଷ୍ଟ-୩

# ଲେମ୍ବାଇ ପ୍ରଗଣାର ମାଲିକାନା ପ୍ରସଙ୍ଗ

ଗଙ୍ଗବଂଶର ରାଜା ମଦନ ମହାଦେବ ସିରାଇଦଣ୍ଡପାଟରେ ସହଜପାରିଗ୍ରାମକୁ ନିଜର କଟକ ବା ରାଜଧାନୀ କରିଥିଲେ । ମୋଗଲ ରାଜତ୍ୱକାଳରେ ସିରାଇ ଦଣ୍ଡପାଟର ଚାରି ଗୋଟି ବିଶି, ଯଥା - ଆରୁ, କବର, ତଳିତରା ଓ ସିରାଇକୁ ଚାରି ଗୋଟି ପ୍ରଗଣାରେ ପରିଣତ କରାଯାଇଥିଲା । ଲେମ୍ବାଇ ପ୍ରଗଣା ମଧ୍ୟରେ ସହଜପାରି କଟକର ଧ୍ୱଂସାବଶେଷ ପରିଲକ୍ଷିତ ହେଉଥିବାରୁ ଲେମ୍ବାଇ ପ୍ରଗଣା ଅଞ୍ଚଳ ସିରାଇଦଣ୍ଡପାଟର ଅନ୍ତର୍ଭୁକ୍ତ ଥିଲା ବୋଲି ଅନୁମାନ କରାଯାଏ ।

୧୫୯୨ ଖ୍ରୀଷ୍ଟାବ୍ଦରୁ ୧୭୬୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଲେମ୍ବାଇ ପ୍ରଗଣାର ମାଲିକାନା ଖୋର୍ଦ୍ଧା ଭୋଇବଂଶ ରାଜାମାନଙ୍କର ଥିଲା । ୧୭୬୦ ଖ୍ରୀଷ୍ଟାବ୍ଦରେ ପାରଳାଖେମଣ୍ଡିର ରାଜା ନାରାୟଣ ଦେବ ଖୋର୍ଦ୍ଧା ଆକ୍ରମଣ କରିବାରୁ ଖୋର୍ଦ୍ଧାର ରାଜା ବୀରକେଶରୀ ଦେବଙ୍କ ଅନୁରୋଧକ୍ରମେ ମରହଟ୍ଟା ସୁବାଦାର ଶିବରାମ ଭଟ୍ଟଶାଠେ ନାରାୟଣଦେବଙ୍କ ଆକ୍ରମଣକୁ ପ୍ରତିହତ କରିବାରେ ବୀରକେଶରୀଦେବଙ୍କୁ ସାମରିକ ସହାୟତା ଯୋଗାଇଦେଇ ତାଙ୍କର ସାମରିକ ଖର୍ଚ୍ଚପାଇଁ ଏକଲକ୍ଷ ଟଙ୍କା ଦାବିକରିଥିଲେ । ବୀରକେଶରୀଦେବ ସେହି ଟଙ୍କା ଦେଇ ନ ପାରିବାରୁ ଭଟ୍ଟଶାଠେ ତାଙ୍କଠାରୁ ଜଗନ୍ନାଥ କ୍ଷେତ୍ର ସମେତ ରାହାଙ୍ଗ, ଲେମ୍ବାଇ, ସିରାଇ ଓ ଚବିଶକୁଦ- ଚାରି ଗୋଟି ପ୍ରଗଣାକୁ ଜବରଦସ୍ତ ଛଡ଼ାଇନେଇଥିଲେ ।[୨୦୯]

ଖୋର୍ଦ୍ଧାର ରାଜା ମୁକୁନ୍ଦଦେବ (୨ୟ) ଇଂରେଜଙ୍କଦ୍ୱାରା ରାଜ୍ୟଚ୍ୟୁତ ହୋଇ ମେଦିନିପୁର ଜେଲ୍‌ରେ ବନ୍ଦିଥିବା ଅବସ୍ଥାରେ ୧୮୦୭ ଖ୍ରୀଷ୍ଟାବ୍ଦରେ ଜେଲ୍‌ରୁ ମୁକ୍ତିପାଇବାପାଇଁ ପ୍ରାର୍ଥନା କରି ଇଂରେଜ ସରକାରଙ୍କ ଉଦ୍ଦେଶ୍ୟରେ ଯେଉଁ ଦରଖାସ୍ତ ଲେଖିଥିଲେ ରାଜ୍ୟ ଅଭିଲେଖାଗାରରୁ ପ୍ରାପ୍ତ ସେହି ଦରଖାସ୍ତର ଇଂରାଜୀ ପ୍ରତିଲିପିରେ

---

୨୦୯- ୫୬/୨୦

ଉଲ୍ଲେଖ ଅଛି ଯେ ୧୮୦୩ରେ ମୁକୁନ୍ଦଦେବଙ୍କ ଓକିଲଙ୍କ ସହିତ କର୍ଣ୍ଣେଲ ହାରକୋର୍ଟଙ୍କର ଏକ ଅଲିଖିତ ଚୁକ୍ତିମତେ ଇଂରେଜ ସୈନ୍ୟବାହିନୀଙ୍କର ପୁରୀବାଟଦେଇ କଟକ ଅଭିଯାନରେ ମୁକୁନ୍ଦଦେବ ମରହଟ୍ଟାଙ୍କ ବିପକ୍ଷରେ ଇଂରେଜବାହିନୀକୁ ସହାୟତା କରିବେ ଏବଂ ଇଂରେଜବାହିନୀ କଟକ ବାରବାଟି ଦୁର୍ଗ ଅଧିକାର କରିବାପରେ ହାରକୋର୍ଟ ମୁକୁନ୍ଦଦେବଙ୍କୁ ଏକ ଲକ୍ଷ ଟଙ୍କା ସହିତ ଖୋର୍ଦ୍ଧା ରାଜାଙ୍କଠାରୁ ମରହଟ୍ଟାମାନେ ଛଡ଼େଇନେଇଥିବା ଚାରି ଗୋଟି ପ୍ରଗଣା ସମେତ ଜଗନ୍ନାଥକ୍ଷେତ୍ରକୁ ଫେରାଇଦେବେ । କିନ୍ତୁ ବାରବାଟି ଅଧିକାର କଲାପରେ ହାରକୋର୍ଟ ସେ ଚାରି ପ୍ରଗଣାକୁ ଫେରାଇଲେ ନାହିଁ । ମୁକୁନ୍ଦଦେବଙ୍କ ଦରଖାସ୍ତରେ ଚାରି ପ୍ରଗଣାର ନାମ ନାହିଁ । କେବଳ ''ଶ୍ରୀ ପୁରୁଷୋତ୍ତମକ୍ଷେତ୍ର ଓ ଅନ୍ୟାନ୍ୟ ଅଞ୍ଚଳ ମୋଟ ଚାରି ଗୋଟି ମାହାଲ ଲେଖାଯାଇଛି । ସେହି ଚାରି ମାହାଲକୁ - ଚାରି ପ୍ରଗଣା ବୋଲି ଐତିହାସିକମାନେ ଉଦ୍ଧାରକରିଛନ୍ତି ।[୨୧୦]

ଉପରୋକ୍ତ ଚାରି ପ୍ରଗଣାକୁ ପୂର୍ବଚୁକ୍ତିମୁତାବକ ହାରକୋର୍ଟ ମୁକୁନ୍ଦଦେବଙ୍କୁ ଫେରାଇ ନ ଦେବାରୁ ମୁକୁନ୍ଦଦେବ ଓ ଜୟୀ ରାଜଗୁରୁ ଇଂରେଜ ସରକାର ବିରୋଧରେ ବିଦ୍ରୋହକଲେ । ଇଂରେଜମାନେ ଖୋର୍ଦ୍ଧାଗଡ଼କୁ ଧ୍ୱଂସକରି ଜୟୀ ରାଜଗୁରୁଙ୍କୁ ଫାଶୀଦେଲେ ଏବଂ ମୁକୁନ୍ଦଦେବଙ୍କୁ ବନ୍ଦିକରି ଖୋର୍ଦ୍ଧା ରାଜ୍ୟକୁ ଖାସ୍‌କଲେ । ଟୟନବୀ ଲେଖିଛନ୍ତି ଖୋର୍ଦ୍ଧା ରାଜ୍ୟ ଖାସ୍‌ହେବାପରେ ପୂର୍ବରୁ ଖୋର୍ଦ୍ଧାରାଜାଙ୍କଠାରୁ ମରହଟ୍ଟାମାନେ ଛଡ଼ାଇନେଇଥିବା ପ୍ରଗଣାଗୁଡ଼ିକର ମାଲିକାନାପାଇଁ କେହି ଦାବି ନ କରିବାରୁ ୧୮୦୯ ଖ୍ରୀଷ୍ଟାବ୍ଦରେ କଲେକ୍ଟରଙ୍କ ଭୂତପୂର୍ବ ଦେଓ୍ୱାନ୍ କୃଷ୍ଣଚନ୍ଦ୍ର ସିଂହଙ୍କୁ ସେହି ପ୍ରଗଣାଗୁଡ଼ିକୁ ନିଲାମଦ୍ୱାରା ବିକ୍ରି କରିଦିଆଗଲା ।[୨୧୧] ଖୋର୍ଦ୍ଧାରାଜାଙ୍କଠାରୁ ମରହଟ୍ଟାମାନେ ସିରାଇ, ଲେମ୍ବାଇ, ରାହାଙ୍ଗ ଓ ଚବିଶକୁଦ ପ୍ରଗଣା ଛଡ଼ାଇନେଇଥିଲେ । ତେଣୁ ସେହି ଚାରି ପ୍ରଗଣାକୁ କୃଷ୍ଣଚନ୍ଦ୍ର ସିଂହ ୧୮୦୯ରେ କିଣିନେଲେ ବୋଲି ଟୟନ୍‌ବୀଙ୍କ ଲେଖାରୁ ଧାରଣା ହେବା ସ୍ୱାଭାବିକ ।

କଲେକ୍ଟର ଟ୍ରାଓ୍ୱେର ମଧ୍ୟ ୧୮୧୩ ଖ୍ରୀଷ୍ଟାବ୍ଦରେ ବକ୍ସି ଜଗବନ୍ଧୁଙ୍କ ଦରଖାସ୍ତ ସମ୍ପର୍କରେ ପୁଂଖାନୁପୁଂଖ ତଦନ୍ତକରି କମିଶନର୍ ରିଚାର୍ଡ଼ସନ୍‌ଙ୍କୁ ଯେଉଁ ରିପୋର୍ଟ ଦେଇଥିଲେ ଗାଇଡ୍ ଟୁ ଓରିଶାନ୍ ରେକର୍ଡ଼ସ ୩ୟ ଖଣ୍ଡରେ ପ୍ରକାଶିତ ସେହି ରିପୋର୍ଟର ଚତୁର୍ଥ ଓ ଷଷ୍ଠ ପାରାରେ ଉଲ୍ଲେଖ ଅଛି ଯେ ୧୮୦୫ ଖ୍ରୀଷ୍ଟାବ୍ଦରେ ରାହାଙ୍ଗ, ଚବିଶକୁଦ, ଲେମ୍ବାଇ ପ୍ରଗଣା ସହିତ କୋକଲ କିଲ୍ଲା ଓ ରୋଡ଼ଙ୍ଗ କିଲ୍ଲା ଦାୟିତ୍ୱରେ ଠାକୁରଦାସଙ୍କୁ ତହସିଲଦାରଭାବେ ରଖାଯାଇଥିଲା ଏବଂ ୧୮୦୯ ଖ୍ରୀଷ୍ଟାବ୍ଦରେ ସେହି ପ୍ରଗଣାଗୁଡ଼ିକୁ କୃଷ୍ଣଚନ୍ଦ୍ର ସିଂହ କିଣିନେଲେ ।[୨୧୨] ଟ୍ରାଓ୍ୱେରଙ୍କର ଏହି ରିପୋର୍ଟ ହିଁ ଟୟନ୍‌ବୀଙ୍କ ଉକ୍ତିର ଭିତ୍ତି ଥିଲା । ଉଲ୍ଲେଖଯୋଗ୍ୟ ଯେ କୃଷ୍ଣଚନ୍ଦ୍ର ସିଂହ ଯେଉଁ ମାହାଲଗୁଡ଼ିକ କିଣି ପାଇକପଡ଼ା ଜମିଦାରୀ

---

୨୧୦- ୫୬/VIII ୨୧୧- ୩୫/୧୨ ୨୧୨- ୫୭/୧୨

ସୃଷ୍ଟିକଲେ କିଣିବା ପୂର୍ବରୁ ସେ ଚାଣକ୍ୟତାକରି ସେହିସବୁ ମାହାଲର ନାମକୁ ବନ୍ଦୋବସ୍ତ ରେକର୍ଡ଼ରେ ଉଲ୍ଲେଖ ନ କରି କେବଳ 'ରାହାଙ୍ଗ ଓଗେର' ନାମରେ ରେକର୍ଡ଼ କରାଇନେଇଥିଲେ ।[୨୧୩] ତେଣୁ ଟୟନ୍‌ବୀଙ୍କ ଉକ୍ତିମତେ ମରହଟ୍ଟାମାନେ ଖୋର୍ଦ୍ଧାରାଜାଙ୍କଠାରୁ ଛଡ଼ାଇନେଇଥିବା ଚାରି ପ୍ରଗଣା ସେହି 'ରାହାଙ୍ଗ ଓଗେର' ମାହାଲର ଅନ୍ତର୍ଭୁକ୍ତ ଥାଇ ଲାଲା କୃଷ୍ଣଚନ୍ଦ୍ର ସିଂହଙ୍କର ପାଇକପଡ଼ା ଜମିଦାରୀ ମାହାଲରେ ରହିଲାଭଳି ଧାରଣା ସୃଷ୍ଟିହେଲା । କାରଣ ପରବର୍ତ୍ତୀ ଲେଖକମାନେ ମଧ୍ୟ ଟୟନ୍‌ବୀଙ୍କ ଉକ୍ତିକୁ ଉଦ୍ଧାରକଲେ ।

କିନ୍ତୁ ପ୍ରକୃତରେ 'ରାହାଙ୍ଗଓଗେର' ମାହାଲରେ ଉପରୋକ୍ତ ଲେମ୍ବାଇ ପ୍ରଗଣା ନ ଥିଲା । ରାହାଙ୍ଗ, ସିରାଇ ଓ ଚବିଶକୁଦ- ଏହି ତିନି ପ୍ରଗଣା ସହିତ ବକ୍ସିଙ୍କ ରୋଡ଼ଙ୍ଗ ମାହାଲକୁ ମିଶାଇ 'ରାହାଙ୍ଗଓଗେର' ନାମ ଦିଆଯାଇଥିଲା । ତେଣୁ ଲାଲା କୃଷ୍ଣଚନ୍ଦ୍ର ସିଂହଙ୍କ ପାଇକପଡ଼ା ଜମିଦାରୀ ମାହାଲରେ ଲେମ୍ବାଇ ପ୍ରଗଣା ନ ଥିଲା । ୧୯୫୪ମସିହାରେ ଓଡ଼ିଶା ସରକାର ମଧ୍ୟସ୍ୱତ୍ୱାଧିକାରୀ ସ୍ୱତ୍ୱ ଉଚ୍ଛେଦକଲେ । ସେତେବେଳକୁ ଲେମ୍ବାଇ ପ୍ରଗଣା 'ଡେଲାଙ୍ଗ ଇଷ୍ଟେଟ' ନାମରେ ପାରଳାରାଜାଙ୍କ ଜମିଦାରୀଥିଲା । ଡେଲାଙ୍ଗ ହାଟ ପାଖ ଲୁଣାନଈ କୂଳରେ ଡେଲାଙ୍ଗଇଷ୍ଟେଟ୍ ମ୍ୟାନେଜରଙ୍କ କଚେରି କୁହାଯାଉଥିବା ଏକ ସୁଦୃଶ୍ୟ ବଙ୍ଗଳା ଥିଲା । ଏହା ଆମ୍ଭମାନଙ୍କର ଆଖିଦେଖା ଘଟଣା । ଏହି କାରଣରୁ ମାଲିକାନା ସମ୍ପର୍କରେ ସ୍ପଷ୍ଟଚିତ୍ର ଉନ୍ମୋଚିତ ହେବା ଉଚିତ ।

୧. ମ୍ୟାଡକ୍ସ ସେଟଲମେଣ୍ଟ ରିପୋର୍ଟରେ ପ୍ରକାଶିତ ତଥ୍ୟମତେ ଡେଲାଙ୍ଗ ଇଷ୍ଟେଟ୍ (ଲେମ୍ବାଇ)ର କ୍ଷେତ୍ରଫଳ ଥିଲା ୮୯.୮୬ ବର୍ଗମାଇଲ ବା ୫୭୫୯୭ ଏକର ଏବଂ ଏହାର ବାର୍ଷିକ ସଦର ଜମା ଥିଲା ଟ ୩୩୭୫୪ଙ୍କା ।[୨୧୪] ଡେଲାଙ୍ଗ ଇଷ୍ଟେଟ୍‌ର ମାଲିକାନା ଖୋର୍ଦ୍ଧା ରାଜାଙ୍କ ହାତରୁ ଯାଇ ଇଂରେଜ ସରକାରଙ୍କର ଖାସ୍‌ହୋଇଥିଲା ୧୮୦୫ ଖ୍ରୀଷ୍ଟାବ୍ଦରେ, ୧୮୦୮ ଖ୍ରୀଷ୍ଟାବ୍ଦରେ ପୁଣି ଖୋର୍ଦ୍ଧା ରାଜା ଫେରିପାଇଥିଲେ, କିନ୍ତୁ ୧୮୧୭ରେ ପୁନର୍ବାର ଇଂରେଜ ସରକାର ହାତକୁ ନେଇ ଖାସ୍‌କରିଦେଲେ । ୧୮୧୭ରୁ ଦୀର୍ଘ ଅଠେଇଶ ବର୍ଷ କାଳ ଇଂରେଜ ସରକାରଙ୍କର ଖାସ୍ ଇଷ୍ଟେଟ୍ ହୋଇ ରହିବାପରେ ୧୮୪୫ ଖ୍ରୀଷ୍ଟାବ୍ଦରେ ପୁଣି ଥରେ ପୁରୀର ରାଜା ଏହାର ମାଲିକାନା ଫେରିପାଇଥିଲେ । (Delang Zamindari right - "forfeited by the Raja of Khurda in 1805, held Khas, restored to the Raja of Khurda in 1808, Rescued in 1817, held Khas till 1845 when the Raja re-engaged.")[୨୧୪]

୨. ଏଠାରେ ଉଲ୍ଲେଖଯୋଗ୍ୟ ଯେ ବୀରକେଶରୀଦେବଙ୍କଠାରୁ ମରହଟ୍ଟାମାନେ ଯେଉଁ ଚାରି ପ୍ରଗଣା ଛଡ଼ାଇନେଇଥିଲେ, ବୀରକେଶରୀଦେବଙ୍କ ପରବର୍ତ୍ତୀ ରାଜା

---

*୨୧୩- ୫୭/୧୩ ୨୧୪- ୪୮/୫୫୪*

ଦିବ୍ୟସିଂହଦେବ ମରହଟ୍ଟାମାନଙ୍କୁ ବାର୍ଷିକ ଦଶ ହଜାର ଟଙ୍କା ପେସ୍‌କିସ୍ ଦେବା ଚୁକ୍ତିକରି ସେହି ଚାରି ପ୍ରଗଣାରୁ ଲେମ୍ବାଇ ପ୍ରଗଣାକୁ ନିଜ ଅଧିକାରକୁ ଫେରାଇ ଆଣିଥିଲେ ।[୨୧୬] ତେଣୁ ଦିବ୍ୟସିଂହଦେବଙ୍କ ପରବର୍ତ୍ତୀ ରାଜା ମୁକୁନ୍ଦଦେବଙ୍କ ବେଳକୁ ଲେମ୍ବାଇ ଖୋର୍ଦ୍ଧା ରାଜାଙ୍କର ଜମିଦାରୀ ମାହାଲଥିଲା । କିନ୍ତୁ ଏଥିପାଇଁ ମରହଟ୍ଟାମାନଙ୍କୁ ବାର୍ଷିକ ଦଶ ହଜାର ଟଙ୍କା ପେସ୍‌କିସ୍ ଦେବାକୁ ପଡୁଥିବାରୁ ସମ୍ଭବତଃ ମୁକୁନ୍ଦଦେବ ଏହାକୁ ମିଶାଇ ଚାରି ପ୍ରଗଣାକୁ ହାରକୋର୍ଟଙ୍କ ମାଧ୍ୟମରେ ଫେରିପାଇବେ ବୋଲି ଆଶାକରିଥିଲେ, କିମ୍ବା ଲେମ୍ବାଇକୁ ବାଦ୍ ଦେଇ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ସହିତ ରାହାଙ୍ଗ, ସିରାଇ ଓ ଚବିଶକୁଦ ପ୍ରଗଣାକୁ ମିଶାଇ ଚାରି ମାହାଲ ବା ଚାରି ପ୍ରଗଣାକୁ ଫେରିପାଇବାକୁ ଚୁକ୍ତିକରିଥିଲେ, ତାଙ୍କ ୧୮୦୭ର ଦରଖାସ୍ତରୁ ମଧ୍ୟ ଏହାର ସ୍ପଷ୍ଟଚିତ୍ର ମିଳୁ ନାହିଁ । କିନ୍ତୁ ଏହା ନିଶ୍ଚିତ ଯେ ୧୮୦୩ରେ କର୍ଣ୍ଣେଲ ହାରକୋର୍ଟ ମରହଟ୍ଟାମାନଙ୍କ ଅଧିକାରରେ ଥିବା ସିରାଇ, ରାହାଙ୍ଗ ଓ ଚବିଶକୁଦ ପ୍ରଗଣା ସହିତ ମୁକୁନ୍ଦଦେବଙ୍କ ଅଧିକାରରେ ଥିବା ଲେମ୍ବାଇ ପ୍ରଗଣାକୁ ଜବରଦସ୍ତ ଖାସ୍ କରିଦେଇଥିଲେ । ୧୮୦୪ରେ ସେହି ଚାରି ପ୍ରଗଣା ମୁକୁନ୍ଦଦେବଙ୍କୁ ଫେରାଇ ନ ଦେବାରୁ ଇଂରେଜଙ୍କ ବିରୋଧରେ ଜୟୀ ରାଜଗୁରୁ ବିଦ୍ରୋହକଲେ ଓ ଇଂରେଜଙ୍କର ମୁକୁନ୍ଦଦେବଙ୍କ ସହିତ ସଂଘର୍ଷର ସୂତ୍ରପାତ ହେଲା । ତେଣୁ ସମ୍ଭବତଃ ୧୮୦୪ର ବର୍ଷିକିଆ ବନ୍ଦୋବସ୍ତରେ ସେହି ବିବାଦୀୟ ୪ ପ୍ରଗଣାର ବନ୍ଦୋବସ୍ତ କରିବାକୁ ଇଂରେଜମାନେ ଚାହିଁ ନ ଥିଲେ । କିନ୍ତୁ ସେମାନେ ଖୋର୍ଦ୍ଧାଗଡ଼କୁ ଧ୍ୱଂସକରି ଖୋର୍ଦ୍ଧା ରାଜ୍ୟକୁ ଖାସ୍‌କରି ଦେବା ପରେ ୧୮୦୫ରେ ତିନି ବର୍ଷିଆ ବନ୍ଦୋବସ୍ତରେ ଖାସ୍ ଇଲାକାଗୁଡ଼ିକର ବନ୍ଦୋବସ୍ତ କରିବା ସମୟରେ ଲେମ୍ବାଇ ପ୍ରଗଣାର ମାଲିକାନା ଖୋର୍ଦ୍ଧାରାଜାଙ୍କର ଥିଲା ବୋଲି ଜଣାପଡ଼ିବା ପରେ ତାକୁ ଆଉ ଗାଦିଚ୍ୟୁତ ଓ ବନ୍ଦିରାଜାଙ୍କ ନାମରେ ବନ୍ଦୋବସ୍ତ ନ କରି ଖାସ୍ କରି ରଖିଲେ ।

ପୂର୍ବୋକ୍ତ ଚାରି ପ୍ରଗଣାରୁ ଅନ୍ୟ ତିନି ଗୋଟି ପ୍ରଗଣା, ଯଥା- ରାହାଙ୍ଗ, ସିରାଇ ଓ ଚବିଶକୁଦକୁ ମଧ୍ୟ ସେହି ୧୮୦୫ର ତିନି ବର୍ଷିଆ ବନ୍ଦୋବସ୍ତରେ 'ରାହାଙ୍ଗ ଓଗେର' ମାହାଲ ଦର୍ଶାଇ ୧୮୦୯ ଖ୍ରୀଷ୍ଟାବ୍ଦରେ ସେହି ମାହାଲକୁ କୃଷ୍ଣଚନ୍ଦ୍ର ସିଂହ କିଣିନେଲେ ।

୩. ସେତେବେଳର ବଙ୍ଗାଳୀ ଅମଲାମାନଙ୍କ ପ୍ରବଳ ପ୍ରାଦୁର୍ଭାବ ସମ୍ପର୍କରେ ଏକ ଦୃଷ୍ଟାନ୍ତ ଦେବାକୁ ଯାଇ ଟୟନ୍‌ବୀ ଲେଖିଛନ୍ତି- ଗାଦିଚ୍ୟୁତ ଖୋର୍ଦ୍ଧାରାଜାଙ୍କୁ (ଲେମ୍ବାଇ ପ୍ରଗଣା) ଡେଲାଙ୍ଗ ଇଷ୍ଟେଟରୁ ଉଚ୍ଛେଦ କରାଗଲାପରେ ସେହି ଇଷ୍ଟେଟର ଗ୍ରାମମୁଖିଆ ବା ପଧାନମାନଙ୍କ ନାମରେ ସିଧାସଳଖ ଉକ୍ତ ଇଷ୍ଟେଟ୍‌ର ବନ୍ଦୋବସ୍ତ କରାଇବା କଥା ଚିନ୍ତାକରାଗଲା । ଏ ଖବର ପାଇ ଗ୍ରାମ ମୁଖିଆମାନେ ଦଳବାନ୍ଧି ଆସି କଲେକ୍ଟରଙ୍କ ପାଖେ ଆପତ୍ତିକଲେ ଯେ ହୁଗୁଳୀ ନିବାସୀ ଶ୍ରୀ ନୀଳମଣି ଚୌଧୁରୀଙ୍କୁ ଡେଲାଙ୍ଗ ଇଷ୍ଟେଟ୍‌ର

୨୧୫- ୪୮/୬୦୦ ୨୧୬- ୩/୨୬୬

ଜମିଦାରୀ ବିକ୍ରିକରାଗଲେ ସେହି ଜମିଦାରଙ୍କ ସପକ୍ଷରେ ସେମାନେ ନିଜନିଜର ପଧାନୀସ୍ୱତ୍ତ୍ୱ ପରିତ୍ୟାଗ କରିବାକୁ ପ୍ରସ୍ତୁତ ଅଛନ୍ତି । କିନ୍ତୁ ସଂପୃକ୍ତ କଲେକ୍ଟର ବଦଳିହୋଇଯିବାରୁ ସେ ଦିଗରେ କାର୍ଯ୍ୟାନୁଷ୍ଠାନ କରାଯାଇ ପାରିଲା ନାହିଁ, ତେଣୁ ୧୮୦୮ରେ ପୁଣି ଖୋର୍ଦ୍ଧାରାଜାଙ୍କୁ ତେଲାଙ୍ଗ ଜମିଦାରୀ ଫେରାଇଦିଆଗଲା । ଟୟନ୍‌ବୀ ଏହାକୁ ଏକ କୌତୂହଳପ୍ରଦ ଘଟଣାବୋଲି ବର୍ଣ୍ଣନା କରିଛନ୍ତି । [୨୧୭]

କିନ୍ତୁ ଇଂରେଜମାନେ ହିଁ ବଙ୍ଗାଳୀ ଅମଲାମାନଙ୍କୁ ଓଡ଼ିଶାକୁ ଡାକିଆଣି ନିଯୁକ୍ତ କରିଥିଲେ ଏବଂ ଓଡ଼ିଶାକୁ ସେମାନଙ୍କର ଜମିଦାରୀ ମାହାଲରେ ପରିଣତ କରିବାପାଇଁ କୃଷ୍ଣଚନ୍ଦ୍ର ସିଂହଙ୍କ ଭଳି ଶହ ଶହ ବଙ୍ଗାଳୀଙ୍କୁ ସବୁପ୍ରକାର ପ୍ରୋତ୍ସାହନ ଯୋଗାଇବାର ବ୍ୟବସ୍ଥା ଖଞ୍ଜିଦେଇଥିଲେ । ପାଇକବିଦ୍ରୋହ ପରେ ୨୩।୫।୧୮୧୭ ତାରିଖରେ କଟକର କଲେକ୍ଟର ଟ୍ରାୱେର ରେଭିନ୍ୟୁବୋର୍ଡ଼ର ଆକ୍ସିଙ୍ଗ ସେକ୍ରେଟେରୀଙ୍କୁ ଲେଖିଥିବା ଦୀର୍ଘ ରିପୋର୍ଟରୁ ଏହା ପ୍ରମାଣିତ ହୁଏ । ସେ ଲେଖିଥିଲେ ୧୮୦୬ରୁ ୧୮୧୬, ମାତ୍ର ଦଶ ବର୍ଷ ମଧ୍ୟରେ ଓଡ଼ିଶାର ଗଡ଼ଜାତ ବା କରଦରାଜ୍ୟକୁ ଛାଡ଼ି ସର୍ବମୋଟ ଛୋଟବଡ଼ ୨୩୪୦ ଗୋଟି ମାହାଲରୁ ୧୦୧୧ ଗୋଟି ମାହାଲକୁ ନିଲାମକରିଦଆଯାଇଥିଲା ଏବଂ ସେଥିରୁ ୩୫୦ଗୋଟି ବଛାବଛା ଜମିଦାରୀ ଅଣଓଡ଼ିଆଙ୍କ ହାତକୁ ଚାଲିଯାଇଥିଲା । ଟ୍ରାୱେର ଆହୁରି ଏକ ଦୃଷ୍ଟାନ୍ତ ଦର୍ଶାଇ ନିର୍ଦ୍ଦିଷ୍ଟ ୪୧ ଗୋଟି ଜମିଦାରୀ ମାହାଲର ବାର୍ଷିକ ସଦରଜମା ଟ୨,୨୧,୬୯୫ଙ୍କା ହୋଇଥିବା ସ୍ଥଳେ ସେହି ୪୧ ଗୋଟି ମାହାଲକୁ ମାତ୍ର ଟ୪୬୨୦୫ଙ୍କାରେ ନିଲାମ କରାଯାଇଥିବାରୁ ତାହାକୁ ସିଧାସଳଖ ଡକାୟତି ବୋଲି ଲେଖିଛନ୍ତି ।[୨୧୮]

୪. ପୂର୍ବରୁ କୁହାଯାଇଛି ଯେ ହାରକୋର୍ଟଙ୍କର ମୁକୁନ୍ଦଦେବଙ୍କପ୍ରତି ଅତିମାତ୍ରାରେ କୋପଦୃଷ୍ଟି ହେତୁ ହିଁ ସେ ଜବରଦସ୍ତ ଲେୟାଇ ମାହାଲକୁ ତାଙ୍କଠାରୁ ଛଡ଼ାଇନେଇ ଖାସ୍‌କରିଦେଇଥିଲେ । କିନ୍ତୁ ମୁକୁନ୍ଦଦେବ ବନ୍ଦିଥିବା ଅବସ୍ଥାରେ ୧୮୦୭ରେ ମେଦିନୀପୁର ଜେଲ ଭିତରୁ ଗଭର୍ଣ୍ଣର ଜେନେରାଲ୍‌ଙ୍କ ଉଦ୍ଦେଶ୍ୟରେ ଏକ ଦରଖାସ୍ତ ଲେଖି ଜେଲରୁ ମୁକ୍ତିପାଇବାପାଇଁ ପ୍ରାର୍ଥନା କରିବା ପରେ ତାଙ୍କୁ ସେଇ ୧୮୦୭ରେ ଜେଲ୍‌ରୁ ଛାଡ଼ିଦିଆଯାଇ ପୁରୀରେ ରହିବାକୁ ଅନୁମତି ଦିଆଯାଇଥିଲା[୨୧୯], ଏବଂ ତାଙ୍କପ୍ରତି ସରକାରଙ୍କର ପରିବର୍ତ୍ତିତ କୋହଳ ମନୋବୃତ୍ତିହେତୁ ୧୮୦୮ରେ ତାଙ୍କ ତେଲାଙ୍ଗ ଜମିଦାରୀ (ଲେୟାଇ) ମାହାଲ ତାଙ୍କୁ ଫେରାଇ ଦିଆଯାଇଥିଲା ।

୫. କିନ୍ତୁ ୧୮୧୭ ପାଇକବିଦ୍ରୋହ ପରେ ପୁଣି ମୁକୁନ୍ଦଦେବଙ୍କ ମୁଣ୍ଡରେ ଚଡ଼କପଡ଼ିଲା । ତାଙ୍କର ଆଉ ଖୋର୍ଦ୍ଧା ରାଜ୍ୟ ନ ଥିଲା । ଖୋର୍ଦ୍ଧା ଇଲାକାରେ ଥିବା ଏଖରାଜାତ ମାହାଲ ଥିଲା ଜଗନ୍ନାଥଙ୍କର । ମୁକୁନ୍ଦଦେବ କେବଳ ଜଗନ୍ନାଥ ମନ୍ଦିରର

---

*୨୧୭- ୪୮/୬୦୦ ୨୧୮- ୫୮/୧୩,୧୪ ୨୧୯- ୬୩/୫୦*

ସୁପରିଣ୍ଟେଣ୍ଡେଣ୍ଟଭାବେ ମାସିକ ଭତ୍ତାପାଇ ପୁରୀରେ ରହୁଥିଲେ। ଅଳଙ୍କାର ମଧ୍ୟରେ ନିମ୍ନକାଠି ଭଳି ତାଙ୍କର ନିଜର ହୋଇ କେବଳ ଡେଲାଙ୍ଗ ବା ଲେମ୍ବାଇ ଜମିଦାରୀ ମାହାଲଟି ୧୮୧୭ ଯାଏଁ ଥିଲା। କିନ୍ତୁ ପାଇକବିଦ୍ରୋହ ପରେ 'ବାକୀରାଜସ୍ୱ ଅନାଦାୟ' ଅଭିଯୋଗ ଆରୋପକରି ଇଂରେଜ ସରକାର ଡେଲାଙ୍ଗ ଇଷ୍ଟେଟ୍‌କୁ ରାଜାଙ୍କ ହାତରୁ ଛଡ଼ାଇ ଖାସ୍‌କରିଦେଲେ। (୨୨୦)

୬. କଲିକତା ସର୍କିଟ କୋର୍ଟର ଚତୁର୍ଥ ବିଚାରପତି ଓ୍ୱାଟ୍‌ସନ୍ ଖୋର୍ଦ୍ଧା ପାଇକବିଦ୍ରୋହର ଅବ୍ୟବହିତ ପୂର୍ବରୁ ୧୮୧୭ ଜାନୁଆରୀ ୪ ତାରିଖରେ ସମୁଦ୍ରପଥରେ ପୁରୀ ଆସି ଫେବୃୟାରୀ ୮ ତାରିଖ ଯାଏଁ ପୁରୀରେ ଅବସ୍ଥାନ କରିଥିଲେ। ସେହି ସମୟରେ ପୁରୀର ରାଜା ମୁକୁନ୍ଦଦେବ ତାଙ୍କୁ ଦୁଇ ଥର ସାକ୍ଷାତ୍ କରି ସମ୍ଭବତଃ ଲେମ୍ବାଇ ଜମିଦାରୀ ମାହାଲର ଅତ୍ୟଧିକ ରାଜସ୍ୱ ଜମାବୃଦ୍ଧି ଏବଂ ତାଙ୍କର ଦୁରବସ୍ଥା ଓ ଆର୍ଥିକ ଅକ୍ଷମତା ସତ୍ତ୍ୱେ ତାଙ୍କ ଉପରେ ବହୁପରିମାଣ ବକୟା ଜମା ଧାର୍ଯ୍ୟ କରାଯାଇ ସେହି ବକୟା ଜମା ଆଦାୟପାଇଁ କଲେକ୍ଟରଙ୍କର ତନାଘନା ଜୁଲମ ସମ୍ପର୍କରେ ତାଙ୍କୁ ଅବଗତ କରାଇବା ସଙ୍ଗେ ସଙ୍ଗେ ଖଣ୍ଡିଏ ଦରଖାସ୍ତ ତାଙ୍କୁ ହାତେ ହାତେ ଦେଇଥିଲେ। ବିଚାରପତି ଓ୍ୱାଟ୍‌ସନ୍ ଏପ୍ରିଲ୍ ମାସ ଶେଷପର୍ଯ୍ୟନ୍ତ ସେହି ଦରଖାସ୍ତ ସମ୍ପର୍କରେ କୌଣସି ପଦକ୍ଷେପ ନେଇ ନ ଥିଲେ। କିନ୍ତୁ ପାଇକବିଦ୍ରୋହ ପରେ ପରେ ୩।୫।୧୮୧୭ ତାରିଖରେ ମୁକୁନ୍ଦଦେବଙ୍କ ଦରଖାସ୍ତର ଇଂରାଜୀ ନକଲ ସହିତ ସରକାରଙ୍କ ବିଚାରବିଭାଗ ଶାସନସଚିବ ବେଲିଙ୍କୁ ଏକ ଦୀର୍ଘ ରିପୋର୍ଟ ଦେଇଥିଲେ। ସେହି ରିପୋର୍ଟର ଅଷ୍ଟମ ପାରାରେ ସେ ପୁରୀ ରାଜାଙ୍କ ଉପରେ ଅତ୍ୟଧିକ ବକୟା ଜମା ଧାର୍ଯ୍ୟ କରାଯିବା ଏବଂ ତାକୁ ଆଦାୟକରିବାପାଇଁ ଆର୍ଥିକ ଦୁର୍ଦ୍ଦଶାଗ୍ରସ୍ତ ରାଜାଙ୍କ ଉପରେ କଲେକ୍ଟର ତନାଘନା ଜୁଲମ ଜାରିକରିଥିବା ଘଟଣାକୁ ସମାଲୋଚନା କରି ରାଜାଙ୍କ ଆର୍ଥିକ ଅକ୍ଷମତା ଦୃଷ୍ଟିରୁ ଲେମ୍ବାଇ ପ୍ରଗଣା ଜମିଦାରୀ ମାହାଲପାଇଁ ରାଜାଙ୍କୁ ରିହାତିଦେଇ ସାମାନ୍ୟ ପରିମାଣର ଜମା ଧାର୍ଯ୍ୟ କରାଯିବା ଉଚିତ ହୋଇଥାଆନ୍ତା ବୋଲି ମତ ବ୍ୟକ୍ତ କରିଥିଲେ ଏବଂ ସେହି ରିପୋର୍ଟ ସମ୍ପର୍କରେ ଗଭର୍ଣ୍ଣର ଜେନେରାଲଙ୍କୁ ଅବହିତ କରାଇ କଲେକ୍ଟରଙ୍କୁ ଆବଶ୍ୟକମତେ ପରାମର୍ଶ ଦେବାକୁ ଲେଖିଥିଲେ। (୨୨୧)

୭. ୧୮୧୭ ଜୁନ୍ ୩ ତାରିଖରେ ରେଭିନ୍ୟୁ ବୋର୍ଡ଼ର ସଭ୍ୟ ଆର୍.ରୋକେ ଏବଂ ଓ.ସାଲମନ୍ ଗଭର୍ଣ୍ଣର ଜେନେରାଲଙ୍କୁ ଏକ ଦୀର୍ଘ ପତ୍ର ଲେଖି ସେହି ପତ୍ରରେ ଷଷ୍ଠ ପରିଚ୍ଛେଦରେ ଜଣାଇଲେ ଯେ ଲେମ୍ବାଇ ପ୍ରଗଣା ବାବଦରେ ଖୋର୍ଦ୍ଧା ରାଜାଙ୍କ ଉପରେ ୩୧୨୭୮ ଟଙ୍କା ରାଜସ୍ୱ ବାକୀପଡ଼ିଛି। ଗତ ଅମଲୀ ବର୍ଷ ୧୨୨୩ (୧୮୧୬ ଖ୍ରୀଷ୍ଟାବ୍ଦ)

---

୨୨୦- ୪୮/୬୦୦ ୨୧- ୪୮/୬୦୦

ସୁଦ୍ଧା ତାଙ୍କର ବକେୟା ଦେୟ ପରିମାଣ ଥିଲା ୧୫୧୧୩ଟଙ୍କା । ୧୮୧୬ର ୬ ରେଗୁଲେସନ୍ ଅନୁଯାୟୀ ସେ ପ୍ରଥମେ ଏହି ମାହାଲକୁ ଛାଡ଼ିଦେବେ ବୋଲି ଇଚ୍ଛା ପ୍ରକାଶକରି ପରେ ପୁଣି ମତ ବଦଳାଇ ରଖିବାକୁ ଚାହିଁବାରୁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ବାକୀ ରାଜସ୍ୱ ପୈଠ କରିବା ସର୍ତ୍ତରେ ତାଙ୍କ ମତକୁ ଗ୍ରହଣକରାଯାଇଥିଲା । କିନ୍ତୁ ପରେ ପୁଣି ସେ ଉକ୍ତ ବକେୟା ରାଜସ୍ୱ ଦେୟ ପୈଠ କରିବାକୁ ଅସମ୍ମତ ହେବାରୁ ଉକ୍ତ ମାହାଲକୁ ନିଲାମ କରିବା ବ୍ୟତୀତ ଅନ୍ୟ ପନ୍ଥା ନ ଥିଲା ।[୨୨୨]

୮. ଉପରୋକ୍ତ ପତ୍ରର ଉତ୍ତରରେ ଗଭର୍ଣ୍ଣର ଜେନେରାଲଙ୍କ ତରଫରୁ ସରକାରଙ୍କ ଶାସନ ସଚିବ ଏଚ୍.ମ୍ୟାକେଞ୍ଜି ରେଭିନ୍ୟୁ ବୋର୍ଡ଼ ସଭ୍ୟ ଦୁଇ ଜଣଙ୍କୁ ୨୪।୧୦।୧୮୮୭ ତାରିଖରେ ଏକ ପତ୍ର ଲେଖି ସେହି ପତ୍ରର ୮ମ ଅନୁଚ୍ଛେଦରେ ଜଣାଇଲେ ଯେ ଖୋର୍ଦ୍ଧା ରାଜାଙ୍କ ମାହାଲ ସମ୍ପର୍କରେ ପରେ ପରିସ୍ଥିତିକୁ ଚାହିଁ ସୁଚିନ୍ତିତ ଭାବେ ବନ୍ଦୋବସ୍ତ କରିବାପାଇଁ ପଥ ଉନ୍ମୁକ୍ତ ରଖିବା ସରକାରଙ୍କ ଇଚ୍ଛା । ପୁଣି ସେହି ପତ୍ରର ଦଶମ ଅନୁଚ୍ଛେଦରେ ଜଣାଇଲେ ଯେ ଯେଉଁ ବ୍ୟକ୍ତି ଲେମ୍ବାଇ ପ୍ରଗଣାକୁ ପଟ୍ଟା ନେଇଛନ୍ତି ତାଙ୍କୁ ଜଣାଇଦିଆଯାଉ ଯେ ଚଳିତ ଅମଳୀବର୍ଷ ୧୨୨୫ (୧୮୧୮) ଶେଷସୁଦ୍ଧା ସରକାରଙ୍କଦ୍ୱାରା ସେହି ପଟ୍ଟାକୁ ରଦ୍ଦକରିଦିଆଯିବ ।[୨୨୩]

୯. କଟକର କମିଶନର୍ ରବର୍ଟ କେର୍ ୩୧।୮।୧୮୧୮ ତାରିଖରେ ଗଭର୍ଣ୍ଣର ଜେନେରାଲଙ୍କୁ ଦୀର୍ଘ ୨୧ ପୃଷ୍ଠାର ଏକ ପତ୍ର ଲେଖି ସେହି ପତ୍ରର ଶେଷ ପାରାଗ୍ରାଫ୍‌ରେ ଜଣାଇଥିଲେ ଯେ, ସରକାରଙ୍କର କିଛି ପରିମାଣରେ କ୍ଷତି ହେଲେ ମଧ କିଛିଟା କୋହଳ ପନ୍ଥା ଅବଲମ୍ବନକରି ଖୋର୍ଦ୍ଧାର ନାବାଳକ ରାଜାଙ୍କୁ ଲେମ୍ବାଇ ପ୍ରଗଣାର ମାଲିକାନା ଫେରାଇଦେବା ଦିଗରେ 'ଖୁବ୍ ଶୀଘ୍ର' କିଛି ଗୋଟିଏ ବ୍ୟବସ୍ଥା ଗ୍ରହଣ କରିବେ ବୋଲି ସେ ଆଶାକରନ୍ତି ।[୨୨୪]

କିନ୍ତୁ କମିସନରଙ୍କର 'ଖୁବ୍ ଶୀଘ୍ର' ଆଶା ପୂର୍ଣ୍ଣ ହେବାକୁ ଦୀର୍ଘ ସତେଇଶ ବର୍ଷ ଲାଗିଲା । ୧୮୪୫ ଖ୍ରୀଷ୍ଟାବ୍ଦରେ ପୁରୀର ରାଜା ୩ୟ ରାମଚନ୍ଦ୍ରଦେବଙ୍କୁ ଇଂରେଜ ସରକାର ଲେମ୍ବାଇ (ତେଲାଙ୍ଗ ଇଷ୍ଟେଟ୍)ର ମାଲିକାନା ଫେରାଇ ଦେଇଥିଲେ ବୋଲି ମ୍ୟାଡ଼କ୍ସ ସେଟଲ୍‌ମେଣ୍ଟ ରିପୋର୍ଟରୁ ପ୍ରକାଶ । ମ୍ୟାଡ଼କ୍ସ ସେଟଲମେଣ୍ଟ ରିପୋର୍ଟ ୧୮୯୭ ବନ୍ଦୋବସ୍ତରେ ପ୍ରସ୍ତୁତ ହୋଇଥିଲା । ସେ ପର୍ଯ୍ୟନ୍ତ ଲେମ୍ବାଇ ପ୍ରଗଣାର ମାଲିକାନା ପୁରୀରାଜାଙ୍କର ଥିଲା ବୋଲି ଉକ୍ତ ରିପୋର୍ଟରେ କୁହାଯାଇଛି - "Lembai is still in Puri Raja's Possession"[୨୨୫]

୨୨୨- ୫୮/୩୧,୩୨ ୨୨୩- ୫୬/୫୦
୨୨୪- ୫୮/୭୩ ୨୨୫- ୪୮/୬୩୯,୬୨୪

କିନ୍ତୁ ଶ୍ରୀ ପଦ୍ମଚରଣ ସାହୁଙ୍କଦ୍ୱାରା ଲିଖିତ ''ଶତାବ୍ଦୀପୁରୁଷ କୃଷ୍ଣଚନ୍ଦ୍ର ଗଜପତି'' ପୁସ୍ତକରେ ୪୫ ପୃଷ୍ଠାରେ କୁହାଯାଇଛି ଯେ ''ପୁରୀ ଜିଲ୍ଲାର ଡେଲାଙ୍ଗ ଜମିଦାରୀ ଖ୍ରୀ.୧୮୮୫ରେ ନିଲାମ ହୋଇଥିଲା । ପାରଳାଖେମଣ୍ଡିର ତତ୍କାଳୀନ ରାଜା ଗୌରଚନ୍ଦ୍ର ଗଜପତି ସେହି ଡେଲାଙ୍ଗ ଜମିଦାରୀକୁ ନିଲାମରେ କିଣିଥିଲେ ।''

ତା'ହେଲେ ୧୮୯୭ରେ ବନ୍ଦୋବସ୍ତ ରିପୋର୍ଟ ପ୍ରକାଶ ପାଇବା ପର୍ଯ୍ୟନ୍ତ ଡେଲାଙ୍ଗ ଜମିଦାରୀ ମାଲିକାନା ପୁରୀ ରାଜାଙ୍କ ନାମରେ ରହିଲା କିପରି ? ସରକାରୀ ନିଲାମରେ କିଣା ମାହାଲ ପାରଳାରାଜାଙ୍କ ନାମରେ ପଞ୍ଜୀକୃତ ହୋଇ ବନ୍ଦୋବସ୍ତରେ ପାରଳାରାଜାଙ୍କ ନାଁରେ ଉଠିଥାନ୍ତା ! ଉଲ୍ଲେଖଯୋଗ୍ୟ ଯେ ପୁରୀର ଠାକୁରରାଜା ଗଜପତି ବୀରକିଶୋର ଦେବଙ୍କର ଅନ୍ତେ ତାଙ୍କ ପୋଷ୍ୟପୁତ୍ର (ବଡ଼ଖେମଣ୍ଡି ରାଜାଙ୍କ ୨ୟ ପୁତ୍ର) ଦିବ୍ୟସିଂହଦେବ (୩ୟ) ୧୮୫୯ରୁ ୧୮୭୩ ଖ୍ରୀଷ୍ଟାବ୍ଦପର୍ଯ୍ୟନ୍ତ ନାବାଳକ ଥିଲେ ଏବଂ ୧୮୭୩ରୁ ୧୮୭୮ ପର୍ଯ୍ୟନ୍ତ ମାତ୍ର ପାଞ୍ଚ ବର୍ଷ ମଧ୍ୟରେ କୁସଙ୍ଗରେ ପଡ଼ି ନାନା ଅନୀତି କାର୍ଯ୍ୟରେ ଲିପ୍ତ ରହି ଶେଷକୁ ଏକ ନରହତ୍ୟା ଅପରାଧରେ ୧୮୭୮ରୁ ୧୮୮୭ପର୍ଯ୍ୟନ୍ତ ଆଣ୍ଡାମାନ ଦ୍ୱୀପରେ ଦ୍ୱୀପାନ୍ତର ଦଣ୍ଡ ଭୋଗି ସେହିଠାରେ ମଲେ । ତେଣୁ ତାଙ୍କ ନାବାଳକତ୍ୱ ଚଉଦ ବର୍ଷ ଏବଂ ଦ୍ୱୀପାନ୍ତରବାସ ନଅ ବର୍ଷ- ଦୀର୍ଘ ତେଇଶି ବର୍ଷକାଳ ଠାକୁରରାଜାଙ୍କ ଦାୟିତ୍ୱ ତୁଲାଇଥିବା ପୁରୀର ବିଧବା ରାଜମାତା ସୂର୍ଯ୍ୟମଣି ପାଟମହାଦେଇ ନିଜର ଅଭିଭାବକତ୍ୱ, ଦିବ୍ୟସିଂହଦେବଙ୍କ ନରହତ୍ୟା ଅପରାଧ, ଏବଂ ବଡ଼ ଖେମଣ୍ଡି ରାଜାଙ୍କ ବିରୋଧ ହେତୁ ନାନା ମାମଲା ମୋକଦ୍ଦମାରେ ପଡ଼ି ଦାରୁଣ ଅର୍ଥାଭାବର ସମ୍ମୁଖୀନ ହୋଇଥିଲେ । ସମ୍ଭବତଃ ସେହି କାରଣରୁ ସୂର୍ଯ୍ୟମଣି ପାଟମହାଦେଇ ଠାକୁର ରାଜାଙ୍କ ହସ୍ତମୁଦୀ ମାହାଲ 'ଡେଲାଙ୍ଗ ଜମିଦାରୀର ବାର୍ଷିକ ରାଜସ୍ୱ ଦେୟ କେତେ ବର୍ଷର ଦେଇ ନ ପାରି ବାକୀ ରଖିଥିଲେ, ଯାହାଫଳରେ ଉକ୍ତ ମାହାଲକୁ ୧୮୮୫ରେ ସରକାର ନିଲାମ କରିଥିଲେ ଓ ପାରଳା ମହାରାଜା ନିଲାମଧରି କିଣି ନେଇଥିଲେ । ପାରଳା ଇଷ୍ଟେଟ୍ ସେତେବେଳେ ମାନ୍ଦ୍ରାଜ ପ୍ରଦେଶରେ ଥିଲା । ଖୋଦ୍ ଓଡ଼ିଶା ସରକାରଙ୍କଠାରୁ ଡେଲାଙ୍ଗ ଇଷ୍ଟେଟକୁ ନିଲାମରେ କିଣି ନେଇଥିବାରୁ ସମ୍ଭବତଃ ପାରଳା ମହାରାଜା ଓଡ଼ିଶାରେ ୧୮୮୯ରୁ ୧୮୯୯ ମଧ୍ୟରେ କରାଯାଇଥିବା ବନ୍ଦୋବସ୍ତ ପୂର୍ବରୁ ତାଙ୍କ ଡେଲାଙ୍ଗ ଇଷ୍ଟେଟ ଖରିଦ୍ ଦଲିଲକୁ ଦାଖଲଖାରଜ କରାଇ ନ ଥିଲେ କିମ୍ବା ବନ୍ଦୋବସ୍ତରେ ରେକର୍ଡ଼ କରାଇ ନ ଥିଲେ, ଯାହାଫଳରେ ୧୮୯୮-୯୯ରେ ମ୍ୟାଡକ୍ସଙ୍କ ସେଟ୍‌ଲମେଣ୍ଟ ରିପୋର୍ଟରେ ଉକ୍ତ ମାହାଲ ପୁରୀରାଜାଙ୍କର ଥିଲା ବୋଲି ପ୍ରକାଶ ପାଇଲା ।



## ପରିଶିଷ୍ଟ - ୪

# ସତ୍ୟର ସନ୍ଧାନରେ

# 'ସତ୍ୟବାଦୀ'

ଭାରତବର୍ଷର ସ୍ୱାଧୀନତା ସଂଗ୍ରାମ ଇତିହାସରେ ସମଗ୍ର ଓଡ଼ିଶାପାଇଁ ସତ୍ୟବାଦୀ ହିଁ ଏକ ସ୍ୱତନ୍ତ୍ର ସ୍ଥାନ ନିର୍ଦ୍ଧାରଣ କରିଛି। ଉତ୍କଳର ପଞ୍ଚସଖାଭାବେ ପରିଚିତ ଉତ୍କଳମଣି ଗୋପବନ୍ଧୁ, ଐତିହାସିକ କୃପାସିନ୍ଧୁ, ଆଚାର୍ଯ୍ୟ ହରିହର, ପଣ୍ଡିତ ନୀଳକଂଠ ଓ ପଣ୍ଡିତ ଗୋଦାବରୀଶଙ୍କ ପରି ଯୋଗଜନ୍ମା ପୁରୁଷମାନଙ୍କର କର୍ମ ଓ ସାଧନାପୀଠଭାବେ ସତ୍ୟବାଦୀ ଏହି ପ୍ରସିଦ୍ଧି ଲାଭ କରିଛି। ସେହି ମହାନ୍ ଜାତୀୟତାବାଦୀ ନେତାମାନେ ସତ୍ୟବାଦୀ ବନବିଦ୍ୟାଳୟକୁ ଏପରି ଏକ ବାସ୍ତବଧର୍ମୀ ଶିକ୍ଷାର ଆଲୋକସ୍ତମ୍ଭରୂପେ ଛିଡ଼ା କରିଦେଇଥିଲେ, ଯାହା ଓଡ଼ିଶାର ଜନଗଣମନକୁ ମହାଭାରତୀୟ ଜାତୀୟ ଚେତନାରେ ଉଦ୍‌ଭାସିତ କରିଦେଇଥିଲା। ପଞ୍ଚସଖାଙ୍କ ସ୍ୱାଧୀନ ଚିନ୍ତା ଓ ଚେତନାରୁ ୧୯୦୯ ମସିହାରେ ଜନ୍ମଲାଭ କରିଥିବା ସତ୍ୟବାଦୀ ବକୁଳବନର ମୁକ୍ତ ବିଦ୍ୟାଳୟ ୧୯୨୦-୨୧ବେଳକୁ ମହାମାନବ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତୀୟ ଜାତୀୟ କଂଗ୍ରେସଦ୍ୱାରା ପରିଚାଳିତ ବ୍ରିଟିଶସରକାର ବିରୋଧୀ ସ୍ୱାଧୀନତା ଆନ୍ଦୋଳନର ଜାତୀୟ କର୍ମଶାଳାରେ ପରିଣତ ହୋଇଥିଲା ଏବଂ ସେହି ମହାନ୍ ଜାତୀୟ ଆନ୍ଦୋଳନ କ୍ଷେତ୍ରରେ ସାରା ଓଡ଼ିଶାର ପଥପ୍ରଦର୍ଶକଭାବେ ପ୍ରତିଷ୍ଠା ଲାଭ କରିଥିଲା। ସେହି ଯୁଗାନ୍ତକାରୀ ଜାତୀୟ ଆନ୍ଦୋଳନର ସ୍ମୃତିପୀଠ ସତ୍ୟବାଦୀ ବା ସାକ୍ଷିଗୋପାଳ ଆଜି ପ୍ରାତଃସ୍ମରଣୀୟ ପଞ୍ଚସଖାଙ୍କର ମହାନ୍ ସ୍ମୃତି-ପୂତ ପୂଜାପୀଠଭାବେ ପ୍ରସିଦ୍ଧି ଲାଭ କରିଛି।

କିନ୍ତୁ ଅଷ୍ଟାଦଶ ଶତାବ୍ଦୀର ଶେଷ ଦଶକ ପର୍ଯ୍ୟନ୍ତ ସତ୍ୟବାଦୀ ବା ସାକ୍ଷିଗୋପାଳ ନାମରେ ଓଡ଼ିଶାର ଭୂଗୋଳ ବା ଇତିହାସରେ କୌଣସି ସ୍ଥାନ ନ ଥିଲା। ସୂର୍ଯ୍ୟବଂଶର ରାଜା ଗଜପତି ପୁରୁଷୋତ୍ତମଦେବ କାଞ୍ଚିରାଜ୍ୟ ଜୟ କରି ସେଠାରୁ କଟକକୁ ନେଇଆସିଥିବା ସାକ୍ଷିଗୋପାଳ ମୂର୍ତ୍ତି ଖୋର୍ଦ୍ଧାରାଜ୍ୟର ରାହାଙ୍ଗ ପ୍ରଗଣାସ୍ଥିତ ଫୁଲଅଳସା ମୌଜାରେ ପ୍ରତିଷ୍ଠିତ ହେବାପରେ ସେହି ସ୍ଥାନଟି ସତ୍ୟବାଦୀ ବା ସାକ୍ଷିଗୋପାଳ ନାମରେ ନାମିତ ହେଲା ବୋଲି ପଞ୍ଚସଖାପୀଠର ଗବେଷକ ତଥା ଐତିହାସିକ କୃପାସିନ୍ଧୁ ମିଶ୍ରଙ୍କ

ଉକ୍ତିରୁ ଜଣାଯାଏ । କିନ୍ତୁ ଫୁଲ ଅଳସାକୁ ସାକ୍ଷିଗୋପାଳ କେବେ ଆସିଲେ ସେହି ସମୟ ସମ୍ପର୍କରେ ଐତିହାସିକମାନଙ୍କ ମଧ୍ୟରେ ଦ୍ୱିମତ ପ୍ରକାଶପାଇଛି ।

ପ୍ରଥମ ମତ : ମାଦଳା ପାଞ୍ଜିରେ ସତ୍ୟବାଦୀ ଠାକୁରଙ୍କ ଫୁଲଅଳସା ଯାତ୍ରା ସମ୍ପର୍କରେ କିଛିମାତ୍ର ଉଲ୍ଲେଖ ନାହିଁ । କିନ୍ତୁ ମରହଟ୍ଟା ରାଜତ୍ୱରେ ଖୋର୍ଦ୍ଧାର ରାଜା ୨ୟ ଦିବ୍ୟସିଂହଦେବ (୧୭୯୩-୯୮)ଙ୍କ ସମୟରେ ମରହଟ୍ଟା ସନ୍ୟାସୀ ବାବା ବ୍ରହ୍ମଚାରୀ ସୁନାର ଲକ୍ଷ୍ମୀପ୍ରତିମା ନିର୍ମାଣ କରାଇ ଶ୍ରୀଜଗନ୍ନାଥଙ୍କ ରତ୍ନସିଂହାସନରେ ପ୍ରତିଷ୍ଠା କରିଥିଲେ ବୋଲି ଉଲ୍ଲେଖ ଅଛି । ଐତିହାସିକ ଡ. ଭବାନୀଚରଣ ରାୟ ମଧ୍ୟ ତାଙ୍କର Orissa under the Marathas ଗ୍ରନ୍ଥରେ ଲେଖିଛନ୍ତି ଯେ ମରହଟ୍ଟାମାନେ ହିନ୍ଦୁମାନଙ୍କର ପ୍ରଧାନ ତୀର୍ଥକ୍ଷେତ୍ର ଶ୍ରୀଜଗନ୍ନାଥ ମନ୍ଦିରର ସୁରକ୍ଷା ଓ ଉନ୍ନତି ଦିଗରେ ବିଶେଷ ଯତ୍ନବାନ ହୋଇଥିଲେ । ବ୍ରହ୍ମଚାରୀ ଗୋସାଇଁ ନାମକ ମରହଟ୍ଟା ସନ୍ୟାସୀ (ଗୁରୁ) ସୁନାର ଲକ୍ଷ୍ମୀମୂର୍ତ୍ତି ଓ ରୂପାର ନାରାୟଣ ମୂର୍ତ୍ତି ନିର୍ମାଣ କରାଇ ଲକ୍ଷ୍ମୀନାରାୟଣ ମୂର୍ତ୍ତିଙ୍କୁ ଶ୍ରୀଜଗନ୍ନାଥ ମନ୍ଦିରରେ ପ୍ରତିଷ୍ଠା କରିଥିଲେ । ତେଣୁ ମରହଟ୍ଟା ରାଜତ୍ୱରେ ସେହି ଦିବ୍ୟସିଂହଦେବ (୨ୟ)ଙ୍କ ସମୟରେ ସାକ୍ଷିଗୋପାଳ ମୂର୍ତ୍ତି ମରହଟ୍ଟା ସନ୍ୟାସୀ ବାବା ବ୍ରହ୍ମଚାରୀଙ୍କଦ୍ୱାରା କନ୍ତଳବାଇରୁ ଆନିତ ହୋଇ ଫୁଲଅଳସାସ୍ଥିତ ସିଦ୍ଧ ବକୁଳବନରେ ପ୍ରତିଷ୍ଠିତ ହୋଇଥିଲେ ବୋଲି କେତେକ ଐତିହାସିକଙ୍କର ମତ :

(୧) ''ମରହଟ୍ଟା ରାଜତ୍ୱରେ ବର୍ତ୍ତମାନର ସତ୍ୟବାଦୀ ମନ୍ଦିର ନିର୍ମିତ ହୋଇ ଅଦ୍ୟାବଧି ସେଠାରେ ଶ୍ରୀସାକ୍ଷୀଗୋପାଳ ବିଗ୍ରହ ପୂଜିତ ହେଉଛନ୍ତି,'' - ଖୁରୁଧା ଇତିହାସ ପୃ.୧୯ କେଦାରନାଥ ମହାପାତ୍ର

(୨) "The present temple is known to have been built during the Maratha period of Orissa history" - Archaeology in Orissa Vol. I Page 183- Dr. R.P. Mohapatra.

(୩) After the Muslim occupation of Orissa, the dsity was moved from place to place by the Chief of Khurda and was at last installed at village Alasa (the old name of Sakhigopal) at the instance of one religious minded Brahmachari." - Puri District Gazetter P.706 D.C. Kuanr & N. Senapati.

**ଟିପ୍ପଣୀ :**

(କ) ଶ୍ରୀଯୁକ୍ତ କେଦାରନାଥ ମହାପାତ୍ର ଓ ଡ. ରମେଶ ପ୍ରସାଦ ମହାପାତ୍ର ସାକ୍ଷିଗୋପାଳ ମୂର୍ତ୍ତି କେବେ ଫୁଲଅଳସାକୁ ଆସିଥିଲେ ସେ ସମ୍ପର୍କରେ କିଛି କହି ନାହାନ୍ତି, କେବଳ ବର୍ତ୍ତମାନର ସାକ୍ଷିଗୋପାଳ ମନ୍ଦିର ମରହଟ୍ଟା ରାଜତ୍ୱ କାଳରେ ନିର୍ମିତ ହୋଇଥିଲା ବୋଲି

ଲେଖିଛନ୍ତି, ସୁତରାଂ ମନ୍ଦିର ନିର୍ମାଣ ପୂର୍ବରୁ ସେଇ ମରହଟ୍ଟା ରାଜତ୍ୱ ସମୟରେ ସାକ୍ଷିଗୋପାଳ ମୂର୍ତ୍ତି ଅଳସା ଯାଇଥିଲେ ବୋଲି ସେମାନଙ୍କର ଲେଖାରୁ ଜଣାପଡୁଛି ।

(ଖ) ପୁରୀ ଜିଲ୍ଲା ଗେଜେଟିଅରରେ ''ଖୋର୍ଦ୍ଧାର ରାଜା (ଚିଫ୍)ଙ୍କ ଦ୍ୱାରା'' ଅର୍ଥାତ୍ ୧୮୦୪ରେ ଖୋର୍ଦ୍ଧାର ରାଜା ମୁକୁନ୍ଦଦେବ(୨ୟ) ଗାଦିଚ୍ୟୁତ ଓ ଖୋର୍ଦ୍ଧାରାଜ୍ୟ ଇଂରେଜମାନଙ୍କଦ୍ୱାରା ଅଧିକୃତ ହେବା ପୂର୍ବରୁ ବ୍ରହ୍ମଚାରୀଙ୍କ ଉଦ୍ୟମରେ ଅଳସା ଗ୍ରାମରେ ମୂର୍ତ୍ତି ପ୍ରତିଷ୍ଠିତ ହୋଇଥିଲେ ବୋଲି ଉଲ୍ଲେଖ ଥିବାରୁ ତାହା ନିଶ୍ଚିତଭାବେ ଖୋର୍ଦ୍ଧାରାଜା ୨ୟ ଦିବ୍ୟସିଂହଦେବଙ୍କ ରାଜତ୍ୱ ଆରମ୍ଭ ୧୭୯୩ରୁ ୨ୟ ମୁକୁନ୍ଦଦେବଙ୍କ ସମୟରେ ମରହଟ୍ଟା ରାଜତ୍ୱ ଶେଷ ୧୮୦୩ ମଧ୍ୟରେ କୌଣସି ସମୟକୁ ବୁଝାଇବ ।

ସୁତରାଂ ଦିବ୍ୟସିଂହଦେବ (୨ୟ)ଙ୍କ ରାଜତ୍ୱରେ ୧୭୯୩-୯୮ମଧ୍ୟରେ ବାବା ବ୍ରହ୍ମଚାରୀ ଯେଉଁ ସମୟରେ ପୁରୀରେ ଧର୍ମକାର୍ଯ୍ୟମାନ କରି ପ୍ରତିଷ୍ଠା ଲାଭ କରିଥିଲେ, ସେହି ସମୟରେ କିମ୍ବା ତା'ପରେ ମୁକୁନ୍ଦଦେବ (୨ୟ)ଙ୍କ ରାଜତ୍ୱ କାଳ ୧୭୯୮ରୁ ୧୮୦୩ ମଧ୍ୟରେ କୌଣସି ସମୟରେ ସାକ୍ଷିଗୋପାଳ ମୂର୍ତ୍ତି ଚିଲିକା କୂଳବର୍ତ୍ତୀ କନ୍ତଳବାଇ ଗ୍ରାମରୁ ଫୁଲଅଳସା ଗ୍ରାମକୁ ସ୍ଥାନାନ୍ତରିତ ହୋଇଥିଲେ ବୋଲି କେତେକ ଐତିହାସିକଙ୍କର ମତ ।

ଦ୍ୱିତୀୟ ମତ :- '' କଥିତ ଅଛି ସାକ୍ଷିଗୋପାଳ ସାକ୍ଷ୍ୟ ଦେବା ନିମନ୍ତେ ବୃନ୍ଦାବନରୁ କାଞ୍ଚି ଯାତ୍ରା କରି କାବେରୀ ନଦୀ କୂଳରେ ପ୍ରତିଷ୍ଠିତ ହୋଇଥିଲେ । ପୁରୁଷୋତ୍ତମଦେବ ତାଙ୍କୁ ସେଠାରୁ ଆଣି ବାରବାଟୀ ଦୁର୍ଗ ମଧ୍ୟରେ ରଖାଇଥିଲେ । ପରବର୍ତ୍ତୀ ରାଜତ୍ୱରେ ଶ୍ରୀକୃଷ୍ଣଚୈତନ୍ୟ ସାକ୍ଷିଗୋପାଳଙ୍କୁ ବାରବାଟୀ ମଧ୍ୟରେ ଦର୍ଶନ କରିଥିଲେ । ବାରବାଟୀ ମୁସଲମାନ ହସ୍ତଗତ ହେବାରୁ ଏବଂ ଖୋରଧାରେ ଭୋଇବଂଶ ରାଜା ରାମଚନ୍ଦ୍ର ରାଜତ୍ୱ ପାଇବାରୁ ସାକ୍ଷିଗୋପାଳ ଖୋରଧାରେ ସ୍ଥାପିତ ହେଲେ । ତତ୍ପରେ ପଠାଣମାନଙ୍କର ବାରମ୍ବାର ଆକ୍ରମଣ ହେତୁ ସାକ୍ଷିଗୋପାଳଙ୍କୁ ସ୍ଥାନାନ୍ତର କରି ଖୋରଧା କିଲା ଅନ୍ତର୍ଗତ ରଥିପୁରରେ ରଖାଗଲା ଏବଂ ସେଠାରେ ମନ୍ଦିର ନିର୍ମାଣ ଓ ସେବାପୂଜା ଖଞ୍ଜା ଗଲା । ପରେ ସେ ସ୍ଥାନ ମଧ୍ୟ ନିରାପଦ ବିବେଚିତ ନ ହେବାରୁ ସାକ୍ଷିଗୋପାଳ ଚିଲିକା ଅଞ୍ଚଳର କନ୍ତଳବାଇରେ ସ୍ଥାପିତ ହେଲେ । ପରେ ଖୋରଧା ୧୮୧୭ ଖ୍ରୀଷ୍ଟାବ୍ଦ ବିଦ୍ରୋହ ଫଳରେ ଖୋରଧା(ରୁ) ପୁରୀକୁ ସ୍ଥାନାନ୍ତରିତ ହେଲେ । ବାବା ବ୍ରହ୍ମଚାରୀଙ୍କ ଉଦ୍ୟମରେ ସାକ୍ଷିଗୋପାଳ ଫୁଲଅଳସା ଗ୍ରାମର ମଞ୍ଜୁ ବକୁଳ ନିକୁଞ୍ଜ ମଧ୍ୟରେ ସ୍ଥାପିତ ହେଲେ ।''

(ଉତ୍କଳ ଇତିହାସ- କୃପାସିନ୍ଧୁ ମିଶ୍ର -୧୯୭୯ ସଂସ୍କରଣ - ପୃ୮୮)

ଐତିହାସିକ କୃପାସିନ୍ଧୁ ମିଶ୍ର ଉତ୍କଳ ଇତିହାସ ରଚନା ପୂର୍ବରୁ ''ସତ୍ୟବାଦୀ ବା ସାକ୍ଷିଗୋପାଳ'' ଶୀର୍ଷକ ଦୀର୍ଘ ପ୍ରବନ୍ଧ ଲେଖି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସଂପାଦନାରେ ବ୍ରହ୍ମପୁରସ୍ଥ ''ଆଶା'' ପ୍ରେସରୁ ପ୍ରକାଶିତ ''ସତ୍ୟବାଦୀ'' ନାମକ ମାସିକ ପତ୍ରିକାରେ ପ୍ରକାଶ କରିଥିଲେ । ସତ୍ୟବାଦୀ ପ୍ରତିକାରେ ପ୍ରଥମ ସଂଖ୍ୟା ୧୩୨୨ସାଲ ବା ୧୯୧୫ ଖ୍ରୀଷ୍ଟାବ୍ଦ କୁମ୍ଭ

ମାସ (ଫେବୃୟାରୀ -ମାର୍ଚ୍ଚ)ରେ ପ୍ରକାଶ ପାଇଥିଲା । ଶ୍ରୀ ଚିନ୍ତାମଣି ଦାଶଙ୍କ କୃତ ''ଐତିହାସିକ କୃପାସିନ୍ଧୁ'' ପୁସ୍ତକର ୧୫୮-୧୫୯ ପୃଷ୍ଠାରେ ବର୍ଣ୍ଣିତ ବିବରଣୀରୁ ଜଣାଯାଏ ଯେ ସତ୍ୟବାଦୀ ପତ୍ରିକାର ୨ୟ ସଂଖ୍ୟାରେ ୧୩୨୨ସାଲ ମୀନ ମାସରେ କୃପାସିନ୍ଧୁ ମିଶ୍ରଙ୍କ ଦ୍ୱାରା ଲିଖିତ ''ସତ୍ୟବାଦୀ ବା ସାକ୍ଷିଗୋପାଳ'' ପ୍ରବନ୍ଧର ମୁଖବନ୍ଧ ସେହି ପ୍ରବନ୍ଧର ଶୀର୍ଷକରେ ବାହାରିଥିଲା ଏବଂ ପରବର୍ତ୍ତୀ ସଂଖ୍ୟାମାନଙ୍କରେ ଉକ୍ତ ପ୍ରବନ୍ଧର ୧୦ଗୋଟି ଅଧ୍ୟାୟ - 'ବୃନ୍ଦାବନ', 'ସାକ୍ଷିଗୋପାଳ', 'ଯୁଦ୍ଧଧନ', 'କଟକ ଅଧିଷ୍ଠାନ', 'ସତ୍ୟବାଦୀ ପ୍ରୟାଣ', 'ଦେଉଳ ଭୋଗ ପ୍ରତିଷ୍ଠା', 'ସହସ୍ର ହାଣ୍ଡି ଏକ ଠେଙ୍ଗା', 'ରାଧାକୃଷ୍ଣ', 'ନୂତନ ଦେଉଳ', ଏବଂ 'ଶାସନ ଏବଂ ତତ୍ୱାବଧାନ' ଶୀର୍ଷକରେ ପ୍ରକାଶ ପାଇଥିଲା ।

ଉକ୍ତ ପ୍ରବନ୍ଧରେ ଷଷ୍ଠ ଓ ଅଷ୍ଟମ ଅଧ୍ୟାୟ ଥିବା ସତ୍ୟବାଦୀ ପତ୍ରିକାର ଯେତିକି ଅଂଶ ମିଳିଛି ତହିଁରୁ ଜଣାପଡୁଛି ଯେ ଐତିହାସିକ କୃପାସିନ୍ଧୁ ମିଶ୍ର ଉକ୍ତ ପ୍ରବନ୍ଧରେ



କନ୍ତଲବାଇରେ ଥିବା ସତ୍ୟବାଦୀ ଗୋପୀନାଥ ଦେବଙ୍କ ପରିତ୍ୟକ୍ତ ମନ୍ଦିର

ସାକ୍ଷିଗୋପାଳ ଠାକୁରଙ୍କ ସମ୍ବନ୍ଧରେ ପ୍ରକାଶିତ ତାଙ୍କ ଉକ୍ତିକୁ ହିଁ ପରେ ଉତ୍କଳ ଇତିହାସରେ ସଂକ୍ଷେପରେ ସ୍ଥାନିତ କରିଛନ୍ତି ।

ଡ. ହରେକୃଷ୍ଣ ମହତାବ ତାଙ୍କ ଓଡ଼ିଶା ଇତିହାସ ୧ମ ଭାଗ ୨୬୧ପୃଷ୍ଠାର ପାଦଟୀକାରେ ଐତିହାସିକ କୃପାସିନ୍ଧୁଙ୍କ ମତକୁ ଉଦ୍ଧାର କରି ଲେଖିଛନ୍ତି - "୧୮୧୭ ସାଲ ଖୋର୍ଦ୍ଧା ବିଦ୍ରୋହପରେ ସେଠାରୁ ସେ ମୂର୍ତ୍ତି ଆସି ବାବା ବ୍ରହ୍ମଚାରୀଙ୍କ ଉଦ୍ୟମରେ ବର୍ତ୍ତମାନ ଫୁଲଅଳସା ଗ୍ରାମରେ ସ୍ଥାପିତ ହୋଇଛନ୍ତି ।" ସତ୍ୟବାଦୀର ସେ କାଳରେ ଉଚ୍ଚଶିକ୍ଷା ପ୍ରାପ୍ତ ତଥା ଗୋପବନ୍ଧୁଙ୍କ ସହକର୍ମୀ କୃପାସିନ୍ଧୁଙ୍କର ଏହି ମତ ହିଁ ସତ୍ୟବାଦୀ ଅଞ୍ଚଳର ଜନଶ୍ରୁତିରେ ଅଦ୍ୟାବଧି ଜାଗ୍ରତ ରହିଛି । ସେହିପରି ଠାକୁରଙ୍କ ନାମ ସତ୍ୟବାଦୀରୁ ସ୍ଥାନର ନାମ ସତ୍ୟବାଦୀ ହୋଇଛି ବୋଲି ଐତିହାସିକ କୃପାସିନ୍ଧୁଙ୍କ ମତକୁ ମଧ ପଣ୍ଡିତ ନୀଳକଂଠ ଦାସଙ୍କଠାରୁ ଆରମ୍ଭ କରି "ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ"ର ପ୍ରଣେତା ରାୟ ବାହାଦୁର ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପର୍ଯ୍ୟନ୍ତ ଶିକ୍ଷାବିତ୍‌ମାନେ ସମର୍ଥନ କରିଛନ୍ତି :-

(୧) "ମୌଜାର ନାମ ଫୁଲ ଅଳସା । ଠାକୁରଙ୍କ ନାମାନୁସାରେ ସାଧାରଣ ଲୋକେ ଏ ସ୍ଥାନ ଓ ଗ୍ରାମକୁ ସତ୍ୟବାଦି ବୋଲି କହନ୍ତି ।" - "ସତ୍ୟବାଦୀ", କନ୍ୟା ଓ ତୁଳା ସଂଖ୍ୟା, ପାଦଟୀକା ପୃ୨୬୬

(୨) "କେବଳ ନାମାନୁସାରେ ସାକ୍ଷିଗୋପାଳ ବା ସତ୍ୟବାଦୀ ନାମରେ ସ୍ଥଳ ପରିଚିତ ।"

(ଉତ୍କଳ ଇତିହାସ, ପାଦଟୀକା ପୃ୮୮, କୃପାସିନ୍ଧୁ)

(୩) Associations of glory and heroism of ancient Orissa gather round the local presiding deity 'Sakhigopal) Who was brought from Kanjiverum to Orissa as a booty by the powerful Orissa King Purusottam Dev in the 15th Century - (Satyabadi School Records).

(ଐତିହାସିକ କୃପାସିନ୍ଧୁ ପୃ ୧୫୭ - ଚିନ୍ତାମଣି ଦାଶ ।)

(୪) "ପୁରୁଷୋତ୍ତମଦେବ...... ଏବଂ ସତ୍ୟବାଦୀ ଗୋପୀନାଥଙ୍କୁ ଘେନିଆସିଲେ ।

(ପ୍ରାଚୀନ ଉତ୍କଳ, ପୃ-୨୪୪ - ଜଗବନ୍ଧୁ ସିଂହ)

(୫) କ) "ଓଡ଼ିଶାରେ ତାଙ୍କ ପ୍ରତିଷ୍ଠିତ ନାମଟି ହେଉଛି ସତ୍ୟବାଦୀ..... ସେଇ ଘରଦିଅଁ ଗୋପାଳ ସତ୍ୟ ବା ଠିକ୍ ସାକ୍ଷ୍ୟ ଦେବେବୋଲି ତାଙ୍କ ନାମ ହୋଇଥିଲା ସାକ୍ଷିଗୋପାଳ ।"

ଖ) "ଗୁପ୍ତ ବୃନ୍ଦାବନକୁ ସତ୍ୟବାଦୀ ଅଣାହେଲେ"

ଗ) "ତାଙ୍କ ସ୍ଥାନୀୟ ନାମଥିଲା ସତ୍ୟବାଦୀ, ସେଇ ଅନୁସାରେ ସେ ସ୍ଥାନର ନାମ ସତ୍ୟବାଦୀ; କିନ୍ତୁ ସତ୍ୟବାଦୀ ବୋଲି ଗ୍ରାମ ନାହିଁ କି ସାକ୍ଷିଗୋପାଳ ବୋଲି ବି ନାହିଁ ।"

(ଓଡ଼ିଶା ସାହିତ୍ୟର କ୍ରମ ପରିଣାମ - ପଣ୍ଡିତ ନୀଳକଂଠ ଦାସ ପୃ୧୨୪-୨୬)

(୬) ''ଏଠାରେ ପ୍ରତିଷ୍ଠିତ ଗୋପୀନାଥ ସତ୍ୟବାଦୀ ହୋଇଥିବାରୁ ଏ ସ୍ଥାନର ନାମ ସତ୍ୟବାଦୀ ହୋଇଛି''

(ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ -ପୃ-୮୦୫୮- ଗୋପାଳ ଚନ୍ଦ୍ର ପ୍ରହରାଜ)

ଉପରୋକ୍ତ ପ୍ରମାଣ ଭିତ୍ତିକ ଐତିହାସିକ କୃପାସିନ୍ଧୁ ମିଶ୍ରଙ୍କଦ୍ୱାରା ନିର୍ଦ୍ଧାରିତ ଦୁଇଟିଯାକ ଉକ୍ତିକୁ ଆମେ ଏଯାବତ ବିଶ୍ୱାସ କରି ଆସୁଥିଲୁ । ସେହି ଦୁଇଟି ଉକ୍ତି ହେଉଛି ୧) ସତ୍ୟବାଦୀ ଠାକୁର ୧୮୧୭ ପାଇକ ବିଦ୍ରୋହ ପରେ ପୁରୀର ରାଜା ରାମଚନ୍ଦ୍ର ଦେବଙ୍କ ସମୟରେ ବାବା ବ୍ରହ୍ମଚାରୀଙ୍କ ଦ୍ୱାରା ଫୁଲଅଳସାରେ ପ୍ରତିଷ୍ଠିତ ହୋଇଥିଲେ, ଏବଂ ୨) ଠାକୁରଙ୍କ ନାମ ''ସତ୍ୟବାଦୀ ବା ସାକ୍ଷିଗୋପାଳ'' ଥିବାରୁ ଫୁଲଅଳସାରେ ଠାକୁର ପ୍ରତିଷ୍ଠାପରେ ସ୍ଥାନର ନାମ ସତ୍ୟବାଦୀ ବା ସାକ୍ଷିଗୋପାଳ ହେଲା ।

କିନ୍ତୁ ସଂପ୍ରତି ଗବେଷଣାରୁ ଜଣାଯାଏ ଯେ, ୧୮୦୫ ଖ୍ରୀଷ୍ଟାବ୍ଦ ବେଳକୁ ସ୍ଥାନର ନାମ ସତ୍ୟବାଦୀ ଥିଲା ବା ହୋଇଥିଲା । ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ କଟକ ବାରବାଟୀ ଦୁର୍ଗ ଅଧିକାର କଲେ ; ୧୮୦୪ରେ ଖୋର୍ଦ୍ଧା ଦୁର୍ଗ ଅଧିକାର କରି ଖୋର୍ଦ୍ଧାରାଜାଙ୍କୁ ଗାଦିଚ୍ୟୁତ କରି ବନ୍ଦି କଲେ । ୧୮୦୫ରେ ପ୍ରଶାସନିକ ସୁବିଧାପାଇଁ ଇଂରେଜ ଅଧିକୃତ ଓଡ଼ିଶାର ଦକ୍ଷିଣ ଡିଭିଜନ ବା ଜଗନ୍ନାଥ ଜିଲ୍ଲାରେ ସର୍ବପ୍ରଥମେ ଆଠ ଗୋଟି ଥାନା ପ୍ରତିଷ୍ଠା କରିବାପାଇଁ ପୁରୀର ମ୍ୟାଜିଷ୍ଟ୍ରେଟ୍ ସି.ଗ୍ରୋମ୍ ୧୮୦୫ ମସିହା ମଇମାସ ୩ ତାରିଖରେ କଟକ କମିଶନରଙ୍କ ଶାସନ ସଚିବ ଥୋମାସ୍ ଫୋଟେସ୍କୁଙ୍କୁ ଲେଖିଥିବା ପତ୍ରରେ ପ୍ରସ୍ତାବ ଦେଇଥିଲେ । ସେହି ପତ୍ରରେ ପ୍ରସ୍ତାବିତ ଆଠ ଗୋଟି ଥାନାର ନାମ (ଯଥା କଟକ, ପିପିଲି, ପୁରୁଷୋତ୍ତମ କ୍ଷେତ୍ର, ମାଲୁଦ,ପ୍ରହରାଜପୁର, ତିରନ, ହରିହରପୁର ଓ ଗୋପ) ସହିତ ପ୍ରତ୍ୟେକ ଥାନାର ଚୌହଦି (ଚାରିପାଖ ସୀମାରେ ଥିବା ସ୍ଥାନର ନାମ) ଦିଆଯାଇଥିଲା । ତା' ମଧ୍ୟରେ ପିପିଲି ଓ ପୁରୁଷୋତ୍ତମ କ୍ଷେତ୍ରରେ ଚୌହଦି ନିମ୍ନୋକ୍ତ ପ୍ରକାରେ ଦିଆଯାଇଥିଲା :-

| Name of Thanas | North boundary | South boundary | East boundary | West boundary |
|---|---|---|---|---|
| Cuttack | --------- | --------- | --------- | --------- |
| **Peeply Nore** | **Baliunta** | **Suttabadee** | **Undeea** | **Kaloopara** |
| **Poorshootum Chetter** | **Suttabadee** | **Nersing Puttan** | **Bitulgang** | **Killa Roorung** |

(Guide to Orissan Records, Vol.I - Page 33)

ମାତ୍ର ଦୁଇ ବର୍ଷ ପୂର୍ବରୁ ଓଡ଼ିଶାକୁ ଆସିଥିବା ଇଂରେଜମାନେ ଓଡ଼ିଆ ନାମଗୁଡ଼ିକର ଉଚ୍ଚାରଣକୁ ବିକୃତ କରି ଲେଖିଥିଲେ ହେଁ ପ୍ରସ୍ତାବିତ ପିପିଲି ଥାନାର ଦକ୍ଷିଣ ଏବଂ ପୁରୀ ଥାନାର ଉତ୍ତରଦିଗରେ 'ସତାବାଦୀ' ଥିବା ଦର୍ଶାଯାଇଛି । ଏହା ହିଁ ସତ୍ୟବାଦୀ ।

ଏହି ନିର୍ଭରଯୋଗ୍ୟ ତଥ୍ୟ ମିଳିଯିବାପରେ ଏବେ ଧରିନେବାକୁ ହେବ ଯେ ଐତିହାସିକ କୃପାସିନ୍ଧୁଙ୍କ ପ୍ରଦତ୍ତ ପୂର୍ବୋକ୍ତ ଦୁଇ ଗୋଟି ଉକ୍ତି ମଧ୍ୟରୁ ଗୋଟିଏ ନିଶ୍ଚିତଭାବେ ଭୁଲ ; ଅର୍ଥାତ୍ ଯଦି ୧୮୧୭ ବା ତା'ପରେ ସାକ୍ଷିଗୋପାଳ ମୂର୍ତ୍ତି ଫୁଲଅଳସାରେ ପ୍ରତିଷ୍ଠିତ ହୋଇଥିବା ଉକ୍ତି ଠିକ୍ ହୁଏ ତା'ହେଲେ ତାଙ୍କ ନାମ ଅନୁସାରେ ସ୍ଥାନର ନାମ ସତ୍ୟବାଦୀ ହୋଇଥିବା ଉକ୍ତି ଠିକ୍ ନୁହେଁ । ସେହିପରି ଯଦି ଠାକୁରଙ୍କ ନାମଅନୁସାରେ ସ୍ଥାନର ନାମ ସତ୍ୟବାଦୀ ହୋଇଥିବା ଉକ୍ତି ଠିକ୍ ହୁଏ, ତା'ହେଲେ ୧୮୦୫ ପୂର୍ବରୁ ଅର୍ଥାତ୍ ମରହଟ୍ଟା ରାଜତ୍ୱରେ ସତ୍ୟବାଦୀ ଠାକୁର ଫୁଲଅଳସାକୁ ଆନୀତ ହୋଇଥିବା ନିଶ୍ଚିତ । ତେଣୁ ୧୮୧୭ପରେ ରାମଚନ୍ଦ୍ରଦେବ (୩ୟ)ଙ୍କ ସମୟରେ ସାକ୍ଷିଗୋପାଳ ଫୁଲଅଳସାକୁ ଆନୀତ ହୋଇଥିବା ଉକ୍ତି ଠିକ୍ ନୁହେଁ । ସୁତରାଂ ଦୁଇଟିଯାକ ଉକ୍ତିରୁ କେଉଁଟି ଠିକ୍, ଆଉ କେଉଁଟି ଭୁଲ୍ ତାହା ସଠିକ୍‌ଭାବେ ନିର୍ଦ୍ଧାରଣ କରାଯିବା ଉଚିତ ।

ଐତିହାସିକ କୃପାସିନ୍ଧୁ ତାଙ୍କର "ସତ୍ୟବାଦୀ ବା ସାକ୍ଷିଗୋପାଳ" ପ୍ରବନ୍ଧର ଷଷ୍ଠ ଅଧ୍ୟାୟରେ ଲେଖିଛନ୍ତି - "ଠାକୁରଙ୍କ ନିମନ୍ତେ ଦେଉଳ ଲୋଡ଼ା .....

"ବାବା ବ୍ରହ୍ମଚାରୀ ପ୍ରତ୍ୟେକ ବ୍ରାହ୍ମଣଙ୍କୁ ତାଙ୍କ ଦ୍ୱାରରୁ ଖଣ୍ଡିଏ ଲେଖାଏଁ ପଥର ଭିକ୍ଷା କଲେ । ଏଣେ ପୁଣି ପ୍ରତି ଗ୍ରାମରେ ଏହିପରି ଆଦେଶ ପ୍ରଚାର କରିବାଲାଗି ରାଜା ରାମଚନ୍ଦ୍ରଙ୍କୁ ପ୍ରାର୍ଥନା କଲେ ।....... ସିଦ୍ଧବକୁଳ ବନରେ ଗୋଟିଏ କ୍ଷୁଦ୍ର ଦେଉଳ ତୋଳା ହେଲା ଏବଂ ସେଥିରେ ମହାସମାରୋହରେ 'ସତ୍ୟବାଦୀ' ପ୍ରତିଷ୍ଠିତ ହେଲେ । ବର୍ତ୍ତମାନ ଯେଉଁ ଦେଉଳରେ 'ସତ୍ୟବାଦୀ' ବିରାଜମାନ ଅଛନ୍ତି, ତାହା ପରେ ନିର୍ମିତ ହୋଇଅଛି ।"

"ଠାକୁରଙ୍କ ସେବା- ଆଦିର ବନ୍ଦୋବସ୍ତ କରିବାଲାଗି ସେ (ବ୍ରହ୍ମଚାରୀ) ରାମଚନ୍ଦ୍ରଦେବଙ୍କୁ ପ୍ରାର୍ଥନା କଲେ । ତାହାର ଫଳରେ ରାଜାଙ୍କ ଦେବାନ ଭ୍ରମରବର ରାୟ 'ସତ୍ୟବାଦୀ'ଙ୍କ ସେବାପୂଜା ନିମନ୍ତେ ବହୁ ଭୂମି ଖଞ୍ଜିଦେଲେ । ଏହିସବୁ ଖଞ୍ଜାର ବିବରଣୀ ଦଲିଲ ସତ୍ୟବାଦୀ ମନ୍ଦିର କାର୍ଯ୍ୟାଳୟରେ ରହିଅଛି । ଏହି ଦାନପତ୍ର ଗଜପତି ରାଜା ଶ୍ରୀରାମଚନ୍ଦ୍ରଦେବଙ୍କ ସମସ୍ତ ୧୧ଅଙ୍କରେ ସଂପାଦିତ ହୋଇଥିବାର ସେଥିରୁ ଜଣାଯାଏ । ତାହା ଆଜକୁ ୯୮ବର୍ଷ ହେଲା । ସୁତରାଂ ଏହି ସେବାପୂଜାର ବ୍ୟବସ୍ଥା ୧୮୧୭ କିମ୍ବା ୧୮୧୮ ଖ୍ରୀଷ୍ଟାବ୍ଦରେ ଅର୍ଥାତ୍ ଖୋର୍ଦ୍ଧା ବିଦ୍ରୋହର ସମସାମୟିକ ।"

-('ସତ୍ୟବାଦୀ', କନ୍ୟା ଓ ତୁଳା, ୧୩୨୩ ସାଲ, ୮ମ ଓ ୯ମ ସଂଖ୍ୟା ପୃ-୨୬୭)

ଟିପ୍ପଣୀ : ଐତିହାସିକ କୃପାସିନ୍ଧୁ ତାଙ୍କ ପ୍ରବନ୍ଧ ପ୍ରକାଶ ସମୟ ୧୩୨୩ ସାଲ ବା ୧୯୧୬ ଖ୍ରୀଷ୍ଟାବ୍ଦରୁ ଗଣନା କରି ରାମଚନ୍ଦ୍ରଦେବଙ୍କ ୧୧ଅଙ୍କକୁ ଭ୍ରମତଃ ୧୮୧୭-୧୮୧୮ଦର୍ଶାଇ ୯୮ ବର୍ଷ ଲେଖିଛନ୍ତି । କିନ୍ତୁ ଏହା ଠିକ୍ ନୁହେଁ । ରାମଚନ୍ଦ୍ରଦେବଙ୍କର ୧୮୧୭ ନଭେମ୍ବର ୩୦ ତାରିଖରେ ବନ୍ଦିଶାଳା ମଧ୍ୟରେ ରାଜାଭିଷେକ ହୋଇଥିଲା । ତେଣୁ ୧୮୧୮ ଖ୍ରୀଷ୍ଟାବ୍ଦ ସୁନିଆଁଠାରୁ ତାଙ୍କର ୨ଅଙ୍କ ଗଣନା ଆରମ୍ଭ ହୋଇ ୧୮୨୫-୨୬କୁ ୧୧ଅଙ୍କ ହେବ, ସୁତରାଂ ୧୮୧୬ ଖ୍ରୀଷ୍ଟାବ୍ଦଠାରୁ ତାହା ମାତ୍ର ୯୦ବର୍ଷ ତଳର ଘଟଣା । ଏହି ପରିପ୍ରେକ୍ଷୀରେ ରାମଚନ୍ଦ୍ରଦେବ (୩ୟ)ଙ୍କ ରାଜଭିଷେକଠାରୁ ୧୧ଅଙ୍କ ପର୍ଯ୍ୟନ୍ତ ତାଙ୍କର ଓ ରାଜ୍ୟର ପରିସ୍ଥିତି ସମ୍ପର୍କରେ ସମ୍ୟକ୍ ଆଲୋକପାତ କରାଯିବା ଆବଶ୍ୟକ ମନେହୁଏ ।

୧୮୦୭ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧାର ରାଜା ୨ୟ ମୁକୁନ୍ଦଦେବ ଇଂରେଜ ସରକାରଙ୍କୁ ମେଦିନୀପୁର ଜେଲ ଭିତରୁ ମୁକ୍ତିନିମନ୍ତେ ପ୍ରାର୍ଥନା କରି ଦରଖାସ୍ତ ଦେବାପରେ ସେହି ବର୍ଷ ଜେଲରୁ ଖଲାସ ହୋଇ ସ୍ଥାୟୀଭାବରେ ପୁରୀରେ ଅବସ୍ଥାନପାଇଁ ଅନୁମତି ପାଇଲେ । ତା'ପୂର୍ବରୁ ସେ ଖୋର୍ଦ୍ଧା ରାଜ୍ୟ ଓ ରାଜଗାଦି ହରାଇ ସାରିଥିଲେ । ପୁରୀରେ ଜଗନ୍ନାଥ ମନ୍ଦିରରେ ସୁପରିଣ୍ଟେଣ୍ଡେଣ୍ଟଭାବରେ ଇଂରେଜଙ୍କଦ୍ୱାରା ନିଯୁକ୍ତ ହୋଇ ପୁରୀର ଠାକୁର ରାଜାଭାବେ ଲୋକ ମୁଖରେ ଆଦୃତ ହେଲେ କିନ୍ତୁ ପୁଣି ୧୮୧୭ ଖୋର୍ଦ୍ଧା ପାଇକ ବିଦ୍ରୋହ ସମୟରେ ନାବାଳକ ପୁତ୍ର ରାମଚନ୍ଦ୍ରଙ୍କ ସହିତ ସେ ଇଂରେଜଙ୍କଦ୍ୱାରା ବନ୍ଦି ହେଲେ ଏବଂ ସେଇ ୧୮୧୭ ନଭେମ୍ବର ୩୦ତାରିଖରେ ବନ୍ଦିଶାଳାରେ ମୃତ୍ୟୁବରଣ କଲେ ।

୨ୟ ମୁକୁନ୍ଦଦେବଙ୍କ ପୁଅ ୩ୟ ରାମଚନ୍ଦ୍ରଦେବଙ୍କୁ ଡିସେମ୍ବର ୫ ତାରିଖରେ ଜେଲ୍‌ରୁ ଖଲାସ କରିଦିଆଗଲା । ସୁତରାଂ ରାମଚନ୍ଦ୍ରଦେବ ନାମକୁମାତ୍ର ପୁରୀର ରାଜା ହୋଇଥିଲେ ହେଁ ପ୍ରଥମରୁ ହିଁ କପର୍ଦ୍ଦକଶୂନ୍ୟ ହୋଇପଡ଼ିଥିଲେ । ତେଣୁ ପିତାଙ୍କ ଶୁଦ୍ଧିକ୍ରିୟାପାଇଁ ସେ ଇଂରେଜଙ୍କଠାରୁ ଦଶ ହଜାର ଟଙ୍କା ଅନୁଦାନ ପ୍ରାର୍ଥନା କଲେ । ସେ ଅନୁଦାନ ମଞ୍ଜୁର ହେଲା । କିନ୍ତୁ ଟ୍ରେଜେରୀରୁ ଠିକ୍ ସମୟରେ ଟଙ୍କା ନ ମିଳିବାରୁ ରାମଚନ୍ଦ୍ରଦେବ ଅଗତ୍ୟା ଜଣେ ସ୍ଥାନୀୟ ମହାଜନଠାରୁ ଟଙ୍କା ଋଣ କରି ପିତୃକାର୍ଯ୍ୟ ତୁଲାଇଲେ । ସେତେବେଳକୁ ରାମଚନ୍ଦ୍ରଦେବଙ୍କ ବୟସ ମାତ୍ର ତେର ବର୍ଷ । ତା'ପରେ ଅବଶ୍ୟ ଇଂରେଜ ସରକାରଠାରୁ ମାସିକ ଭତ୍ତା ଓ ଖୋର୍ଦ୍ଧା ରାଜପଦ ଲୋପ ବାବଦରେ କ୍ଷତିପୂରଣ ଭତ୍ତା ପାଇଲେ । (OHRJ Vol.xxxviii Page 23-24, Raja Ramachandra Deb - a Victim of Khurda Paik Rising 1817 - S.Pati)

କିନ୍ତୁ ସେତେବେଳକୁ ତାଙ୍କର ରାଜ୍ୟ ବୋଲି କିଛି ନ ଥିଲା ; ଏପରିକି ଲେମ୍ବାଇ ପ୍ରଗଣା (ଡେଲାଙ୍ଗ ଇଷ୍ଟେଟ୍)ର ବହୁ ପରିମାଣ ବକୟା ରାଜସ୍ୱଦେୟ ଦେଇ ନ ଥିବାରୁ ମୁକୁନ୍ଦଦେବଙ୍କ ଏକମାତ୍ର ଉକ୍ତ ନିଜସ୍ୱ ମାହାଲକୁ ଇଂରେଜ ସରକାର ୧୮୧୭ରେ ଖାସ୍

କରି ଦେଇଥିଲେ । ତେଣୁ ପୁରୀର ରାଜା ୩ୟ ରାମଚନ୍ଦ୍ର ଦେବ କେବଳ ଜଗନ୍ନାଥଙ୍କ ଏଖରଜାତ ମାହାଲ ସମେତ ଅନ୍ୟାନ୍ୟ ସମ୍ପତ୍ତିର ମାର୍ଫତଦାରଭାବେ ଭତ୍ତା ଉପରେ ନିର୍ଭର କରୁଥିଲେ । ସୁତରାଂ ରାଜ୍ୟ ନଥାଇ ମନ୍ତ୍ରୀ (ଦେୱାନ) ବା ସେନାପତି (ବକ୍ସି)ଙ୍କ ଆବଶ୍ୟକତା ଆଉ ତାଙ୍କ ପାଇ ନ ଥିଲା, କି ସେମାନେ ମଧ୍ୟ ଆଉ ତାଙ୍କ ପାଖରେ ନ ଥିଲେ । ୧୮୧୭ ପାଇକ ବିଦ୍ରୋହର ନେତା ବକ୍ସି ଜଗବନ୍ଧୁ ଓ ଉପନେତା ଦେବାନ୍ କୃଷ୍ଣଚନ୍ଦ୍ର ଭ୍ରମରବର ରାୟ ଦୀର୍ଘ ଆଠ ବର୍ଷକାଳ ଆତ୍ମଗୋପନ କରି, ବକ୍ସି ୧୮୨୫ରେ ଓ ଦେୱାନ୧୮୨୬ରେ ଆତ୍ମପ୍ରକାଶ କଲାପରେ ଇଂରେଜ ସରକାର ବକ୍ସିଙ୍କୁ କଟକରେ ଓ ଦେବାନ୍‌ଙ୍କୁ କୁରାଡ଼ମଲରେ ଥଇଥାନ କରାଇଥିଲେ । ସୁତରାଂ ରାମଚନ୍ଦ୍ରଦେବଙ୍କ ୧୧ଅଙ୍କ ସେଇ ୧୮୨୫-୨୬ ମସିହାରେ ରାମଚନ୍ଦ୍ରଦେବଙ୍କ ଆଦେଶରେ ଦେବାନ୍ ଭ୍ରମରବର ରାୟ ସାକ୍ଷିଗୋପାଳ ଠାକୁରଙ୍କ ସେବାପୂଜା ନିମନ୍ତେ ବହୁ ଜମି ଖଞ୍ଜି ଦେଇଥିବା ଘଟଣା ଆଦୌ ବିଶ୍ୱାସ ଯୋଗ୍ୟ ନୁହେଁ । କିନ୍ତୁ ଐତିହାସିକ କୃପାସିନ୍ଧୁ ମନ୍ଦିରରେ ସଂରକ୍ଷିତ ଥିବା ଠାକୁରଙ୍କ ସମ୍ପତ୍ତିର ସନନ୍ଦଟିକୁ ନିଜେ ପଢ଼ିଥିଲାଭଳି ଅତ୍ୟନ୍ତ ବିଶ୍ୱାସଯୋଗ୍ୟ ଭାଷାରେ ''ରାମଚନ୍ଦ୍ର ଦେବଙ୍କ ସମସ୍ତ ୧୧ଅଙ୍କ'' ବୋଲି ଉଲ୍ଲେଖ କରିଥିବାରୁ ଏପରି ଏକ ସନନ୍ଦ ନିଶ୍ଚିତଭାବେ ସାକ୍ଷିଗୋପାଳ ମନ୍ଦିରରେ ଥିଲା ଏଥିରେ ସନ୍ଦେହର ଅବକାଶ ନାହିଁ । ସୁତରାଂ ଐତିହାସିକ କୃପାସିନ୍ଧୁଙ୍କ ଦ୍ୱାରା ବର୍ଣ୍ଣିତ ସନନ୍ଦଟି କେଉଁ ସମୟରେ କେଉଁ ରାମଚନ୍ଦ୍ରଦେବ ବା କେଉଁ ଦେବାନ ଭ୍ରମରବର ରାୟଙ୍କଦ୍ୱାରା ଲେଖାଯାଇଥିଲା ସେ ସମ୍ପର୍କରେ ବିଶେଷ ଆଲୋଚନାର ଆବଶ୍ୟକତା ରହିଛି; ଯେହେତୁ ପୁରୀର ଠାକୁର ରାଜା ରାମଚନ୍ଦ୍ରଦେବ (୩ୟ)ଙ୍କ ପୂର୍ବରୁ ଖୋର୍ଦ୍ଧା ଭୋଇ ରାଜବଂଶରେ ଦୁଇ ଜଣ ରାମଚନ୍ଦ୍ରଦେବ ରାଜତ୍ୱ କରିଥିଲେ, ସେହି ଦୁଇ ଜଣଙ୍କ ମଧ୍ୟରୁ ଖୋର୍ଦ୍ଧା ଭୋଇ ରାଜବଂଶର ପ୍ରତିଷ୍ଠାତା ୧ମ ରାମଚନ୍ଦ୍ରଦେବ ଜଣେ ଏବଂ ଆଉ ଜଣେ ହେଉଛନ୍ତି ମୁସିଦ୍ କୁଲିଖାଁଙ୍କ କନ୍ୟାକୁ ବିବାହ କରି ଧର୍ମଚ୍ୟୁତ ଓ ରାଜ୍ୟଚ୍ୟୁତ ହୋଇଥିବା ୨ୟ ରାମଚନ୍ଦ୍ର ଦେବ ।

ସୂଚନାଯୋଗ୍ୟ ଯେ ୧୫୬୮ ଖ୍ରୀଷ୍ଟାବ୍ଦରେ କଟକ ବାରବାଟୀ ଦୁର୍ଗଉପରେ କଳାପାହାଡ଼ ଆକ୍ରମଣ କରି ଉକ୍ତ ଦୁର୍ଗକୁ ଧ୍ୱସ୍ତବିଧ୍ୱସ୍ତ କରିଦେଇଥିଲା । କିନ୍ତୁ ଦୁର୍ଗ ମଧ୍ୟରେ ଥିବା ସାକ୍ଷିଗୋପାଳ ମନ୍ଦିରକୁ କଳାପାହାଡ଼ ଭାଙ୍ଗିବା ପୂର୍ବରୁ ପୂଜକମାନେ ଉକ୍ତ ମନ୍ଦିର ମଧ୍ୟରୁ ସାକ୍ଷିଗୋପାଳ ବିଗ୍ରହଙ୍କୁ ଗୁପ୍ତଭାବରେ ସ୍ଥାନାନ୍ତରିତ କରିନେଇ କୌଣସି ସ୍ଥାନରେ ଲୁଚାଇରଖିଥିଲେ* । ଦୀର୍ଘ ଚାରି ବର୍ଷ ପରେ ଖୋର୍ଦ୍ଧାରେ ରାମଚନ୍ଦ୍ରଦେବ ଭୋଇ ବଂଶ

---

** ଶ୍ରୀ ଦିବ୍ୟସିଂହ ଚମୂପତି ମାଦଳାପାଞ୍ଜି - ଉକ୍ତି ଉଦ୍ଧାର କରି ତେଲଙ୍ଗା ମୁକୁନ୍ଦଦେବ (୩୪/୪୬) ଶ୍ରୀ ଗୋପାଳଙ୍କୁ କଟକରୁ ଆଣି ଦାଣ୍ଡମୁକୁନ୍ଦପୁରରେ ରଖାଇଥିଲେ ବୋଲି ଲେଖିଛନ୍ତି । କିନ୍ତୁ ତେଲଙ୍ଗା ମୁକୁନ୍ଦଦେବ କଳାପାହାଡ଼ ଆକ୍ରମଣର ବହୁପୂର୍ବରୁ ନିଜ ନାମରେ ମୁକୁନ୍ଦପୁର ଶାସନ ଗ୍ରାମ ପ୍ରତିଷ୍ଠା କରିବା ସମୟରେ ହିଁ ଶାସନ ପ୍ରତିଷ୍ଠା ପରମ୍ପରାମତେ ସେଠାରେ ନୂତନ ଗୋପାଳ ମୂର୍ତ୍ତି ଓ ମନ୍ଦିର ପ୍ରତିଷ୍ଠା କରିଥିଲେ । ସେ ଗୋପାଳ ସାକ୍ଷୀଗୋପାଳ ନୁହଁନ୍ତି ।*

ପ୍ରତିଷ୍ଠା କରିବାପରେ ସାକ୍ଷିଗୋପାଳ ବିଗ୍ରହଙ୍କୁ କଟକରୁ ଅଣାଇ ଖୋର୍ଦ୍ଧାରେ ରଖାଇଲେ ଏବଂ ଖୋର୍ଦ୍ଧାରେ ନିଜ ରହଣିପାଇଁ "ଦୁର୍ଗ ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଶ୍ରୀ ଗୋପାଳ ବିଗ୍ରହଙ୍କପାଇଁ ଖୁରୁଧାରେ ଏକ ମନ୍ଦିର ନିର୍ମାଣ କରିଥିଲେ" (ଖୁରୁଧା ଇତିହାସ ପୃ-୧୮-କେଦାରନାଥ)। ଶ୍ରୀ ମହାପାତ୍ରଙ୍କ ଗଣନାମତେ ରାମଚନ୍ଦ୍ରଦେବ(୧)ଙ୍କ ୧୧ଅଙ୍କ ୧୮।୮।୧୫୭୫ଠାରୁ ୩।୯।୧୫୭୬ ବେଳକୁ ରାମଚନ୍ଦ୍ରଦେବଙ୍କ ରାଜ୍ୟସୀମା ଚିହ୍ନଟ ହୋଇ ନ ଥିଲା, କିମ୍ବା ୧୫୮୦ ଖ୍ରୀଷ୍ଟାବ୍ଦରେ ମୋଗଲ ସମ୍ରାଟ ଆକବରଙ୍କ ସେନାପତି ତୋଡ଼ରମଲଙ୍କ ଦ୍ୱାରା ଓଡ଼ିଶାର ଜମିଜମା ବନ୍ଦୋବସ୍ତ ଆରମ୍ଭ ହେବାପର୍ଯ୍ୟନ୍ତ ଜମିଜମାର ସ୍ୱତ୍ୱଲିପି ମଧ ସାବ୍ୟସ୍ତ ହୋଇ ନ ଥିଲା। ତା'ସତ୍ତ୍ୱେ ଖୋର୍ଦ୍ଧାର ଯେଉଁ ଖଣ୍ଡାୟତମାନଙ୍କ ସହାୟତାରେ ରାମଚନ୍ଦ୍ରଦେବ ଖୋର୍ଦ୍ଧାଗଡ଼ ପ୍ରତିଷ୍ଠା କଲେ ସେଇମାନଙ୍କ ସାହାଯ୍ୟକ୍ରମେ ସାକ୍ଷିଗୋପାଳ ଠାକୁରଙ୍କ ସ୍ଥାୟୀ ସେବା ପୂଜା ନିମନ୍ତେ କିଛି ଜମି ଖଞ୍ଜିଥିବେ। କିନ୍ତୁ ତାଙ୍କ ରାଜତ୍ୱକାଳ (୧୫୬୮-୧୬୦୦) ମଧ୍ୟରେ ଭ୍ରମରବର ରାୟ ଉପାଧିଧାରୀ ତାଙ୍କର କେହି ଦେବାନ୍ ନ ଥିଲେ। ତାଙ୍କର ଦୁଇ ଜଣ ବିରାଦର ଦାସ ବିଦ୍ୟାଧର ଓ ଇନ୍ଦ୍ର ବିଦ୍ୟାଧର ଯଥାକ୍ରମେ ମନ୍ତ୍ରୀ ଓ ସେନାପତିଙ୍କ ଦାୟିତ୍ୱ ତୁଲାଇଥିଲେ। ସୁତରାଂ "ରାମଚନ୍ଦ୍ରଦେବଙ୍କ ସମସ୍ତ୧୧ଅଙ୍କ"ରେ "ଦେବାନ ଭ୍ରମରବର ରାୟଙ୍କ"ନାମ ଲେଖାଯାଇଥିବା ଚର୍ଚ୍ଚିତ ସନନ୍ଦ ୧ମ ରାମଚନ୍ଦ୍ର ଦେବଙ୍କ ସମୟର ନୁହେଁ।

୨ୟ ରାମଚନ୍ଦ୍ରଦେବ ୧୭୨୭ ଖ୍ରୀଷ୍ଟାବ୍ଦରୁ ୧୭୩୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଖୋର୍ଦ୍ଧା ଭୋଇ ବଂଶର ରାଜା ଥିଲେ। ତାଙ୍କ ପୂର୍ବରୁ ତାଙ୍କର ଭାଇ ଗୋପୀନାଥ ଦେବ ୧୭୨୦ରୁ ୧୭୨୭ ପର୍ଯ୍ୟନ୍ତ ଏବଂ ତାଙ୍କ ପୂର୍ବରୁ ତାଙ୍କ ପିତା ହରେକୃଷ୍ଣଦେବ ୧୭୧୬ରୁ ୧୭୨୦ ପର୍ଯ୍ୟନ୍ତ ଖୋର୍ଦ୍ଧାର ରାଜା ହୋଇଥିଲେ। ହରେକୃଷ୍ଣ ଦେବଙ୍କର (ଦେବାନ୍) ଭଗବାନ ଭ୍ରମରବର ରାୟ ତାଙ୍କ ପୂର୍ବଜ ଦିବ୍ୟସିଂହ ଦେବଙ୍କ ସମୟରୁ ଖୋର୍ଦ୍ଧାର ଦେବାନ୍ ଥିଲେ। ଉକ୍ତ ଭଗବାନ୍ ଭ୍ରମରବର ରାୟ ଅତ୍ୟନ୍ତ ଧାର୍ମିକ ବ୍ୟକ୍ତି ଥିବାରୁ ହରେକୃଷ୍ଣ ଦେବଙ୍କ ରାଜତ୍ୱ ସମୟରେ ଶ୍ରୀ ଜଗନ୍ନାଥ ମନ୍ଦିରର ବହୁ ଉନ୍ନତି ସାଧନ କରିଥିଲେ। ମାଦଳାପାଞ୍ଜି ଉକ୍ତି ମତେ "ଗଜପତିଙ୍କ ଦିଆନ ଭଗବାନ ଭ୍ରମରବର ଭୋଗ ଆସିବାପାଇଁ ରୋଷ ଆଡୁ ଭିତର ବେଢ଼ା ଦୁଆର ଜଗମୋହନ ପାବଛ ସରିକି ଅଚିନ୍ତା ପହଣ୍ଡ ଗଢ଼ାଇ ପ୍ରତିଷ୍ଠା କରିଥିଲେ।" ଜଗନ୍ନାଥ ମନ୍ଦିରର ଜୀର୍ଣ୍ଣ ସଂସ୍କାର ଓ ଅନ୍ୟାନ କୀର୍ତ୍ତିର ନିର୍ମାଣଦ୍ୱାରା ଶ୍ରୀକ୍ଷେତ୍ରର ପୂର୍ବ ଗୌରବର ଉଦ୍ଧାର କରାଗଲା।" (୩/୧୬୧)

ହରେକୃଷ୍ଣ ଦେବଙ୍କ ପୁତ୍ର ଗୋପୀନାଥ ଦେବଙ୍କ (୧୭୨୦-୨୭) ସମୟରେ ମଧ ଉକ୍ତ ଭଗବାନ ଭ୍ରମରବର ରାୟ ଖୋର୍ଦ୍ଧାର ଦିଆନ୍ ଥିଲେ। ଗୋପୀନାଥ ଦେବଙ୍କ ୩ଅଙ୍କ, ଅର୍ଥାତ୍ ୧୭୨୦-୨୧ ଖ୍ରୀଷ୍ଟାବ୍ଦରେ କବି ଦାଶରଥି ଦାସ ରଚନା କରିଥିବା ତେରହଜାର ଏକଶହ ଏକଚାଳିଶ (୧୩୧୪୧) ପଦ ବିଶିଷ୍ଟ 'ବ୍ରଜ ବିହାର' କାବ୍ୟର ତୃତୀୟ ଓ ଚତୁର୍ଥ ବୋଲି ଶେଷ କରିଥିଲେ। ସେହି ଉପଲକ୍ଷେ କବି ଲେଖିଥିଲେ -

"ଗୋପୀନାଥ ଦେବ ତ୍ରିଅଙ୍କ ମାର୍ଗଶିର, ପାତ୍ର ଭଗବାନ ପଦ ଭ୍ରମରବର
ସଦାବର୍ତ୍ତି ସଦାମତି ହରି ଭଗତି, ଭୋଗମଣ୍ଡପ ଗୁଣ୍ଡିଚା ମୋହନ କୀର୍ତ୍ତି।" (୩/୧୬୪)

ଦେବାନ୍ ଭଗବାନ ଭ୍ରମରବର ରାୟ ଅତ୍ୟନ୍ତ ଧର୍ମଶୀଳ ଓ ଦାନଶୀଳ ପାତ୍ରଭାବେ ଭ୍ରମରବର ପଦବୀ ଧାରଣ କରି ପୂର୍ବରୁ କୁହାଯାଇଥିବା ଶ୍ରୀଜଗନ୍ନାଥ ମନ୍ଦିରର ଭୋଗ ମଣ୍ଡପ ଓ ଗୁଣ୍ଡିଚା ମନ୍ଦିରର ଜଗମୋହନ ନିର୍ମାଣ କରିଥିବାରୁ କବି ତାଙ୍କର ଉଚ୍ଚ ପ୍ରଶଂସା କରିଛନ୍ତି।

ଗୋପୀନାଥ ଦେବଙ୍କ ପରେ ତାଙ୍କ ସାନ ଭାଇ କେଶବ ରାଏ ରାମଚନ୍ଦ୍ରଦେବ ନାମ ଧାରଣ କରି ଖୋର୍ଦ୍ଧାର ରାଜା ହେଲେ। ତାଙ୍କ ସମୟରେ ଓଡ଼ିଶାର ମୋଗଲ ସୁବାଦାର ସୁଜାଖାଁଙ୍କ ପୁଅ ତକିଖାଁ ବାରମ୍ବାର ଚାରି ଥର ଖୋର୍ଦ୍ଧା ଆକ୍ରମଣ କରି ନାହିଁ ନ ଥିବା ଅଶାନ୍ତି ଉପଦ୍ରବ ସୃଷ୍ଟି କରିଥିଲେ। ତାଙ୍କ ୮ଅଙ୍କ ଅର୍ଥାତ୍ ୧୭୩୧ ଖ୍ରୀଷ୍ଟାବ୍ଦରେ ମହମ୍ମଦ ତକିଖାଁ ପ୍ରଥମଥର ଖୋର୍ଦ୍ଧା ଆକ୍ରମଣ କରି ଶିଶୁପାଳଗଡ଼ ଭାଙ୍ଗି ଦେଲେ ଏବଂ ରଥିପୁର ଗଡ଼ ଓ ଧଉଳିଗଡ଼ ଅଧିକାର କଲେ। "ଏ ମହାରାଜାଙ୍କ ୮ଅଙ୍କ ଧନୁ ୨୨ଦିନେ କଟକ ସୁବା ସୁଜାଖାଁ ପୁଅ ମହମ୍ମଦ ତକିଖାଁ ନସ୍କର ଘେନି ଶିଶୁପାଳଗଡ଼ ଖେଳାଇଦେଲା। ଧଉଳିଗଡ଼ ଘେନି ରଥିପୁର ଘେନିଲା।" (୩/୧୬୮)

ଏଠାରେ ଉଲ୍ଲେଖଯୋଗ୍ୟ ଯେ ଏ ଘଟଣାର ୧୧୬ବର୍ଷ ପୂର୍ବେ ଗଜପତି ପୁରୁଷୋତ୍ତମ ଦେବ (୧୬୦୦-୧୬୨୧)ଙ୍କ ୨୧ଅଙ୍କ ଅର୍ଥାତ୍ ୧୬୧୫ ଖ୍ରୀଷ୍ଟାବ୍ଦରେ ସେହି ଧନୁମାସ ୨୨ଦିନରେ ମକରମ ଖାଁ ଖୋର୍ଦ୍ଧା ଆକ୍ରମଣ କରିବା ସମୟରେ ଖୋର୍ଦ୍ଧାରେ ପ୍ରତିଷ୍ଠିତ ହୋଇଥିବା ସାକ୍ଷିଗୋପାଳଙ୍କୁ ଖୁଣ (ଖଣ୍ଡିଆ) କରି ଦେଇଥିଲେ । ପୁରୁଷୋତ୍ତମ ଦେବ ଖୋର୍ଦ୍ଧାଗଡ଼ରୁ ସପରିବାର ପଳାଇ ଯାଇ ମାଣତ୍ରୀ ଗଡ଼ରେ ଥିଲେ। "୨୧ଅଙ୍କେ ମକରମ୍ ଖାଁ ଆଇଲେ। ଧନୁ୨୨ ଦିନେ ଖୁରୁଧା ଘେନିଲେ। ସାକ୍ଷିଗୋପାଳଙ୍କୁ ଖୁଣ କଲେ। ... ରାଜା ଯାଇ କୁଟୁମ୍ବ ଘେନି ରଣପୁର ସୀମାରେ ମାଣତ୍ରୀ ଗ୍ରାମରେ କଟକ କରିଥିଲେ।" (୩/୫୫)

ସେହି କାରଣରୁ ପୁରୁଷୋତ୍ତମଦେବଙ୍କ ରାଜତ୍ୱରେ ସାକ୍ଷିଗୋପାଳ ବିଗ୍ରହଙ୍କୁ ଖୋର୍ଦ୍ଧାରୁ ନେଇ ରଥିପୁରରେ ଏକ ମନ୍ଦିର ନିର୍ମାଣ କରାଯାଇ ସେଥିରେ ରଖାଯାଇଥିଲା ଏବଂ ସେଠାରେ ମଧ୍ୟ ସାକ୍ଷିଗୋପାଳଙ୍କ ସେବାପୂଜାପାଇଁ କେତେକ ଜମି ଖଞ୍ଜା ଯାଇଥିଲା। ସେହି ଖଞ୍ଜା ଜମିରୁ କେତେକ ଏବେ ମଧ୍ୟ ରଥିପୁରଗଡ଼ ସଂଲଗ୍ନ ଛଟଣି ଅଞ୍ଚଳରେ ସାକ୍ଷିଗୋପାଳଙ୍କ ନାମରେ ରହିଅଛି। ରଥିପୁରଗଡ଼କୁ ୨ୟ ରାମଚନ୍ଦ୍ରଦେବଙ୍କ ୮ ଅଙ୍କରେ ତକିଖାଁ ଅଧିକାର କରିନେବାରୁ ସାକ୍ଷିଗୋପାଳ ବିଗ୍ରହଙ୍କୁ ସେଠାରୁ ନେଇ ଚିଲିକାକୂଳସ୍ଥ କନ୍ତଳବାଇ ଗ୍ରାମରେ ରଖାଯାଇଥିଲା ଏବଂ ସେଠାରେ ମଧ୍ୟ ଠାକୁରଙ୍କପାଇଁ ରାମଚନ୍ଦ୍ରଦେବ ଏକ ମନ୍ଦିର ନିର୍ମାଣ କରାଇଥିଲେ। ତେଣୁ ସେହି ସମୟରେ ରାମଚନ୍ଦ୍ରଦେବଙ୍କ ୧୧ଅଙ୍କ ବା ୧୭୩୪ ଖ୍ରୀଷ୍ଟାବ୍ଦରେ ତାଙ୍କର ପିତା ହରେକୃଷ୍ଣ ଓ ଜ୍ୟେଷ୍ଠଭ୍ରାତା ଗୋପୀନାଥଦେବଙ୍କ

ସମୟରୁ ଖୋର୍ଦ୍ଧାର ଦେବାନ୍ ଥିବା ପୂର୍ବୋକ୍ତ ଧର୍ମପରାୟଣ ଭଗବାନ ଭ୍ରମରବର ରାୟ ସାକ୍ଷିଗୋପାଳଙ୍କ ସେବାପୂଜା ନିମନ୍ତେ ବହୁଜମି ଖଞ୍ଜିବାର ସୁବ୍ୟବସ୍ଥା କରିଥିଲେ ଏବଂ ସେହି ଖଞ୍ଜା ଜମିର ସନନ୍ଦ କଣ୍ଟଳବାଇରୁ ସାକ୍ଷିଗୋପାଳଙ୍କ ସହିତ ଅଳସାକୁ ଆସି ଏଠାରେ ମନ୍ଦିରରେ ସଂରକ୍ଷିତ ଥିଲା - ଏହା ନିଃସନ୍ଦେହ। କିନ୍ତୁ ଉକ୍ତ ସନନ୍ଦ ଏବେ ଆଉ ସାକ୍ଷିଗୋପାଳ ମନ୍ଦିର କାର୍ଯ୍ୟାଳୟରେ ନାହିଁ ବୋଲି ମନ୍ଦିରର କାର୍ଯ୍ୟନିର୍ବାହୀ ଅଧିକାରୀଙ୍କଠାରୁ ପ୍ରକାଶ।

ଐତିହାସିକ କୃପାସିନ୍ଧୁ ମିଶ୍ରଙ୍କ କୃତ ଉତ୍କଳ ଇତିହାସ ୮୮ ପୃଷ୍ଠାରେ ଲେଖାଅଛି - ''ଏହି ବକୁଳ ଛୁରିଅନା ଉଦ୍ୟାନ ରାଜା ମୁକୁନ୍ଦଦେବ (୧୭୯୮-୧୮୧୭)ଙ୍କ ଦ୍ୱାରା ନିର୍ମିତ ହୋଇଥିଲା। ରାଜା ମଧ ଏଠାରେ ଏକ ବସନ୍ତ ନିବାସ ନିର୍ମାଣ କରିଥିଲେ, ଅଦ୍ୟାପି ତାହାର ଚିହ୍ନ ଅଛି। ପରେ ପୁଣି ବାବାଜି ଲକ୍ଷ୍ମୀନାରାୟଣ ବ୍ରହ୍ମଚାରୀ ୧୮୫୬ରୁ ୧୮୬୬ ଖ୍ରୀଷ୍ଟାବ୍ଦ ମଧରେ ସାକ୍ଷିଗୋପାଳଙ୍କ ବର୍ତ୍ତମାନ ମନ୍ଦିର ନିର୍ମାଣକରାଇଥିଲେ। କେବଳ ନାମାନୁସାରେ ସାକ୍ଷିଗୋପାଳ ବା ସତ୍ୟବାଦୀ ନାମରେ ସ୍ଥଳ ପରିଚିତ।''

ବକୁଳ ଛୁରିଅନା ଉଦ୍ୟାନଟିଏ ଉଭାରିବାପାଇଁ ଖୁବ୍ କମ୍‌ରେ ଆଠ ଦଶ ବର୍ଷ ଲାଗିଥିବ। ମୁକୁନ୍ଦଦେବ (୨) ୧୭୯୮ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧାର ରାଜଗାଦିରେ ବସିବା ବେଳକୁ ତାଙ୍କୁ ମାତ୍ର ତେର ବର୍ଷ ବୟସ ହୋଇଥିଲା। ୧୮୦୩ ଖ୍ରୀଷ୍ଟାବ୍ଦରେ ତାଙ୍କୁ ଅଠର ବର୍ଷ ହେଲାବେଳକୁ ଇଂରେଜମାନେ ଓଡ଼ିଶା ଅଧିକାର କଲେ। ତା'ପରବର୍ତ୍ତୀ ତେର ବର୍ଷ ସେ ଖୋର୍ଦ୍ଧାରାଜ୍ୟ ସହିତ ସର୍ବସ୍ୱ ହରାଇ ଯେପରି ଦାରୁଣ ଦୁଃଖ ଦୁର୍ଦ୍ଦଶା ଭିତରେ ଦୁଇ ଥର ଜେଲ୍ ଦଣ୍ଡ ଭୋଗି ୧୮୧୭ଖ୍ରୀଷ୍ଟାବ୍ଦରେ ସେଇ ଜେଲ୍ ଭିତରେ ମୃତ୍ୟୁବରଣ କଲେ, ସେ ତେର ବର୍ଷ ମଧରେ ବକୁଳ ଛୁରିଅନା ଉଦ୍ୟାନ ଉଭାରିବା ଏବଂ ତା'ମଧରେ ନିଜପାଇଁ ବସନ୍ତ ନିବାସ ନିର୍ମାଣ କରିବା ମୁକୁନ୍ଦଦେବଙ୍କପାଇଁ ଚିନ୍ତାର ବହିର୍ଭୂତ ଘଟଣା ଥିଲା। ତେଣୁ ଅଳସା ମୌଜାରେ ବକୁଳ ଛୁରିଅନା ଉଦ୍ୟାନ ନିଶ୍ଚିତଭାବେ ତାଙ୍କ ପିତା ଦିବ୍ୟସିଂହଦେବଙ୍କ ସମୟରୁ ପ୍ରତିଷ୍ଠା କରାଯାଇଥିଲା ଏବଂ ପିତାଙ୍କ ମୃତ୍ୟୁପରେ ୧୭୯୮ରୁ ୧୮୦୩ ପର୍ଯ୍ୟନ୍ତ ସେ ଯେଉଁ ପାଞ୍ଚ ବର୍ଷ ନାବାଳକ ଅବସ୍ଥାରେ ଖୋର୍ଦ୍ଧାର ରାଜା ଥିଲେ ସେହି ସମୟରେ ପ୍ରୋକ୍ତ ବକୁଳ ଛୁରିଅନା ଉଦ୍ୟାନର ଅଧିକ ଯତ୍ନ ନେଇ ତା ଭିତରେ ବସନ୍ତ ନିବାସ ନିର୍ମାଣ କରାଇ ପାରିଥିବେ; କିମ୍ବା ପିତାଙ୍କ ଅମଳରୁ ନିର୍ମିତ ବା ଅର୍ଦ୍ଧନିର୍ମିତ ବସନ୍ତ ନିବାସର ଉନ୍ନତି କରିଥିବେ। ସୁତରାଂ ଦିବ୍ୟସିଂହଦେବଙ୍କ ରାଜତ୍ୱରେ ଯେଉଁ ସମୟରେ ମରହଟ୍ଟା ସନ୍ନ୍ୟାସୀ ବାବା ବ୍ରହ୍ମଚାରୀଙ୍କ ଦ୍ୱାରା ଶ୍ରୀଜଗନ୍ନାଥ ମନ୍ଦିରରେ ଲକ୍ଷ୍ମୀନାରାୟଣ ବିଗ୍ରହ ପ୍ରତିଷ୍ଠା କରାଯାଇଥିଲା ସେହି ସମୟରେ ବା ତା'ପରେ ଫୁଲଅଳସା ଗ୍ରାମରେ ବକୁଳବନ ଓ ସାକ୍ଷିଗୋପାଳଙ୍କ ବିଗ୍ରହ ପ୍ରତିଷ୍ଠା କରାଯାଇଥିବା ବିଶ୍ୱାସଯୋଗ୍ୟ।

ଫୁଲଅଳସାରେ ସାକ୍ଷିଗୋପାଳଙ୍କର ବିଗ୍ରହ ପ୍ରତିଷ୍ଠା ସମ୍ପର୍କରେ ଐତିହାସିକ କୃପାସିନ୍ଧୁ ଯେତେସବୁ ବିବରଣୀ ପ୍ରଦାନ କରିଛନ୍ତି ତା' ମଧରେ ବକୁଳ ଛୁରିଅନା ଉଦ୍ୟାନ ନିର୍ମାଣ ଓ

ସାକ୍ଷିଗୋପାଳ ଠାକୁରଙ୍କ ଖଞ୍ଜାଜମିର ସନନ୍ଦ - ଏ ଦୁଇଟିର ବିବରଣୀ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହି ଗୁରୁତ୍ୱପୂର୍ଣ୍ଣ ବିବରଣୀ ଦୁଇଟି ନ ଥିଲେ କୌଣସି ସିଦ୍ଧାନ୍ତରେ ପହଞ୍ଚିବା ଆଦୌ ସମ୍ଭବପର ହୋଇ ପାରି ନ ଥାନ୍ତା । ପଣ୍ଡିତ ଗୋପବନ୍ଧୁଙ୍କ ଘନିଷ୍ଠ ସହଯୋଗୀ, ସତ୍ୟବାଦୀ ବନ ବିଦ୍ୟାଳୟର ଅନ୍ୟତମ କୃତୀ ଶିକ୍ଷକ ତଥା ସମଗ୍ର ଓଡ଼ିଶାର ସର୍ବଜନ ପୂଜ୍ୟ ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ ଜାତୀୟ ନେତାଭାବେ ସେ ତାଙ୍କର ଯୁବକ ବୟସରେ ୧୯୧୫ ମସିହାରେ ଯେତେବେଳେ 'ସତ୍ୟବାଦୀ ବା ସାକ୍ଷିଗୋପାଳ' ପ୍ରବନ୍ଧ ଲେଖିଥିଲେ ତା'ପୂର୍ବରୁ କେହି ସତ୍ୟବାଦୀ ଇତିହାସ ଲେଖି ନ ଥିଲେ । ସେତେବେଳେ ଐତିହାସିକ ତଥ୍ୟ ଆହରଣପାଇଁ ଆଜିକାଲିପରି ସୁବିଧାସୁଯୋଗ ନ ଥିଲା । ତେଣୁ ମୁଖ୍ୟତଃ ପ୍ରବାଦ, କିମ୍ବଦନ୍ତୀ ବା ଜନଶ୍ରୁତି ଉପରେ ନିର୍ଭରକରି ସେ ସତ୍ୟବାଦୀ ବା ସାକ୍ଷିଗୋପାଳ ପ୍ରବନ୍ଧ ଲେଖିଥିଲେ ଏବଂ ସେହି ପ୍ରବନ୍ଧ ଭିତ୍ତିକ ସଂକ୍ଷିପ୍ତ ତଥ୍ୟକୁ ପରେ ସେ 'ଉତ୍କଳ ଇତିହାସ'ରେ ପ୍ରଦାନ କରିଥିଲେ । ତାଙ୍କ ଦ୍ୱାରା ପ୍ରଦତ୍ତ ତଥ୍ୟର ମୂଳସୂତ୍ର ଥିଲା ମନ୍ଦିରରେ ସଂରକ୍ଷିତ ଥିବା ସାକ୍ଷିଗୋପାଳଙ୍କ ଖଞ୍ଜା ସମ୍ପତ୍ତିର ଐତିହାସିକ ସନନ୍ଦ, ଯାହା ରାମଚନ୍ଦ୍ରଦେବଙ୍କ ୧୧ଅଙ୍କରେ ଲେଖାଯାଇଥିଲା । ମାତ୍ର ୬୦ବର୍ଷ ପୂର୍ବରୁ (୧୮୧୭ରୁ ୧୮୫୫ପର୍ଯ୍ୟନ୍ତ) ବିଦ୍ୟମାନ ଥିବା ପୁରୀର ଲୋକପ୍ରିୟ ଠାକୁର ରାଜା ଗଜପତି ରାମଚନ୍ଦ୍ର ଦେବ (୩ୟ) ହିଁ ଉକ୍ତ ସନନ୍ଦ ବର୍ଣ୍ଣିତ ରାମଚନ୍ଦ୍ରଦେବ ବୋଲି ଜନସାଧାରଣଙ୍କ ମନରେ ଧାରଣା ସୃଷ୍ଟି ହୋଇଥିଲା । ଠାକୁରଙ୍କପାଇଁ ଜମି ଖଞ୍ଜିଥିବା ସେହି ରାମଚନ୍ଦ୍ରଦେବଙ୍କ ସମୟରେ ଠାକୁର କନ୍ତଳବାଇରୁ ଆସି ଫୁଲଅଳସାରେ ପ୍ରତିଷ୍ଠିତ ହୋଇଥିଲେ ବୋଲି ଲୋକେ ବିଶ୍ୱାସ କଲେ । ତେଣୁ ତା' ଆଗରୁ ରାମଚନ୍ଦ୍ର ଦେବ (୩ୟ)ଙ୍କ ପିତା ମୁକୁନ୍ଦଦେବ (୨ୟ)ଙ୍କ ସମୟରୁ ବକୁଳବନଳ, ସିଦ୍ଧବକୁଳ, ବସନ୍ତ ନିବାସ ଆଦି ଥିଲା ବୋଲି ସ୍ୱାଭାବିକଭାବେ ଲୋକମୁଖରେ ଚାକ୍ଷୁସ ବା ଅନୁଭୂତିଲବ୍ଧ ସତ୍ୟ ଘଟଣା ଭଳି ପ୍ରଚାରିତ ହୋଇଯାଇଥିଲା । ଐତିହାସିକ କୃପାସିନ୍ଧୁ ସେଇ ବିବରଣୀକୁ ତାଙ୍କ ପ୍ରବନ୍ଧରେ ସ୍ଥାନିତ କରିଥିଲେ ।

ଗୋପାଳଙ୍କ ପାଖରେ ରାଧାବିଗ୍ରହ ସ୍ଥାପନା ସଂକ୍ରାନ୍ତ ପ୍ରଚଳିତ ଲକ୍ଷ୍ମୀ କିମ୍ବଦନ୍ତୀ ସମ୍ପର୍କରେ ଐତିହାସିକ କୃପାସିନ୍ଧୁ ତାଙ୍କ ପ୍ରବନ୍ଧର 'ରାଧାକୃଷ୍ଣ' ଶୀର୍ଷକ ଅଷ୍ଟମ ଅଧ୍ୟାୟରେ ଲେଖିଥିଲେ- ''ଅନେକଙ୍କ ଧାରଣା- ଏ କିମ୍ବଦନ୍ତୀବିବୃତ ଘଟଣାର ସ୍ଥାନ ସତ୍ୟବାଦୀ । ମାତ୍ର ଅନୁସନ୍ଧାନରେ ଜଣାଯାଏ ଗୋପାଳ ଖୋର୍ଦ୍ଧା ଅନ୍ତର୍ଗତ ଚିଲିକା ତଟବର୍ତ୍ତୀ କନ୍ତଳବାଇ ଗ୍ରାମରେ ଥିଲାବେଳେ ରାଧିକା ନିର୍ମିତ ହୋଇଥିଲେ ।''

କିନ୍ତୁ ଐତିହାସିକ କୃପାସିନ୍ଧୁଙ୍କର ଏହି ମତ ବୋଧହୁଏ ଅନେକଙ୍କର ଧାରଣାକୁ ବଦଳେଇ ଦେଇପାରି ନ ଥିଲା । ଏବେ ମଧ୍ୟ ଅନେକଙ୍କର ଧାରଣା ଯେ ଲକ୍ଷ୍ମୀ କିମ୍ବଦନ୍ତୀ ଘଟଣାର ସ୍ଥାନ ସତ୍ୟବାଦୀ ଏବଂ ୧୮୬୨ରେ ସତ୍ୟବାଦୀରେ ଆଧୁନିକ ମନ୍ଦିର ନିର୍ମିତ ହେବା ପୂର୍ବରୁ ବା ପରେ ଗୋପାଳଙ୍କର ବାମପାର୍ଶ୍ୱରେ ରାଧା ସ୍ଥାପିତହେଲେ । ତା'ପରେ 'ଗୋପାଳ' ହେଲେ 'ଗୋପୀନାଥ' ଏବଂ ସେହିଠାରୁ ସେ 'ସତ୍ୟବାଦୀ ଗୋପୀନାଥ' ରୂପେ ବିଖ୍ୟାତ ହେଉଛନ୍ତି ।

କିନ୍ତୁ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ହେଉଛି- ସାକ୍ଷିଗୋପାଳ ବିଗ୍ରହଙ୍କୁ ମୁସଲମାନ ଆକ୍ରମଣରୁ ରକ୍ଷା କରିବାଲାଗି କଟକରୁ ଖୋର୍ଦ୍ଧା, ଖୋର୍ଦ୍ଧାରୁ ରଥିପୁର ଓ ରଥିପୁରରୁ କନ୍ତଳବାଇକୁ ସ୍ଥାନାନ୍ତରିତ କରାଯାଇଥିବାବେଳେ କନ୍ତଳବାଇରେ ସେପରି କୌଣସି ଆକ୍ରମଣର ଭୟ ନ ଥାଇ ସେଠାରୁ ପୁଣି କାହିଁକି ଫୁଲଅଳସା ଗ୍ରାମକୁ ସ୍ଥାନାନ୍ତରିତ କରାଗଲା ?

ଖୋର୍ଦ୍ଧାର ରାଜା ଦିବ୍ୟସିଂହଦେବଙ୍କ ପିତାମହ ବୀରକେଶରୀଦେବଙ୍କ ସମୟରୁ ଖୋର୍ଦ୍ଧାରାଜ୍ୟର ଏକପ୍ରକାର ପତନ ପ୍ରକ୍ରିୟା ଆରମ୍ଭ ହୋଇଯାଇଥିଲା । ଖୋର୍ଦ୍ଧାରାଜାଙ୍କ ଅଧୀନରେ ଥିବା ଗଞ୍ଜାମର ଆଠ ଗୋଟି ବଡ଼ ବଡ଼ ଜମିଦାରୀ ମାହାଲକୁ ୧୭୩୦ ଖ୍ରୀଷ୍ଟାବ୍ଦରେ ମୋଗଲମାନେ ଖୋର୍ଦ୍ଧାରାଜାଙ୍କ ଅଧିକାରରୁ କାଢ଼ିନେଇ ହାଇଦରାବାଦର ନିଜାମଙ୍କ ଅଧିକାରଭୁକ୍ତ କରିଦେଇଥିଲେ (୩/୨୬୬) । ତା'ପରେ ମୋଗଲ ଓ ମରହଟ୍ଟାମାନଙ୍କ ମଧ୍ୟରେ ଦୀର୍ଘ ଦଶ ବର୍ଷକାଳ ଓଡ଼ିଶା ଅଧିକାରକୁ ନେଇ ଲାଗିରହିଥିବା ଯୁଦ୍ଧ ବିଭୀଷିକା ଫଳରେ ଖୋର୍ଦ୍ଧାରାଜ୍ୟରେ ଗୁରୁତର ଅଶାନ୍ତି ଉପୁଜିଥିଲା । ୧୭୫୧ରେ ମରହଟ୍ଟାମାନେ ଓଡ଼ିଶା ଅଧିକାର କରିବାପରେ ୧୭୬୦ଖ୍ରୀଷ୍ଟାବ୍ଦରେ ମରହଟ୍ଟା ସୁବାଦାର ଶିବ ଭଟ୍ଟଶାଠେ ପାରଳା ରାଜାଙ୍କ ବିରୋଧରେ ବୀରକେଶରୀଦେବଙ୍କୁ ସାମରିକ ସହାୟତା ପ୍ରଦାନ କରି ତା'ବଦଳରେ ବୀରକେଶରୀଦେବଙ୍କ ହସ୍ତମୁଦୀ ମାହାଲ - ଲେମ୍ବାଇ, ସିରାଇ, ରାହାଙ୍ଗ, ଚବିଶକୁଦ ଓ ପୁରୁଷୋତ୍ତମ କ୍ଷେତ୍ରର ମାଲିକାନା ସହିତ ୧୪ଟି ଗଡ଼ଜାତର କର ଆଦାୟ କ୍ଷମତା ହସ୍ତଗତ କରିନେବାରୁ ବୀରକେଶରୀଦେବ ଗୁରୁତର ଆର୍ଥିକ ଓ ମାନସିକ ସଙ୍କଟର ସମ୍ମୁଖୀନ ହୋଇ ଶେଷକୁ ପାଗଳ ହୋଇଗଲେ ଏବଂ ନିଜର ଦୁଇ ପୁଅଙ୍କୁ ହତ୍ୟାକରି ମରହଟ୍ଟା ଶାସକ ରାଜାରାମ ପଣ୍ଡିତଙ୍କ ଦ୍ୱାରା ଦୋଷୀ ସାବ୍ୟସ୍ତ ହୋଇ ବାରବାଟୀ ଦୁର୍ଗରେ ୧୭୮୧ରେ ବନ୍ଦି ହେଲେ । ରାଜାରାମ ପଣ୍ଡିତ ବୀରକେଶରୀ ଦେବଙ୍କର ନାତି ଦିବ୍ୟସିଂହଦେବଙ୍କୁ ୧୭୮୧ରେ ଖୋର୍ଦ୍ଧା ରାଜଗାଦିରେ ବସାଇଲେ । କିନ୍ତୁ ନିୟମ ଅନୁଯାୟୀ ବୀରକେଶରୀଦେବ ୧୭୯୩ରେ ବନ୍ଦିଶାଳାରେ ମରିବାପର୍ଯ୍ୟନ୍ତ ତାଙ୍କ ନାମରେ ଅଙ୍କ ଗଣା ହେଉଥିଲା । ତେଣୁ ଦିବ୍ୟସିଂହ ଦେବ କେବଳ ୧୭୯୩ରୁ ୧୭୯୮ପର୍ଯ୍ୟନ୍ତ ମାତ୍ର ପାଞ୍ଚ ବର୍ଷପାଇଁ ରାଜାରୂପେ ଗଣାହେଲେ । ଏହିପରି ଦୁର୍ଦ୍ଦଶା ଭିତରେ ଦିବ୍ୟସିଂହଦେବ ମରହଟ୍ଟା ଶାସକଙ୍କୁ ବାର୍ଷିକ ଦଶ ହଜାର ଟଙ୍କା ପେସ୍‌କିସ୍ ଦେବାକୁ ଚୁକ୍ତିକରି ଲେମ୍ବାଇ ପ୍ରଗଣା ସହିତ ବାଣପୁର ଓ ଖୋର୍ଦ୍ଧା ଇଲାକାର କେତେକାଂଶ ଫେରି ପାଇଥିଲେ । କିନ୍ତୁ ମରହଟ୍ଟାମାନେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କପ୍ରତି ବିଶେଷ ଧ୍ୟାନଶୀଳ ଓ ଦାନଶୀଳ ଥିବାରୁ ଖୋର୍ଦ୍ଧାରାଜାଙ୍କଠାରୁ ଶିବଭଟ୍ଟଶାଠେ ଛଡ଼େଇ ନେଇଥିବା ରାହାଙ୍ଗ, ସିରାଇ, ଚବିଶକୁଦ ଓ ପୁରୁଷୋତ୍ତମ କ୍ଷେତ୍ର ଆଦି ମାହାଲରୁ ଆୟ କରୁଥିବା ରାଜସ୍ୱର କେତେକାଂଶ ଧର୍ମକାର୍ଯ୍ୟରେ, ବିଶେଷତଃ ଶ୍ରୀଜଗନ୍ନାଥ ମନ୍ଦିରର ଉନ୍ନତିକଳ୍ପେ ଖର୍ଚ୍ଚ କରୁଥିଲେ । ସେତିକିବେଳେ ବାବା ବ୍ରହ୍ମଚାରୀ ଜଗନ୍ନାଥ ମନ୍ଦିରରେ ସୁନାର ଲକ୍ଷ୍ମୀ ଓ ରୂପାର ନାରାୟଣ ପ୍ରତିମା ବସାଇଥିଲେ । (୨/୧୮୧) ଜଗନ୍ନାଥଙ୍କ ସେବାପାଇଁ ମରହଟ୍ଟାମାନେ ଅର୍ଥ ଖଞ୍ଜିବା ସହିତ ବେଢ଼ା ମଧ୍ୟରେ କେତେକ ନୂତନ ମନ୍ଦିର ଗଢ଼ାଇଥିଲେ ।

ଭୋଗମଣ୍ଡପ, ସ୍ନାନବେଦୀର ପାହାଚ ଚାରିପାଖରେ ପଥରକାମ, ବାହାର ପାଚେରିର ଉପରବେଢ଼ ନିର୍ମାଣ, ପଲଙ୍କ, ଶୟନଘର, ଚାଙ୍ଗଡ଼ାଘର, କୋଣାର୍କରୁ ଅରୁଣସ୍ତମ୍ଭ ଆଣି ସିଂହଦ୍ୱାର ସମ୍ମୁଖରେ ସ୍ଥାପନ ଇତ୍ୟାଦି କୀର୍ତ୍ତି ମରହଟ୍ଟାମାନେ କରିଥିଲେ । ରାହାଙ୍ଗ ପ୍ରଗଣା ମରହଟ୍ଟାମାନଙ୍କ ଅଧିକାରରେ ଥିଲା । ସେତିକିବେଳେ ମରହଟ୍ଟା ସନ୍ୟାସୀ ବାବା ବ୍ରହ୍ମଚାରୀ ରାହାଙ୍ଗ ପ୍ରଗାଣସ୍ଥିତ ଅଳସା ମୌଜାରେ ଦେବାଳୟ ସ୍ଥାପନ ଉପଯୋଗୀ ପ୍ରଶସ୍ତ ସ୍ଥାନଥିବା ଲକ୍ଷ୍ୟକରି କନ୍ତଲବାଇରୁ ସାକ୍ଷିଗୋପାଳଙ୍କୁ ନେଇ ସେଠାରେ ପ୍ରତିଷ୍ଠା କଲେ ଶ୍ରୀଜଗନ୍ନାଥ ଦର୍ଶନପାଇଁ ଦୂର ଓ ବାହାର ପ୍ରଦେଶରୁ ଆସୁଥିବା ତୀର୍ଥଯାତ୍ରୀମାନେ ଶ୍ରୀକ୍ଷେତ୍ର ଯିବା ଆସିବା ବାଟରେ ସାକ୍ଷିଗୋପାଳଙ୍କ ଦର୍ଶନ ଲାଭ କରିପାରିବେ ବୋଲି ବିଚାରି ସେଇ ମହତ୍ କାର୍ଯ୍ୟରେ ଅଗ୍ରସର ହୋଇଥିବେ । ପ୍ରକାଶ ଯୋଗ୍ୟ ଯେ ଶ୍ରୀ ଜଗନ୍ନାଥ କ୍ଷେତ୍ରକୁ ରାଜପୁତନା, ବନାରସ, ବଙ୍ଗପ୍ରଦେଶ ଓ ମଧ୍ୟପ୍ରଦେଶର ତୀର୍ଥ ଯାତ୍ରୀମାନଙ୍କୁ ଆକର୍ଷିତ କରିବାପାଇଁ ମରହଟ୍ଟାମାନେ ନାନା ଯୋଜନା ଖଞ୍ଜିଥିଲେ ବୋଲି ବିଶିଷ୍ଟ ଐତିହାସିକ ଡକ୍ଟର୍ ଭବାନୀଚରଣ ରାୟ ତାଙ୍କର Orissa under the Marathas ପୁସ୍ତକରେ ଲେଖିଛନ୍ତି । ସୁତରାଂ ଶ୍ରୀକ୍ଷେତ୍ରକୁ ଯିବା ବାଟରେ ତୀର୍ଥଯାତ୍ରୀ-ମାନଙ୍କର ଦର୍ଶନର ସୁବିଧାନିମନ୍ତେ ସୁଦୂର ବୃନ୍ଦାବନରୁ ଆସିଥିବା ପ୍ରସିଦ୍ଧ ସାକ୍ଷିଗୋପାଳଙ୍କୁ ସ୍ଥାପନ କରିବା ମରହଟ୍ଟାମାନଙ୍କର ସେହି ମହାନ୍ ଯୋଜନାର ଏକ ଅଂଶ ବିଶେଷବୋଲି କୁହାଯାଇପାରେ ।

**ପୁନଶ୍ଚ**

ଦ୍ୱିଜ ଚୈତନ୍ୟ ନାମକ ଜଣେ କବିଙ୍କ ଦ୍ୱାରା ରଚିତ 'ସତ୍ୟବାଦୀ ମାହାତ୍ମ୍ୟ' ଶୀର୍ଷକ ତାଳପତ୍ର ପୋଥିକୁ ଉତାରି ଶ୍ରୀ ରଶ୍ମିରଞ୍ଜନ ମହାପାତ୍ର ନିକଟରେ (୧୯୯୮ ନଭେମ୍ବରରେ) ଏକ ପୁସ୍ତକ ପ୍ରକାଶ କରିଛନ୍ତି । ଏ କାର୍ଯ୍ୟ ନିଶ୍ଚିତଭାବେ ପ୍ରଶଂସନୀୟ । ପୁସ୍ତକଟିରେ ଦୈବାତ୍ ଉପୁଜିଥିବା ଭ୍ରମପ୍ରମାଦ ୨ୟ ସଂସ୍କରଣରେ ସଂଶୋଧିତ ହୋଇଯିବା ଆବଶ୍ୟକ । ନବାକ୍ଷରୀ ବୃତ୍ତରେ ରଚିତ ୪୨ ଅଧ୍ୟାୟ ବିଶିଷ୍ଟ କବି ଦ୍ୱିଜ ଚୈତନ୍ୟଙ୍କ 'ସତ୍ୟବାଦୀ ମାହାତ୍ମ୍ୟ' ଶେଷରେ ଆଉ ଏକ ତାଳପତ୍ର ଖେଦାରୁ ଉଦ୍ଧୃତ ଦୁଇଟି ଅଧ୍ୟାୟ ସଂଯୋଗ କରାଯାଇ ପୁସ୍ତକଟିକୁ ୪୪ ଅଧ୍ୟାୟରେ ସମ୍ପୂର୍ଣ୍ଣ କରାଯାଇଛି । ୪୧ତମ ଅଧ୍ୟାୟରେ ଗୋଟିଏ ସ୍ଥାନରେ 'ଲେଖିଲି ବୃଦ୍ଧ ମୁଖୁଁ ଶୁଣି' ଏବଂ ଆଉ ଗୋଟିଏ ସ୍ଥାନରେ ''ବୃଦ୍ଧଙ୍କ ମୁଖୁଁ ଯା ଶୁଣିଲି, ବସିଣ ଚିଉୋଇ ଲେଖିଲି'' ବୋଲି ଲେଖାଥିବାରୁ ଘଟଣା ସମ୍ପର୍କରେ କବିଙ୍କର ପ୍ରତ୍ୟକ୍ଷ ଜ୍ଞାନ ବା ଧାରଣା ନ ଥିଲା; ସେ ବୁଢ଼ାମାନଙ୍କ ମୁହଁରୁ ଯାହା ଶୁଣିଲେ ତାକୁ 'ଚିଉୋଇ' ଅର୍ଥାତ୍ ଭାବିଚିନ୍ତି ନିଜର ଭାବନାମତେ ଲେଖିଥିଲେ । ସୁତରାଂ ସାକ୍ଷିଗୋପାଳଙ୍କ ପାର୍ଶ୍ୱରେ ରାଧାମୂର୍ତ୍ତି ପ୍ରତିଷ୍ଠିତ ହେବାର ବହୁ ପଛରେ କବି ଦ୍ୱିଜ ଚୈତନ୍ୟ ଏହି ପୋଥି ଲେଖିଥିଲେ । ରାମଚନ୍ଦ୍ର ଦେବଙ୍କ ୧୫ ଅଙ୍କରେ ତାଙ୍କର ସତ୍ୟବାଦୀ ମାହାତ୍ମ୍ୟ ଲେଖା ସମ୍ପୂର୍ଣ୍ଣ ହୋଇଥିଲା ବୋଲି ଉଲ୍ଲେଖଥିବାରୁ ସେ ରାମଚନ୍ଦ୍ର ଦେବ ନିଶ୍ଚିତଭାବେ ମୁକୁନ୍ଦଦେବ (୨ୟ)ଙ୍କ ପୁତ୍ର ପୁରୀର ଠାକୁରରାଜା ରାମଚନ୍ଦ୍ର ଦେବ( ୩ୟ) ଏବଂ ତାଙ୍କର

୧୫ ଅଙ୍କ ହୋଇଥିଲା ୧୮୩୦ ଖ୍ରୀଷ୍ଟାବ୍ଦରେ ।

ଖୋର୍ଦ୍ଧାର ରାଜା ବୀରକେଶରୀଦେବ ମରହଟ୍ଟା ଶାସକଙ୍କଦ୍ୱାରା କଟକରେ ବନ୍ଦି ହେବାପରେ ଦିବ୍ୟସିଂହଦେବଙ୍କ ସମୟରେ ରାଧାମୂର୍ତ୍ତି କନ୍ତଳବାଇରେ ନିର୍ମିତ ଓ ପ୍ରତିଷ୍ଠିତ ହୋଇଥିଲେ ବୋଲି ଦ୍ୱିଜ ଚୈତନ୍ୟ ଲେଖିଛନ୍ତି । ସୁତରାଂ ଐତିହାସିକ କୃପାସିନ୍ଧୁଙ୍କର କନ୍ତଳବାଇରେ ରାଧାମୂର୍ତ୍ତି ପ୍ରତିଷ୍ଠା ସମ୍ପର୍କିତ ଉକ୍ତି ଦ୍ୱିଜ ଚୈତନ୍ୟଙ୍କ ଉକ୍ତିଦ୍ୱାରା ସମର୍ଥିତ ହେଉଛି । କିନ୍ତୁ ଐତିହାସିକ କୃପାସିନ୍ଧୁ ଗୋପାଳଙ୍କ ସେବକ ବେଲ ମହାପାତ୍ରଙ୍କ କନ୍ୟା ଲକ୍ଷ୍ମୀରୂପିଣୀ ରାଧାଙ୍କୁ ନେଇ ପ୍ରଚଳିତ କିମ୍ବଦନ୍ତୀଟିକୁ ଉଦ୍ଧାର କରିଥିବାବେଳେ କବି ଦ୍ୱିଜ ଚୈତନ୍ୟ 'ଦିବ୍ୟସିଂହ ଦେବଙ୍କ ପରବର୍ତ୍ତୀ ରାଜା ଗୋପୀନାଥ'ଙ୍କ କନ୍ୟା ଲଳିତ ମଞ୍ଜରୀଙ୍କୁ ଉକ୍ତ କିମ୍ବଦନ୍ତୀରେ ରାଧା ରୂପେ ଚିହ୍ନିତ କରାଇଛନ୍ତି । ତାଙ୍କ ମତରେ ସେହି ଗୋପୀନାଥ ରାଜା କନ୍ତଳବାଇରେ ଠାକୁରଙ୍କ ନାମରେ ସରପାରି ମୌଜା ଖଞ୍ଜି ଦେଇଥିଲେ ଏବଂ ତାଙ୍କରି ସହାୟତାରେ ବାବା ବ୍ରହ୍ମଚାରୀ ସାକ୍ଷିଗୋପାଳଙ୍କୁ କନ୍ତଳବାଇରୁ ଆଣି ଆଳସାଠାରେ ପ୍ରତିଷ୍ଠିତ କରାଇଥିଲେ ।

ପୂର୍ବରୁ କୁହାଯାଇଛି ଯେ ମରହଟ୍ଟା ଶାସକ ରାଜାରାମ ପଣ୍ଡିତ ୧୭୮୧ ଖ୍ରୀଷ୍ଟାବ୍ଦରେ ବୀରକେଶରୀଦେବଙ୍କୁ କଟକ ବାରବାଟୀ ଦୁର୍ଗରେ ବନ୍ଦିକରି ତାଙ୍କ ନାତି ଦିବ୍ୟସିଂହ ଦେବଙ୍କୁ ଖୋର୍ଦ୍ଧାର ରାଜଗାଦିରେ ବସାଇଥିଲେ ଏବଂ ବୀରକେଶରୀଦେବଙ୍କ ମୃତ୍ୟୁ (ଖ୍ରୀ. ୧୭୯୩) ପର୍ଯ୍ୟନ୍ତ ନାମକୁ ମାତ୍ର ତାଙ୍କ ଅଙ୍କ ଗଣା ହେଉଥିଲେ ହେଁ କାର୍ଯ୍ୟତଃ ୧୭୮୧ରୁ ୧୭୯୮ ପର୍ଯ୍ୟନ୍ତ ଦୀର୍ଘ ସତର ବର୍ଷକାଳ ଦିବ୍ୟସିଂହ ଦେବ ଖୋର୍ଦ୍ଧାର ରାଜା ଥିଲେ । ଦିବ୍ୟସିଂହ ଦେବଙ୍କ ପରେ ତାଙ୍କ ପୁଅ ମୁକୁନ୍ଦଦେବ (୨ୟ) ୧୭୯୮ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧାର ରାଜା ହୋଇଥିଲେ । କିନ୍ତୁ ଚର୍ଚ୍ଚିତ ଦ୍ୱିଜ ଚୈତନ୍ୟଙ୍କ 'ସତ୍ୟବାଦୀ ମାହାତ୍ମ୍ୟ' ଶେଷରେ ଯୋଗ କରାଯାଇଥିବା ତାଳପତ୍ର ଖେଦାରୁ ଉଦ୍ଧୃତ ଦୁଇଟି ଅଧ୍ୟାୟରେ କୁହାଯାଇଛି ଯେ ଦିବ୍ୟସିଂହ ଦେବଙ୍କ ଅଧୀନରେ ଗୋପୀନାଥ ନାମରେ ଜଣେ ବ୍ରାହ୍ମଣ ରାଜା ଅଳସାରେ ଥିଲେ । ସେ ଅପୁତ୍ରିକ ଥିବାରୁ ସାକ୍ଷିଗୋପାଳଙ୍କ ଗୁପ୍ତ ବୃନ୍ଦାବନ ନିମନ୍ତେ ୯ ବାଟି ୯ ମାଣ ୯ ଗୁଣ୍ଠ ୯ ବିଶ୍ୱା ପରିମିତ ବକୁଳବନ ସମେତ ଠାକୁରଙ୍କ ସେବାପୂଜା ନିମନ୍ତେ ୧୨୦ ବାଟି ଭୂମି ଖଞ୍ଜି ଦେଇ ଠାକୁରଙ୍କ ପ୍ରସାଦରୁ ଏକ ପୁତ୍ର ସନ୍ତାନ ଲାଭ କରିଥିଲେ ।

ତାଳପତ୍ର ଖେଦାରୁ ଉଦ୍ଧୃତ ଶେଷ ଦୁଇ ଅଧ୍ୟାୟରେ ଅଳସାଠାରେ ଗୋପାଳଙ୍କ ପ୍ରତିଷ୍ଠାପରେ ଦିବ୍ୟସିଂହ ଦେବ ରାଜାଙ୍କ ସମୟରେ ହିଁ ସେବକ ବେଲ ମହାପାତ୍ରଙ୍କ କନ୍ୟା ଲକ୍ଷ୍ମୀରୂପିଣୀ ରାଧାଙ୍କୁ ନେଇ ପ୍ରଚଳିତ କିମ୍ବଦନ୍ତୀର ଘଟଣା ଘଟିଥିଲାବୋଲି ବର୍ଣ୍ଣନା କରାଯାଇଛି । ଉକ୍ତ ଶେଷ ଦୁଇଟି ଅଧ୍ୟାୟରେ କୌଣସି କବି ବା ଲେଖକଙ୍କର ନାମ ନାହିଁ । କିନ୍ତୁ ଦ୍ୱିତୀୟ ଅଧ୍ୟାୟ ଶେଷରେ ଲେଖକ କହିଛନ୍ତି ଯେ ରାଧାମୂର୍ତ୍ତି ପ୍ରତିଷ୍ଠା ସମୟରେ ବେଲ

ମହାପାତ୍ରଙ୍କ ପୁଅ (ଲକ୍ଷ୍ମୀର ଭାଇ) ରାମକୃଷ୍ଣ ମନ୍ଦିର କଥା ବୁଝୁଥିଲେ ଏବଂ ତାଙ୍କ ପୁଅ ବୈରାଗୀ ବାଳୁତ ଥିଲା । ସେହି ସମୟରେ ଲେଖକଙ୍କ ପିତା ଚାସିରି ଗ୍ରାମରୁ ଆସି ରାଜାଙ୍କାରେ ଅଳସାରେ ରହି କାର୍ଯ୍ୟ କରୁଥିଲେ । ଲେଖକ ସ୍ୱୟଂ କିଛି ଘଟଣା ଦେଖି ଏବଂ ଆଉ କିଛି ଶୁଣିକରି ଏହି ବିବରଣୀ ଲେଖିଥିଲେ ।

''ସେ ଦିବ୍ୟସିଂହଙ୍କ ଅଧୀନ ଗୋପୀନାଥ ଯେ ରାଜାପୁଣ''
''ସେ ଅଳସାରେ (ରହୁ)ଥିଲେ ପ୍ରଭୁ କଥାକୁ ବୁଝୁଥିଲେ ।''
''ସେ ତହୁଁ ଅପୁତ୍ରିକ ଥିଲେ ବଡ଼ପଣ୍ଡାଙ୍କୁ ସବୁଦେଲେ''
''ପ୍ରଭୁର ମନ୍ଦିର ପୁଣି ଏକଶତବିଂଶ ବାଟି ଜମି''
''ସେ ଦିନୁ ସେହି ତୋଟା ସତ୍ୟବାଦୀ ନାମେ ହଟା''

x x x

''ରାମକୃଷ୍ଣ ଯେ ଲକ୍ଷ୍ମୀଭ୍ରାତା ବୁଝନ୍ତି ମନ୍ଦିରର କଥା''
''ତାଙ୍କ ପୁଅ ଯେ ବଇରାଗୀ ବାଳୁତ ଅବସ୍ଥାକୁ ଭୋଗି''
''ଚାସିରି ଗ୍ରାମରୁ ମୋ ପିଅର ଆସିଣଥିଲେ ସେଠାବର''
''ରାଧାଙ୍କ ପ୍ରତିଷ୍ଠା ସମୟେ କର୍ମ କରୁଥିଲେ ରାଜାଙ୍କାଯେ''
''ମୁଁ ଅଧମ ଜନ୍ମିଲି ତାଙ୍କଠାଇଁ ଏକଥାକୁ ଦେଖି ଶୁଣି ଲେଖିଲଇଁ ।''
''ପୁଅ ବ୍ରାହ୍ମଣ ରାଜାଙ୍କର ହୋଇଥିଲା ଏଠାବର ।''

ଲେଖକ ଅଳସାଠାରେ ରାଧାମୂର୍ତ୍ତି ପ୍ରତିଷ୍ଠା ଶେଷ ପର୍ଯ୍ୟାୟର ସମସାମୟିକ ହୋଇଥିବେ । ତେଣୁ ଏହା ଅଧିକ ବିଶ୍ୱାସଯୋଗ୍ୟ । ଉଭୟେ କବି ଦ୍ୱିଜ ଚୈତନ୍ୟ ଏବଂ ଚାସିରି-ଲେଖକଙ୍କ ଲେଖାରୁ ଦିବ୍ୟସିଂହ ଦେବଙ୍କ ସମୟରେ ମରହଟ୍ଟା ରାଜତ୍ୱରେ ହିଁ ସାକ୍ଷିଗୋପାଳ କନ୍ତଳବାଇରୁ ବାବା ବ୍ରହ୍ମଚାରୀଙ୍କଦ୍ୱାରା ଅଳସାକୁ ଆନୀତ ହୋଇଥିବା ମତ ସମର୍ଥିତ ହେଉଛି ।*

କିନ୍ତୁ ଗୋପୀନାଥ ନାମରେ ସତ୍ୟବାଦୀରେ କେହି ରାଜା ନ ଥିଲେ । ଐତିହାସିକ କୃପାସିନ୍ଧୁ ମିଶ୍ର ତାଙ୍କର 'ସତ୍ୟବାଦୀ ବା ସାକ୍ଷିଗୋପାଳ' ପ୍ରବନ୍ଧର ଦଶମ ଅଧ୍ୟାୟରେ ଲେଖିଛନ୍ତି ଯେ ୧୮୨୭ ପର୍ଯ୍ୟନ୍ତ ଶିବାଜି ପଣ୍ଡିତ ନାମରେ ଜଣେ ମରହଟ୍ଟା ସତ୍ୟବାଦୀ ମନ୍ଦିର ବିଷୟ ବୁଝୁଥିଲେ । ପୁରୀର ଠାକୁର ରାଜା ୩ୟ ରାମଚନ୍ଦ୍ର ଦେବଙ୍କ କକା ଗୋପୀନାଥ ରାୟଙ୍କୁ ଖୋର୍ଦ୍ଧାର ଜଏଣ୍ଟ୍ ମାଜିଷ୍ଟ୍ରେଟ୍ ଉଇଲ୍‌କିନ୍‌ସନ୍‌ଙ୍କ ସମ୍ମତିକ୍ରମେ କମିଶନର ପ୍ୟାକେନ୍‌ହାମ୍ ୧୮୨୮ ଜାନୁୟାରୀରେ ସତ୍ୟବାଦୀ ଗୋପୀନାଥଦେବଙ୍କ ମନ୍ଦିରର ପରିଚାଳକଭାବେ ନିଯୁକ୍ତ କରିଥିଲେ । ତାଙ୍କ ପରେ ତାଙ୍କ ପୁଅ ପଦ୍ମନାଭ ରାୟ

* ୧୨୯୫ ସାଲ ବା ୧୭୯୮ ଖ୍ରୀଷ୍ଟାବ୍ଦରେ ଗୋପାଳ କନ୍ତାଳବାଇରୁ ଆଳସାକୁ ଗଲେ ବୋଲି କନ୍ତଳବାଇରେ ଲୋକମୁଖରୁ ଶୁଣିବାକୁ ମିଳେ ।

ମଧ୍ୟ ଉତ୍ତରାଧିକାର ସୂତ୍ରରେ ସତ୍ୟବାଦୀ ମନ୍ଦିରର ପରିଚାଳକ ହୋଇଥିଲେ। କିନ୍ତୁ ୧୮୬୪ ମସିହା ଅକ୍ଟୋବର ମାସ ୨୪ ତାରିଖର ୩୫୫ ନମ୍ବର ପତ୍ରରେ ସରକାରଙ୍କ ଦ୍ୱାରା ମନ୍ଦିରର ଆୟ ବ୍ୟୟ ବୁଝିବା ନିମନ୍ତେ ନିଯୁକ୍ତ ବାବୁ ଭାଗବତ ମହାନ୍ତି, ବାବୁ ଭାଗୀରଥି ଦାସ ଓ ବାବୁ କୃଷ୍ଣମୋହନ ରାୟଙ୍କୁ ନେଇ ଗଠିତ ତିନି ଜଣିଆ କମିଟିକୁ ନମାନି ବିବାଦ ଓ ମାମଲା ସୃଷ୍ଟି କରି ଶେଷକୁ ପଦ୍ମନାଭ ରାୟ ୧୮୭୯ ଖ୍ରୀଷ୍ଟାବ୍ଦରେ କଟକ ସବ୍‌ଜଜ୍‌ଙ୍କ ଅଦାଲତ ରାୟଦ୍ୱାରା ମନ୍ଦିର ପରିଚାଳନା ଦାୟିତ୍ୱରୁ ବାଦ ପଡ଼ିଲେ ଓ ତିନି ଜଣିଆ କମିଟି ମନ୍ଦିର ପରିଚାଳନା କଲେ।

'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ୭ମ ଖଣ୍ଡ ୮୦୫୬ ପୃଷ୍ଠାରେ ମଧ୍ୟ ଉଲ୍ଲେଖ ଅଛି ଯେ, ପୂର୍ବରୁ ଜଣେ ରାଜ- ବିରାଦର ମନ୍ଦିରର ତତ୍ତ୍ୱାବଧାରକ ଥିଲେ, କିନ୍ତୁ ସେ ମନ୍ଦିର କାର୍ଯ୍ୟରେ ବିଶୃଙ୍ଖଳା ଘଟାଇବାରୁ ୧୮୬୩ ମସିହାର ୨୦ ଆଇନ ଅନୁଯାୟୀ ଏକ ତିନି ଜଣିଆ କମିଟି ଓ ପରେ ଏକ ପାଞ୍ଚ ଜଣିଆ କମିଟିଙ୍କୁ ମନ୍ଦିରର ପରିଚାଳନା ଦାୟିତ୍ୱ ଦିଆଗଲା। ସୁତରାଂ ସେଇ ରାଜ-ବିରାଦର ଗୋପୀନାଥ ରାୟଙ୍କୁ 'ସତ୍ୟବାଦୀ ମାହାତ୍ମ୍ୟ'ରେ ରାଜା ବୋଲି ଏବଂ ମରହଟ୍ଟା ରାଜତ୍ୱରେ ତାହାଙ୍କ ପ୍ରଗଣାରେ ଫୁଲ ଅଳସା ମୌଜାର ବକୁଳବନ ସମେତ ଖଞ୍ଜା ଯାଇଥିବା ସମସ୍ତ ସମ୍ପତ୍ତିକୁ ସେହି ଗୋପୀନାଥ ରାଜା ଖଞ୍ଜିଥିଲେ ବୋଲି ଭ୍ରମଧାରଣାବଶତଃ ଉଲ୍ଲେଖ କରାଯାଇଛି। କିନ୍ତୁ ସେହି ଗୋପୀନାଥ ରାୟ ମନ୍ଦିର ପରିଚାଳକ ଥିବାବେଳେ ଅର୍ଥାତ୍ ୧୮୨୮ ମସିହା ପରେ କୌଣସି ସମୟରେ ସତ୍ୟବାଦୀଠାରେ ହିଁ ରାଧାମୂର୍ତ୍ତି ନିର୍ମିତ ହୋଇଥିବାର ଏଥିରୁ ପ୍ରମାଣିତ ହେଉଛି। କିନ୍ତୁ ଗୋପୀନାଥ ରାୟ ୧୮୨୮ରୁ କେଉଁ ମସିହା ପର୍ଯ୍ୟନ୍ତ ସତ୍ୟବାଦୀ ମନ୍ଦିରର ପରିଚାଳକ ଥିଲେ ଏବଂ କେଉଁ ମସିହାରେ ରାଧାମୂର୍ତ୍ତି ପ୍ରତିଷ୍ଠା କରାଯାଇଥିଲା ସେ ସମ୍ପର୍କରେ ଏ ଯାବତ୍ କୌଣସି ନିର୍ଦ୍ଦିଷ୍ଟ ତଥ୍ୟ ମିଳି ନାହିଁ।

ସଂପ୍ରତି ଶ୍ରୀ ସତ୍ୟବାଦୀ ଗୋପୀନାଥ ଦେବଙ୍କ ଦେଉଳରୁ ହିଆଳିଲଗା ପୁରୁଣା ଚୂନ ପଳସ୍ତରା ଛଡ଼ା ହେଉଥିବାବେଳେ ଉକ୍ତ ଦେଉଳର ଦଧିନଉତି ଉପରେ ପଥରରେ ଖୋଦାଇ ନିମ୍ନୋକ୍ତ ଲେଖାଟି ସଦ୍ୟ ଆବିଷ୍କୃତ ହୋଇଛି:-

''୧୮୫୫ରୁ ୧୮୬୧ ମସିହା
ହରିହର ବ୍ରହ୍ମଚାରୀ
ଲକ୍ଷ୍ମୀନାରାୟଣ ବ୍ରହ୍ମଚାରୀ
ରାଜା ବୀରକିଶୋର ଦେବ।'' (ବୀରକେଶରୀ ଦେବ ୨ୟ)

ଏହାଦ୍ୱାରା 'ପ୍ରାଚୀନ ଉତ୍କଳ' (ପୃ ୪୮୧)ରେ ସ୍ୱର୍ଗତ ଜଗବନ୍ଧୁ ସିଂହଙ୍କ ଦ୍ୱାରା ଉଦ୍ଧୃତ 'ଛାମୁଚିଟାଉ'ର ତଥ୍ୟ ''ଦିବ୍ୟସିଂହ ଦେବଙ୍କ ୫ଅଙ୍କରେ ସତ୍ୟବାଦୀ ଦେଉଳ ନିର୍ମାଣ'' ସମ୍ପୂର୍ଣ୍ଣଭାବେ ନିର୍ଭୁଲ ପ୍ରମାଣିତ ହୋଇଛି।

ରାମଚନ୍ଦ୍ରଦେବ (୩ୟ)ଙ୍କ ମୃତ୍ୟୁପରେ ବୀରକେଶରୀ ଦେବ (୨ୟ) ୧୮୫୫ରେ ପୁରୀ ରାଜଗାଦି ପ୍ରାପ୍ତହୋଇ ମାତ୍ର ୪ ବର୍ଷପରେ ୧୮୫୯ରେ ଅକାଳମୃତ୍ୟୁ ବରଣ କଲେ । ତାଙ୍କର ପୋଷ୍ୟପୁତ୍ର ୪ ବର୍ଷର ଶିଶୁ ଦିବ୍ୟସିଂହ ଦେବ ନାମ ଧାରଣକରି ରାଜଗାଦିରେ ବସିଲେ । ସେହି ଦିବ୍ୟସିଂହ ଦେବ (୩ୟ)ଙ୍କ ୫ଅଙ୍କ, ୧୮୬୨ ମସିହାରେ ଆଧୁନିକ ସତ୍ୟବାଦୀ ଦେଉଳ ପ୍ରତିଷ୍ଠା କରାଯାଇଥିଲା ବୋଲି ଉପରୋକ୍ତ ସଦ୍ୟ ଆବିଷ୍କୃତ ଲେଖାଦ୍ୱାରା ସମର୍ଥିତ ହେଲା ।

ଉପରୋକ୍ତ ଲେଖାରୁ ଏହା ମଧ୍ୟ ଅନୁମିତ ହୁଏ ଯେ ମରହଟ୍ଟା ରାଜତ୍ୱରେ ଦିବ୍ୟସିଂହ ଦେବ ୨ୟ (୧୭୯୩-୯୮)ଙ୍କ ସମୟରେ ଯେଉଁ ମରହଟ୍ଟା ସନ୍ନ୍ୟାସୀ ବାବା ବ୍ରହ୍ମଚାରୀ ଶ୍ରୀଜଗନ୍ନାଥ ମନ୍ଦିରରେ ଲକ୍ଷ୍ମୀ ଓ ନାରାୟଣଙ୍କ ମୂର୍ତ୍ତି ସ୍ଥାପନା କରିଥିଲେ ଓ କନ୍ତଳବାଇରୁ ଶ୍ରୀଗୋପାଳଙ୍କୁ ଆଣି ଅଳସାସ୍ଥିତ ବକୁଳବନରେ ପ୍ରତିଷ୍ଠିତ କରାଇଥିଲେ, ସେହି ମରହଟ୍ଟା ସନ୍ନ୍ୟାସୀଙ୍କୁ ଲୋକେ ଲକ୍ଷ୍ମୀନାରାୟଣ ବ୍ରହ୍ମଚାରୀ କହୁଥିଲେ ଏବଂ ସେ ଦିବ୍ୟସିଂହ ଦେବ ୩ୟଙ୍କ ୫ଅଙ୍କ ପର୍ଯ୍ୟନ୍ତ ଅତି ବୃଦ୍ଧାବସ୍ଥାରେ ବଞ୍ଚିରହି ନିଜର ଶିଷ୍ୟ ହରିହର ବ୍ରହ୍ମଚାରୀଙ୍କଦ୍ୱାରା ଆଧୁନିକ ସତ୍ୟବାଦୀ ଦେଉଳ ନିର୍ମାଣ କରାଇଥିଲେ ।



## ପରିଶିଷ୍ଟ - ୫

# ତଥ୍ୟ- ଧାରିକା

୧. ଓଡ଼ିଶା ଇତିହାସ -ଡଃ ହରେକୃଷ୍ଣ ମହତାବ
୨. ଉତ୍କଳ ଇତିହାସ ୧୯୭୯ ସଂସ୍କରଣ -କୃପାସିନ୍ଧୁ ମିଶ୍ର
୩. ଖୁରୁଧା ଇତିହାସ -କେଦାରନାଥ ମହାପାତ୍ର
୪. ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ -ଚକ୍ରଧର ମହାପାତ୍ର
୫. ଓଡ଼ିଶା ଇତିହାସ -ଡଃ ଯଜ୍ଞକୁମାର ସାହୁ
୬. ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଇତିହାସ -ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ
୭. ଊନବିଂଶ ଶତାବ୍ଦୀର ଓଡ଼ିଶା -ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ
୮. ପାଇକ ବିଦ୍ରୋହ -ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ
୯. ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ -ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ
୧୦. ପ୍ରାଚୀନ ଉତ୍କଳ -ଜଗବନ୍ଧୁ ସିଂହ
୧୧. ଓଡ଼ିଶାର ଇତିହାସରେ କେତୋଟି ରୋମାଞ୍ଚକର କାହାଣୀ -ଡଃ ଜଗନ୍ନାଥ ପଟ୍ଟନାୟକ
୧୨. ଓଡ଼ିଶାର ପ୍ରତ୍ନତତ୍ତ୍ୱ ଓ ଅନ୍ୟାନ୍ୟ ପ୍ରବନ୍ଧ -ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ
୧୩. ମାଦଳା ପାଞ୍ଜି- ପ୍ରାଚୀ ସଂସ୍କରଣ -ଡଃ ଆର୍ତ୍ତବଲ୍ଲଭ ମହାନ୍ତି
୧୪. ମାଦଳା ପାଞ୍ଜି -ମୃତ୍ୟୁଞ୍ଜୟ ନାୟକ
୧୫. ମାଦଳା ପାଞ୍ଜିଦେଶଖଞ୍ଜା ନଂ: ୫୩ -ରଘୁନନ୍ଦନ ପାଠାଗାର, ପୁରୀ
୧୬. ଚକଡ଼ା ପୋଥି -ସୁଧାକର ପଟ୍ଟନାୟକ
୧୭. ଫିରିଙ୍ଗି କଳିଭାରତ -ମଧୁସୂଦନ ବିପ (ପ୍ର.ଡ: ଅର୍ଜୁନ ଯୋଶୀ)
୧୮. ଖୁରଧା ଦର୍ପଣ -ଦିଗମ୍ବର ଶ୍ରୀଚନ୍ଦନ
୧୯. ପାଇକ ଖେଦା -କହ୍ନାଇ ଚମ୍ପତିରାୟ
୨୦. ଉତ୍କଳ ପ୍ରସଙ୍ଗ (୫୨ଭାଗ ୧ମ ଖଣ୍ଡ) ଶେଷ ସ୍ୱାଧୀନ ଦୁର୍ଗ ଖୋର୍ଦ୍ଧାଗଡ଼ -ଡଃ ପ୍ରଶାନ୍ତ କୁମାର ରାୟ
୨୧. ଶତାବ୍ଦୀର ସୂର୍ଯ୍ୟ -ସୁରେନ୍ଦ୍ର ମହାନ୍ତି
୨୨. ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ (୧ମ, ୫ମ) -ଗୋପାଳଚନ୍ଦ୍ର ପ୍ରହରାଜ

୨୩. ଭକ୍ତକବି ମଧୁସୂଦନ ଗ୍ରନ୍ଥାବଳୀ -ଗାୟତ୍ରୀ ପ୍ରକାଶନୀ
୨୪. ଦେବୀ ଭାଗବତ -କୁଳମଣି ଜେନା
୨୫. ଶ୍ରୀ ଚୈତନ୍ୟ ଚରିତାମୃତ (ଓଡ଼ିଆ) -ଧର୍ମଗ୍ରନ୍ଥ ଷ୍ଟୋର
୨୬. ଦକ୍ଷିଣ ଓଡ଼ିଶା ଓ ଚୈତନ୍ୟ ମହାପ୍ରଭୁଙ୍କ ପଦଯାତ୍ରା (ସମ୍ବାଦ) -ଶ୍ରୀମତୀ ଶାନ୍ତିଲତା କର
୨୭. ଓଡ଼ିଆ ସାହିତ୍ୟର ଇତିହାସ -ଅଧାପକ ପଠାଣି ପଟ୍ଟନାୟକ
୨୮. ବକ୍ସି ଜଗବନ୍ଧୁ ବଂଶର ନୂତନ ଇତିହାସ -ଦିବ୍ୟସିଂହ ଚମୂପତି
୨୯. ଜୟୀ ରାଜଗୁରୁ ସ୍ମରଣିକା (ସହିଦ୍ ଜୟୀ ରାଜଗୁରୁ ସ୍ମୃତିସଂସଦ, ବୀରହରେକୃଷ୍ଣପୁର)
୩୦. ପୌରୁଷ - ୧୨ଶ ବର୍ଷ ୧ମ ସଂଖ୍ୟା) (ଖୋର୍ଦ୍ଧା ରାଜବଂଶ ଓ ଜଗନ୍ନାଥ ଧର୍ମ) -ଡଃ ହରମ୍ୟାନ୍ କୁଲ୍‌କେ
୩୧. 'ଚତୁରଙ୍ଗ' ୨ୟ ବର୍ଷ ୬ଷ୍ଠ ସଂଖ୍ୟା
୩୨. ବକ୍ସି ବଂଶର ଜାଗିରିସନନ୍ଦ ଶ୍ରୀମତୀ ସତ୍ୟଭାମାରାୟବିଧାର
୩୩. ସିରାଇ ସାତଶାସନ ଜାଗିରିସନନ୍ଦ -କୃଷ୍ଣଚନ୍ଦ୍ର ମହାପାତ୍ର, ଶ୍ରୀମୁକୁନ୍ଦପୁର (ଓଷଣା)
୩୪. ରଥୀପୁର କଟକ- ଏକ ଐତିହାସିକ ଅଧୟନ -ଦିବ୍ୟସିଂହ ଚମୂପତି
୩୫. Orissa Vol.I - W.W. Hunter
୩୬. Orissa Vol.II - W.W. Hunter
୩୭. History of Orissa -G. Toynbee
୩୮. History of Orissa Vol.II -R.D. Banerjee
୩୯. History of Orissa - W.W. Hunter Andrew Stirling, John Beams & N.K. Sahoo
୪୦. History of Orissa -Dr. N.K. Sahoo, Dr. P.K. Mishra, Dr. G.K. Sahoo
୪୧. Orissa Under the Marathas -Dr. B.C. Roy
୪୨. Foundation of British Orissa -Dr. B.C. Roy
୪୩. History of Modern Orissa -Dr. K.C. Jena
୪୪. Orissa under the British -Dr. N.K. Sahoo
୪୫. A Brief History of the Mohasaya family -Dr. B.C. Roy Mohasaya
୪୬. O.H.R.J. Vol IX No. 1&2 A sketch

Of the History of Oirssa - G. Toynbee
୪୭. Final report on the Survey and Settlement of the province of Orissa Vol.I
୪୮. Final Report on the Survey and Settlement of the province of Orissa Vol.II -S.L. Maddox
୪୯. British Relation with the chiefs and Rajas of Orissa -S.C. Padhi
୫୦. O.H.R.J. Vol.III No.4
୫୧. O.H.R.J. Vol. IV No 1&2
୫୨. O.H.R.J. Vol.I (New light on the Khurda Paik Rising of 1817) - Sudhakar Patnaik
୫୩. O.H.R.J. Vol. XVI No. 3
୫୪. O.H.R.J. Vol. XVIII No. 1&2
୫୫. Guide to Orissan Records Vol.I -S.C. De
୫୬. Guide to Orissan Records Vol.II -S.C. De
୫୭. Guide to Orissan Records Vol.III -S.C. De
୫୮. Guide to Orissan Records Vol.V -S.C. De
୫୯. Inscriptions of Orissa Vol.I Part II (Kanas Copper Plate) - Dr. S.N. Rajguru
୬୦. A Maritime History of India -Rear Admiral K./Sridharan
୬୧. Indian Shipping: a Historical Survey - Baldeo Sahai
୬୨. Puri District Gazetteer -N. Senapati & D.C. Kuanr
୬୩. Puri A Gazetteer -LSSSo' Malley
୬୪. O.R.H.J. Vol.II
୬୫. O.R.H.J Vol. XXXVIII
୬୬. Archaeology in Orissa -Dr. R.P. Mohapatra
୬୭. ଐତିହାସିକ କୃପାସିନ୍ଧୁ -ଚିନ୍ତାମଣି ଦାଶ
୬୮. ଓଡ଼ିଆ ସାହିତ୍ୟର କ୍ରମ ପରିଣାମ -ପଣ୍ଡିତ ନୀଳକଂଠ ଦାସ
୬୯. ସଂକ୍ଷିପ୍ତ ଓଡ଼ିଶା ଓ ନୟାଗଡ଼ ଇତିହାସ -ପ୍ରାଣକୃଷ୍ଣ ଆଚାର୍ଯ୍ୟ
୭୦. ଶତାବ୍ଦୀ ପୁରୁଷ କୃଷ୍ଣଚନ୍ଦ୍ର ଗଜପତି -ପଦ୍ମଚରଣ ସାହୁ
୭୧. 'ସତ୍ୟବାଦୀ' ମାସିକ ପତ୍ରିକା -କନ୍ୟା ଓ ତୁଳା ସଂଖ୍ୟା ୧୩୨୩
୭୨. ସତ୍ୟବାଦୀ ମାହାତ୍ମ୍ୟ -ରଶ୍ମିରଞ୍ଜନ ମହାପାତ୍ର